# ମନମୋହନ ମିଶ୍ର

# ଗ୍ରନ୍ଥାବଳୀ

(ଚତୁର୍ଥ ଭାଗ)



- ମନୁଷ୍ୟ ଦୈତ୍ୟ
- ଏସିଆର୍ ନିଦ୍ରିତା ରାଜକନ୍ୟା
- ନବଯୌବନର୍ ଦେଶ
- ସମରକନ୍ଦରେ ଗୋଟିଏ ଦିନ



ମନମୋହନ ମିଶ୍ର

# ଗ୍ରନ୍ଥାବଳୀ

(ଚତୁର୍ଥ ଭାଗ)

ସଂକଳନ ଓ ସଂପାଦନା

ରବି ଦାଶ

# ମନମୋହନ ମିଶ୍ର ଗ୍ରନ୍ଥାବଳୀ

(ଚତୁର୍ଥ ଭାଗ)

Manmohan Mishra Granthabali

(Vol. IV)

ସଂକଳନ ଓ ସଂପାଦନା : ରବି ଦାଶ

Compiled and Edited by : Rabi Dash

ପ୍ରକାଶକ : ବିଦ୍ୟାରତ୍ନ ପ୍ରକାଶନ

ଗ୍ରାମ/ପୋ : ତାରପୁର, ଜି. ଜଗତସିଂହପୁର, ଓଡ଼ିଶା



Publisher : Bidyaratna Prakashan

Vill/P.O Tarpur, Dist : Jagatsinghpur, Odisha

ପ୍ରଥମ ସଂସ୍କରଣ : ୨୦୧୭

First Edition : 2017

ପ୍ରଚ୍ଛଦ ମୁଦ୍ରଣ : ଗ୍ରାଫିକ୍ ଆର୍ଟ ଅଫସେଟ ପ୍ରେସ୍, କଟକ

Cover Printed at : Graphic Art Offset Press, Cuttack

ପ୍ରଚ୍ଛଦ : ସରୋଜ ମହାରଣା

Cover : Saroj Moharana

ମୂଲ୍ୟ : ଟ. ୨୫୦/-

Price : Rs. 250/-





ମନମୋହନ ମିଶ୍ର

ଆବିର୍ଭାବ : ୨୩.୦୩.୧୯୨୦

ତିରୋଧାନ : ୧୯.୧୧.୨୦୦୦



# ମନମୋହନ ମିଶ୍ର ଗ୍ରନ୍ଥାବଳୀ

## (ଚତୁର୍ଥ ଭାଗ)

## ଗ୍ରନ୍ଥ ସୂଚନା

ବିବର୍ତ୍ତନବାଦ

ମନୁଷ୍ୟ ଦୈତ୍ୟ

ଭ୍ରମଣ କାହାଣୀ

ଏସିଆର ନିଦ୍ରିତା ରାଜକନ୍ୟା

ନବଯୌବନର ଦେଶ

ସମରକନ୍ଦରେ ଗୋଟିଏ ଦିନ

# ସମ୍ପାଦକୀୟ

ମନମୋହନ ମିଶ୍ର ଗ୍ରନ୍ଥାବଳୀ, ୪ର୍ଥ ଭାଗ ପ୍ରକାଶ ଅବସରରେ ଓଡ଼ିଆ ଭାଷାଭାଷୀ ପାଠକବର୍ଗ ଓ ସଂଗ୍ରାମରତ ଓଡ଼ିଆ ଭାଷାପ୍ରେମୀମାନଙ୍କୁ ଅଭିନନ୍ଦନ ଜଣାଉଛୁ। ଲଗାତର ସଂଗ୍ରାମ ଯୋଗୁଁ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟ ମାନ୍ୟତା ମିଳିଛି। ଓଡ଼ିଆ ଭାଷା ଆଇନ ୧୯୫୪, ଦୀର୍ଘ ୬୨ ବର୍ଷ ପରେ ଓଡ଼ିଶା ସରକାର କାର୍ଯ୍ୟକାରୀ କରିବେ ବୋଲି ଘୋଷଣା କରିଛନ୍ତି। ନବକୃଷ୍ଣ ଚୌଧୁରୀ ସରକାର ୬୩ବର୍ଷ ତଳେ ସୃଷ୍ଟି କରିଥିବା ଓଡ଼ିଆ ଭାଷା ଆଇନ ୬୩ ବର୍ଷ ପରେ ନବୀନ ପଟ୍ଟନାୟକ ସରକାର କାର୍ଯ୍ୟକାରୀ କରିବାପାଇଁ ଆଗେଇଛନ୍ତି। ଏହା ନିରବ ସଂଗ୍ରାମରତ ଭାଷାପ୍ରେମୀମାନଙ୍କ ପାଇଁ କମ୍ ସଫଳତା ନୁହେଁ। ଓଡ଼ିଆ ଭାଷାର ବିକାଶ ପାଇଁ ସଂଗ୍ରାମରତ ଭାଷାପ୍ରେମୀ ମନମୋହନ ମିଶ୍ରଙ୍କର ଏହା ଏକ ବିଜୟ କହିଲେ ଅତ୍ୟୁକ୍ତି ହେବ ନାହିଁ। ସେଥିପାଇଁ ସେ ଅଭିନନ୍ଦନୀୟ।

କବି ମନମୋହନ ମିଶ୍ର ଲେଖିଥିବା ତିନୋଟି ପୁସ୍ତିକା ଯଥା 'ନବଯୌବନର ଦେଶ', 'ଏସିଆର ନିଦ୍ରିତା ରାଜକନ୍ୟା' ଓ 'ସମରକନ୍ଦରେ ଗୋଟିଏ ଦିନ' ପ୍ରଥମେ ତା୧୬.୩.୧୯୬୪ରେ ଏକ ଭ୍ରମଣ କାହାଣୀ ରୂପେ ପ୍ରକାଶ ପାଇଥିଲା। ଏହି ଭ୍ରମଣ କାହାଣୀର ନାମ ରଖାଯାଇଥିଲା 'ନବଯୌବନର ଦେଶ'। ଏହି ତିନୋଟି ପୁସ୍ତିକାରେ ଆଫଗାନିସ୍ଥାନ, ତାଜିକସ୍ଥାନ ଓ ଉଜବେକିସ୍ଥାନର ଭୌଗୋଳିକ, ଐତିହାସିକ ଓ ସାଂସ୍କୃତିକ ଘଟଣାବଳୀ ସମେତ ହିନ୍ଦୁକୁଶର ଅପାସୋରା ପ୍ରାକୃତିକ ଶୋଭା, ପ୍ରାଚୀନ ସଭ୍ୟତାର ଟିକିନିଖି ବିବରଣୀ ପ୍ରକାଶ ପାଇଛି। ମନମୋହନ ବାବୁ ଅନୁଭୂତିରେ ଲେଖିଛନ୍ତି 'ପୃଥିବୀର ଛାତ' ପାମିର ମାଳଭୂମି ପାରହେଲେ ଦୃଷ୍ଟିଗୋଚର ହୁଏ ହିନ୍ଦୁକୁଶ ପର୍ବତମାଳା। ହିନ୍ଦୁକୁଶକୁ ଯେତେବେଳେ ଉଡ଼ାଜାହାଜ ଅତିକ୍ରମ କରେ ସେତେବେଳେ ଅଲଟୋମିଟର ସତେଇଶ ହଜାର ଫୁଟକୁ ଛୁଏଁ। ଯାତ୍ରୀମାନଙ୍କର ଆଖି ବନ୍ଦ ହୋଇଯାଏ। ଅଲଟୋମିଟର ପନ୍ଦର ହଜାର ଫୁଟକୁ ଖସି ଆସିଲେ ଯାତ୍ରୀମାନଙ୍କର ନିଦ ଭାଙ୍ଗିଯାଏ। ହିନ୍ଦୁକୁଶ ଦୀର୍ଘକାଳ ଧରି ବରଫାବୃତ ରହେ। କିନ୍ତୁ ଏତେ ଉଚ୍ଚ ପର୍ବତକୁ ଅତିକ୍ରମୀ ଚେଙ୍ଗିସ୍ ଖାଁ, ତୈମୁରଲଙ୍ଗ ଏବଂ ବାବର ସଦଳବଳେ ଭାରତ ଉପରେ ଆକ୍ରମଣ କରି ଲୁଣ୍ଠନ ଓ ଆତଙ୍କ ଖେଳାଇ ଦେଇଥିଲେ। ଶେଷରେ, ବାବର ଭାରତରେ ମୋଗଲ ସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲେ।

ମନମୋହନ ବାବୁ ତତ୍‌କାଳୀନ ସୋଭିଏତ୍ ଋଷର ତାଜିକସ୍ଥାନରେ ପାଦଦେଲାଠାରୁ ସେଠିକାର ମଣିଷକୁ ସନ୍ଧାନ କରିବାକୁ ଚେଷ୍ଟା କରିଛନ୍ତି। 'ସଲାମ ନିଅ ଲାଲ ତାଜିକ ମାଟି' ଶୀର୍ଷକ ଏକ ମନମତାଣିଆ କବିତା ଲେଖିଛନ୍ତି। ତାଙ୍କ ଲେଖାର ଛତ୍ରେ ଛତ୍ରେ ସମାଜବାଦୀ ତାଜିକସ୍ଥାନର ବିକାଶର ଧାରା ପ୍ରତିଫଳିତ ହୋଇଛି। ଚେଙ୍ଗିସ୍ ଖାଁ, ତୈମୁରଲଙ୍ଗଙ୍କର ଆକ୍ରମଣ, ଆତଙ୍କ ଓ ଲୁଣ୍ଠନର 'ମଧୁର ପ୍ରତିଶୋଧ' ନିଆଚାଲିଛି ବୋଲି ସେ ଉଲ୍ଲେଖ କରିଛନ୍ତି। ଏ କାହାଣୀ ମାମୁଲି ଭ୍ରମଣ କାହାଣୀ ନୁହେଁ । ଏହା କେବଳ ମାଟି, ପାଣି, ପବନ, ଫସଲ ଆଉ କୋଠାବାଡ଼ି ସିମେଣ୍ଟ କଂକ୍ରିଟର କଥା ନୁହେଁ । ଏହା ମଣିଷର କୃତିତ୍ୱ, ହର୍ଷବିଷାଦ, ଜରାମୃତ୍ୟୁର କଥା । ଏଭଳି କଥା ଦଶବର୍ଷରେ ତମାଦି ହୁଏ ନାହିଁ । ଅର୍ଥାତ୍ ଦେଶ ମାଟି ବୋଲି କହିଲେ ମାଟିକୁ ବୁଝାଏ ନାହିଁ, ତାହା ଦେଶର ମନୁଷ୍ୟକୁଳକୁ ହିଁ ବୁଝାଏ ।

ଏହି ଭ୍ରମଣ କାହାଣୀଟି ପ୍ରକାଶ ପାଇବାର ୧୭ବର୍ଷ ପୂର୍ବରୁ 'ମନୁଷ୍ୟ ଦୈତ୍ୟ' ଶୀର୍ଷକ ଅନ୍ୟ ଏକ ପୁସ୍ତକ ବିବର୍ତ୍ତନବାଦ ଓ ମନୁଷ୍ୟ ସମାଜର ସୃଷ୍ଟି ରହସ୍ୟ ଉନ୍ମୋଚନ କରିବା ଲକ୍ଷ୍ୟରେ ୧୯୪୭ରେ ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ସେ ରଚନା କରିଥିଲେ। 'ବିବର୍ତ୍ତନବାଦ' ପରି ଏକ ଜଟିଳ ଓ ବୈଜ୍ଞାନିକ ବିଷୟକୁ ସେ ସୁଖପାଠ୍ୟ କରି ସାଧାରଣ ଓଡ଼ିଆଭାଷୀ ଲୋକଙ୍କ ଅବଗତି ପାଇଁ ପ୍ରକାଶ କରିଥିଲେ। ହୁଏତ ଏହା ମନମୋହନ ବାବୁଙ୍କର ପ୍ରଥମ ପୁସ୍ତକ। ଏହି ଦୁଷ୍ପ୍ରାପ୍ୟ ବହିଟିକୁ ମୋର ଭ୍ରାତୃପ୍ରତିମ ଶ୍ରୀ ବିଜୟ ମୋହନ ମିଶ୍ର ଯୋଗାଇ ଦେଇଥିବାରୁ ତାଙ୍କୁ ଅଶେଷ ଧନ୍ୟବାଦ।

ଏହି ପୁସ୍ତକ ରଚନାରେ ଚାର୍ଲସ୍ ଡାରଓ୍ୱିନ୍‌ଙ୍କ ବିବର୍ତ୍ତନବାଦ ପରିପ୍ରେକ୍ଷୀରେ ବହୁ ବୈଜ୍ଞାନିକଙ୍କର ସିଦ୍ଧାନ୍ତ ଏବଂ ବିଶେଷକରି ସୋଭିଏତ୍ ବୈଜ୍ଞାନିକ ପ୍ରବନ୍ଧ ଲେଖକ ମିଖାଇଲ ଏଲିନ୍‌ଙ୍କ ବିବର୍ତ୍ତନବାଦ ଲେଖାକୁ ଅଂଶିକଭାବେ ଅବଲମ୍ବନ କରାଯାଇଛି। ସମାଜ ବିକାଶ ଅଧ୍ୟୟନ ପାଇଁ ଏହା ଏକ ଅତି ଉପାଦେୟ ପୁସ୍ତକ। ଓଡ଼ିଆ ଭାଷାରେ ବିବର୍ତ୍ତନବାଦ ସମ୍ପର୍କରେ ଏହା ହୁଏତ ପ୍ରଥମ ପୁସ୍ତକ। ଜୀବ ଜଗତ ଓ ମନୁଷ୍ୟ ସଭ୍ୟତାର ସୃଷ୍ଟି ରହସ୍ୟ, ଜନ୍ମ ରହସ୍ୟ, ଅଭିବୃଦ୍ଧି, ଖାଦ୍ୟ ଶୃଙ୍ଖଳ ଆଦି ସମ୍ପର୍କରେ ଟିକିନିଖି ବିବରଣୀ ଏହି ପୁସ୍ତକରୁ ମିଳେ।

ଓଡ଼ିଆ ଭାଷାଭିତ୍ତିକ 'ଓଡ଼ିଶା ପ୍ରଦେଶ ଗଠନର ଜଣେ ପ୍ରଥମ ଧାଡ଼ିର ସଂଗଠକ ହେଉଛନ୍ତି ବାରିଷ୍ଟର ବିଶ୍ୱନାଥ ମିଶ୍ର। ତାଙ୍କର ଜୀବନୀ 'ଜାତିପ୍ରାଣ ସିନ୍ଧୁର ଆଦ୍ୟ ତରଙ୍ଗ' ହେଉଛି 'ଉତ୍କଳ ସମ୍ମିଳନୀ'ର ଇତିହାସ ଏବଂ ଓଡ଼ିଆ ଭାଷା ସାହିତ୍ୟକୁ ଏହା ଶ୍ରୀ ମନମୋହନ ମିଶ୍ରଙ୍କର ଶ୍ରେଷ୍ଠ ଅବଦାନ।

'ଜାତିପ୍ରାଣ ସିନ୍ଧୁର ଆଦ୍ୟ ତରଙ୍ଗ' ଶ୍ରୀ ମନମୋହନ ମିଶ୍ର ଗ୍ରନ୍ଥାବଳୀର ତୃତୀୟ ଭାଗ ପ୍ରକାଶ ପାଇଲା ପରେ ଦିନେ 'ଶିକ୍ଷା ସନ୍ଧାନ' ଅଫିସରେ ଶ୍ରୀ କମଳାକାନ୍ତ ମହାପାତ୍ରଙ୍କର ସହ ଦେଖାହେଲା। ସେ ପ୍ରସ୍ତାବ ଦେଲେ ଯେ ଶ୍ରୀ ମନମୋହନ ମିଶ୍ରଙ୍କର ଏକ ଭ୍ରମଣକାହାଣୀ 'ନବଯୌବନର ଦେଶ' ଅଛି। ସେହି ଭ୍ରମଣ କାହାଣୀଟି ତିନି ଭାଗରେ ବିଭକ୍ତ। ପ୍ରଥମ ଭାଗଟି 'ତାଜିକସ୍ଥାନ' ସମ୍ପର୍କରେ 'ନବଯୌବନର ଦେଶ', ଦ୍ୱିତୀୟ ଭାଗଟି 'ଏସିଆର ନିଦ୍ରିତା ରାଜକନ୍ୟା' ଆଫଗାନିସ୍ଥାନ ସମ୍ପର୍କରେ ଏବଂ ତୃତୀୟ ଭାଗଟି ଚେଙ୍ଗିଜ୍ ଖାଁ ଓ ତୈମୁରଲଙ୍ଗଙ୍କ ଦେଶ 'ଉଜ୍‌ବେକିସ୍ଥାନ' ଉପରେ ରଚିତ 'ସମରକନ୍ଦରେ ଗୋଟିଏ ଦିନ'। ସେହି ଦୁଷ୍ପ୍ରାପ୍ୟ ବହିଟିକୁ କମଳାକାନ୍ତ ବାବୁ ତାଙ୍କ ବ୍ୟକ୍ତିଗତ ଲାଇବ୍ରେରୀରୁ ଯୋଗାଇଦେଲେ। ସେଥିପାଇଁ ତାଙ୍କୁ ଅଶେଷ ଧନ୍ୟବାଦ। କମଳାକାନ୍ତ ବାବୁ ବୃତ୍ତିରେ ଥିଲେ ଇନକମ୍ ଟ୍ୟାକ୍ସ କମିଶନର। ମାତ୍ର ବ୍ୟୁତ୍ପତ୍ତିରେ ଥିଲେ ଓଡ଼ିଆ ସାହିତ୍ୟ ଅଭିବୃଦ୍ଧିରେ ଜଣେ ଆଗଧାଡ଼ିର ଲେଖକ।

'ମନୁଷ୍ୟ ଦୈତ୍ୟ' ଓ 'ନବଯୌବନର ଦେଶ' ଦୁଇଟି ଯାକ ପୁସ୍ତକ ଦୁଷ୍ପ୍ରାପ୍ୟ, ମାତ୍ର ଅତି ଉପାଦେୟ ହୋଇଥିବାରୁ ମନମୋହନ ମିଶ୍ର ଗ୍ରନ୍ଥାବଳୀ, ୪ର୍ଥ ଭାଗରେ ସନ୍ନିବେଶିତ କରାଗଲା।

**ରବି ଦାଶ**

ସମ୍ପାଦକ, ମନମୋହନ ମିଶ୍ର ଗ୍ରନ୍ଥାବଳୀ

## ସୂଚନା:

# ମନେ ପଡିଗଲେ ଚତୁର୍ଥ ଖଣ୍ଡକୁ

ମନମୋହନ ବାବୁଙ୍କ ଲେଖାର ଏକତ୍ର ରୂପ ଗ୍ରନ୍ଥାବଳୀ ଚତୁର୍ଥ ଖଣ୍ଡ ପ୍ରକାଶ ପାଉଛି, ଏହା ମୋ ପାଇଁ ବହୁ ଖୁସିର ବିଷୟ। ପ୍ରଥମ ତିନି ଖଣ୍ଡ ଯେଉଁ ଅସମାପ୍ତ ଭାବପ୍ରବାହକୁ ଅଙ୍ଗରେ ଧରି ପାଠକଙ୍କ ପାଖରେ ପହଞ୍ଚି ପାରିଛି ଚତୁର୍ଥ ଖଣ୍ଡ ସେଥିରେ ଯୋଡିହେବ ଓ ପାଠକମାନେ ମନମୋହନ ବାବୁଙ୍କ ବୌଦ୍ଧିକତାକୁ ଅଧିକ ଜାଣିବେ ଓ ସେଇ ସୂତ୍ରରେ ଗୋଟିଏ ଜୀବନର ଇତିବୃତ୍ତି ସହ ପରିଚିତ ହେବେ, ଏଥିରେ ସନ୍ଦେହ ନାହିଁ। ବ୍ୟକ୍ତିର ଆତ୍ମଚରିତ ଅଭାବରେ ତାଙ୍କର ଲେଖାରୁ ତାଙ୍କୁ ଜାଣିହୁଏ। ତାଙ୍କ ବଂଚିଥିବା କାଳ ସହ ପରିଚିତ ହୋଇହୁଏ। ସେ ଥିଲେ ମୋର ପରିଚିତ, ତାଙ୍କ ଲେଖା ସହ ଅଛି ମୋର ପରିଚୟ। ସେ ଓ ତାଙ୍କ ଲେଖା ଭିତରେ ମୁଁ କ୍ୱଚିତ ଫରକ ଦେଖିଛି। ସେଇଥିପାଇଁ କହୁଛି ଏଇ ଚତୁର୍ଥ ଖଣ୍ଡ ମନମୋହନ ବାବୁଙ୍କୁ ଜାଣିବାର ଏକ ଦର୍ପଣ ହେବ।

ମୁଁ ତାଙ୍କୁ ଜାଣିଥିଲି ୧୯୭୨ ମସିହାରୁ। ବୀରମିତ୍ରପୁର ଘଟଣାରେ ବନ୍ଦି ହୋଇ ସେ ଜେଲରୁ ଫେରି ରହିଲେ ରାଉରକେଲାରେ। ସେତେବେଳେ ମୁଁ ସେଠାରେ ସରକାରୀ କଲେଜରେ ଅଧ୍ୟାପକ। ଦୁଇ ବର୍ଷର ନୂଆ ଚାକିରି। କେତେକ ପୁରୁଣା ବନ୍ଧୁ କହିଲେ ମନମୋହନ ବାବୁ, ଏଇଠି ରହିବେ, ଏଇଠି ଗୋଟାଏ ବୌଦ୍ଧିକ ପରିବେଶ ଗଢି ଉଠିବ। ସେ ବେଳର ରାଉରକେଲାରେ 'କଲଚରାଲ ଏକାଡେମି'ର ବନ୍ଧୁମାନେ ଥିଲେ ସ୍ଥାନୀୟ ବୌଦ୍ଧିକ ପରିବେଶର ଅଗ୍ରଦୂତ। 'ନବପତ୍ର' ଥିଲା ସେମାନଙ୍କର ମୁଖପତ୍ର। ସରକାରୀ କଲେଜର ଜଣେ ଦୁଇଜଣ ଅଧ୍ୟାପକ ଓ ରାତ୍ରି କଲେଜର ଆଠଜଣ ଅଧ୍ୟାପକ ବନ୍ଧୁଙ୍କୁ ନେଇ ଆମର ବେଳେବେଳେ ବୈଠକ ବସୁଥିଲା। ଏକାଡେମିର କିଛି ସଭ୍ୟ ଓ ସହରର ଚାରି ପାଞ୍ଚ ଜଣ ଲେଖକ ଏମିତି ୨୦ ସରିକି ଆମେମାନେ ମନମୋହନ ବାବୁଙ୍କ ସହ ଆଲୋଚନା କରୁଥିଲୁ, ସପ୍ତାହରେ ଥରେ ନିଶ୍ଚିତ।

ସେ ଆମମାନଙ୍କ ପାଇଁ ଥିଲେ ଜଣେ 'କିଂବଦନ୍ତୀ' ପୁରୁଷ। ମୁଁ ସେତେବେଳେ ପଢିଥିଲି ମେରି ଟେଲରଙ୍କ ବହିଟି। ମେରି ବିଲାତର ଝିଅ, ସ୍କୁଲରେ ଥିଲେ ଶିକ୍ଷୟିତ୍ରୀ।

ଅସୀମ (ମୁଖାର୍ଜୀ ?) ନାମକ ଜଣେ ଭାରତୀୟ ଯୁବକ ୟୁରୋପରେ କେଉଁଠି ଇଞ୍ଜିନିୟରିଂ ପଢୁଥିବା ବେଳେ ବିଲାତ ଯାଇଥିଲେ। ମେରିଙ୍କ ସହ ସାକ୍ଷାତ ହେଲା, ପ୍ରେମ ହେଲା (ମୋର ଯାହା ମନେ ପଡୁଛି), ଦୁହେଁ ଭାରତ ଆସିଲେ। ତାଙ୍କ ମନରେ କୌତୂହଳ ଜଗାଇଲା ଭାରତୀୟଙ୍କ ଜୀବନଯାପନ ରୀତି। ସେବେଠାକୁ ଭାରତର ଏକ ତୃତିୟାଂଶରେ ନକ୍ସଲ ଆନ୍ଦୋଳନ। ଅସୀମ ଥିଲେ ଏହି ଆନ୍ଦୋଳନର ସମର୍ଥକ। ଫଳରେ ବହୁ ସମୟ ଆଦିବାସୀ ଅଞ୍ଚଳ ସେମାନେ ବୁଲନ୍ତି, ସଂଗଠନ କରନ୍ତି। ଏହିପରି ଅବସ୍ଥାରେ ଦିନେ ଗୋଟିଏ ଆଦିବାସୀ ଅଞ୍ଚଳରୁ ମେରି ଧରାହେଲେ। ନକ୍ସଲ ବୋଲି ଅପରାଧରେ ଜେଲଗଲେ। ତାପରେ ଯାହା ହେଲା ଦୀର୍ଘ ଇତିହାସ କହିଲେ ଅତ୍ୟୁକ୍ତି ହେବ ନାହିଁ। ତାଙ୍କ ଦେଶର ଏମ୍ବାସିର ହସ୍ତକ୍ଷେପରେ ସେ ଲେଉଟିଗଲେ ସ୍ୱଦେଶ। ଭାରତୀୟ ଜେଲରେ ଜୀବନ ତାଙ୍କର ଥିଲା ବହୁ ଅନୁଭୂତିର, ଯନ୍ତ୍ରଣାର, ଅନ୍ୟାୟର। ଜେଲରେ ଚାଲିଥିବା ଅନୀତି, ଚୋରିନାରୀ ବ୍ୟପାର, ପୁଲିସ ଓ ଦାଗି ବା ଅଭିଯୁକ୍ତମାନଙ୍କ ମଧ୍ୟରେ ପ୍ରିୟାପ୍ରୀତି, ଅଭିଯୁକ୍ତମାନେ ସ୍ୱଚ୍ଛନ୍ଦରେ ଜେଲରୁ ସେମାନଙ୍କ ଅପରେସନ ଚଳାଇଥାନ୍ତି। ସେମାନଙ୍କ ପାଇଁ ବାହାର ଭିତର ମଧ୍ୟରେ କୌଣସି ଫରକ ନଥାଏ – ଏପରି ବ୍ୟକ୍ତିଗତ ଅନୁଭୂତିର ବର୍ଣ୍ଣନା ମେରି ଦେଇଥାନ୍ତି।

ଏଇଠି କହିବାର ତାତ୍ପର୍ଯ୍ୟ, ମନମୋହନବାବୁ ଆଦିବାସୀ ପଲ୍ଲୀରେ ଜୀବନ ବଂଚିଥିଲେ, ନକ୍ସଲ ଆନ୍ଦୋଳନର ଥିଲେ ଅନ୍ୟତମ କର୍ଣ୍ଣଧାର, ଦିଗଦର୍ଶକ। ତାଙ୍କୁ କେତେକ ମିଥ୍ୟା ଅପରାଧରେ ବନ୍ଦି କରି ଜେଲରେ ରଖାଗଲା। ତାଙ୍କର ବ୍ୟକ୍ତିଗତ ଅନୁଭୂତି ମେରିଙ୍କ ଅନୁଭୂତିର ଅନୁରୂପ ହୋଇଥିବ – ଏହା ଜାଣିବା ପାଇଁ ଆମର ଆଲୋଚନାରେ କସରତ ଚାଲେ। ସେ ଯାହାହେଉ ରାଉରକେଲାର ବୁଦ୍ଧିଜୀବୀ, ଶ୍ରମିକ ସଂଗଠନ, ବାମପନ୍ଥୀ ଦଳ ଓ ପ୍ରଗତିଶୀଳ ସଂଗଠନ ମିଳିତଭାବେ ସ୍ଥିର କରିଥିଲେ ରାଉରକେଲାର ଉପ ନିର୍ବାଚନରେ ମନମୋହନବାବୁ ପ୍ରତିଦ୍ୱନ୍ଦ୍ୱିତା କରିବେ ସ୍ୱାଧୀନ ପ୍ରାର୍ଥୀ ରୂପେ। ତାଙ୍କ ସମର୍ଥନରେ ଆମେମାନେ ପ୍ରଚାରରେ ଅଂଶ ନେଇଥିଲୁ।

ଦିନେ ବିଶ୍ରା ମଇଦାନରେ ସଭା ହେଲା। ନିର୍ଦ୍ଦିଷ୍ଟ ତାରିଖ ମୋର ମନେ ପଡୁନି। ତାଙ୍କର ଚିହ୍ନଥାଏ ଉଡାଜାହାଜ। ବିଶ୍ରା ମଇଦାନ ଓ ଆଖପାଖ ରାସ୍ତାଘାଟ ନାଲି ରଙ୍ଗ ଉଡାଜାହାଜରେ ସଜା ହୋଇଥାଏ। ଯେମିତିକି ପ୍ରତ୍ୟେକ ମୁହୂର୍ତ୍ତରେ ସେଇ ମାଟିରୁ ଭୂଇଁ ଫଟେଇ ଲାଲ ରଙ୍ଗର ଉଡାଜାହାଜ ଉଡିଯାଉଛି ସାମ୍ୟ ଚେତନାର ଅଂଶବିଶେଷ ଆକାଶ ବକ୍ଷକୁ। ହେଇ, ଏଇ ମାତ୍ର ଲାଲଫଉଜ ବାହାରିଲେ, ହେଇ ଦେଖ ସେଇଠି, ସେମାନେ

ଉତ୍ତୁଛନ୍ତି। ବିଚିତ୍ର ଭଙ୍ଗି, ବିଚିତ୍ର ପରିବେଶ। ସଭାମଂଚରେ ଥିଲେ ଭାରତ ବିଖ୍ୟାତ ସାମ୍ୟବାଦୀ ଚିନ୍ତାନାୟକମାନେ, ନମ୍ବୁଦ୍ରିପଦ, ବି.ଟି. ରଣଦିବେ, ଜ୍ୟୋତି ବସୁ, କମଳା ସିହ୍ନାଙ୍କ ସମେତ ଅନ୍ୟ କେତେଜଣ। ମଞ୍ଚପାଖର ଶୃଙ୍ଖଳାରକ୍ଷାର ଦାୟିତ୍ୱ ଆମେ କେତେଜଣ ନେଇଥିଲୁ। ସଭା ଆରମ୍ଭ ହେଲା। ମନମୋହନବାବୁ ମନର କଥା ମାତ୍ର କେତେଟି ପଦରେ କହିବା ପରେ ଆରମ୍ଭ କରିଲେ ତାଙ୍କର ସେଇ "ଶାଶ୍ୱତ ବିପ୍ଳବ ସଂଗୀତ"

"କାରଖାନା, ଖଳାବାଡ଼ି, ଖାଦାନ, ବାଗାନରେ
ଏକ ହୁଅ,
ଏକ ହୁଅ ତୁ ଭାରତ ଜନତା
ସଂଗ୍ରାମର ମଇଦାନରେ।"

ଅପୂର୍ବ ସେ ସ୍ୱର। କେତେ ଦାମ୍ଭିକତାପୂର୍ଣ୍ଣ, କେତେ ପ୍ରାଣମୟୀ, କେତେ ଉଲ୍ଲାସରେ ଗମ୍ଭୀର। ଗୀତରେ ଆହ୍ୱାନ, ଆହ୍ୱାନରେ ମନ୍ତ୍ର, ମନ୍ତ୍ରରେ ସଂଜୀବନୀ। ଜାଗରଣର, ପ୍ଲାବନର, ମୁକ୍ତିର, ସ୍ୱପ୍ନର – ଯିଏ ସେଦିନ ଶୁଣିଛି ସେ ଜାଣିଛି ମନମୋହନ ମିଶ୍ର କିଏ, କ'ଣ ସିଏ, ବିପ୍ଳବୀର ପରିଚୟ କଣ।

ସବୁଆଡେ ସ୍ତବ୍ଧତା। ସ୍ତବ୍ଧ ଗାଡିମଟର, ଡାଳରେ ପକ୍ଷୀ, ହାତରେ ଚା' ଗ୍ଲାସ, ପାଟିରେ କଳେ ପାନ। ମୁଗ୍ଧତାର ଗୋଟିଏ ଗାଢ ନିଶା, ଅପରାହ୍ନର ଆକାଶ ତଳେ ସେଦିନ ପ୍ରାଣେ ପ୍ରାଣେ ଅବତରି ଯାଇଥିଲା।

ଗୀତ ସରୁ ସରୁ ମଂଚରେ ଅତିଥିମାନେ ଏକ ସଙ୍ଗରେ ହୁଦସ୍ତ ଉଠି ଆସିଲେ ମନମୋହନଙ୍କୁ କୋଳେଇ ନେବା ପାଇଁ। ଅତିରଞ୍ଜିତ ହେବନାହିଁ କହିଲେ। ନମ୍ବୁଦ୍ରିପଦ ଓ ଜ୍ୟୋତି ବସୁ ପରସ୍ପର ଧକ୍କା ଖାଇ ହାମୁଡି ପଡିଲେ ମଞ୍ଚରେ।

ଇଏ ହେଉଛନ୍ତି ମନମୋହନ। ସେ ଥିଲେ 'ଓଡିଶା ଗଣମୁକ୍ତି ଲେଖକ ସାମ୍ମୁଖ୍ୟ'ର ସଭାପତି ଓ ମୁଁ ଥିଲି ସାଧାରଣ ସଂପାଦକ। କବି ବ୍ରଜନାଥ ରଥ ଉପସଭାପତି। ସାମ୍ମୁଖ୍ୟ ତରଫରୁ ପ୍ରକାଶ ପାଉଥିଲା 'ଅଭିଯାତ୍ରୀ'। ଏହାର ପରିଚାଳନାରେ ଥିଲେ ସ୍ୱର୍ଗତ କବି ସମରେନ୍ଦ୍ର ନାୟକ ଓ ବିଜୟ ଉପାଧ୍ୟାୟ। ବ୍ରଜବାବୁଙ୍କର 'ବିଶ୍ୱଶ୍ରୀ' ପ୍ରେସରୁ ଦୀର୍ଘ ୧୦ ବର୍ଷ ହେବ ପ୍ରକାଶ ପାଉଥିଲା ୧୯୭୯ ରୁ ୮୯ ପର୍ଯ୍ୟନ୍ତ। ଏହି ସଂଗଠନର ଉଦ୍ଦେଶ୍ୟ ଥିଲା ଓଡିଶାର ପ୍ରଗତିଶୀଳ ଲେଖକମାନଙ୍କୁ ଏକ କରି ପ୍ରଗତିଶୀଳ ସାହିତ୍ୟ ମଞ୍ଚଟିଏ ଗଢିବା। ଏହି ଲକ୍ଷ୍ୟରେ କିଛିଟା ସଫଳତା ମଧ୍ୟ ମିଳିଥିଲା। ସଂଗଠନ ତରଫରୁ

ବାଲିଆପାଳରେ ପ୍ରସ୍ତାବିତ ସାମରିକ ଘାଟି ବିରୋଧରେ ଅନେକ ଥର ସଭା କରାଯାଇଥିଲା । ୧୯୮୬ ପ୍ରଥମ ଭାଗରେ ୫/୬ ଦିନ ଧରି ଭୁବନେଶ୍ୱରସ୍ଥ ସଂଗୀତନାଟକ ସ୍କୁଲର ଛାତ୍ରଛାତ୍ରୀ ଗୋଟିଏ ଗୀତିନାଟ୍ୟ ଦଳ ପ୍ରସ୍ତୁତ କରି ତା' ମାଧମରେ ଘାଟି ପ୍ରତିଷ୍ଠା ହେଲେ ଯେଉଁ କ୍ଷତି ଘଟିବ ତାର ଏକ ସୁନ୍ଦର ମନୋଜ୍ଞ ଚିତ୍ର ଉପସ୍ଥାପିତ ହୋଇଥିଲା । ବର୍ତ୍ତମାନ ଓଡିଆ ସିନେମାର ଖଳନାୟକ ରାଇମୋହନ ଥିଲେ ସେହିଦଳର ମୁଖ୍ୟ ଅଭିନେତା । ନଇହାଟୀ, କାଳଶିମୂଳୀ ପ୍ରଭୃତି ସ୍ଥାନରେ ପଥପ୍ରାନ୍ତରେ ଅଭିନୀତ ହୋଇଥିଲା ନାଟକ। ମନମୋହନବାବୁ ଥିଲେ ଦଳର ନେତା, ପ୍ରବକ୍ତା ଓ ଜନଗଣଙ୍କୁ ଉଦ୍‌ବୋଧନଦାତା । ସେଇ ସଭାଗୁଡିକରେ ସେ ଶାସକଶ୍ରେଣୀର ଯୁଦ୍ଧଖୋର ନୀତି, ଅର୍ଦ୍ଧସାମନ୍ତବାଦୀ-ଅର୍ଦ୍ଧପୁଞ୍ଜିବାଦୀ ଭାରତୀୟ ଗଣତନ୍ତ୍ରର ବ୍ୟାଖ୍ୟାକରି ଲୋକଙ୍କୁ ଯେମିତି ବୁଝାଉଥିଲେ, ସେପରି ବ୍ୟାଖ୍ୟା ମୁଁ କ୍ୱଚିତ ଶୁଣିଛି। କଥା କଥାକେ ଗୀତ, ଅର୍ଥାତ ଆହ୍ୱାନଧର୍ମୀ ବିପ୍ଳବୀ ସଂଗୀତ ଗାଇ ଲୋକଙ୍କ ମନକୁ ଥରାଇ ଦେଉଥିଲେ। ସେଦିନ ମନମୋହନ ମିଶ୍ର ଓଡିଶାର କିମ୍ବଦନ୍ତୀ ପୁରୁଷ, ବିପ୍ଳବର ନାୟକ, ଖଟିଖିଆ ଶ୍ରମଜୀବୀ ମଣିଷର ମାର୍ଗଦର୍ଶକ ।

ଓଡିଶାରେ ପ୍ରତିଭା ପୂଜାର ପରମ୍ପରା ନାହିଁ। ପ୍ରତିଭାକୁ ଚିହ୍ନିବାର ଅବକାଶ ତିଆରି ହୋଇନାହିଁ। ଶିକ୍ଷାକ୍ଷେତ୍ର ଏଥିପାଇଁ ଉପଯୁକ୍ତ କ୍ଷେତ୍ର। କିନ୍ତୁ ଓଡିଶାର ବୁଦ୍ଧିଜୀବୀ, ଛାତ୍ର, ଶିକ୍ଷକ ସାମନ୍ତବାଦୀ, ଉପନିବେଶବାଦୀ ସଂସ୍କୃତିରୁ ମୁକ୍ତ ନୁହନ୍ତି। ପୁଞ୍ଜି ଆଗମନରେ ଏମାନଙ୍କ ମୁଣ୍ଡରେ ଅର୍ଥନିଶା ବୌଦ୍ଧିକତାର ମଂଜିତୁଲ୍ୟ କ୍ରମବିକଶିତ ହୋଇ ଚାଲିଛି। ଭ୍ରୁଣରୁ ଦାରୁ ହୋଇଛି। ଏମାନେ ବୁଦ୍ଧିଜୀବୀ; ପୁଞ୍ଜିବାଦୀ ସଂସ୍କୃତିର ପ୍ରଚାରକ ସାଜିଛନ୍ତି। ଅଶିକ୍ଷାର ରାହୁ ପ୍ରଗତିଶୀଳ ଭାବ ସମେତ ଗଣତନ୍ତ୍ରର ମୂଲ୍ୟବୋଧକୁ ଗ୍ରାସକରି ସାରିଲାଣି । ଏହିପରି ଜାତୀୟ ଦୁର୍ବିପାକ ପାକଳ ହେଉଥିବାବେଳେ ପ୍ରକାଶ ପାଉଛି ତାଙ୍କର ଚତୁର୍ଥ ଖଣ୍ଡ ଗ୍ରନ୍ଥାବଳି। ଏ ଅବସ୍ଥାରେ ମନମୋହନବାବୁଙ୍କୁ ଚିହ୍ନିବ କିଏ ? ସ୍ମରଣ କରିବ କିଏ ?

ଏଥିରେ ସ୍ଥାନ ପାଉଛି ସ୍ମରଣୀୟ ରଚନା କେତୋଟି।

୧ - ମନୁଷ୍ୟ ଦୈତ୍ୟ (ମନୁଷ୍ୟ ସମାଜର କ୍ରମବିକାଶ ବା ବିବର୍ତ୍ତନ)

୨ - ନବଯୌବନର ଦେଶ

୩ - ଏସିଆର ନିଦ୍ରିତା ରାଜକନ୍ୟା

୪ - ସମରକନ୍ଦରେ ଗୋଟିଏ ଦିନ (ଏହି ୩ଟି ପୁସ୍ତିକା ଗୋଟିଏ ଭ୍ରମଣ କାହାଣୀ)

ଏ ସବୁ ରଚନା ଓଡିଆ ସାହିତ୍ୟର ଅମୂଲ୍ୟ ସମ୍ପଦ। ଭ୍ରମଣ କାହାଣୀ ମାଧ୍ୟମରେ ଆମେ ଅନ୍ୟଦେଶର ଛବିର ପରିଚୟ ପାଉ। ମନମୋହନବାବୁ ରୁଷିଆ ଭ୍ରମଣରେ ଯାଇଥିଲେ ୧୯୫୫ରେ, ରୁଷ ସହିତ ମୈତ୍ରୀ ସ୍ଥାପନ ଦଳ ସହିତ। ସେବେଳକୁ ସେଠାରେ କମ୍ୟୁନିଷ୍ଟ ଶାସନ ତିନି ଦଶନ୍ଧି ଅତିକ୍ରମ କରିଲାଣି ଏବଂ ରୁଷ ପୃଥିବୀର ଏକ ଶକ୍ତିଶାଳୀ ଦେଶ ରୂପେ ପରିଚୟ ପାଇଲାଣି। ରୁଷର ସାମାଜିକ ସାମ୍ରାଜ୍ୟବାଦୀ ଲକ୍ଷଣମାନ ଫୁଟି ଉଠିଲାଣି। ଆମେରିକା ସାମ୍ରାଜ୍ୟବାଦ ବିରୋଧରେ ସ୍ୱର ଉଠିବାର ପୂର୍ବ ମୁହୂର୍ତ୍ତ ଏଇ ସମୟ। ଭାରତ ସହ 'ପଞ୍ଚଶୀଳ' ନୀତିରେ ବିଶ୍ୱସ୍ତ ବନ୍ଧୁତାର ହାତ ଗଢୁରିଲାଣି। ଏହି ପରିସ୍ଥିତିରେ ଶାନ୍ତି ଡେଲିଗେସନର ତାପର୍ଯ୍ୟ ଦୁଇଦେଶ ମଧ୍ୟରେ ଅଧିକ ଉପଯୋଗୀ, ବନ୍ଧୁର ହୃଦୟ ଖୋଜି ବାହାରିବା ପରି କଥା। ସେକାଳ ଓ ଏକାଳ ରୁଷ ମଧରେ ପାର୍ଥକ୍ୟ ଅନେକ। ମନମୋହନବାବୁ ଯେଉଁ ଅନୁଭୂତି ଆହରଣ କରିଥିଲେ, ସେଥିରୁ ଗୋଟିଏ ବନ୍ଧୁ ଦେଶର ପରିଚୟ ରାଜନୀତିକ ଦୃଷ୍ଟିକୁ ଅତିକ୍ରମ କରି ମଣିଷର ମଣିଷ ଖୋଜା ଅନୁଭବର ପରିଚୟ ମିଳିପାରେ। ସେ ପରିଚୟ ପାଖରେ କମ୍ୟୁନିଜିମ ବା 'ପଞ୍ଚଶୀଳ'ର କିଛି ପ୍ରଭାବ ଥିବା ପରି ମନେହୁଏ ନାହିଁ। ଜାତି, ଧର୍ମ, ମତବାଦ, ରାଜନୀତିକ ମନ୍ତ୍ର-ମନ୍ତ୍ରଣା ଭୁଲିଗଲେ ମଣିଷ, ମଣିଷ ଭିତରେ ଭେଦ ଯେ ନାହିଁ ଏ କଥା ସ୍ପଷ୍ଟ ହୋଇ ଉଠିବ। କେବଳ ଯାହା ସଂସ୍କୃତିକ ଭେଦ – ଖାଦ୍ୟପେୟ, ବାସବସ୍ତ୍ରରେ ଫରକ, ଭାଷାର ଫରକ – ଏ ସବୁ ଫରକକୁ ଏଡେଇ ସଂଗୀତ କିପରି ଭେଦହୀନ ଏକ ମର୍ମରେ ପ୍ରତ୍ୟେକଙ୍କୁ ଗୋଟିଏ ମୁହୂର୍ତ୍ତରେ ଏକ କରିଦିଏ, ତାର ସଂକେତ ମଧ ମିଳିପାରେ। ମନମୋହନବାବୁ ସେପରି କେତୋଟି ଅଭିଜ୍ଞତାର କଥା କହିଛନ୍ତି, ଭାରି ରସୋତୀର୍ଣ୍ଣ ଭାଷାରେ। ସେଥିରୁ ବୁଝିହେବ ଆନ୍ତର୍ଜାତିକ ମଣିଷର ଗୋଟିଏ ଚିନ୍ତା ମଣିଷ ଭିତରେ ସମତା, ବିପ୍ଳବୀ ରୁଷିୟମାନେ କିପରି ଅତିଥି ପ୍ରିୟ, ଭାରତପ୍ରିୟ।

ଗ୍ରନ୍ଥାବଳୀର ସବୁଠୁ ଆକର୍ଷଣ ବିଷୟ 'ମନୁଷ୍ୟ ଦୈତ୍ୟ'। ଏଇଟି ବହି ଆକାରରେ ବହୁ ଆଗରୁ ପ୍ରକାଶିତ। ଏବେ ଦୁଷ୍ପ୍ରାପ୍ୟ। ରବି ଦାସଙ୍କୁ ଧନ୍ୟବାଦ ଗ୍ରନ୍ଥାବଳୀରେ ସେଇଟି ଯୋଡି ପାଠକ ପାଖରେ ପହଞ୍ଚାଉଛନ୍ତି। ବହି ଆକାରରେ ଆଉ ମିଳିବାର ସମ୍ଭାବନା କ୍ଷୀଣ। ଯାହାହେଉ 'ମନୁଷ୍ୟ ଦୈତ୍ୟ' ମଣିଷର ଐତିହାସିକ ବିବର୍ତ୍ତନର ବିଷୟ। ଲେଖକ ସ୍ୱର୍ଗତ ମିଶ୍ର ମହୋଦୟ ସୂଚନା ଦେଇଛନ୍ତି ରୁଷର ଲେଖକ 'ମିଖାଇଲ ଏଲିନ୍'ଙ୍କ କଥାକୁ ମୁଁ କେବଳ ଆମରି ଭାଷାର ଛାଞ୍ଚରେ ଢାଳିଛି। 'ମିଖାଇଲ ଏଲିନ୍'ଙ୍କ ବହିର ନାମ ସେ ଲେଖି ନାହାଁନ୍ତି। ଠିକ ଅନୁବାଦ ମଧ କରି ନଥିବା ପରି ଜଣାଯାଏ। ବହିଟି ପଢିଗଲେ

ଲାଗିବ ପାଣିପରି ବହି ଚାଲିଛି କଥା, କେଉଁଠି ଅଟକି ପାରୁନାହିଁ। ଯେମିତିକି ସେ କାହାଣୀ କହୁଛନ୍ତି ପିଲାଙ୍କୁ ପାଖରେ ବସାଇ। ବୁଝିବାରେ ତ୍ରୁଟି ଥିଲେ ଅଟକିବା ଥୟ। ମାତ୍ର ସେପରି ହୋଇନାହିଁ। ଜଣେ ସାମ୍ୟବାଦୀ ହେତୁ ସେ ବୁଝିଥିଲେ 'ଐତିହାସିକ ବସ୍ତୁବାଦ'ର ବିଷୟ ଓ ତା' ସ୍ୱରୂପ। ସେହି ଦୃଷ୍ଟିରେ, ମଣିଷର କ୍ରମବିକାଶ ସ୍ତର ଓ ଲକ୍ଷଣମାନ ବୁଝିକରି ଲେଖିଛନ୍ତି। ବିଚିତ୍ର ଏଇ ବିବର୍ତ୍ତନ। ଗିରିଗୁହା ମଣିଷରୁ ରୂପାନ୍ତର ପ୍ରକ୍ରିୟାରେ ଆଜିର ସୁନ୍ଦର ମଣିଷର ଆର୍ବିଭାବ। ସେ ଦେବତା ସ୍ତରକୁ କ୍ରମେ ଉଠିଉଠି ଯାଉଛି ବୋଲି କୁହାଯାଉଛି । କିନ୍ତୁ ମିଖାଇଲ ଏଲିନ ବା ମନମୋହନ ମିଶ୍ର କାହିଁକି କହିଲେ 'ଦୈତ୍ୟ' ବୋଲି? ପାଠକମାନେ ଏହାର ରହସ୍ୟ ଏଥିରୁ ପାଇବେ।

ପାଠକମାନଙ୍କୁ ଅନୁରୋଧ ଟିକିଏ ଧୈର୍ଯ୍ୟରେ ପଢ଼ିବେ କୌଣସି ପୂର୍ବାଭାବ ନରଖି। ମୁଁ ଜାଣେ ଓଡିଆଏ ମନମୋହନଙ୍କୁ କମ୍ୟୁନିଷ୍ଟ କହି ନାକ ଟେକିଛନ୍ତି। କିନ୍ତୁ ଏହି ଚତୁର୍ଥ ଖଣ୍ଡ ଜଣେ ବିଦ୍ୱାନ ମଣିଷର ଅନୁଭୂତି, ପ୍ରଜ୍ଞା ଓ ଓଡିଆପଣର ପରିଚୟ, ଯାହା ଏ ଓଡିଆଙ୍କୁ ଭଲଲାଗିବ ବୋଲି ଭାବୁଛି। ତେବେ ହିଁ ବୁଝିବେ ମନମୋହନ ବାବୁଙ୍କ ବିଚାରରେ ସୂକ୍ଷ୍ମତା ଓ ନିରପେକ୍ଷତା କେତେ।

ଗ୍ରନ୍ଥାବଳୀର ସଂପାଦକ ବନ୍ଧୁ ରବି ଦାଶ ନିଜର ବହୁ ବ୍ୟସ୍ତତା ଭିତରେ ଏ କାମଟି କରିଛନ୍ତି ଓ ମତେ କାହିଁକି କିଛି ଲେଖିବାକୁ କହିଲେ, ମୁଁ ଜାଣିନି। କୁନ୍ଥୁ କୁନ୍ଥୁ ହେଉ ହେଉ ଲେଖି ଦେଲି। ସବୁ  ରବିଙ୍କର କରଜାଳର ମହିମା, ତାଙ୍କୁ କୃତଜ୍ଞତା।

**ଡକ୍ଟର ନଟବର ଶତପଥୀ**
୨୯.୧୦.୨୦୧୬
ସି-୧୧୬୭, ସେକ୍ଟର-୬
ମରକତନଗର, କଟକ-୭୫୩୦୧୪

# ମୁଖବନ୍ଧ

ବରିଷ୍ଠ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ମନମୋହନ ମିଶ୍ର କେବଳ ବିପ୍ଳବୀ କବି ନଥିଲେ ସେ ଏକାଧାରରେ ଥିଲେ ପ୍ରାବନ୍ଧିକ, ରମ୍ୟରଚନାର ଲେଖକ, ଭାଷାତତ୍ତ୍ୱବିତ୍, ଗାଳ୍ପିକ, ସ୍ତମ୍ଭକାର ଓ ସର୍ବୋପରି ଅନବଦ୍ୟ ଭ୍ରମଣ କାହାଣୀର ଯଶସ୍ୱୀ ଲେଖକ। ୧୯୫୫ରେ ଫିନଲାଣ୍ଡର ରାଜଧାନୀ ହେଲିସିଙ୍କିଠାରେ ବିଶ୍ୱ ଶାନ୍ତି କଂଗ୍ରେସର ମହାଧିବେଶନରେ ଯୋଗ ଦେବା ଅବସରରେ ସେ କାବୁଲ ଓ ସୋଭିଏତ୍ ସଂଘର ରାଜଧାନୀ ମସ୍କୋ ମହାନଗରୀରେ ଅବସ୍ଥାନ କରିଥିଲେ। ତାଙ୍କୁ ଆଫଗାନିସ୍ଥାନର ରାଜଧାନୀ କାବୁଲ ନଗରୀ, ଉଜବେକିସ୍ଥାନର ପ୍ରାଚୀନ ରାଜଧାନୀ ସମରକନ୍ଦ ଓ ତାଜିକସ୍ଥାନ ଦେଖିବାର ସୁଯୋଗ ମିଳିଥିଲା। ସେତେବେଳେ ଉଜ୍‌ବେକିସ୍ଥାନ ଓ ତାଜିକସ୍ଥାନ ସୋଭିଏତ୍ ରାଷ୍ଟ୍ରସଂଘର ସଦସ୍ୟ ଥିଲେ। ଏସବୁ ଭ୍ରମଣର ଫଳଶ୍ରୁତି ସ୍ୱରୂପ ୧୯୫୫ରେ ତିନିଗୋଟି ସ୍ୱତନ୍ତ୍ର ଭ୍ରମଣକାହାଣୀ ପୁସ୍ତିକା - "ଏସିଆର ନିଦ୍ରିତା ରାଜକନ୍ୟା" (ଆଫଗାନିସ୍ଥାନ) "ସୁନାର ସମରକନ୍ଦ" (ଉଜବେକିସ୍ଥାନ) ଓ "ନବଯୌବନର ଦେଶ" (ତାଜିକସ୍ଥାନ) ପ୍ରକାଶିତ ହୋଇଥିଲା। ପୁନଶ୍ଚ ୧୯୬୬ ମସିହାରେ ପ୍ରକାଶକ ଜେ. ମହାପାତ୍ରଙ୍କ ଦ୍ୱାରା ଏହି ତିନିଗୋଟି ଭ୍ରମଣକାହାଣୀ ଏକତ୍ର ପ୍ରକାଶିତ ହୋଇଥିଲା। ଏଥିରେ "ସୁନାର ସମରକନ୍ଦ" ବଦଳରେ ଭ୍ରମଣ କାହାଣୀ ଶୀର୍ଷକର ନାମ ରହିଥିଲା "ସମରକନ୍ଦରେ ଦୁଇଦିନ"।

ହେଲିସିଙ୍କି ସମ୍ମିଳନୀ ଉଦ୍ଦେଶ୍ୟରେ ଯାତ୍ରା କରିବା ପୂର୍ବରୁ ମନମୋହନ ବାବୁ କୌଣସି କାମ ଉପଲକ୍ଷେ ବସ୍ ଯାତ୍ରା କରୁଥିବା ବେଳେ କଟକରେ ରହି ବ୍ୟବସାୟ କରୁଥିବା ଜଣେ କାବୁଲିବାଲା ଭଦ୍ରବ୍ୟକ୍ତିଙ୍କ ସହ ଆଳାପ ଓ ପରିଚୟ ହେଲା। ସେତେବେଳକୁ ଶ୍ରୀ ମିଶ୍ରଙ୍କର ଗସ୍ତନିର୍ଘଣ୍ଟ ପ୍ରସ୍ତୁତ ହୋଇ ସାରିଥିଲା। ସେ ନିର୍ଦ୍ଦିଷ୍ଟ ତାରିଖରେ "ଏରିନା ଆଫଗାନ ଏୟାର ଲାଇନ୍ସ" ବିମାନରେ ଯାଇ କାବୁଲରେ ପହଞ୍ଚିବେ। ସେଠାରେ କାବୁଲ ହୋଟେଲରେ ରହିବେ ଓ ସେଠାରୁ ମସ୍କୋ ଯାଇ ହେଲିସିଙ୍କି ଯିବେ ଏବଂ ଫେରିବା ବାଟରେ ଉଜବେକିସ୍ଥାନ ଓ ତାଜିକସ୍ଥାନ ଗସ୍ତ କରିବେ ଇତ୍ୟାଦି ବିବରଣୀ ଜଣାଥିଲା। ସେ କାବୁଲବାସୀ ଭଦ୍ରବ୍ୟକ୍ତି ମନମୋହନ ବାବୁ ତାଙ୍କ ଦେଶ ଓ ତାଙ୍କ ସହର ଦେଇ ଯାଉଛନ୍ତି ବୋଲି ଜାଣି ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ। ସେ ପତ୍ର ଦ୍ୱାରା କାବୁଲସ୍ଥିତ ତାଙ୍କ ପୁଅକୁ ଶ୍ରୀ ମିଶ୍ରଙ୍କୁ କାବୁଲ ହୋଟେଲରେ ଦେଖା କରିବାକୁ ଲେଖି ପଠାଇଲେ। ମନମୋହନଙ୍କୁ ଭାରତୀୟ ଶାନ୍ତି ପ୍ରତିନିଧି ଦଳ ସହିତ କାବୁଲରେ ପହଞ୍ଚିବା ପରେ ସେ କାବୁଲବାଲାଙ୍କ ପୁଅ ତାଙ୍କୁ ଭେଟି ଶ୍ରଦ୍ଧାପୂର୍ବକ

କାବୁଲସ୍ଥିତ ନିଜ ପାରିବାରିକ ଘରକୁ ନେଇଗଲା । ସେଠାରେ ସମସ୍ତ ପରିବାର ତାଙ୍କୁ ହାର୍ଦ୍ଦିକ ସ୍ୱାଗତ ଜଣାଇଥିଲେ। ସେମାନଙ୍କଠାରୁ ମନମୋହନ ବାବୁ ଆଫଗାନିସ୍ଥାନର ଅଧିବାସୀମାନଙ୍କର ସଂସ୍କୃତି, ଚଳଣି ଓ ସାମାଜିକ ରୀତିନୀତି ବିଷୟରେ ଜାଣିବାକୁ ପାଇଥିଲେ ।

ମନମୋହନ ବାବୁଙ୍କ ଆଫଗାନିସ୍ଥାନ ତଥା କାବୁଲ ନଗରୀର ଅବସ୍ଥିତି ଓ ତା'ର ନୈସର୍ଗିକ ଦୃଶ୍ୟରାଜି ମୁଗ୍ଧ କରିଥିଲା । କାବୁଲକୁ ବେଷ୍ଟନ କରି ରହିଥିବା ସମୁଚ୍ଚ ହିନ୍ଦୁକୁଶ ପର୍ବତମାଳାର ଅଭ୍ରଂକଶ ଗିରିଶୃଙ୍ଗ, କାବୁଲ ଭିତରେ ବହିଯାଉଥିବା ସ୍ୱଚ୍ଛ ନୀରା କାବୁଲ ନଦୀ, ସହର ରାସ୍ତାର କଡ଼ପଟେ କାବୁଲ ନଦୀର ଜଳରାଶି, କରନାଳରେ ବୋହି ଯାଉଥିବାର ଦୃଶ୍ୟ, ବହୁବିଧ ଫୁଲ, ଫଳ, ଲତା, ଗୁଳ୍ମର ବିତାନ କବିଙ୍କ ମନ ପ୍ରାଣ ଆବୋରି ବସିଥିଲା । ବହୁ ସଂସ୍କୃତି, ସଭ୍ୟତା, ଭାଷାର ପୀଠଭୂମି ଆଫଗାନିସ୍ଥାନକୁ ସେ ଏସିଆର ଅପରୂପା ସୁନ୍ଦର ରାଜକନ୍ୟା ବୋଲି ଅଭିହିତ କରିଥିଲେ । ମାତ୍ର ସେ ଥିଲା ନିଦ୍ରିତା ରାଜକନ୍ୟା । ସାମାଜିକ, ଅର୍ଥନୈତିକ ଅବସ୍ଥାରେ ଜର୍ଜରିତ ଆଫଗାନିସ୍ଥାନ ଥିଲା ନିଦ୍ରିତା । ତାର କାରଣ ସ୍ୱରୂପ ଶ୍ରୀ ମିଶ୍ର ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଆଫଗାନିସ୍ଥାନର ଶାସକ ଅମାନୁଲ୍ଲାଙ୍କର ଶାସନକାଳରେ ସେ ଦେଶର ସାମାଜିକ ରୀତିନୀତି ଓ ସଂସ୍କୃତିରେ ଆସିଥିବା ସଂସ୍କାର, ନାରୀମାନଙ୍କର ସ୍ୱାଧୀନତା, ପରଦା ଓ ବୁର୍ଖା କବଳରୁ ମୁକ୍ତି ଓ ସାଦର ଆଧୁନିକୀକରଣ ତଥା ଗଣତାନ୍ତ୍ରିକ ମୂଲ୍ୟବୋଧକୁ ଯେପରି ସେ ଦେଶର ରକ୍ଷଣଶୀଳ ପ୍ରତିକ୍ରିୟାପନ୍ଥୀ ଲୋକେ ଓ ଗୋଷ୍ଠୀ ତୁମୂଳ ବିରୋଧକରି ପ୍ରଗତିଶୀଳ ସଂସ୍କାରର ଗତିରୋଧ କରିଥିଲେ, ସେଥିରେ ଏସିଆର ରାଜକନ୍ୟା ନିଦ୍ରିତା ହୋଇପଡ଼ିଥିଲେ । ଅମାନୁଲ୍ଲା ଦେଶ ତ୍ୟାଗକରି ପଳାୟନ କରିଥିଲେ । ଆଜିର ଅବସ୍ଥା ତା'ଠାରୁ ଆହୁରି ଭୟଙ୍କର । ଆଫଗାନିସ୍ଥାନ ଆଜି ରକ୍ତସ୍ନାତା, ମୂର୍ଚ୍ଛିତା ଓ ପୀଡ଼ିତା ।

ଆଫଗାନିସ୍ଥାନ ଗସ୍ତସାରି ଶ୍ରୀ ମିଶ୍ର ସୋଭିଏତ୍ ସଂଘ ରାଜଧାନୀ ମସ୍କୋ ଦେଇ ଫିନଲାଣ୍ଡର ରାଜଧାନୀ ହେଲିସିଙ୍କି ବିଶ୍ୱଶାନ୍ତି ମହାସମ୍ମେଳନରେ ଯୋଗ ଦେଇଥିଲେ । ସେଠାରୁ ଫେରିବା ରାସ୍ତାରେ ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁଯାୟୀ ତାଙ୍କୁ ଉଜବେକିସ୍ଥାନର ପ୍ରାଚୀନ ତଥା ଐତିହାସିକ ରାଜଧାନୀ ସମରକନ୍ଦ ପରିଭ୍ରମଣ କରିବାକୁ ପଡ଼ିଥିଲା । ସୋଭିଏତ୍ ସଂଘର ପ୍ରାଚ୍ୟ ତୋରଣ ଦ୍ୱାର ତାସ୍‌କେଣ୍ଟରେ ପହଞ୍ଚି ସେ ସେଠାରୁ ସମରକନ୍ଦ ପରିଭ୍ରମଣରେ ବାହାରି ପଡ଼ିଥିଲେ । ଇତିହାସର ଛାତ୍ର ଶ୍ରୀ ମିଶ୍ରଙ୍କୁ ସମରକନ୍ଦର ସାହସୀ ଯୋଦ୍ଧା ବାବର ଭାରତ ଅଭିଯାନ କରି ପ୍ରଥମ ପାନିପଥ ଯୁଦ୍ଧରେ ବିଜୟୀ ହୋଇ ଭାରତରେ ମୋଗଲ ସାମ୍ରାଜ୍ୟର ମୂଳଭିତ୍ତି ପକାଇଥିଲେ, ଯଦିଚ ଦୁଇଶହ ବର୍ଷକାଳ ଭାରତରେ ତିଷ୍ଠି ରହି କଳା, ସଂସ୍କୃତି ଓ ସ୍ଥାପତ୍ୟ କ୍ଷେତ୍ରରେ ଏକ ଯୁଗାନ୍ତକାରୀ

ପରିବର୍ତ୍ତନ ଆଣିଥିଲା, ତାହା ତାଙ୍କୁ ବେଶ ବିଦିତ ଥିଲା। ପ୍ରାଚୀନ ଐଶ୍ୱର୍ଯ୍ୟଶାଳୀ ନଗର ସମରକନ୍ଦର ଇମାରତ, ସମ୍ପଦ ଓ ନୃଶଂସ ଦିଗ୍‌ବିଜୟୀ ଶାସକ ତୈମୁରଲଙ୍ଗଙ୍କର କଳା, ସ୍ଥାପତ୍ୟ ଦେଖିବାର ପ୍ରବଳ ଇଚ୍ଛା ତାଙ୍କ ମନରେ ଜାଗି ଉଠିଥିଲା। ତୈମୁର ବ୍ୟକ୍ତିଗତଭାବେ ଏକ ନୃଶଂସ ନରସଂହାରକାରୀ ଦିଗ୍‌ବିଜୟୀ ବୀର ଥିଲେ। ମାତ୍ର କଳା ଓ ସ୍ଥାପତ୍ୟ ବିକାଶ ପାଇଁ ଏବଂ ସେଥିପାଇଁ ଶିଳ୍ପୀ ତଥା ବିନ୍ଧାଣୀମାନଙ୍କୁ ପ୍ରୋତ୍ସାହିତ କରିବାରେ ମଧ୍ୟ ଅଦ୍ୱିତୀୟ ଥିଲେ। ତେଣୁ କବି ଶ୍ରୀ ମିଶ୍ର ସମରକନ୍ଦରେ ପହଞ୍ଚି ସେଠାକାର ଐଶ୍ୱର୍ଯ୍ୟଶାଳୀ ଇମାରତମାନ ଦେଖିଥିଲେ।

ତାଙ୍କୁ ସବୁଠାରୁ ବେଶୀ ଆକର୍ଷିତ କରିଥିଲା ତୈମୁରଲଙ୍ଗ ତାଙ୍କର ପ୍ରିୟତମା ପତ୍ନୀ ତଥା ଲାବଣ୍ୟମୟୀ ରାଣୀ ବିବି ଖାତୁନ୍‌ଙ୍କ ପାଇଁ ଯେଉଁ ମହଲ ତିଆରି କରାଇଥିଲେ, ତାର ରୂପଶୋଭାକୁ ସେ ନିରୀକ୍ଷଣ କରିଥିଲେ। ବିବି ଖାତୁନ୍‌ଙ୍କ ମହଲ ଦେଖୁଥିବା ବେଳେ ତାଙ୍କୁ ଏହି ହର୍ମ୍ୟ ପଛରେ ରହିଥିବା ଏକ ଚାଞ୍ଚଲ୍ୟକର ଅଥଚ ରୋମାଞ୍ଚିକ ଉପାଖ୍ୟାନ ଶୁଣିବାକୁ ମିଳିଥିଲା।

ସୁଲତାନ ତୈମୁର ବିବି ଖାତୁନ୍ ମହଲ ତିଆରି କରିବା ପାଇଁ ଯେଉଁସବୁ କାରିଗର ଓ ଶିଳ୍ପୀମାନଙ୍କୁ ନିଯୁକ୍ତ କରିଥିଲେ, ସେମାନଙ୍କ ମଧ୍ୟରେ ଏକ ମୁଖ୍ୟ ସ୍ଥପତି ଥିଲା। ତୈମୁର ପରେ ରାଜ୍ୟଜୟ ଅଭିଯାନରେ ଗଲେ। ଏଣେ ବିବି ଖାତୁନ୍ ମହଲର କାମଦାମ ଆଗେଇ ଚାଲିଲା ଓ ଶେଷ ହେଲା। ଅତ୍ୟନ୍ତ ମନୋରମ ଥିଲା ବିବି ଖାତୁନ୍ ମହଲ। ସେ ଯୁବକ ଶିଳ୍ପୀ କାମ କରୁଥିବା ବେଳେ ମଞ୍ଜ ମନୋରମା, ଅପରୂପା ସୁନ୍ଦରୀ ବିବି ଖାତୁନ୍ ବାତାୟନ ପାଖରେ ବସି ତାର କାର୍ଯ୍ୟକୁ ନିରୀକ୍ଷଣ କରୁଥିଲେ। ସେ ଯୁବକ ଶିଳ୍ପୀ ମଧ୍ୟ ଲାସ୍ୟମୟୀ ରାଣୀଙ୍କ ରୂପ ଓ ଶୋଭାକୁ ଦେଖୁଥିଲା।

ସୁଲତାନ ତୈମୁର ଯେତେବେଳେ ସେହି ସୁରମ୍ୟ ମହଲର ଉନ୍ମୋଚନ କରିବାପାଇଁ ଅସଂଖ୍ୟ ପାରିଷଦ ଓ ସାଙ୍ଗରେ ଥିବା ପ୍ରିୟତମା ରାଣୀ ବିବି ଖାତୁନ୍‌ଙ୍କୁ ଧରି ପହଞ୍ଚିଲେ, ସେ ଯୁବଶିଳ୍ପୀ ତାଙ୍କୁ ଅଭିନନ୍ଦନ ଜଣାଇଥିଲା। ତାର କାମରେ ଅତ୍ୟନ୍ତ ପ୍ରୀତ ତୈମୁର ସେ ଶିଳ୍ପୀଙ୍କୁ ପାରିତୋଷିକ କେତେ ଦେବେ ବୋଲି ପଚାରିଲେ। ମାତ୍ର ସେ ଶିଳ୍ପୀ କିଛି ପାରିତୋଷିକ ନେବ ନାହିଁ ଏବଂ ତାର ଏକ କାମନା ଅଛି। ତାହାକୁ ପୂରଣ କରିବାକୁ ପ୍ରାର୍ଥନା କଲା, କଅଣ ସେ କାମନା ? ସେ ଶିଳ୍ପୀ କହିଲା ଯେ ସେ ବିବି ଖାତୁନ୍‌ଙ୍କର ଗଣ୍ଡ ଦେଶରେ ଥରେ ମାତ୍ର ଚୁମ୍ବନ ଦେବ। ସୁଲତାନ ଶୁଣିଲା ମାତ୍ରେ କ୍ଷୁବ୍ଧ ହୋଇଉଠିଲେ। ମାତ୍ର ହଁ କରିଥିବାରୁ ତାହା କରିବାକୁ ଅନୁମତି ଦେଲେ। ଅପୂର୍ବ ସୁନ୍ଦରୀ ବିବି ଖାତୁନ୍‌ଙ୍କ ସମଗ୍ର ଶରୀର କମ୍ପି ଉଠିଲା। ଏକ କିଶୋର ତମ୍ବୁରାରେ ବାଜା ବଜାଉଥାଏ। ସେ ଯୁବଶିଳ୍ପୀ ବିବି ଖାତୁନ୍‌ଙ୍କର ଗୋଲାପୀ ଗଣ୍ଡଦେଶରେ ଏକ ଉଷ୍ମ ଚୁମ୍ବନ ଆଙ୍କିଦେଲା। ମାତ୍ର ସେ ଚୁମ୍ବନର ତୀବ୍ର ଉଷ୍ମତା ଫଳରେ ରାଣୀ ବିବି ଖାତୁନ୍‌ଙ୍କ ଗଣ୍ଡଦେଶରେ ଏକ ସାଙ୍ଘାତିକ କଳାଦାଗ ଚୁମ୍ବନସ୍ଥଳୀରେ ଆଙ୍କି ହୋଇଗଲା।

ଅତ୍ୟନ୍ତ କ୍ରୁଦ୍ଧ ସୁଲତାନ ତୈମୁର ସେ ଯୁବଶିଳ୍ପୀକୁ ଧରି ଆଣିବାକୁ ଆଦେଶ ଦେଲେ। ମାତ୍ର ସେ ଗଲା କୁଆଡ଼େ! ମହଲର ପ୍ରତ୍ୟେକ କୋଣ ଅନୁକୋଣ, ପୁଷ୍ପ ବାଟିକାର ସବୁ ସ୍ଥାନକୁ ସୈନ୍ୟ ଖୋଜିଗଲେ। ଏତେ ଲୋକଙ୍କ ଉପସ୍ଥିତିରେ ଶିଳ୍ପୀ ଗଲା କୁଆଡ଼େ? ଅନ୍ତର୍ଦ୍ଧାନ କିପରି ହେଲା?

ତାପରେ ବହୁ ଯୁଗ ବିତିଗଲା। ପ୍ରତ୍ନତତ୍ତ୍ୱ ବିଭାଗ ବିବି ଖାତୁନ୍ ମହଲର ମରାମତି କରିବାକୁ ଆସିଲେ, ସେ ଗମ୍ବୁଜର ଏକ ଖୋପ ମଧ୍ୟରୁ ଏକ ପୁରାତନ କଙ୍କାଳ ପାଇଲେ। ସେ କଙ୍କାଳ ବୋଧହୁଏ ସେ ଶିଳ୍ପୀର ଥିଲା। ଅପୂର୍ବ ବ୍ୟଞ୍ଜନମୟୀ ଭାଷାରେ ମନମୋହନ ବାବୁ ଏହା ବର୍ଣ୍ଣନା କରିଛନ୍ତି। ଏହା ଫଳରେ ସମସ୍ତ ଉପାଖ୍ୟାନଟି ଏକ ପରିପାଟିଯୁକ୍ତ ଅନନ୍ୟ ଶିଳ୍ପରେ ପରିଣତ ହୋଇଛି। ତାହା ବହୁ ପାଠକଙ୍କୁ ମୁଗ୍ଧ କରିଛି। ପ୍ରସିଦ୍ଧ ଓଡ଼ିଆ କବି ରାଧାମୋହନ ଗଡ଼ନାୟକ "ସୁନାର ସମରକନ୍ଦ" ପୁସ୍ତକରୁ ବିବି ଖାତୁନ୍ ଉପାଖ୍ୟାନ ପଢ଼ି ଏତେ ମୁଗ୍ଧ ଓ ଭାବବିହ୍ୱଳ ହୋଇପଡ଼ିଥିଲେ ଯେ ସେ ସାହିତ୍ୟ ପତ୍ରିକା "ଝଙ୍କାର"ରେ "ବିବି ଖାତୁନ୍ ଓ ଶିଳ୍ପୀ" ଶୀର୍ଷକ ଏକ ମନୋଜ୍ଞ କବିତା ଲେଖିଥିଲେ। ସେ କବିତା ପ୍ରକାଶ ପାଇବା ପରେ ଶ୍ରୀ ଗଡ଼ନାୟକ ମନମୋହନ ବାବୁଙ୍କ ବାସଭବନକୁ ଆସିଥିଲେ। ଦୁହେଁ ପରସ୍ପରକୁ କୋଳାଗ୍ରତ କରି ବଧେଇ ଜଣାଇଥିଲେ। ରୋମାଣ୍ଟିକ କାବ୍ୟ ଚେତନାର ଅପୂର୍ବ ଝଲକର ପ୍ରକାଶ ଘଟିଛି ବିବି ଖାଦୁନ ଉପାଖ୍ୟାନରେ। ରୋମାଣ୍ଟିସିଜମର ଧାରା ହେଉଛି ସୌନ୍ଦର୍ଯ୍ୟ, କିଛି ଦୁଃସାହସ, କିଛି ପୁଲକିତ ହେବାର ଭାବ, ଯାହାର ପ୍ରତିଫଳନ ଏ ଅମୂଲ୍ୟ କଳା ଶିଳ୍ପ ଉପରେ ପଡ଼ିଛି। ସମସ୍ତ ଭ୍ରମଣ କାହାଣୀକୁ ଏହାର ପୁଷ୍କଳ ବର୍ଣ୍ଣନା ଏକ ଋଦ୍ଧିବନ୍ତ ସାହିତ୍ୟ ସୃଷ୍ଟି କରିଛି।

ଉଜ୍‌ବେକିସ୍ଥାନ ଗସ୍ତ ପୂର୍ବରୁ ଶ୍ରୀ ମିଶ୍ର ପ୍ରଥମେ ତାଜିକ୍‌ସ୍ଥାନ ଗସ୍ତରେ ଯାଇଥିଲେ। ସେ ତାଜିକ୍‌ସ୍ଥାନକୁ 'ନବଯୌବନର ଦେଶ' ନାମରେ ନାମିତ କରିଥିଲେ। ମଧ୍ୟଏସିଆର ଏହି ଦେଶ ଅତୀତ ଦିନରେ ଅମୀରତନ୍ତ୍ରର ଜମାସାହି ଶାସନରେ ପାଷାଣୀ ଅହଲ୍ୟା ଭଳି ଶିକ୍ଷା, ସଂସ୍କୃତିଠାରୁ ବିବର୍ଜିତ ହୋଇ ଗତିକଲା। ମାତ୍ର ମଧ୍ୟଏସିଆର ଏହି ଦେଶକୁ ସମାଜବାଦୀ ରାଷ୍ଟ୍ରଗଠନର ବ୍ୟବସ୍ଥା ଆସିବା ପରେ ସମସ୍ତ କିଛି ଓଲଟପାଲଟ ହୋଇ ଯାଇଥିଲା। ଶିକ୍ଷା, ସଂସ୍କୃତି, କୃଷି ଓ ଉଦ୍ୟୋଗିକ ବିକାଶରେ ତାଜିକସ୍ଥାନ ଆଗେଇ ଚାଲିଥିଲା, ଯାହାର ଉଦୟ ଉତ୍ସବକୁ ଦେଖି ମନମୋହନ ବାବୁ ମୁଗ୍ଧ ହୋଇଥିଲେ। ତାଜିକସ୍ଥାନର ସବୁଆଡ଼େ ସେ ଦେଖିଲେ ସେଠାକାର ଯୁବକକୁଳ ସମାଜବାଦୀ ସମାଜ ଗଠନ କାର୍ଯ୍ୟରେ ଅଣ୍ଟାଭିଡ଼ି ଲାଗି ପଡ଼ିଛନ୍ତି। କୋଠଚାଷର ବ୍ୟବସ୍ଥା, ଫୁଲଫଳର ଉଦ୍ୟାନ-ଉପବନ, କୁଟୀର ଶିଳ୍ପ ଓ ଶିଳ୍ପ ଉଦ୍ୟୋଗରେ ତାଜିକ ଯୁବକ ଯୁବତୀମାନେ କର୍ମରତ। ତା'ପରେ ସେ ପ୍ରଶ୍ନକଲେ ଏଠାରେ "ବୁଢ଼ାବୁଢ଼ୀମାନେ ଗଲେ କୁଆଡ଼େ?" ଉତ୍ତର ମିଳିଲା ଯେ "ବୁଢ଼ାବୁଢ଼ୀମାନେ ଏବେ ପାଠ ପଢୁଛନ୍ତି।" ନିର୍ବାଚନ ବେଳେ

କମ୍ୟୁନିଷ୍ଟମାନଙ୍କ ବିରୁଦ୍ଧରେ ପ୍ରଚାରରେ କିଛି ଲୋକ କୁହନ୍ତି ଯେ ରୁଷିଆରେ ବୁଢ଼ାବୁଢ଼ୀମାନଙ୍କୁ ମାରି ଦିଆଯାଏ। ମାତ୍ର କବି ମନମୋହନ ତାର ବିପରୀତ ଚିତ୍ର ଦେଖିବାକୁ ପାଇଲେ। ଯୁଗଯୁଗ ଧରି ଅଶିକ୍ଷିତ, ସାମାଜିକ ଓ ଅର୍ଥନୈତିକ ଭାବେ ଅବହେଳିତ ବୟସ୍କ ଲୋକମାନଙ୍କୁ ଖୁଆଇ ପିଆଇ ଉତ୍ତମ ସ୍ୱାସ୍ଥ୍ୟସେବା ଯୋଗାଇଦେଇ ଶିକ୍ଷାର ଆଲୋକରେ ଆଲୋକିତ କରାଯିବାଟା ଏକ ଅଭାବନୀୟ ବିଷୟ। ମନମୋହନ ବାବୁଙ୍କ ଭ୍ରମଣ କାହାଣୀର ଲେଖା ପରେ ଏ ଲେଖକ "ସମାଜବାଦ କେନ୍ଦ୍ର ଏସିଆକୁ କିପରି ଆସିଲା" ଶୀର୍ଷକ ପୁସ୍ତକ ଅନୁବାଦ କରିଥିଲା। ମନମୋହନ ବାବୁଙ୍କର ତାଜିକସ୍ଥାନର ବିକାଶର ବିବରଣୀ ସହିତ ଲେଖକ ଦ୍ୱାରା ଅନୁଦିତ ହୋଇଥିବା ବିଷୟବସ୍ତୁରେ ଅନେକ ତାଳମେଳ ଦେଖିବାକୁ ମିଳିଥାଏ।

ତାଜିକସ୍ଥାନର ଭ୍ରମଣ ବୃତ୍ତାନ୍ତରେ ଶ୍ରୀ ମିଶ୍ର ସେ ଦେଶର ସମାଜ ଗଠନରେ ଅନେକ ବିଷୟରେ ଆଲୋଚନା କରିଛନ୍ତି। ତାଜିକ ମୌଖିକ ଭାଷା ଥିବା ସ୍ଥଳେ ତା'ର ବର୍ଣ୍ଣମାଳା ବିଚିତ୍ର ଧରଣର ଥିଲା। ପାର୍ସି, ତୁର୍କି, ଆଫଗାନ, ଉଜ୍‌ବେକ, ମୋଗଲ ସଂସ୍କୃତିର ପୀଠସ୍ଥଳୀ ତାଜିକସ୍ଥାନରେ ଶିକ୍ଷିତ ଲୋକ ତ ପ୍ରାୟ ନଥିଲେ। ତେଣୁ ବର୍ଣ୍ଣମାଳାକୁ ଆଧୁନିକ ରୁଷୀୟ ଲିପିରେ ପକାଇ ସାହିତ୍ୟ ସୃଷ୍ଟି କରିବାକୁ ନୂତନ ବର୍ଣ୍ଣମାଳା ଓ ସାହିତ୍ୟ ସୃଷ୍ଟି କରିବାକୁ ପଡ଼ିଥିଲା। ବୁଢ଼ାବୁଢ଼ୀମାନେ ନୂତନ ବର୍ଣ୍ଣମାଳା ଓ ନୂତନ ଲିପିରେ ଲିଖିତ ତାଜିକ୍ ପାଠ୍ୟ ପୁସ୍ତକ ଓ ସାହିତ୍ୟ ପଢ଼ିବାରେ ଲାଗିଥିଲେ।

ଅନ୍ୟ ଦିଗରେ, ଅତୀତ ଦିନରେ ଥିବା "ଅମୀରସାହୀ ଶାସନର ଅସ୍ତ ଘଟି ସମାଜର ଯେଉଁ ନୂତନ ବିନ୍ୟାସ ଚାଲିଥିଲା, ସେଥିରେ ସମବାୟ କୋଠଚାଷ, କୃଷିକର୍ମରେ ଟ୍ରାକ୍ଟର ପରି ଯନ୍ତ୍ର ଗାଡ଼ିର ପ୍ରଚଳନ, ଫଳଫୁଲ ଚାଷ ଓ ଔଦ୍ୟୋଗିକ ବିକାଶକୁ ନବ ଶିକ୍ଷିତ, ସଭ୍ୟ ଯୁବକ କୁଳ ଆଗେଇ ନେଇ ଚାଲିଥିଲେ। ସେ ସମ୍ବନ୍ଧରେ ଲେଖକ ବହୁ ପରିସଂଖ୍ୟାନର ଆଶ୍ରୟ ନେଇ ଆଲୋଚନାକୁ ତଥ୍ୟ ସମ୍ବଳିତ କରିଛନ୍ତି। ସୋଭିଏତ ସଂଘରେ ଥିବା ଶିଳ୍ପୋନ୍ନତ ଓ ୟୁରୋପୀୟ ସଂସ୍କୃତିର ଗଣରାଜ୍ୟକୁ ନ ବାଛି ତାଜିକ୍‌ସ୍ଥାନକୁ ପରିଦର୍ଶନ ପାଇଁ ବାଛିବା ପଛରେ ମନମୋହନ ବାବୁଙ୍କର ଯେଉଁ ଉଦ୍ଦେଶ୍ୟ ଥିଲା ତାର ପୁଷ୍ଟିକରଣ କରିଥିଲା ତାଜିକ୍‌ସ୍ଥାନର ବିକାଶ ଓ ସମାଜବାଦର ନିର୍ମାଣ।

କୋଠଚାଷୀମାନେ କିପରି ଏକତ୍ର କାମ କରନ୍ତି, ଚାଷ କରିବାଠାରୁ ଆରମ୍ଭକରି ଫସଲ ଅମଳ କରିବା, ସେଗୁଡ଼ିକୁ କୋଠ ଖମାରରେ ସମ୍ପାଦିକା, ଉଦ୍ୟାନରେ ଫଳୁଥିବା ଫଳଗୁଡ଼ିକୁ ଯତ୍ନ ସହକାରେ ପେଟିରେ ରଖିବା ଇତ୍ୟାଦି ସାମୂହିକ କାର୍ଯ୍ୟରେ ଫୁଟି ଉଠିଥିବା କର୍ମ ସଂସ୍କୃତି (Work Culture) ତାଙ୍କୁ ଆମୋଦିତ କରିଥିଲା।

ତାଜିକିସ୍ଥାନରେ ରହଣି କାଳରେ ଶ୍ରୀ ମିଶ୍ର ନିଜେ ଅତୀତ ଦିନରେ ଲେଖିଥିବା "ଲାଲ ଓଡ଼ିଆ ମାଟି"ର ସୁରରେ "ଲାଲ ତାଜିକ୍ ମାଟି" ଶୀର୍ଷକ ଏକ କବିତା ତଥା ସଙ୍ଗୀତ ଲେଖିଥିଲେ। ପ୍ରସିଦ୍ଧ ଭାରତ ତତ୍ତ୍ୱବିତ୍ ଚେଲିସେବ୍‌ଙ୍କୁ ତା'ଣ ମର୍ମାର୍ଥ ବୁଝାଇଦେବା ପରେ ସେ ତାହାକୁ ତାଜିକ୍ ଓ ରୁଷୀୟ ଭାଷାରେ ଅନୁବାଦ କରିଥିଲେ ଏବଂ ଏହା ଦୁଶାମ୍ବେ ଓ ମସ୍କୋ ରେଡ଼ିଓରେ ପ୍ରସାରିତ ହୋଇଥିଲା। ମନମୋହନ ବାବୁଙ୍କ କଣ୍ଠ ସ୍ୱରରେ "ଲାଲ ତାଜିକ୍ ମାଟି" ଗାନ କରାଯାଇଥିଲା।

## ଲାଲ ତାଜିକ ମାଟି

ସଲାମ ନିଅ, ସଲାମ ନିଅ
ହେ ମୋର ବୀର ସାଥୀ ହେ
ଲାଲ ତାଜିକ୍ ମାଟି।।୦।।
ମେହେନତର, ମାନବତାର
ସଲାମ ନିଅ ହେ ଅବତାର
ସଲାମ ନିଅ, ଜୀବନ ସୁରା, ଶ୍ୟାମଳ ପରିପାଟିରେ।।୧।।

(ସମ୍ପୂର୍ଣ୍ଣ କବିତାଟି ୨୦୨ ପୃଷ୍ଠାରେ)

ମନମୋହନ ବାବୁ ବିଦେଶ ଗ୍ରସ୍ତସାରି କଟକ ଆସିବା ପରେ ତାଙ୍କର ସେ ଭଡ଼ାଘରକୁ କାବୁଲର ସେ ଭଦ୍ରଲୋକ ଥରେ ଦୁଇଥର ଆସିଥିଲେ। ତାଙ୍କ ଦେଶ ତାଙ୍କୁ କିପରି ଲାଗିଲା ଓ ପରିବାର ଲୋକେ କିପରି ତାଙ୍କର ଅଭ୍ୟର୍ଥନା କଲେ ତାହା ବୁଝିବା ଥିଲା ଆସିବାର ମୂଳ ଉଦ୍ଦେଶ୍ୟ। ଏହାକୁ ଦେଖି ତାଙ୍କ ପ୍ରତିବେଶୀମାନେ ଶ୍ରୀ ମିଶ୍ର କାବୁଲିବାଲାର କରଜ ଜାଲରେ ଫଶି ଯାଇଛନ୍ତି କି ବୋଲି ତାଙ୍କୁ ଖୁବ୍ ସଂଭ୍ରମ ସହକାରେ ପଚାରିଥିଲେ। ସ୍ୱଭାବ ସୁଲଭଭାବେ ସେ ହସିହସି ସେପରି କିଛି ଘଟିନାହିଁ ବୋଲି କହିବା ସଙ୍ଗେସଙ୍ଗେ ସମସ୍ତ ବୃତ୍ତାନ୍ତଟି ବୁଝାଇ ଦେଇଥିଲେ। ମୋଟ ଉପରେ ଏହି ତିନିଗୋଟି ଭ୍ରମଣ କାହାଣୀ ରସୋତ୍ତୀର୍ଣ୍ଣ ସାହିତ୍ୟ ରୂପେ ବିବେଚିତ ହୁଏ।

ଏବେ ଏହା ତାରପୁରର ବିଦ୍ୟାରତ୍ନ ପ୍ରକାଶନୀ ଦ୍ୱାରା ତୃତୀୟ ଥର ପାଇଁ ଗ୍ରନ୍ଥାବଳୀ ଆକାରରେ ପ୍ରକାଶିତ ହେଉଛି ଏବଂ ମୋତେ ତା' ଉପରେ ଲେଖିବାର ଦାୟିତ୍ୱ ଅର୍ପଣ କରାଯାଇଛି। ସେଥିପାଇଁ ମୁଁ ପ୍ରକାଶକ, ଆଉ ଅନୁଜ ପ୍ରତିମ ରବି ଦାଶଙ୍କୁ ଧନ୍ୟବାଦ ଜ୍ଞାପନ କରୁଛି।

**ଆଶିଷ ମହାପାତ୍ର**
ଗୁରୁଗାଓଁ

# ଉତ୍ସର୍ଗ

ପ୍ରାଣସିନ୍ଧୁ ନିତ୍ୟ ଯହିଁ
ଉଠଇ ଉଚ୍ଛୁଳି,
ଚିରନ୍ତନ ଉଷା ପ୍ରୀତି
କ୍ଷଣେ ନୁହେଁ ଭୁଲି,
ଆଗାମୀ ଯୁଗର ସ୍ରଷ୍ଟା
ଯହିଁ ନାରୀନର,
କ୍ଷୁଦ୍ର ତୁଚ୍ଛ ଲାଗି ତିଳେ
ନାହିଁ ଅବସର ।
ମାନବ ଦାସତ୍ୱ ଯହିଁ
ଦିଏ ନାହିଁ ବ୍ୟଥା,
ବାଣୀର ସମ୍ମାନ ରଖେ
ସତ୍ୟ ସ୍ୱାଧୀନତା ।
ମୈତ୍ରୀ – ସାମ୍ୟ – ମୁଖରିତ
ଅକ୍ଳାନ୍ତ ଢୁଆର,
ସେ ଦେଶମାଟିକି ମୋର
କୋଟି ନମସ୍କାର ।

ଶ୍ରୀ ବୈକୁଣ୍ଠନାଥ ପଟ୍ଟନାୟକ

ନବଯୌବନର ଦେଶ
ପ୍ରଥମ ସଂସ୍କରଣ, ୧୯୬୪

ପ୍ରଥମ ସଂସ୍କରଣର ମୁଖବନ୍ଧ ୧୯୬୪

# ଗୋଟିଏ ପଦ

ରକେଟ୍‌ଯାନରେ ପୃଥିବୀ ପରିକ୍ରମା ପାଇଁ ଏବେ କେବଳ ଘଣ୍ଟା-ମିନିଟର ହିସାବ ଚାଲିଥିଲାବେଳେ ମନ୍ଥର ବ୍ୟୋମଯାନରେ ସାନ ବଡ଼ ଦେଶ ଭ୍ରମଣ କରି ତାହାର ବିବରଣ ପ୍ରକାଶ କରିବାର ଆବଶ୍ୟକତା ବିଷୟରେ ତ ପ୍ରଶ୍ନ ଉଠେ । ତଦୁପରି ସେଭଳି କାହାଣୀ ପଢ଼ି ଆଉ କେହି ନିଜ ମତାମତ ଦେବାକୁ ବେଳ ମିଳିଲେ ସିନା ହୁଏ । ଏହି ଉଦ୍‌ବେଗ ଭିତରେ ସାନ୍ତ୍ୱନା କେବଳ ଏତିକି ଯେ ଚିହ୍ନା ବ୍ରାହ୍ମଣର ପଇତା ଲୋଡ଼ା ନ ହେଲାଭଳି ଏ କ୍ଷେତ୍ରରେ ଲେଖାର ବା ଲେଖକଙ୍କର ମୁଖବନ୍ଧ ଦେବା ବାହୁଲ୍ୟ ମାତ୍ର ।

ଆଉରି ମଧ୍ୟ ଲେଖକ ନିଜେ ଯେମିତି ଦୁଇଟି ବିପରୀତ ଓ ପରସ୍ପରବିରୋଧୀ ଭାବଧାରାର ସମଷ୍ଟି; ଅର୍ଥାତ୍ ରାଜନୀତିରେ ଉଲ୍ଲେଖ୍ୟ ଅଂଶ ଗ୍ରହଣ କରି ସୁଦ୍ଧା କବି ଓ ଗାୟକରୂପେ ସୁପରିଚିତ, ସେମିତି ରାଜନୀତି ପୁଣି ସମାଜ-ସଂସ୍କାର ଦୁଇଟି ଚରମ ସୀମାନ୍ତରେ ରହିଥିବା 'ନବଯୌବନର ଦେଶ' ରୁଷ ଏବଂ 'ଏସିଆର ନିଦ୍ରିତା ରାଜକନ୍ୟା' ଆଫଗାନିସ୍ଥାନର ରାଜଧାନୀ କାବୁଲ ବିଷୟରେ ଏଇ କ୍ଷୁଦ୍ର ସିନା, ମନୋରମ କାବ୍ୟ-ପ୍ରବନ୍ଧଟି ସେ ଲେଖିଛନ୍ତି ।

ଏସିଆର ଏଇ ନିଦ୍ରିତା ରାଜକନ୍ୟା ଏବେ ମଧ୍ୟ ମୁଲ୍ଲାମାନଙ୍କ ନିଷ୍ଠୁର ନିର୍ଦ୍ଦେଶରେ ବୁର୍ଖା ଆବରଣର ଅନ୍ତରାଳରେ ପ୍ରେତାତ୍ମାପରି ବିଚରଣ କରୁଥିବାବେଳେ ସେଠାରୁ ତିନି ଚାରି ଘଣ୍ଟାର ବ୍ୟୋମପଥରେ ଅବସ୍ଥିତ ନବଯୌବନ ଦେଶର କନ୍ୟା ମୁକ୍ତ ବିହଙ୍ଗମପରି ପୃଥିବୀ ପରିକ୍ରମାରେ ଶକ୍ତି ସାହସର ଚୂଡ଼ାନ୍ତ ପରିଚୟ ପ୍ରଦାନ କରିଛି । ସେଇ ଦେଶର ଭ୍ରମଣ ଅଭିଜ୍ଞତା ପ୍ରକାଶ କରି ଏଇ ରାଜନୈତିକ କବି ଲେଖିଛନ୍ତି – ସୋଭିଏଟ୍ ରୁଷରେ ରାଜନୈତିକ ପରିଚୟଟା ସାମାନ୍ୟ ମାତ୍ର । ସେ ପରିଚୟ ପାଇଁ ବିଶେଷ ଆଗ୍ରହ କାହାରି ଥିଲା ପରି ଜଣାପଡ଼େ ନାହିଁ । କିନ୍ତୁ କବି, 'ପୋଏଟ୍' ବା 'ପିଶାଚି' କହିଲେ ସମ୍ମାନ ମିଳେ ଅସୀମ । ଏହା ଖାଲି ବିଦେଶର କବିମାନଙ୍କ ପାଇଁ ନୁହେଁ, ନିଜ ଦେଶର କବିମାନଙ୍କ ପାଇଁ ମଧ୍ୟ ।

ଯଥାର୍ଥରେ ଲେଖକଙ୍କର ରାଜନୈତିକ ମନ କାବୁଲ, ମସ୍କୋ, ସମରକନ୍ଦ ବା ତାସକନ୍ଦକୁ ଯେଉଁ ଦୃଷ୍ଟିରେ ଦେଖିଛି, ତାଙ୍କ କବିପ୍ରାଣ ଯେ ତା'ଠାରୁ ଏକାବେଳେ ଅଲଗା

ହୋଇଯାଇ ନିଜ ଅନୁଭୂତି ପ୍ରକାଶ କରିଛି, ତାହା ପରିଷ୍କାର ବାରିହୋଇପଡେ । କବି ସ୍ରଷ୍ଟା ବା ଶିଳ୍ପୀର ପ୍ରାଣଧର୍ମ ଯେ ଦେଶକାଳାତୀତ ପ୍ରେମରେ ହିଁ ପର୍ଯ୍ୟବସିତ, ମଣିଷକୁ ଭଲ ପାଇବା ଯେ ତା'ର ସବୁଠାରୁ ବଡ଼ ସାଧନା, ସେ ମଣିଷ ଏଇ ଗୋଲ ପୃଥିବୀଟାର ଯେଉଁ ଭୌଗୋଳିକ ସୀମା ଭିତରେ ଥାଉ ପଛକେ, ତାହା ଚମତ୍କାର ରଙ୍ଗ, ମୁହଁର ଭାଷା, ଜାତି ବା ଧର୍ମ ଯାହା କିଛି ହେଉ ପଛକେ ଶେଷ ପର୍ଯ୍ୟାୟରେ ମଧ୍ୟଏସିଆର ଜାଗରିତା ରାଜକନ୍ୟା ସମରକନ୍ଦର ଆଧୁନିକ ବିରାଟ ନବନିର୍ମାଣ ଭିତରେ ମଧ ଶିଳ୍ପୀ ସ୍ରଷ୍ଟାର ସେଇ ବିଶ୍ୱବିଦିତ ଅମର ପ୍ରଣୟ-ଗାଥା-ମଣିଷ ହାଡ଼ରେ ଯେଉଁ ତୈମୁରଲଙ୍ଗ ପାହାଡ଼ ତୋଳିଥିଲେ ତାଙ୍କରି ପ୍ରତ୍ୟାବର୍ତ୍ତନର ଅଭିନନ୍ଦନ ପାଇଁ ରୂପସୀ ମହିଷୀ ବିବି ଖାତୁନ୍‌ଙ୍କ ନିର୍ମିତ ନୂତନ ହର୍ମ୍ୟର ବର୍ତ୍ତମାନ ଅବଶେଷ– ଯେଉଁ ହର୍ମ୍ୟର ଶିଳ୍ପୀ ନିକଟରେ ମହିଷୀ ସ୍ୱୟଂ ପ୍ରଣୟାସକ୍ତ ହେଲେ; ପୁଣି ପ୍ରେମଲାଗି ଯେଉଁ ଜଣେ ମାତ୍ର ଶିଳ୍ପୀର ଆତ୍ମୋତ୍ସର୍ଗରେ ବିଶ୍ୱବିଜୟୀ ତୈମୁରଲଙ୍ଗଙ୍କର ନରହତ୍ୟାର ଗୌରବ ଉପହସିତ ହେଲା ।

ଠିକ୍ ସେମିତି ବହିଟି ପଢ଼ି ମନେହୁଏ ତହିଁରେ କବି ଶିଳ୍ପୀ ମନମୋହନ ରାଜନୀତିଜ୍ଞ ମନମୋହନଙ୍କୁ ପରାସ୍ତ କରି ଦେଇଛନ୍ତି ।

କଟକ
୧୧ । ୦୩ । ୧୯୬୪

କାଳିନ୍ଦୀଚରଣ ପ୍ରାଣିଗ୍ରାହୀ

ପ୍ରଥମ ସଂସ୍କରଣ : ୧୯୬୪

# ମୋର କହିବାର କଥା

ଏବେ ଅବଶ୍ୟ ଅନେକ ଓଲଟପାଲଟ ହୋଇଯିବଣି । ନଅବର୍ଷ ତଳର ମୋର ପରିଚିତ ତିନୋଟି ଜିନିଷ – ଜିନିଷ ବୋଲି ଜାଣିଶୁଣି କହୁଛି – 'ଏସିଆର ନିଦ୍ରିତା ରାଜକନ୍ୟା', 'ସୁନାର ସମରକନ୍ଦ' ଆଉ 'ନବଯୌବନର ଦେଶ' ଏବେ ଆଉ ଠିକ୍ ଠିକ୍ ପୂର୍ବ ଅବସ୍ଥାରେ ପୂର୍ବ ବେଶ-ପରିଚ୍ଛଦରେ ନାହାନ୍ତି । କାରଣ କବି କିରୀଟ ଭବଭୂତିଙ୍କ ଭାଷାରେ – "ଚଳୟତି କାଳ, ନିରବଧି ବିପୁଳା ଚ ପୃଥ୍ୱୀ ।"

ତା'ଛଡ଼ା ମଣିଷର ଆଖି ବି କାଗଜର ଫୁଲ ନୁହେଁ ଯେ ସବୁବେଳେ ଅବିକଳ ରହିବ । ତାହା ପ୍ରତିଦିନ ନୂତନ ଅନୁଭୂତିର ଆଘାତରେ ସଚେତନ ହେବାକୁ ବାଧ । ସେଥିପାଇଁ ବୋଧହୁଏ ପଣ୍ଡିତ ନେହେରୁ ଆପଣା 'ଭାରତର ଆବିଷ୍କାର' ବହିର ପ୍ରଥମ ମୁଖବନ୍ଧରେ ଲେଖିଥିଲେ ଯେ ସେ ଆପଣା ବହିକୁ ନିଜେ ପଢ଼ି ବାରମ୍ବାର ଚକିତ ହୋଇଛନ୍ତି । ପଣ୍ଡିତ ନେହେରୁ ଲେଖିଛନ୍ତି – "ଅନ୍ୟାନ୍ୟ ଲେଖକଙ୍କର ସେମାନଙ୍କର ନିଜ ଲେଖା ବିଷୟରେ କିଭଳି ଅନୁଭୂତି ଥିବ, ମୁଁ ଜାଣେ ନାହିଁ । କିନ୍ତୁ ମୋର କିଛିଦିନ ପୂର୍ବ ଲେଖାକୁ ମୁଁ ଆଉ ଥରେ ପଢ଼ିଲେ ମୋର ଏକ ଅଦ୍ଭୁତ ଅନୁଭୂତି ହୁଏ । ମୁଁ ଅବଶ୍ୟ ତାହାକୁ ମୋର ବୋଲି ଚିହ୍ନିପାରେ; କିନ୍ତୁ ପୂରାପୂରି ଚିହ୍ନିପାରେ ନାହିଁ । ଦୋ-ଦୋ ଚିହ୍ନା ହୁଏ । ମୋତେ ଲାଗେ ଯେପରି ଆଉ କେହି ଲେଖକର ବହୁ ପରିଚିତ ଗୋଟିଏ ଲେଖା ମୁଁ ଆଉ ଥରେ ପଢୁଛି । ସେହି ଜଣକ ମୋର ଦିନେ ଅନ୍ତରଙ୍ଗ ଥିଲା; କିନ୍ତୁ ସେ ତଥାପି ମୋ ଠାରୁ ଯେମିତି ପୃଥକ । ବୋଧହୁଏ ସେହି ପାର୍ଥକ୍ୟ ହିଁ ମୋ ଭିତରେ ପରିବର୍ତ୍ତନର ପରିମାଣ ।" ଏହି କଥାଟି ଯେ କେତେ ବଡ଼ ସତ୍ୟ, ତାହା ଲେଖକ ମାତ୍ରକେ ଜାଣନ୍ତି ।

ଦୁଇବର୍ଷ ତଳେ ପୁଣି ଥରେ ଆଖିର କ୍ୟାମେରାରେ ଆଉ କାନର ପରଦାରେ ସାଇତିବାର ଅନେକ ଜିନିଷ ମୋତେ ମିଳିଥିଲା । ଏଥରକର ପାଳି ପଡ଼ିଥିଲା ପଶ୍ଚିମ ଜର୍ମାନିର, ଉଭୟ ବର୍ଲିନର, ଆଉ ବିଲାତର । ଏଥର କଲିକତାରୁ ସଂଧ୍ୟା ଉଡ଼ାଜାହାଜରେ ଚଢ଼ି ବାସିଦିନ ସକାଳ ଆଠଟାବେଳେ ମ୍ୟୁନିଚ ସହରରେ ପାଦଦେଇ ମୋର ଆଖି ଆଉ କାନ, ମୋର ଦେହ ମନ ପ୍ରାଣ ଆପଣା ଆପଣା ସନ୍ଧାନରେ ଲାଗିବାକୁ ତତ୍‌ପର ହୋଇଥିଲେ । ମୋର ବ୍ୟାକୁଳତା ଆଉ ଆଗ୍ରହ ମୋର ସହଯାତ୍ରୀ ଜଣେ ବଙ୍ଗଭାଷୀ ଭାଇ ସାମ୍ବାଦିକଙ୍କର ଦୃଷ୍ଟି ଏଡ଼ି ନଥିଲା । ସେ ମୋତେ କହିଥିଲେ, 'ମହାଶୟ ଚଳନ୍ତୁ, ପୁଞ୍ଜେ

ଖାଇ ଆଗ ଭଲକରି ଏ ବଢ଼ିଆ ହୋଟେଲରେ ଆରାମ କରିବା । ଆପଣ ପିଲାଙ୍କପରି କ'ଣ ହେଉଛନ୍ତି ? ଆପଣ ପରା ଥରେ ୟୁରୋପର ରୁଷିଆ, ଫିନଲ୍ୟାଣ୍ଡ, ଚେକୋସ୍ଲୋଭାକିଆ ହେରିକା ଦେଖିଛନ୍ତି ? ତେବେ ଏତେ ଉଚ୍ଛନ୍ନ କାହିଁକି ? କିଛି ନାଇଁ ଆଜ୍ଞା, ସେଇ ଯାହା ଦେଖିଥିଲେ ସେଇୟା । ସେଇ ଆଣ୍ଠୁ ଯାଏ ସ୍କାର୍ଟ, ହାଇହିଲ ଯୋତା, ଟିକିଏ ବେଶି ଲିପ୍‌ଷ୍ଟିକ୍, ରୁଗ ଆଉ ମେକଅପ । ସେହି ମାଇପିମାନଙ୍କର ଟଙ୍ଗ ଟଙ୍ଗ ଘୁହାଣି ଆଉ ଲଙ୍ଗୁଳୀ ହାତ ବେକ, ଶୀତରେ ଥୁରୁ ଥୁରୁ ହେଉଥିଲେ ବି ଗଳାକଟା ଫ୍ରକ୍, ଆଉ ପାର୍କ ବା ରେଳଷ୍ଟେସନ ବା ଯେଉଁଠି ପାରି ସେଇଠି ଗୋଡ଼ିଆଗୋଡ଼ି ଯୁଗଳ ମିଳନ । ସବୁ ଠିକ୍ ସେମିତି ମଶାୟ, ସେଇଠି ଟିକିଏ କମ୍, ଏଇଠି ଟିକିଏ ବେଶି ।

ତେଣୁ ଏ ଗତକାଲିର ଖବରକାଗଜ ପଢ଼ାଇବାରେ ଅଥବା ସେକେଣ୍ଡହ୍ୟାଣ୍ଡ ମଟରଗାଡ଼ି ଚଢ଼ାଇବାରେ କି ବାହାଦୁରୀ ?

ଦଶବର୍ଷ ତଳର ସତେଜ ଓ ଅସନ୍ଦିଗ୍ଧ ଆଖିର କ୍ୟାମରାରେ ଆଉ ଅପେକ୍ଷାକୃତ ଅକ୍ଷତ ଅନାହତ କାନର ପରଦାରେ ଯାହା ଘେନି ଆସିଥିଲି, ଆଜି ତାକୁ ଏତେଦିନପରେ ଆଉ ଥରେ ଅବିକଳ କହିବାର କ'ଣ ଅଛି ! ଏଥିରୁ ତ ଅନେକ ତମାଦି ଆଉ ଅନେକ ବାସି ଜିନିଷ ଥିବ ? ହୁଏତ ମୋ ତରଫରୁ ଦାବି ହେବ ଯେ ଏଥିରେ ସେସବୁ କିଛି ନାହିଁ; କାରଣ ଏହି ଆଖି ଯାହା ଦେଖିଛି ବା କାନ ଯାହା ଶୁଣିଛି, ତାହା ଭିତରୁ ଯାହାକିଛି ମଣିଷର ଜୀବନକୁ ନିବିଡ଼ଭାବରେ ଛନ୍ଦିଛି, ତାହାକୁ ହିଁ ଏଠାରେ ଥୋଇଛି । ତେଣୁ ମୋ ପକ୍ଷରୁ ବିଖ୍ୟାତ ତେଲୁଗୁ ମାନବପ୍ରେମୀ କବି ଗୁରଜାଡ଼ା ଅପ୍ପାରାଓଙ୍କ ଭାଷାରେ ଦାବି ହେବ "ଦେଶମ ଏଣ୍ଟେ ମାଟି କାଦୋଇ, ଦେଶମ୍ ଏଣ୍ଟେ ମନିଷିଲୋଇ" ।

ମୋର ଅଶେଷ କୃତଜ୍ଞତା ଓ ଆଶ୍ୱାସ ଯେ କବି କାଳିନ୍ଦୀ ଏହି ଦାବିର ମୂଲ୍ୟକୁ ଏକାନ୍ତ ତୁଚ୍ଛ ମଣିନାହାନ୍ତି । ସେହି ଭରସାରେ ଏହି 'କାବ୍ୟ-ପ୍ରବନ୍ଧ'ଟି ଓଡ଼ିଶାର ପାଠକ ସାଧାରଣଙ୍କ ହାତରେ ନିବେଦନ କଲି । କାରଣ ଚୂଡ଼ାନ୍ତଭାବରେ ସେହିମାନେ ହିଁ ଏହି ଦାବିର ମୂଲ୍ୟ ସ୍ଥିର କରିବେ ।

କଟକ
୧୨।୦୩।୧୯୬୪

ମନମୋହନ ମିଶ୍ର

# ସୂଚୀ

-୦-



ଆର୍ବିଭାବ: ୧୯.୯.୧୯୨୮, ତିରୋଧାନ: ୪.୨.୨୦୧୭

ଓଡ଼ିଆ ଭାଷା ଓ ଓଡ଼ିଆ ସାହିତ୍ୟର ଅଗ୍ରଗତି ପଥରେ ସମଗ୍ର ଜୀବନକୁ ଉତ୍ସର୍ଗ କରିଥିଲେ ପଠାଣି ପଟ୍ଟନାୟକ। ଶେଷରେ ସେ ମନମୋହନ ମିଶ୍ର ଗ୍ରନ୍ଥାବଳୀର ସୁଯୋଗ୍ୟ ମୁଖ୍ୟ ସମ୍ପାଦକର ଭୂମିକା ନିର୍ବାହ କରିଥିଲେ।
ତାଙ୍କ ମୃତ୍ୟୁରେ ଆମେ ଗ୍ରନ୍ଥାବଳୀ ପ୍ରକାଶନ ପକ୍ଷରୁ
ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛୁ।

– ସମ୍ପାଦକ

# ଭାଇନାଙ୍କ ସ୍ମରଣରେ...

ବ୍ରତଘରେ ବ୍ରହ୍ମଚାରୀମାନଙ୍କୁ ଭିକ୍ଷାଦେବା ଭାରତବର୍ଷରେ ପ୍ରଚଳିତ ପ୍ରଥା। ଏହି ବିଧି ଅନୁସାରେ ମୋତେ ଓ ମୋର ସାନଭାଇ ହରୁ(ଲୋକମୋହନ)କୁ ମଧ୍ୟ ଭିକ୍ଷା ମିଳିଥିଲା। ସେ ଭିକ୍ଷା ଭିତରୁ ଗୋଟିଏ ହେଉଛି ଅବିସ୍ମରଣୀୟ। ଆମର ବଡ଼ଭାଇନା ଏହି 'ମନୁଷ୍ୟ ଦୈତ୍ୟ' ବହିଟିକୁ ଆମ୍ଭମାନଙ୍କ ନାଁରେ ଉତ୍ସର୍ଗ କରିଥିଲେ।

ଭାଇନା ପ୍ରଚଣ୍ଡ ପ୍ରତିଭାର ଅଧିକାରୀ ଥିଲେ। ସେ ପ୍ରତିଭାର କଳନ କରିବାକୁ ମୋର ସାମର୍ଥ୍ୟ ନାହିଁ, କିନ୍ତୁ ଅନୁଭବ କରିଛି ଓଡ଼ିଆ ସାହିତ୍ୟରେ ତାଙ୍କର ଅସାଧାରଣ ଅନୁଶୀଳନ। ଶବ୍ଦବିନ୍ୟାସ ଓ ବର୍ଣ୍ଣନାଶୈଳୀ ତାଙ୍କର ପ୍ରତିଭାର ପରିଚୟ ଦିଏ। ଗପ କହିବା ଢ଼ଙ୍ଗରେ ତଥ୍ୟ ପ୍ରଦାନ କରିବାରେ ସେ ଥିଲେ ଧୁରନ୍ଧର। ଓଡ଼ିଆ ଜାତି ପ୍ରତି ତାଙ୍କର ଅସୀମ ଶ୍ରଦ୍ଧା ଓ ଆନୁଗତ୍ୟ ଥିଲା। ଭାଇ ଓ ଭଉଣୀମାନଙ୍କର ସେ ଥିଲେ ସ୍ନେହୀ ଅଭିଭାବକ।

ଏହି ପ୍ରସଙ୍ଗ କଥା ଲେଖିଲାବେଳକୁ ମୋର ନନା ସ୍ୱର୍ଗତ ନୀଳକଣ୍ଠ ମିଶ୍ରଙ୍କର ଅଦ୍ଭୁତ ବ୍ୟକ୍ତିତ୍ୱ ମନେ ପଡୁଛି। ୧୯୫୧ ମସିହାରେ ନାନାଙ୍କର ଭୟଙ୍କର ଦେହ ଖରାପ ହେବା ସମୟରେ ମୁଁ ନନାଙ୍କୁ ଭାଇନାଙ୍କୁ ଡାକିବା ପାଇଁ ପରାମର୍ଶ ଲୋଡ଼ିଥିଲି। ତା'ର ଉତ୍ତରରେ ନନା କହିଥିଲେ, 'ଦେଶଦଶ ପାଇଁ ଯାହାଙ୍କର ଜୀବନ ଉତ୍ସର୍ଗୀକୃତ, ତାଙ୍କୁ କାହିଁକି ଛୋଟ କଥା କହି ବାଧା ଦେବୁ ?' ଘଟଣାକ୍ରମେ ଭାଇନା ଆସି ଗାଁରେ ପହଞ୍ଚିଲେ ଏବଂ ପଚାରିଲେ, 'ନନାଙ୍କ ଦେହ ଏତେ ଖରାପ ଥିଲା, ମୋତେ ଖବର ଦେଲନାହିଁ କାହିଁକି ?' ଆମେ ସମସ୍ତେ ନୀରବ ରହିଲୁ।

ନନାବୋଉଙ୍କର ସାତଗୋଟି ସନ୍ତାନ ଭିତରୁ ଭାଇନା ଥିଲେ ପ୍ରଥମ ଓ ସର୍ବଶ୍ରେଷ୍ଠ। ତାଙ୍କର ଜୀବନଦର୍ଶନ ଓ ଆଦର୍ଶ ଇତ୍ୟାଦି ନିର୍ଦ୍ଧାରଣ କରିବାରେ ତାଙ୍କ ଉପରେ ପ୍ରତିବନ୍ଧ ନଥିଲା। ତେଣୁ ସେ ତାଙ୍କର ଭାବଗତ ଶୈଳୀରେ ନିଜକୁ ଚଳାଉଥିଲେ। ଅନେକ ବର୍ଷ ପରେ ଥରେ ମୁଁ ତାଙ୍କୁ ପଚାରିଥିଲି, 'ଭାଇନା, ତୁମେ ଯାହାଙ୍କୁ ସବୁ ମଣିଷ କଲ, ସେମାନେ ମନ୍ତ୍ରୀ ହେଲେ, ଶାସନଗାଦିରେ ବସିଲେ, ତୁମକୁ ଖରାପ ଲାଗେନାହିଁ?' ସେ ହସି କରି ଉତ୍ତର ଦେଇଥିଲେ, 'ଆମେ ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କଲାବେଳେ ଏସବୁ ସରକାରୀ ଗାଦିର ସତ୍ତା ନଥିଲା!' ମୋର ମନେ ପଡ଼ିଲା ତାଙ୍କର କବିତା -

ଯାହା ଲାଗି ଲଢ଼ିଲୁ ତୁ, କାରାଗାରେ ସଢ଼ିଲୁ ତୁ,
ଫାଶି ମଞ୍ଚେ ଚଢ଼ିଲୁ ତୁ,
ପାଇଲୁ କି ତା'ରେ ଅବିକଳ
ଆଖି ତୋର କିଆଁ ଛଳଛଳ?

ବିଶ୍ୱମୋହନ ମିଶ୍ର (ବେବି)
ମେ ୨୨, ୨୦୧୭
ବମ୍ବେ, ମହାରାଷ୍ଟ୍ର




୧୯୪୭ରେ ପ୍ରକାଶ ପାଇଥିବା ପ୍ରଚ୍ଛଦ

**ଦେବି ଆଉ ହରୁ,**

ଆମରି ଏଇ ଭାରତ ଭୂଇଁର ଉତ୍ତରରେ ଗୋଟାଏ ଦେଶ ଅଛି । ମାନଚିତ୍ର ଦେଖିଲେ ଜାଣିପାରିବ ଇଉରୋପର ଗୋଟେ ପ୍ରାନ୍ତରୁ ଏସିଆର ଏ ମୁଣ୍ଡ ପର୍ଯ୍ୟନ୍ତ ଲମ୍ବିଛି ସେଇ ଦେଶଟା । ସେଇ ଦେଶ ନାଁ କୁ ଲୋକ ଭଲରେ କହନ୍ତି ରୁଷିଆ । କିନ୍ତୁ ସେହି ଦେଶଟା ଗୋଟାଏ ଦେଶ ନୁହେଁ; ସେଠି ଗୋଟିଏ ଜାତି ବସବାସ କରନ୍ତି ନାହିଁ । ସେହି ଦେଶରେ ଅନେକ ଲୋକ ରୁହନ୍ତି; ଅନେକ ଭାଷା କହନ୍ତି; ସାହେବୀ ଚାଲିଚଳଣ ସେହି ଦେଶରେ ଅଛି । ପୁଣି ଆମରି ଭାରତର ପଞ୍ଜାବ, କାଶ୍ମୀର ଲୋକଙ୍କର ଚାଲିଚଳଣ ବି ଥୋକେ ଜାତିଙ୍କର ଅଛି । ସେହି ଦେଶର ପ୍ରକୃତ ନା ହେଉଛି ପଞ୍ଚାଏତ ଦେଶ ।

ଆଉ ଆଉ ଦୁନିଆର ଯେତେ ଦେଶ ସେଠୁଁ ସେ ଦେଶ ଟିକିଏ ଫରକ । ଟିକିଏ କାହିଁକି — ଆଚ୍ଛା ରକମ ଫରକ । ତେବେ ସାନ ପିଲାମାନେ ଏତିକି ଜାଣିଲେ ଯଥେଷ୍ଟ ହେବ ଯେ ସେଠି ପିଲାମାନେ ମହାସୁଖରେ ରହନ୍ତି । ପିଲାଦିନୁଁ ଖେଳବୁଲ ପାଇଁ ମାଟି ଧୂଳିରେ ଘର ଦେଉଳ ତୋଳନ୍ତି ନାଇଁ । ଭଙ୍ଗା କାଠ ଡ଼ବାରେ ରେଳଗାଡ଼ି କରନ୍ତି ନାଇଁ । କୋଉ କଥା ନ ଜାଣିପାରି ବୋଉକୁ ବା ବାପାଙ୍କୁ ପଚାରିଲେ ମାଡ଼ ଖାଆନ୍ତି ନାଇଁ ।

ସେଠି ପିଲାଟି ଜନ୍ମ ହେଲା ଦିନୁଁ ତା'ର ଖେଳିବା ବୁଲିବା ପାଇଁ ସରକାର ଘର ତୋଳିଛି । ତା'ପାଇଁ ସତ ସତ ଟିକି ମଟର ଗାଡ଼ି ତିଆରି କରିଛି, ରେଳଗାଡ଼ି କରିଛି । ଯେଉଁ ରେଳଗାଡ଼ିରେ ୮।୯ ବର୍ଷର ପିଲେ ଷ୍ଟେସନ ମାଷ୍ଟର ହୁଅନ୍ତି, ଟିକଟ ବିକନ୍ତି, ଗାର୍ଡ଼ ସାହେବ ହୁଅନ୍ତି, ନାଲି ନେଳି ନେତ ଉଡ଼ାଇ ଗାଡ଼ିକୁ ରୋକନ୍ତି, ଛାଡ଼ନ୍ତି । ପିଲାଙ୍କର ଟିକି ଇଞ୍ଜିନ୍, ଟିକି ଡ଼ବା, ଟିକି ରେଳ ଷ୍ଟେସନ । ସେଠି ପିଲାଙ୍କ ଟିକି ମୋଟର ଘର, ବାୟସ୍କୋପ, ଟିକି କାରଖାନା ଆଉ ପହଁରିବା ପୋଖରୀ । ସେହି ଦେଶର ପିଲାଙ୍କୁ ଏପରି ହେପାଜତ କରାହୁଏ ।

ଆମର ଏଠି ୮ ବର୍ଷ ପୁରିଲେ ମୂଲିଆ ପିଲା ବିଡ଼ି ବଳେ, ଚିନାବାଦାମ ବିକେ, ଷ୍ଟେସନ ପାଖରେ ରାସ୍ତା କଡ଼ରେ ଅଇଁଠା ପୁରୀ ବା ପୋଡ଼ା ବିଡ଼ି ମାଗିଯାଚି ଖାଏ,

୧୦।୧୨ ବର୍ଷର ପିଲା ବାସନ ମାଜେ । ଖଣିର ଅନ୍ଧାର ଭିତରୁ କୋଇଲା ବୋହି ଉପରକୁ ଆଣେ । ସେଠି ଏମିତି ଚଳଣି ଚଳେ ନାହିଁ ।

ଆମର ଏଠି ସାନ ପିଲା ଅଝଟ ହେଲେ ମାଆମାନେ ତାକୁ ଡ଼ରାନ୍ତି । କୋକମିନା, ଭୂତ, ବାୟା, ଡ଼ାହାଣୀ ନାନା ଭୟ କଥା କହି ତା ମନକୁ ଛାନିଆ କରି ଦିଅନ୍ତି । ସେଠି ଏମିତି ଚଳଣି ଚଳେ ନାହିଁ ।

କିନ୍ତୁ ସେଠି ବି ପିଲେ ଅଝଟ ହୁଅନ୍ତି; ସେଠି ବି ପିଲେ ଗପ ଶୁଣିବାକୁ ଭଲ ପାଆନ୍ତି । ତାଙ୍କ ପାଇଁ ଗପ ଲେଖା ହୁଏ ।

ଯେଉଁ ଗପଟି ମୁଁ ତୁମ ହାତରେ ଦେଲି ଏଇଟା ସେପରି ଗୋଟିଏ ଗପ । ରୁଷିଆର ଜଣେ ବଡ଼ ଲେଖିଲାବାଲା ଏହାକୁ ଲେଖିଛନ୍ତି । ଏଇ ଗପଟା ସତ, ଏଥିରୁ ତୁମେ ବୁଝିବ ଆମ ମଣିଷମାନେ କିପରି ଏ ଦୁନିଆରେ ପହଞ୍ଚିଲେ । ତା'ର ଘଟଣା, କିନ୍ତୁ ଏଇ ଗପଟି ଅବିକଳ ସେଇ ପୁରୁଣା କାହାଣୀ ପରି ତୁମ ମନରେ ଲାଖିଯିବ ।

ଏଥିରେ ତୁମେ ଦେଖିବ ଗୋଟେ ଅସୁର ଅଛି । ସେ ଅସୁର କିପରି ଜନ୍ମ ହେଲା; କିପରି ଅସୁର ହେଲା, ତାର ସବୁ କଥା ଏଥିରେ ରହିଚି ।

କେତେଥର ତୁମେ ମୋ ସାଙ୍ଗରେ ଅଳି ଲଗେଇଚ ''ଭାଇନା, କହ ଅନନ୍ତ ରାଜା କଥା,'' ''କହ ବିଲୁଆ ମହାବଳ କଥା'' କିନ୍ତୁ ଏଇଥିରେ ରୁଷିଆର ଏହି ଲେଖାଳି **ମିଖାଇଲ ଏଲିନ୍** ତୁମକୁ ଆମରି ନିଜ କଥା କହିଛନ୍ତି । ତାକୁ ମୁଁ କେବଳ ଆମରି ଭାଷାର ଛାଞ୍ଚରେ ଢ଼ାଳିଚି ।

ବହିଟି ବଡ଼ ହୋଇ ଯାଇଛି । କିନ୍ତୁ ଯେତେ ପଢ଼ିବ ତୁମ୍ଭେମାନେ ଜାଣିବ, ଏ ବହିଟି କେଡ଼େ ସହଜ । ଏ ବହି ପଢ଼ିଲା ପରେ ତୁମେ ଦେଖିବ ତୁମକୁ ଆଉ ଭୂତ ଗପ ଭଲ ଲାଗିବ ନାହିଁ ।

ତୁମର

**ଭାଇନା**

**(ଶ୍ରୀ ମନମୋହନ ମିଶ୍ର)**

# ଏ ପୃଥିବୀରେ ଜଣେ ରାକ୍ଷସ ଅଛି ଜାଣ ?

ତା'ର ହାତରେ ଏତେ ଜୋର ଯେ, ଅକ୍ଳେଶରେ ସେ ବଡ଼ ବଡ଼ ରେଳଗାଡ଼ି ଟାଣି ସାନ ପିଲାଙ୍କୁ ମା' ଉପରକୁ ଉଠେଇଲା ପରି ଉଠେଇ ନେଇ ପାରେ ।

ତାର ଏପରି ପାଦ ଯେ, ସେ ଏକ ଦିନରେ ହଜାର ହଜାର ମାଇଲ୍ ଦୂର ଯାଇ ପାରେ ।

ତାର ଡ଼େଣା ଏପରି ଯେ ସେ ଇଚ୍ଛା କଲେ ମେଘର ଉପର ଦେଇ ପକ୍ଷୀମାନେ ଉଡ଼ିବା ସ୍ଥାନ ଠାରୁ ଆହୁରି ଉଚ୍ଚକୁ ମଧ ଉଡ଼ିଯାଇ ପାରେ । ତାହାର ଏପରି ସୁନ୍ଦର କାତି ଯେ ସେ ଯେ କୌଣସି ମାଛପରି ମଧ ପାଣି ଭିତରେ ଏବଂ ପାଣି ଉପରେ ଅନାୟାସରେ ପହଁରି ପାରେ ।

ଯାହା ସାଧାରଣତଃ ଦେଖାଯାଏ ନାହିଁ, ଏପରି ସବୁ ଜିନିଷ ତା ଆଖିରେ ସହଜରେ ପଡ଼େ । ପୃଥିବୀର ଏକ ପ୍ରାନ୍ତର କଥା, ଆଉ ଏକ ପ୍ରାନ୍ତରେ ବସି ମଧ ସେ ଶୁଣି ପାରେ । ତା ଦେହରେ ଏତେ ଜୋର୍ ଯେ ସେ ସହଜରେ ପାହାଡ଼ ଭିତର ଦେଇ ଯାଇ ପାରେ । ଇଚ୍ଛା କଲେ ସେ ପ୍ରକାଣ୍ଡ ପ୍ରକାଣ୍ଡ ଜଳ ପ୍ରପାତକୁ ମଝି ବାଟରେ ଅଟକେଇ ଦେଇ ପାରେ । ସେ ନିଜର ସୁବିଧା ମୁତାବକ ପୃଥିବୀକୁ ତିଆରି କରି ନିଏ । ଜଙ୍ଗଲ କାଟି ଫଳମୂଳ, ପନିପରିବା ବଗିଚା କରେ । ଗୋଟିଏ ସମୁଦ୍ର ସଙ୍ଗେ ଆଉ ଗୋଟେ ସମୁଦ୍ରକୁ ଯୋଗ କରେ । ମରୁଭୂମିରେ ପାଣି ଦେଇ ତାକୁ ଶସ୍ୟଶ୍ୟାମଳା କରେ । ତୁମ୍ଭେମାନେ କହିବ ସେ ରାକ୍ଷସ କିଏ ? ଏଇ କଥା ନା ? ସେ ରାକ୍ଷସ ହିଁ ହେଉଛି ମଣିଷ । ଆଚ୍ଛା; ମଣିଷ କିପରି ଏଡ଼େବଡ଼ ରାକ୍ଷସ ହେଲା । ଏ ବହିରେ ସେହି କଥାହି ମୁଁ ତୁମକୁ କହିବି ?

## ପିଞ୍ଜରାରେ

ଏମିତି ଗୋଟିଏ ଦିନ ଥିଲା, ଯେତେବେଳେ ମଣିଷ ପ୍ରକୃତରେ ରାକ୍ଷସ ନ ଥିଲା, ସେ ଥିଲା ଭାରି ଛୋଟ, ଏକାବେଳକେ ବାମନ । ତା' ଚାରିଦିଗରେ ଏପାଖେ ସେପାଖେ କୌଣସି ରକମ କାହା ଉପରେ ତାହାର ଟିକେ ହେଲେ ଅଧିକାର ନ ଥିଲା । ସେ ଥିଲା ସବୁର ଅନୁଗତ ଚାକର ପରି ।

ଯେ କୌଣସି ପଶୁ ପକ୍ଷୀ ପରି ପ୍ରକୃତି ଉପରେ ତାର କୌଣସି ହୁରି ଢୁରି ଖଟୁ ନ ଥିଲା, ଏକ କଥାରେ ବିନ୍ଦୁ ମାତ୍ର ସ୍ୱାଧୀନତା ତାହାର ନ ଥିଲା । ତୁମ୍ଭେମାନେ କହିବ ଆଚ୍ଛା କିପରି ସ୍ୱାଧୀନତା ନ ଥିଲା । ଇଚ୍ଛା କଲେ କ'ଣ ଗୁଣ୍ଡିଚି ମୂଷା ଗୋଟେ ଗଛରୁ ଆଉ ଗୋଟେ ଗଛକୁ ଡ଼େଇଁ ଯାଏ ନାହିଁ! ସେ ତ ଆଉ ପଞ୍ଜୁରିରେ ଅଟକି ନ ଥାଏ । କାଠହଣା ଥଣ୍ଟରେ ଗଛ ହାଣେ ବୋଲି ସେ କ'ଣ ଗଛ ସାଙ୍ଗେ ବନ୍ଧା ହୋଇଥାଏ ?

ମୋ କଥାଟା ଶୁଣି ହସ ମାଡ଼ିଲା, ନୁହେଁ ? କାରଣ ସତେ ତ କେହି କାଠହଣା କି ଗୁଣ୍ଡୁଚିମୂଷାକୁ ପଞ୍ଜୁରିରେ ଧରି ରଖେ ନାହିଁ । କିନ୍ତୁ ଏମାନେ ସମସ୍ତେ ଏକ ପଞ୍ଜୁରିରେ ବନ୍ଧା । କେହି କେଉଁ ଦିନ ସେ ପଞ୍ଜୁରିକି ଦେଖି ମଧ ପାରିବ ନାହିଁ । ସେ ଏକ ଅଦେଖା ମାୟା ପ୍ରଞ୍ଜରି । ଏପରି ଦିନ ଥିଲା, ଯେତେବେଳେ ମଣିଷ ମଧ ଏପରି ଏକ ମାୟା ପଞ୍ଜୁରିରେ ଏବଂ ମାୟା ଶିକୁଳିରେ ବନ୍ଧା ଥିଲା । ଯଦି ଦେଖିବାକୁ ଚାହଁ କି ପ୍ରକାର ପଞ୍ଜୁରିରେ ଆଉ କି ଶିକୁଳିରେ ବନ୍ଧା ଥିଲା ଏବଂ କିପରି ବା ତା'ର ଶିକୁଳି ଛିଣ୍ଡାଇ ବାହାରିଲା । ବଣ ଜଙ୍ଗଲରେ ମଣିଷର ଯେଉଁ ସବୁ ବନ୍ଧୀ କୁଟୁମ୍ବ ରହିଛନ୍ତି, ତାଙ୍କର ଅବସ୍ଥା ଦେଖିଲେ ବୁଝି ପାରିବ । ତେଣୁ ମଣିଷର କଥା କହିବା ପୂର୍ବରୁ ଏ ବହିରେ ଜଙ୍ଗଲର ଜନ୍ତୁ ଜାନୁଆରଙ୍କ କଥା କହିବାକୁ ହେବ ।

## ପକ୍ଷୀପରି ସ୍ୱାଧୀନ

ଲୋକେ କଥାକଥାକେ କହନ୍ତି ପକ୍ଷୀପରି ସ୍ୱାଧୀନ, କିନ୍ତୁ ତୁମେମାନେ କି ସତେ ମନେକର କାଠହଣା ସ୍ୱାଧୀନ ? ସ୍ୱାଧୀନ ହେଲେ ତ ସେ ଯୋଉଠିକି ଖୁସି ସେଇଠିକି ଯାଇ ପାରନ୍ତା; ଯୋଉଠି ଇଚ୍ଛା ସେଇଠି ବାସ କରିପାରନ୍ତା । କିନ୍ତୁ କାଠହଣାକୁ ବଡ଼ ବଡ଼ ଗଛ ନ ଥିବା ଜାଗାରେ ଛାଡ଼ି ଦେଲେ ଦେଖିବ, ସେ ମରିଯିବ; ଗଛ ନ ହେଲେ ସେ ବଞ୍ଚିପାରିବ ନାହିଁ । ସେ ଯେପରି ଏକ ଅଦେଖା ଶିକୁଳିରେ ଗଛ ସଙ୍ଗେ ବନ୍ଧା ହୋଇରହିଛି ।

ଖାଲି କାଠହଣା କାହିଁକି ଏମିତି ଆହୁରି ଅନେକ ପକ୍ଷୀ ଅଛନ୍ତି, ଯେଉଁମାନେ ଏପରି

ଅଦେଖା ଶିକୁଳିରେ ବନ୍ଧା ପଡ଼ି ଅଟକି ରହିଛନ୍ତି । ସେମାନଙ୍କ ଚାରିପାଖରେ ଯେପରି ପାଚିରୀ ବେଢ଼ା, ତା'ର ବାହାରକୁ ଉଡ଼ି ଯିବାର କ୍ଷମତା ସେମାନଙ୍କର ନାହିଁ ।

## ଜଙ୍ଗଲରେ ବୁଲିବା ବେଳେ

ବଣ ଜଙ୍ଗଲରେ ବୁଲିବାକୁ ଗଲେ ବାଟରେ ଏପରି ଅଦେଖା ପାଚିରୀ ବହୁତ ଆଖିରେ ପଡ଼ିବ । ଚିଡ଼ିଆଖାନା ପରି ପ୍ରତ୍ୟେକ ଜଙ୍ଗଲ ବି ଏପରି ନାନା ରକମର ଖୁଆଡ଼ ଆଉ ପିଞ୍ଜରାରେ ଭର୍ତ୍ତି । ଜଙ୍ଗଲରେ ପଶିଲେ ଦେଖିବ, ଜଙ୍ଗଲର ରୂପ ଆସ୍ତେ ଆସ୍ତେ ବଦଳୁଛି । କେତେବେଳେ ଦେଖିବ ଦେବଦାରୁ ଗଛ ମଧ୍ୟରେ ତୁମେ ରହିଛ । କେତେବେଳେ ଦେଖିବ ଉଚ୍ଚା ଉଚ୍ଚା ଝାଡ଼ ଏମିତି କେତେପ୍ରକାର ଗଛ, କୋଉଟା ବଡ଼ କୋଉଟା ଛୋଟ । ଏମିତି ଖାଲି ଖାଲି ବୁଲିବା ପାଇଁ ଜଙ୍ଗଲ ଦେଖି ବୁଲିଲେ ସେମିତି କିଛି ଆଖିରେ ପଡ଼ିବ ନାହିଁ । କିନ୍ତୁ ଯଦି କୌଣସି ପୁରୁଖା ଲୋକକୁ ପଚାରିବ ସେ କହିବେ ଏ ଗୁଡ଼ାକ ଭିନ୍ନ ଭିନ୍ନ ଜଙ୍ଗଲ । ଚିଡ଼ିଆଖାନା ପରି ଯଦି ନାନା ପ୍ରକାର ଚିହ୍ନ ଏ ଜଙ୍ଗଲ ଦେହରେ ମାରିଦିଆ ଯାଆନ୍ତା, ତାହା ହେଲେ ଦେଖନ୍ତ ଯେ ଶାଳ ଜଙ୍ଗଲରେ ଥାଆନ୍ତି କାଠହଣା, କାଠ ବିରାଡ଼ି, ଆଉ ଗୁଣ୍ଡୁଚି ମୂଷା ଆଉ ଅନେକ ପ୍ରକାର ଜୀବ । ପାଇନ୍ ବା ଦେବଦାରୁ ବଣରେ ମିଳନ୍ତେ ଥ୍ରସ୍ ପକ୍ଷୀ, ଚର୍କରଦିଆ, କାଠହଣା ଏପରି ସବୁ ।

ପ୍ରତ୍ୟେକ ଜଙ୍ଗଲହିଁ ମସ୍ତ ବଡ଼ ପିଞ୍ଜରାପରି । ତା' ମଧ୍ୟରେ ରହିଛି ଛୋଟ ଛୋଟ ଖୁଆଡ଼ । ବଡ଼ ବଡ଼ ଘର ଯେପରି ଦୋତାଲା, ତିନିତାଲା ହୁଏ ସେପରି ଜଙ୍ଗଲ ମଧ ଭିନ୍ନ ଭିନ୍ନ ମହଲାରେ ଭାଗ ହୋଇଥାଏ । ଯେପରି ଦେଖ – ଦେବଦାରୁ ଗଛର ଜଙ୍ଗଲ, ପ୍ରାୟ ତାହା ଦୋ' ମହଲା, ଖୁବ୍ ଜୋରରେ ତିନି ମହଲା ହୁଏ । ଆଚ୍ଛା ଏକ ମହଲାରେ ଥାଏ ଘାସ ଆଉ ଶିଉଳି । ଛୋଟ ଛୋଟ ଝୋପ ଆଉ ବୁଦା ଦୁଇ ମହଲାରେ ଥାଆନ୍ତି । ତିନି ମହଲାରେ ଥାଏ ଖାଣ୍ଟି ଦେବଦାରୁ । ଓକ୍ ବୋଲି ଗୋଟେ ପ୍ରକାରର ଗଛ ଅଛି । ସେ ଗଛ ସାତ ମହଲା ପର୍ଯ୍ୟନ୍ତ ଯାଏ । ଏକବାରେ ଉଚ୍ଚ ସାତ ମହଲାରୁ ଓକ୍ ଗଛ ତଳକୁ ପତ୍ର ମେଲି ଜଙ୍ଗଲକୁ ଛାଇ ଦିଏ । ବର୍ଷାକାଳରେ ସେ ଶାଗୁଆ, ଆଉ ଶରତ କାଳରେ ନାନା ପ୍ରକାର ପତ୍ରରେ ଭର୍ତ୍ତି । ଓକ୍ ଗଛର ମଝି ମଝିକା ଥାଏ ଜଙ୍ଗଲି ଆତ ଗଛ, ନ ହେଲେ ଡ଼ାଳିମ୍ବ ଗଛ । ଆହୁରି ତଳେ ପାଞ୍ଚ ମହଲାରେ ଥାଏ ହେଜେଲ୍ ଲଟା, ହଥର୍ଣ ଗଛ ଆଉ ଏପରି ଅନେକ। ଏହା ତଳେ ଥାଏ ଘାସ ଆଉ ଫୁଲ । ଏ ଗୁଡ଼ାକୁ ପୁଣି ଆହୁରି କେତେ ମହଲାରେ ଭାଗ କରାଯାଇ ପାରେ । ସମସ୍ତଙ୍କ ଉପରେ ଅର୍ଥାତ୍ ଆମ ହିସାବ ଅନୁସାରେ ଚାରି ମହଲାରେ ଥାଏ 'ବେଲ' । ତିନି ମହଲାରେ ଫର୍ନ ଗଛର ଫାଙ୍କରେ

ପର୍ବତ କଇଁ ଫୁଲ ଫୁଟେ । ଦୁଇ ମହଲାରେ ଫୁଟେ ଭାଓଲେଟ ଫୁଲ ଏବଂ ଏକମହଲାରେ ଥାଏ ପତ୍ର ବାଲା ଶିଉଳି । ଏକ ମହଲା ତଳେ ମଧ ଥାଏ ଗଛର ଗଣ୍ଡି ଏହି ସବୁ ବିଭିନ୍ନ ମହଲାରେ ପ୍ରତ୍ୟେକଟିରେ ବିଭିନ୍ନ ଭଡ଼ାବାଲା ଅଛନ୍ତି । ସାତ ମହଲାକୁ ଭଡ଼ା ନେଇଛି ଚିଲ । ତା ତଳ ମହଲାରେ ଥାଏ କାଠହଣା । ପାଞ୍ଚ ମହଲାର ପକ୍ଷୀମାନେ ଗୋଟା ଜଙ୍ଗଲକୁ ତାଙ୍କର କାକଳି ଏବଂ ସିଟୀରେ ଭରି ରଖନ୍ତି । ଏକ ମହଲାର ଭଡ଼ାବାଲା ହେଉଛି ଜଙ୍ଗଲି କୁକୁଡ଼ା। ସେମାନେ ମାଟିରେ ଚରି ବୁଲନ୍ତି । ଏକ ମହଲାର ତଳେ ମଧ ମାଟିରେ ଗାତ ଖୋଳି ରହେ ଗାତୁଆ ମୂଷା ।

ଏହି ପ୍ରକାଣ୍ଡ ସାତ ମହଲା ଘରରେ ଗୋଟେ ଗୋଟେ ମହଲା ପୁଣି ଆଉ ଗୋଟେ ଗୋଟେ ପ୍ରକାରର । ସାତ ମହଲାରେ ଖୁବ୍ ଆଲୁଅ ପବନ । ଏଣେ ଏକ ମହଲା ଅନ୍ଧାର ଆଉ ସନ୍ତସନ୍ତିଆ । ଶୀତକାଳରେ ରହିବା ପାଇଁ ମାଟିରେ ଗାତ ଖୋଳିବାକୁ ହୁଏ । ମାଟିରେ ଗାତ ଖୋଳିଲେ ଦେଖିବ ଖୁବ୍ ଶୀତ ସମୟରେ ମଧ ଗାତ ଭିତରେ ବେଶ୍ ଗରମ । ଓକ ଗଛର କାଣ୍ଡ ଭାରି ଥଣ୍ଡା । ଶୀତ ସମୟରେ ସେଠି କେହି ରହିଲେ ଜମାଟ ବାନ୍ଧିଯିବ । ତେଣୁ ଗରମ ସମୟରେ ଗଛଟା ବେଶ୍ ଆରାମ । ଏହି ସବୁ ଯାଗାମାନଙ୍କରେ ପେଚା, ବାଦୁଡ଼ି ବହୁତ ରହନ୍ତି । ଦିନ ବେଳ ଯାକ ସେମାନେ କୌଣସି ମତେ ଗାଳିପାତି କଟେଇ ଦେଇ ରାତିରେ ଖାଇବା ଖୋଜିବାକୁ ବାହାରନ୍ତି । ବାହାରେ ମଣିଷ ପ୍ରାୟ ଘର ବଦଳାଏ । କିନ୍ତୁ ଜଙ୍ଗଲରେ ଜନ୍ତୁମାନେ ମୋଟେ ଘର ବଦଳାଇ ପାରନ୍ତି ନାହିଁ । କାରଣ ଆଗେ କହିଛି, ଜଙ୍ଗଲର ଜୀବମାନେ କେହି ସ୍ୱାଧୀନ ନୁହନ୍ତି, ସେମାନେ ସମସ୍ତେ ବନ୍ଦୀ । ସେମାନେ ଯୋଉଠି ଥାଆନ୍ତି, ସେଇଟା ସେମାନଙ୍କର ଜେଲ୍‌ଖାନା । ତଳର ଜଙ୍ଗଲୀ ମିରିଗ ସେହି ଥଣ୍ଡା ସନ୍ତସନ୍ତିଆ ଏକ ମହଲା ଛାଡ଼ି କେବେ ହେଲେ ଉପରର ଆଲୁଅ ପବନକୁ ଯାଇ ପାରିବ ନାହିଁ । କିନ୍ତୁ କାହିଁକି ଏପରି ହୁଏ କହିପାରିବ ? କାହିଁକି ସବୁ ଜଙ୍ଗଲୀ ଜୀବ ଆପଣା ଅପଣାର ଜଙ୍ଗଲର ପିଞ୍ଜରାରେ ବନ୍ଦୀହୋଇ ରହିଥାଏ । କିଏ କାହିଁକି ନିଜର ପିଞ୍ଜରା ଛାଡ଼ି ଆଉ କୋଉଠି ଯାଇଁ ବାସ କରିପାରେ ନାହିଁ । କାହିଁକି ଯାଇଁ ବାସକରି ପାରେ ନାହିଁ ?

## କ୍ରସ୍‌ବିଲ୍‌କୁ ପଚାର

ଶୁଆ ପରି ଚଢ଼େଇ କ୍ରସବିଲ୍ । ଫର୍ ଗଛରେ ଥାଏ । ସେ କ'ଣ ଭାବେ ଏବଂ କ'ଣ ଖାଏ ଏବଂ କିପରି ଦିନ କଟାଏ ଦେଖାଯାଉ । ତାକୁ ଦେଖା କରିବାର ଭଲ ସମୟ ହଉଛି ସକାଳ, ଜଳଖିଆ ବେଳ, ନୋହିଲେ ଦିପହର ଖିଆପିଆ ବେଳ । ଅବଶ୍ୟ

କେତେବେଳେ ଯେ ତାର ଜଳଖିଆ ସରି ଖିଆପିଆ ଆରମ୍ଭ ହୁଏ ସେକଥା କହିବା ଖୁବ କଠିଣ । ଖାଇବା ପାଇଁ ଆମଠଉଁ ତାକୁ ବହୁତ ବେଶୀ ସମୟ ଲାଗେ । କ୍ରସବିଲ ପକ୍ଷୀ ସାହେବଙ୍କ ପରି ଖାଇଲାବେଳେ କଣ୍ଟା ଓ ଛୁରୀ ବ୍ୟବହାର କରେ ନାହିଁ । ତାର ଯନ୍ତ୍ରପାତି ଭିତରେ ସମ୍ବଳ ହଉଚି ଜୋଡ଼େ ସୁନ୍ଦର ସଣ୍ଟୁଆସି । ତାହାରି ଦ୍ୱାରା ସେ ଖୁବ୍ ଟାଣ ଟାଣ ବାଦାମ ଅକ୍ଳେଶରେ ଭାଙ୍ଗି ଭିତରର ଶସ ଖାଇ ପାରେ । ଆଉ ଏ ଯନ୍ତ୍ର ତାହାର ହଜି ଯିବାର କୌଣସି ଭୟ ନାହିଁ । ନିଜର ଥଣ୍ଟହିଁ ତାହାର ସଣ୍ଟୁଆସି । ହଜାର ହଜାର ବର୍ଷ ଏ ଫର୍ ଗଛରେ ରହିବା ଫଳରେ ଫର୍ ବାଦାମ୍ ଖୁବ୍ ଭଲ କରି ଭାଙ୍ଗିବା ପାଇଁ ତା ଥଣ୍ଟକୁ ସେ ପଜେଇ ଦେଇଛି । ଅବଶ୍ୟ ବହୁକାଳ ଚେଷ୍ଟାରେ ଧୀରେ ଧୀରେ ସେ ସଫଳ ହୋଇ ପାରିଛି । ତା ପରେ ଏଣିକି ଫର୍ ଗଛର ମଧ ତାହା ବିନା ଚଳିବା ଅସମ୍ଭବ । ସେ ନ ହେଲେ ନ ଚଳେ । କାରଣ ଭଙ୍ଗା ବାଦାମର ଖଣ୍ଡ ଏଣେ ତେଣେ ନ ପଡ଼ିଲେ ଫର୍ ଗଛ ଜନ୍ମିବ କେମିତି ? ଆଉ ନୂଆ ନୂଆ ଫର୍ ଗଛ ନ ଜନ୍ମିଲେ କ୍ରସ୍‌ବିଲ୍‌ର ପିଲା କବିଲାଙ୍କର ମଧ ଚଳିବ ବା କେମିତି । ଏହି କାରଣରୁ ଫର୍ ଗଛ ଆଉ କ୍ରସ୍‌ବିଲ ଚଢ଼େଇର ଏମିତି ଗୋଟାଏ ଅଛିଣ୍ଡା ବନ୍ଧନ ରହି ଆସିଅଛି ।

ଫର୍ ଗଛର କ୍ରସବିଲ୍ ପକ୍ଷୀର ଇଚ୍ଛା ହେଉଥିବ ତା'ର ନିକଟ ଆତ୍ମୀୟ ପାଇନ୍ କ୍ରସ୍‌ବିଲ୍‌ର ଘରକୁ ଯାଇ ରହନ୍ତା; କିନ୍ତୁ ସେ ତାହା କରିପାରିବ ନାହିଁ । ଏହାର କାରଣ, ଫର୍ କ୍ରସ୍‌ବିଲ୍‌ର ଥଣ୍ଟ ଖାଲି ଫର ବାଦାମକୁ ଯେପରି ଭାଙ୍ଗି ପାରିବ ଏପରି ଭାବରେ ଗଢ଼ା ଯାଇଛି; କିନ୍ତୁ ସେ ଥଣ୍ଟରେ ପାଇନ୍ ବାଦାମ ପରି ଶକ୍ତ ଜିନିସ ଭାଙ୍ଗିବା ଅସମ୍ଭବ । ପାଇନ୍ ବାଦାମ ଭାଙ୍ଗିବା ପୁଣି ପାଇନ୍ କ୍ରସ୍‌ବିଲ୍‌ର ଏକଚାଟିଆ କାମ । ଏଇ କାରଣରୁ ହିଁ ଫର୍ କ୍ରସ୍‌ବିଲ୍ ଫର୍ ଗଛରେ ଏବଂ ପାଇନ୍ କ୍ରସ୍‌ବିଲ୍ ପାଇନ୍ ଗଛରେ ଥାଏ । ସେମାନେ ଆପଣାର ଖିଆଲ୍ ଅନୁସାରେ କିଛି କରନ୍ତି ନାହିଁ । ଦରକାର ହୋଇଛି ବୋଲି ସିନା ସେମାନଙ୍କ ଭିତରୁ କିଏ ଅଛି ଫର ଗଛରେ କିଏ ଅଛି ପାଇନ୍ ଗଛରେ ।

ଏମାନଙ୍କର ଯେପରି ସ୍ୱାଧୀନତା ନାହିଁ ସେପରି ନ ଖାଇ ମରିବାର ଭୟ ମଧ ନାହିଁ । କିବା ଗ୍ରୀଷ୍ମ କିବା ଶୀତ, କେତେ ବେଳେ ଫର ବା ପାଇନ୍ ବାଦାମର ଅଭାବ ନାହିଁ । ଶୀତ ଦିନେ ମଧ କ୍ରସ୍‌ବିଲ୍ ପକ୍ଷୀମାନେ ଫର୍ ଗଛ ଛାଡ଼ି ଅନ୍ୟ କୁଆଡ଼େ ଯାଆନ୍ତି ନାହିଁ । ସେମାନଙ୍କର ଖାଇବା ପରି ପ୍ରଚୁର ବାଦାମ ସେଇ ପ୍ରଚଣ୍ଡ ଶୀତ ବେଳେ ବି ଫର୍ ଗଛରେ ମହଜୁତ ଥାଏ ।

## ବଣର କଇଦୀ

ଠିକ ଏହି ଭାବରେ ଯଦି ବଣ ଜଙ୍ଗଲର ପ୍ରତ୍ୟେକ କଇଦୀକୁ ବିଚାର କରିବା ତାହାହେଲେ ଆମେ ଦେଖିବା ଯେ ସେମାନେ ସମସ୍ତେ ଆପଣା ଆପଣା ଜଙ୍ଗଲରେ ଯେ ଯେଝା ମହଲାରେ ଆଖିଦୃଶିଆ ଜିନିଷ ବାହାରେ ଥିବା ଏପରି ଏକ ଶିକୁଳିରେ ବନ୍ଧା ହୋଇ ରହିଚନ୍ତି, ଯାହାକୁ ଛିଣ୍ଡାଇବା ସହଜ ନୁହେଁ ।

ବଣ କୁକୁଡ଼ା ଥାଏ ଏକ ମହଲାରେ । କାରଣ ତା'ର ଖାଇବା ଜିନିଷ ଥାଏ ମାଟିର ତଳେ ଗାତ ଭିତରେ । ଲମ୍ବା ଥଣ୍ଟ ଦେଇ ମାଟିର ପୋକ ଖୁଣ୍ଟି ଖାଇବା ତା ପକ୍ଷରେ ଖୁବ୍ ସହଜ । ଗଛରେ ଥିଲେ ସେ ଯେ କଣ କରନ୍ତା, ସେ କଥା ଭାବ ! ସେହି କାରଣରୁ ବଣ କୁକୁଡ଼ା କେବେ ଗଛ ଗଛ ବୁଲେ ନାହିଁ, ସେପରି କାଠହଣା ମଧ୍ୟ ମାଟିରେ ଓହ୍ଲାଇଲେ କ'ଣ ଯେ କରିବ ତାହା ଜାଣି ନ ପାରି ଗଛ ଗଛରେ ବୁଲୁଥାଏ । କେବେ କେବେ କାଠହଣା ହୁଏତ ସାରା ଦିନଟା ଗୋଟେ ଫର୍ ଗଛର ଚାରିପାଖେ ବୁଲି ବୁଲି ହଇରାଣ ହୁଏ । କାଠହଣାମାନେ କ'ଣ ଦିନଯାକ କାଠହାଣୁ ଥାଆନ୍ତି ?

ଫର୍ ଗଛର ବକଳା ଯଦି ଛଡ଼େଇ ନେଇ ପାରିବ ତେବେ ଦେଖିବ ସେଇ ବକଳାର ତଳେହିଁ ସମସ୍ତ କାଣ୍ଡର ଚାରିପାଖ ବେଢ଼ି ବଙ୍କା ଟଙ୍କା ଧାଡ଼ି ଧାଇଁଛି । ଫର୍ ଗଛର ଦେହରେ ଗୋଟେ ପ୍ରକାର ପୋକ ଏହି ଲାଇନ୍ କରନ୍ତି । କିନ୍ତୁ କିଛି ବାଟ ଯାଇ ଗୋଟିଏ ଗାତ ଦିହରେ ଏ ଲାଇନ ସବୁ ମିଶିଥାନ୍ତି । ସେହି ଗର୍ତ୍ତରେ ପୋକଗୁଡ଼ିକର ଛୁଆ ଥାଆନ୍ତି । ସେଇ ସବୁ ଛୁଆ ଏଇ ଗାତରୁହିଁ କ୍ରମେ ଗୋଟିଏ ଖୋଳପାରୁ ବଡ଼ ବଡ଼ ପୋକ ହୋଇ ଉଠନ୍ତି । ଏଇ ଉଇଭିଲ୍ ପୋକ ଫର ଗଛରେହିଁ ରହି ପାରନ୍ତି । ଏଇଟା ତାଙ୍କର ଅଭ୍ୟାସ । ପୁଣି କାଠହଣାର ମଧ୍ୟ ଏ ପୋକ ନ ହେଲେ ନ ଚଳେ । ଏଇ ଗାତ ଭିତରେ ଯେପରିଭାବରେ ପୋକର ଗୋଟିମାନେ ଲୁଚି ଥାନ୍ତୁ; ମସ୍ତବଡ଼ ମୋଟା ଥଣ୍ଟ ଆଉ ଜିଭର ଜୋରରେ କାଠହଣା ସେହି ଗାତ ଭିତରୁ ସେମାନଙ୍କୁ ବାହାରକରି ନେଇ ଆସେ ।

ଆମେ ଏଥର ପାଇଲୁ ଫର ଗଛ, ଇଉଭିଲ୍ ପୋକ, କାଠହଣା, ଏଇ ତିନି ଯୋଡ଼ା ଶିକୁଳି । ବିଜ୍ଞାନୀମାନେ ଏହାକୁ କହନ୍ତି "ଖାଦ୍ୟ ଶୃଙ୍ଖଳ" । ବଣର କଇଦୀମାନେ ଏଇ ଶିକୁଳିରେ ବନ୍ଧା ପଡ଼ିଛନ୍ତି । ମାଂସାଶୀ ବଣୁଆ ମାର୍ଟେନ ଜନ୍ତୁର କଥା ନିଅ । ସେ ବଣରେ କିଆଁ ଥାଏ ? କାରଣ ତାର ପୁଣି ଗୋଟିଏ ବଣୁଆ ଜୀବ କାଠ ବିରାଡ଼ି ନ ହେଲେ ନ ଚଳେ ? କାଠ ବିରାଡ଼ି ଜଙ୍ଗଲରେ ଥାଏ କାହିଁକି ? ଜଙ୍ଗଲ ଛଡ଼ା ତା'ର ଅନ୍ୟ କୌଣସିଠି

ଖାଇବାକୁ ମିଳେ ନାହିଁ ବୋଲି । ଥରେ କେତେଜଣ ବଣୁଆ କାଠ ବିରାଡ଼ିର ପେଟ ଚିରି ଦେଖୁ ଥିଲେ,ସେମାନେ କ'ଣ ଖାନ୍ତି । ଦେଖାଗଲା ତାଙ୍କର ପେଟରେ ରହିଛି ଛତୁ ଆଉ ଫର ବାଦାମ, ତାହା ହେଲେ ଆମ୍ଭେମାନେ ଏଥର ପାଇଲୁ ମାର୍ଟେନ, କାଠ ବିରାଡ଼ି, ବେଙ୍ଗ, ଛତୁ, ଫର ବାଦାମ ।

ଏପରିଭାବରେ ଖାଦ୍ୟ ଶୃଙ୍ଖଳ ଆଉ ବଢ଼ାଇ ନିଆଯାଇ ପାରେ । ମାର୍ଟେନ୍ ଏବଂ କାଠ ବିରାଡ଼ି କିଆଁ ଜଙ୍ଗଲରେ ଥାଆନ୍ତି ତ ଜାଣିଲେଇଁ । ଆଚ୍ଛା, କିନ୍ତୁ ଛତୁ କିପରି ଫୁଟେ ? ଆମ୍ଭେମାନେ ତ ପିଲାଦିନେ କେତେ ଛତୁ ତୋଳି ଥାଇଁ । କେତେବେଳେ ଆମ ମନରେ ଏ ପ୍ରଶ୍ନ ଉଠିଚି କି ? ପଶୁ ପକ୍ଷୀ ପରି ଛତୁକୁ ମଧ ବାଧ ହୋଇ ଜଙ୍ଗଲରେ ରହିବାକୁ ହୁଏ ଖାସ ଖାଦ୍ୟ ପାଇଁ । ପୋଚିଲା ଯେତେ ଘାସପତର ଜମା ହୋଇଥାଏ ଜଙ୍ଗଲରେ ସେ ସବୁ ହେଉଛି ଛତୁର ଖାଦ୍ୟ। ସେଇ କାରଣରୁ ଲକ୍ଷ୍ୟ କଲେ ଦେଖିବାକୁ ପାଇବ ଛତୁ ଯେଉଁଟି ଫୁଟେ ସେଠି ଗୋଟାଏ ପୋଚିଆ ଭସାଣିଆ ଗନ୍ଧ ନିଶ୍ଚୟ ଥିବ । ତା ହେଲେ ଆମ୍ଭମାନଙ୍କର ଖାଦ୍ୟ ଶୃଙ୍ଖଳ ଆଉରି ବଢ଼ିଗଲା । ମାର୍ଟେନ୍, ଗୁଣ୍ଡୁଚି ମୂଷା, ଛତୁ, ପୋଚିଆ ଅଳିଆ । ମାର୍ଟେନ୍ ନିଜେ ଛତୁ ନଖାଇଲେ ମଧ ଅଦେଖା ସୂତାରେ ତା'ରି ସାଙ୍ଗରେ ଗୁନ୍ଥା । ଖାଦ୍ୟ ଶୃଙ୍ଖଳ ଦ୍ୱାରା ହିଁ ଗଛପତ୍ର ସବୁ ସୂର୍ଯ୍ୟଠାରୁ ଟାଣି ଆଣିବା ଶକ୍ତିକୁ ଏକ ଜିନିଷ ଠାରୁ ଅନ୍ୟ ଜିନିଷ ପାଖକୁ ପଠାଇ ପାରନ୍ତି ।

ଜଙ୍ଗଲର କଇଦୀମାନେ ଖାଲି ଖାଦ୍ୟ ଶୃଙ୍ଖଳରେ ବନ୍ଧା ନୁହନ୍ତି, କାଲିଫର୍ଣ୍ଣିୟା (ଆମେରିକା) ର କାଠହଣା ଦୁଇଟା ଶିକୁଳିରେ ଜଙ୍ଗଲ ଦେହରେ ବନ୍ଧା । ପ୍ରଥମଟା ହେଉଚି ଆହାର, ଦ୍ୱିତୀୟଟା ହେଉଚି ଆହାର ଜିନିସ ସଞ୍ଚିବା ଜାଗା । ହଳଦିଆ ପାଇନ୍ ଗଛଭିତରେ ଗାତକରି ସେ ଦୁର୍ଦ୍ଦିନପାଇଁ ଖାଦ୍ୟ ସଂଗ୍ରହ କରି ରଖେ । ହଳଦିଆ ପାଇନ୍‌ର ବାଦାମ ନ ଖାଇଲେ ଏବଂ ତା' ପାଇଁ ହଳଦିଆ ପାଇନ୍ ଗଛ ନ ହେଲେ ତା'ର କେବେ ଚଳିବନି ।

## ପ୍ରବେଶ ନିଷେଧ

ନାନା ଛୋଟ ଛୋଟ ଝାଡ଼ ବଣ ମିଶି ବଡ଼ ଜଙ୍ଗଲ ରାଇଜ ଗଢ଼ି ଉଠିଛି । ଜଙ୍ଗଲ ଛଡ଼ା ମଧ ଏ ପୃଥିବୀରେ ରହିଛି ଘାସର ପ୍ରାନ୍ତର, ମରୁଭୂମି, ପାହାଡ଼, ସମୁଦ୍ର ଆଉ କେତେ କ'ଣ । ପ୍ରତ୍ୟେକ ପ୍ରେଇରୀ ବା ତୃଣ ପ୍ରାନ୍ତରରେ ଜଙ୍ଗଲ ପରି ଅଲଗା ଅଲଗା ଅନେକ ପ୍ରକାରର ଅଦେଖା ବାଡ଼ ବେଢ଼ା ହୋଇ ରହିଚି । ସମୁଦ୍ରରେ ମଧ ଜଳର ତଳେ ଅଛି ନାନା ସ୍ତର ।

ଇଉରୋପର କୃଷ୍ଣସାଗରରେ ଏପରି ଆଠଟି ସ୍ତର ରହିଛି । ପ୍ରଥମ ସ୍ତର ଯେଉଁଠି ପାଣି ଆସି କୂଳ ଦେହରେ ବାଡ଼େଇ ହୁଏ ସେଠି ଥାଏ ବର୍ନାକଲ୍ ନାମକ ଏକ ପ୍ରକାର ହଂସ, କଙ୍କଡ଼ା ଏଇସବୁ । ତା'ର ପରେ ଦୋତାଲାରେ ଟିକିଏ ଫସଫସିଆ ମାଟିରେ ଥାଏ ବଡ଼ କଙ୍କଡ଼ା ଆଉ ସୁଲତାନ ମାଛ । ଶାମୁକା ଥାଏ ଆହୁରି ତଳେ । ଏକା ବେଳକେ ସବା ତଳେ ଥାଏ ଗୋଟେ ବିଷାକ୍ତ ବାଷ୍ପ – ସଲଫାରେଟେଡ଼ ହାଇଡ୍ରୋଜେନ୍ । ପଚା ଡ଼ିମ୍ବ ପରି ତା'ର ଗନ୍ଧ । କିନ୍ତୁ ଇୟେ ମଧ୍ୟ ଫାଙ୍କା ନ ଥାଏ । ଗୋଟେ ପ୍ରକାରର ଜୀବାଣୁ ଏହିପ୍ରକାର ବିଷାକ୍ତ ଜାଗାରେ ରହିବାର ଅଭ୍ୟାସ କରି ନେଇଛନ୍ତି । ଅନ୍ୟ ସମସ୍ତ ଜୀବ ପକ୍ଷରେ ଯାହା ବିଷ, ଏମାନଙ୍କ ପାଇଁ ତାହା ଦରକାରୀ ।

ପୃଥିବୀରେ ପ୍ରାୟ ଦଶଲକ୍ଷ ରକମର ବା ଜାତିର ଭିନ୍ନ ଭିନ୍ନ ଜୀବ ରହିଛନ୍ତି । ସମସ୍ତେ ନିଜ ନିଜର ଦୁନିଆରେ ଆତଯାତ ହୁଅନ୍ତି । କିଏ ଥାଏ ପାଣିରେ କିଏ ଥାଏ ମାଟିରେ । କିଏ ଆଲୁଅ ଛଡ଼ା ବଞ୍ଚିପାରେ ନାହିଁ; ଆଉ କିଏ ଆଲୁଅ ମୋଟେ ସହ୍ୟ କରି ପାରେନି । କିଏ ନିଆଁ ପରି ଗରମ ବାଲିରେ ମୁଣ୍ଡ ଗୁଞ୍ଜିଥାଏ । ଆଉ କିଏ ଥଣ୍ଡା ଓଦା ମାଟିଛଡ଼ା ଆଉ କେଉଁଠି ରହେ ନାହିଁ ! ଯେଉଁଠି ଜଣକର ''ପ୍ରବେଶ ନିଷେଧ'' ସେଇଠି ଆଉ ଜଣଙ୍କର ''ସ୍ୱାଗତ''।

ଯେଉଁଠି ପକ୍ଷୀ ବଞ୍ଚିପାରନ୍ତା ନାହିଁ, ସେଠି ରହେ ମାଛ । ଗଛପରେ ଗଛ ଯେଉଁ ଜାଗାକୁ ଜାବୋଡ଼ି ରହେ, ସେଇଠି ଶିଉଳି ଭଲ ଭାବରେ ହୁଏ । ମୋଟକଥା, ଏଇ ବିଶ୍ୱ ସଂସାରରେ କୋଉ ଥାନଟା ଖାଲି ନାଇଁ । ସବୁ ଜାଗାରେ ଜୀବଜନ୍ତୁର ବାସ ।

ମେରୁ ପ୍ରଦେଶର ଭାଲୁକୁ ଯଦି ଆଣି ଆଫ୍ରିକାର ଜଙ୍ଗଲରେ ଛାଡ଼ି ଦେବ, ତେବେ ସେ ସେହି କ୍ଷଣି ମରିଯିବ । କାରଣ, ତା' ଦେହରେ ମେରୁଦେଶୀୟ ଶୀତ ସହିବା ଭଳି ମୋଟା ''ଫର୍'' ଦିଆଯାଇଛି । କିନ୍ତୁ ସେ ତ ଗରମ ସହିପାରେ ନାଇଁ । ସେପରି ଏ ଦେଶର ହାତୀକୁ ଯଦି ମେରୁ ଦେଶକୁ ପଠାଇ ଦିଆଯାଏ ତା'ର ଅବସ୍ଥା ସଙ୍ଗୀନ ହୋଇଯିବ । ସେ ହୁଏତ ପ୍ରଚଣ୍ଡ ଶୀତରେ ଜମାଟ ବାନ୍ଧି ମରିଯିବ ।

ପୃଥିବୀରେ କେବଳ ଗୋଟିଏ ଜାଗା ଦେଖିବାକୁ ପାଇବ ଯେଉଁଠି ସବୁ ଦେଶର ଜୀବଜନ୍ତୁ ଅଛନ୍ତି । ସେ ହେଉଛି ଚିଡ଼ିଆଖାନା ।

ଚିଡ଼ିଆଖାନାରେ ଦକ୍ଷିଣ ଆଫ୍ରିକା ପାଖରେ ଦେଖିବ ଅଷ୍ଟ୍ରେଲିଆକୁ । ଅଷ୍ଟ୍ରେଲିଆରୁ କେତେ ପାଦ ଦୂରରେ ଦେଖିବାକୁ ପାଇବ ଆମେରିକାକୁ । ପୃଥିବୀର ଚାରିଦିଗରୁ ଜୀବ

ଜନ୍ତୁଙ୍କୁ ଆଣି ସେଇଠି ଏକଠୁଳ କରାଯାଇଛି । କେହି ଇଚ୍ଛାକରି ସେଠିକି ଆସିନି । ମଣିଷହିଁ ସେମାନଙ୍କୁ ଜୋର କରି ଆଣି ରଖିଚି ।

ଏମାନଙ୍କ ପାଇଁ ମଣିଷକୁ କ'ଣ କମ୍ କଷ୍ଟ ପଡ଼ିଚି । ଯେ ଜନ୍ତୁ ଯେପରି ବେଷ୍ଟନୀରେ ଲାଳିତ ପାଳିତ ହୋଇଛି, ତା' ପାଇଁ ଅବିକଳ ସେପରି ବେଷ୍ଟନୀ ସୃଷ୍ଟିକରି ଦେବାକୁ ହୁଏ । ସମୁଦ୍ରରେ ଯାହାର ରହିବା ଅଭ୍ୟାସ ତା' ପାଇଁ ପାଣିର ପୋଖରୀ ଖୋଳି ଦେବାକୁ ହୁଏ । କାହା ଲାଗି ବା ବାଲି ଦେଇ ମରୁଭୂମି ତିଆରି କରିବା ଦରକାର । ଏକ ଜନ୍ତୁ ଯେପରି ଅନ୍ୟକୁ ନ କାମୁଡ଼େ, ସେଥିପାଇଁ ବ୍ୟବସ୍ଥା କରିଦେବାକୁ ପଡ଼େ । ମେରୁ ଭାଲୁର ଦରକାର ବରଫ ଜଳରେ ସ୍ନାନ; ଆଉ ମାଙ୍କଡ଼ର ଦରକାର ଗରମ ଜଳ । ସିଂହର ପ୍ରତିଦିନ କଞ୍ଚା ମାଂସ ନ ହେଲେ ନ ଚଳେ ଏବଂ ଚିଲ ଲାଗି ଡେଣାମେଲାଇ ଉଡ଼ି ବୁଲିବାର ଜାଗା ଦରକାର । ଏଇ ସବୁ ଜନ୍ତୁ ପାଇଁ ଆପଣା ଆପଣାର ବେଷ୍ଟନୀ ନ କଲେ ଏମାନେ ମରିଯିବେ ।

ତା ହେଲେ ତୁମେ ପଚାରିବ, ମଣିଷ ତ ଏକ ପ୍ରକାର ଜନ୍ତୁ କିନ୍ତୁ ସେ କିପରି ସମତଳ ଭୂମି ନା ଜଙ୍ଗଲ, ନା ପାହାଡ଼ କେଉଁଠି ଥାଏ ସେ ? ଯେ ମଣିଷ ଜଙ୍ଗଲରେ ଥାଏ ତାକୁ କି ଜଙ୍ଗଲି ମଣିଷ କୁହାଯାଏ ? ଆଉ ଯେ ଓଦାମାଟିରେ ଥାଏ ତାକୁ କ'ଣ ''ପାଣି'' ମଣିଷ କହନ୍ତି ? ନା, ତା ନୁହେଁ ।

କାରଣ ଯେଉଁ ମଣିଷ ଜଙ୍ଗଲରେ ଥାଏ ସେ ପୁଣି ସମତଳ ଭୂମି କିମ୍ବା ପାହାଡ଼ ଉପରେ ବି ସ୍ୱଚ୍ଛନ୍ଦରେ କାଳ କଟାଇପାରେ । ମଣିଷ ପୃଥିବୀର ସବୁ ଥାନରେ ବାସକରେ । ମଣିଷ ପାଖରେ ପ୍ରକୃତି ଦେବୀର କଡ଼ା ଶାସନ ଚଳେ ନାହିଁ । ତା ପାଇଁ କେଉଁଠି ''ପ୍ରବେଶ ନିଷେଧ''ନାଇଁ । ସୁମେରୁ ଆବିଷ୍କାରକ ପାପିନିନ ତାଙ୍କର ଦଳ ବଳ ନେଇ ନଅ ମାସ ଚଳନ୍ତା ବରଫର ଭେଳା ଉପରେ ଥିଲେ । ଠିକ୍ ଏପରି ଅକ୍ଲେଶରେ ସେ ଜଳନ୍ତା ମରୁଭୂମି ଭିତରେ ମଧ ଯାଇ ପାରନ୍ତେ ଏ ବିଷୟରେ ସନ୍ଦେହ ନାହିଁ ।

ଆଜିର ମଣିଷ ନିକଟରେ ପୃଥିବୀର ଅଜାଗା ଅଥାନ ଏପରି କିଛିନାଇଁ । କିନ୍ତୁ ସବୁ ସମୟରେ ଏ କଥା ନ ଥିଲା ।

- ୦ -

# ଆମର୍ ବଡ଼ ବଡ଼ିଆ

କୋଟି କୋଟି ବର୍ଷ ଧରି ଆଗର ଜଙ୍ଗଲ ଏବଂ ଆଜିକାଲିର ଜଙ୍ଗଲ ମଧ୍ୟରେ ଢ଼େର ତଫାତ୍ । ସେତେବେଳେ ଗଛ ଲତା ଥିଲା ସଂପୂର୍ଣ୍ଣ ଅଲଗା ଏବଂ ତହିଁରେ ରହୁଥିଲେ ସଂପୂର୍ଣ୍ଣ ଭିନ୍ନ ଜୀବଜନ୍ତୁ । ସେ ବେଳର ଜଙ୍ଗଲର ଗଛ ତୁଳନାରେ ଆଜି ଗଛ ପତ୍ର ସବୁ ଟିକି ଟିକି ସାନ ମନେ ହେବ । ସେ କାଳର ଜଙ୍ଗଲର ଉପର ମହଲାରେ ଥିଲା ପ୍ରଚୁର ଆଲୁଅ ଆଉ ଶବଦ । ସୁନ୍ଦର ସୁନ୍ଦର ରଙ୍ଗର ପକ୍ଷୀ ଫୁଲର ପେନ୍ଥା ମଝିରେ ଥାଇ ମଝିରେ ଗୀତ ଗାଇ ସମସ୍ତ ଜଙ୍ଗଲକୁ ଉଛୁଳାଇ ଦେଇ ରଖିଥାନ୍ତି ।

ଏକ ଜାତିର ବଡ଼ମଣିଷ ସେଇ ସବୁ ଗଛ ଡ଼ାଳରେ ଏମିନ୍ତି ବୁଲନ୍ତି ଯେ ମନେହେବ ସମସ୍ତ ବଣ ଜଙ୍ଗଲରେ କିଏ ଯେପରି ତାଙ୍କ ଲାଗି ଗଛ ସଙ୍ଗେ ଗଛର ଭାଡ଼ି କରି ଦେଇଚି । ମା' ମାନେ ନିଜେ ସବୁ ଫଳ ମୂଳ ଚୋବାଇ ଚୋବାଇ ଆପଣାର ବୁକୁ ଭିତରେ ଜାକି ଧରିଥିବା ଛୁଆମାନଙ୍କୁ ଖୁଆନ୍ତି । ବଡ଼ ବଡ଼ ପିଲେ ମାଆର ପାଦ ଧରି ଝୁଲୁଥାନ୍ତି । ଦଳର ମୁଖିଆ ଆଗରେ ଚାଲେ ଏବଂ ଆଉସବୁ ଦଳବଳ ଚାଲନ୍ତି ପଛେ ପଛେ । କିନ୍ତୁ ଏଗୁଡ଼ାକ କି ଧରଣର ବଣ ମଣିଷ । ଆଜିକାଲି ଆଉ ସେ ଧରଣର ବଣ ମଣିଷ ଦେଖାଯାଏ ନାହିଁ । ଚିଡ଼ିଆଖାନାରେ ମଧ୍ୟ ସେପରି ବଣ ମଣିଷ ନାହିଁ । ଏ ସବୁ ବଣ ମଣିଷଠୁଁ ମନୁଷ୍ୟ, ଶିଂପାଜି, ଗରିଲା ପ୍ରଭୃତିଙ୍କର ଉତ୍ପତ୍ତି ।

କାଠହଣା ପରି ଆମ୍ଭମାନଙ୍କ ବଡବଡ଼ିଆମାନେ ଉପର ମହଲାରେ ବନ୍ଧା ହୋଇଥିଲେ । ଜଙ୍ଗଲ ଥିଲା ସେମାନଙ୍କ ଘର ସବୁ । ଗଛର ଆଡୁଆଳ ଡ଼ାଳରେ ସେମାନେ ରାତିରେ ବସି ତାଙ୍କର ବସା ବାନ୍ଧନ୍ତି । ଜଙ୍ଗଲ ଥିଲା ସେମାନଙ୍କର ଦୁର୍ଗ ପରି । ସେମାନଙ୍କର ଶତ୍ରୁ ବାଘ ହାତରୁ ବଞ୍ଚିବା ପାଇଁ ସେମାନେ ସମସ୍ତେ ଗଛର ଉପରେ ଥାଆନ୍ତି । ଉଞ୍ଚ ଡ଼ାଳର ଫଳ ଖାଇ ସେମାନେ କାଳ କାଟନ୍ତି । ଗଛରୁ ଗଛକୁ ଯିବାକୁ ପଡ଼େ ବୋଲି ସେମାନଙ୍କର ଗଢ଼ଣ ସେହି ଭାବରେ ମଧ୍ୟ ତିଆରି ହେଇଥିଲା । ଦରକାର ଥିଲା ତୀକ୍ଷ୍ଣ ଦୃଷ୍ଟି ଶକ୍ତି । କ୍ଷିପ୍ର ଆଙ୍ଗୁଳି ଚାଳନା ଶକ୍ତି; ଆଉ ଦାନ୍ତୁଆ ଦାନ୍ତ ।

ଆମ୍ଭମାନଙ୍କର ପୂର୍ବ ପୁରୁଷ ବଣ ମଣିଷମାନେ ସେହି କାରଣରୁ ବଣ ଜଙ୍ଗଲରେ ଅଟକି ରହି ଯାଇଛନ୍ତି । କେବଳ ସେତିକି ନୁହେଁ – ଜଙ୍ଗଲର ଉପର ମହଲାରୁ ତଳକୁ ଓହ୍ଲାଇବାର ଉପାୟ ବି ତାଙ୍କର ନ ଥିଲା ।

ତେବେ ତୁମେ ପଚାରିବ, ତା ହେଲେ ସେମାନେ ଜମିକୁ ଆସିଲେ କିପରି ?

ଆଚ୍ଛା ତେବେ ଶୁଣ । ସେ ଅନେକ ଯୁଗର କଥା । ସେତେବେଳର ଲେଖକମାନେ କୌଣସି ନାୟକ ବିଷୟରେ ଲେଖିବାକୁ ବସିଲେ, ପ୍ରଥମ କେତେ ଅଧ୍ୟାୟରେ ଜଣେଇ ଦିଅନ୍ତି ନାୟକର ପରିଚୟ, ତା'ର ଅତ୍ମୀୟ କୁଟୁମ୍ବ ସମସ୍ତଙ୍କର କଥା । ତା' ପରେ କ୍ରମେ କ୍ରମେ ନାୟକ ବିଷୟରେ ଗଳ୍ପ ବର୍ଣ୍ଣନା କରନ୍ତି ।

ସେମାନଙ୍କ ପରି ଆମେ ବର୍ତ୍ତମାନ ମଣିଷ ବିଷୟ କହିବା ପୂର୍ବରୁ ଚାଲ ତା'ର ଆତ୍ମୀୟ କୁଟୁମ୍ବର ପରିଚୟ ନେବା । କିପରି ସେ ପ୍ରଥମେ ଏ ପୃଥିବୀକୁ ଆସିଲା, ଚାଲିବା ଶିଖିଲା, ସୁଖ ଦୁଃଖର ଇତିହାସ ଗଢ଼ିଲା – ସେ ସବୁ ଆସିବା ପରେ ।

ପ୍ରଥମେ କହିଦେବା ଭଲ, ଏ ବିଷୟଟା ବଡ଼ କଠିଣ, କିପରି ଆମେ ପୁରାକାଳର ସେଇ ବଣ ମଣିଷର ବର୍ଣ୍ଣନା କରିବା ? କୋଟି କୋଟି ବର୍ଷ ପରେ ସାକ୍ଷୀ ଦେବ ଏପରି କିଏ ବଞ୍ଚିଛି ? କେବଳ ମିଉଜିଅମରେ ବସିଛେ ଆମେ ସେଇ ପୂର୍ବ ପୁରୁଷର ଦେଖାସାକ୍ଷାତ ପାଇଁ । କିନ୍ତୁ ମିଉଜିଅମରେ ସେମାନଙ୍କର ସମ୍ପୂର୍ଣ୍ଣ ଅବସ୍ଥା ପାଇବା କଠିନ । ହୁଏତ କେଉଁଠି ସେମାନଙ୍କର ଭଙ୍ଗା ହାତ ଗୋଡ଼ ଅଛି । ନୋହିଲେ କେଉଁଠି ଦୁଇ ପାଟି ଦାନ୍ତ ମାତ୍ର । ଦାନ୍ତ ପଡ଼ିଯାଇଥିବା ବୁଢ଼ା ବୁଢ଼ୀଙ୍କୁ ତୁମେମାନେ ସମସ୍ତେ ଦେଖିଚ । କିନ୍ତୁ ଖାଲି ଦାନ୍ତ ଅଛି ଏବଂ ଖାଲି ସେହି ଦାନ୍ତ ଦେଖି ସେଥିରୁ ବୁଢ଼ାବୁଢ଼ୀଙ୍କୁ କଳ୍ପନା କରି ପାରିବ ?

ମଣିଷ ଯେତେବେଳେ ଦୁଇ ପାଦରେ ଭରା ଦେଇ ପ୍ରକୃତିରେ ଛିଡ଼ା ହେବାକୁ ଶିଖିଲା ସେତେବେଳେ ତା'ର ଆତ୍ମୀୟ ଗରିଲା, ଓରାଂଓଟାନ୍ ଶିଂପାଞ୍ଜିମାନେ ଦୁଇ ପାଦରେ ଭରା ଦେଇ ଚାଲିବା ଶିଖି ପାରିଲେ ନାଇଁ । ସେମାନେ ଏପର୍ଯ୍ୟନ୍ତ ବି ଜଙ୍ଗଲରେ ଅଛନ୍ତି । ଗରିଲା ଶିଂପାଞ୍ଜିର ସଙ୍ଗେ ମଣିଷର ଯେ କୌଣସି ସମ୍ପର୍କ ରହିଚି ଏ କଥା ଅସ୍ୱୀକାର କରିପାରିଲେ ଯେମିତି ମଣିଷ ବଞ୍ଚିଯାନ୍ତା !

କିଛି ଦିନ ଆଗେ ଆମେରିକାର ଜଣେ ଶିକ୍ଷୟିତ୍ରୀ ତାଙ୍କର ଛାତ୍ରମାନଙ୍କୁ ପଢ଼ାଉଥିଲେ ଯେ, ବଣମଣିଷମାନେ ହେଉଚନ୍ତି ମଣିଷର ପୂର୍ବପୁରୁଷ । ସେଠୁଁ ଅଦାଲତରେ ତାଙ୍କର ବିଚାର ହୋଇଥିଲା । ସହରରେ ଦଳେ ନା ପାଇଁ ଲଣ୍ଡଭଣ୍ଡ ହେଉଥିବା ଲୋକ ରାସ୍ତାରେ ଶୋଭାଯାତ୍ରା କଲେ । ସେମାନେ କାଗଜରେ ଲେଖିଥିଲେ :–

"ଆମ୍ଭେମାନେ ମାଙ୍କଡ଼ ନୁହୁଁ କି ଆମ ସମ୍ବନ୍ଧରେ ଏ ମାଙ୍କଡ଼ାମି ଆମେ କରେଇ ଦେବୁ ନାହିଁ ।"

ବିଚାରା ସ୍କୁଲ ମାଷ୍ଟ୍ରାଣି ଏଇ ସବୁ ଗଧାଙ୍କୁ ପିଟି ଘୋଡ଼ା କରିବାର ଇଚ୍ଛା ତାଙ୍କର କୌଣସି କାଳେ ନ ଥିଲା । ସେତେବେଳେ, ବିଚାରକ ଯେତେବେଳେ ଧମକାଇଲେ ମାଷ୍ଟ୍ରାଣିଙ୍କର ମନରେ ଆସିଥିବ; ଆଚ୍ଛା, ଏ କଥାକୁ ନେଇ ଯଦି ବିଚାର କରିବାକୁ ବସିଲ ତେବେ ପିଲାଙ୍କୁ ପଣିକିଆ ପଢ଼ାଏଁ ବୋଲି ତ ମୋର ବିଚାର କରିବା ବିଚିତ୍ର ନୁହେଁ ।''

କିନ୍ତୁ ସେ ଯାହା ଭାବନ୍ତୁ ନାଁ କାହିଁକି, ଯଥୋଚିତ ଗାମ୍ଭୀର୍ଯ୍ୟ ସହକାରେ ବିଚାର ଶେଷ ହେଲା –

(୧) ମଣିଷ ସହିତ ବଣମଣିଷର କୌଣସି ସମ୍ପର୍କ ନାହିଁ ।

(୨) ଆସାମୀ ଉପରେ ୧୦୦ ଟଙ୍କା ଜରିମନା ।

ସୁତରାଂ ଏତେ ଦିନ ଲାଗି ବିଖ୍ୟାତ ବିଜ୍ଞାନୀ ଚାର୍ଲସ ଡ଼ାରଉଇନ୍ ଯେଉଁ ମତବାଦ ପ୍ରଚାର କରି ଆସିଲେ ଦିନକର କଲମ ଗାରରେ ଏଇ ''ଖମ୍ଖିଆଲୁ'' ବିଚାରକ ତାକୁ ମିଥ୍ୟା ବୋଲି ରାୟ ଦେଲେ । କିନ୍ତୁ ସତ୍ୟ ଘଟଣାକୁ ଘୋଡ଼ାଇ ରଖିବା କଠିଣ । ବିଚାରକର ରାୟ ସତକୁ ପୋଛି ଦେଇ ପାରେ ନାହିଁ । ବଣ ମଣିଷର ସଙ୍ଗେ ମଣିଷର ସମ୍ପର୍କ ବିଷୟରେ ମୋଟା ମୋଟା ବହି ଲେଖା ହୋଇଚି । ତାକୁ କାଟିଦେଲେ ବି କୌଣସି ଶିଂପାଞ୍ଜି ବା ଓରାଂଓଟାନ୍‌କୁ ଟିକିଏ ଲକ୍ଷ୍ୟ କରି ଦେଖିଲେ ମନୁଷ୍ୟର ଏବଂ ଏମାନଙ୍କର ଦୁହିଁଙ୍କର ମଧରେ ସମ୍ପର୍କ ବାହାର କରିପାରିବେ ।

**ରୋଜା ଆଉ ରାଫେଲ୍**

ରୁଷିଆର ଗୋଟିଏ ଛୋଟିଆ ଗାଁ କଟୁସି ବୋଲି । ସେହି ଗ୍ରାମରେ ବିଖ୍ୟାତ ବିଜ୍ଞାନୀ ଆଇଭାନ୍ ପେଟ୍ରୋଭିଚ୍ ପ୍ୟାଭଲଭେ ଗବେଷଣାଗାରକୁ ଦୁଇଟା ଶିଂପାଞ୍ଜି ଅଣା ହେଲା– ରୋଜା ଆଉ ରାଫେଲ୍ । 'ଏମାନେ ସାଧାରଣତଃ ମଷିଷଠୁ ଖୁବ୍ ଭଲ ବ୍ୟବହାର ପାଆନ୍ତି ନାହିଁ । କିନ୍ତୁ ଏଥର ଏ କ୍ଷେତ୍ରରେ ଖୁବ୍ ଯତ୍ନ କରାହୁଏ । ସେମାନଙ୍କର ଏଠି ଖୁବ୍ ଯତ୍ନ ନିଆଗଲା, ସେମାନଙ୍କର ପାଇଁ ଗୋଟାଏ ବଡ଼ ଘର ଛାଡ଼ି ଦିଆଗଲା । ଶୋଇବା, ଖାଇବା, ସ୍ନାନ, ଖେଳ ସବୁପାଇଁ ଘର ଆଉ ଅଫିସ୍ । ଜାକ୍‌ଜମକ ଘର । ଶୋଇବା ଘରେ ଚମତ୍କାର ଦୁଇଟି ବିଛଣା । ଖାଇବାର ଟେବୁଲ ସୁନ୍ଦର ଚାଦର ଢ଼ଙ୍କା । ଆଉ ଖାଇବା ଘରେ ଖାଇବା ଭରା । ଘର ଦେଖି କେହି କହିପାରନ୍ତା ନାହିଁ ଯେ, ସେ ମଣିଷର ନୁହେଁ ।

ଖାଇବାପାଇଁ ସେମାନଙ୍କର ଟେବୁଲ୍‌ରେ କଣ୍ଟା ଚାମୁଚ ସବୁ ଥରକୁଥର ସଜାହୋଇ ଥାଏ । ସେମାନଙ୍କର ବିଛଣାରେ ଚାଦର, କମ୍ବଳ, ତକିଆ ସବୁହିଁ ଥିଲା । ଏହା ଠିକ୍

ଯେ, ସେଇ ଅତିଥି ଦୁଇଜଣ ସବୁ ସମୟ ଆମ ତୁମ ପରି ଭଦ୍ରତା ବଜାୟ ରଖି କାମ କରନ୍ତି ନାଇଁ । ହୁଏତ ଖାଇବା ସମୟରେ କେବେ କେବେ କଣ୍ଟା ଚାମୁଚ ଫୋପାଡ଼ି ଦେଇ ଗିନା ଟେକି ସବୁତକ ପିଇ ଦିଅନ୍ତି । ରାତିରେ ମୁଣ୍ଡରେ ତକିଆ ନ ଦେଇ ସେମାନେ ତକିଆକୁ ମୁଣ୍ଡ ଉପରେ ଥୋଇ ଘୁମେଇ ପଡ଼ନ୍ତି । ତା ବୋଲି ଯେ ସେମାନେ ମଣିଷ ପରି କିଛି କରିପାରନ୍ତି ନାହିଁ ସେ କଥା ନୁହେଁ । ରୋଜା ଯେ କୌଣସି ଲୋକ ପରି ସ୍ୱଛନ୍ଦରେ ଚାବି ଦେଇ ଆଲମାରି ଖୋଲି ପାରେ । ଘରର ସବୁ ଚାବି ସାଧାରଣତଃ ରଖୁଆଳି ହାତରେ ଥାଏ । ରୋଜା ଯେ କେତେବେଳେ ପଛରୁ ଆସି ତା' ପକେଟରୁ ହାତ ଗଳାଇ ଚାବି ବାହାର କରି ନିଏ, ସେ ତାର ଟେର ପାଏ ନାହିଁ! ଚାବି ନେଇ ରୋଜା ଏକ ଦୌଡ଼ରେ ଖାଇବା ଘରେ ହାଜର । ଖାଇବା ବାହାର କରି ବସିଯାଏ ଖାଇବାକୁ । ଆଉ ରାଫେଲ୍ ? ତା ଘରେ ପେନ୍ଥାଏ ସୁନ୍ଦର ଫଳ ଟଙ୍ଗା ହୋଇଥାଏ, ଆଉ ସେଇ ଘରେ ଥିଲା କେତେଖଣ୍ଡ କାଠ ଟୁଲ । ସବୁଠୁ ଛୋଟ କାଠଟା ଥିଲା ଖଣ୍ଡେ ଟୁଲ୍ ପରି । ରାଫେଲ ପାଇଁ ସମସ୍ୟା ହେଲା କେମିତି ସେହି ସବୁ ଟୁଲକୁ ଠୁଳ କରି ଧରାଧରି କରି ଟଙ୍ଗା ହୋଇଥିବା ଫଳ ପାରି ଖାଇବ । ପ୍ରଥମେ ପ୍ରଥମେ କୌଣସି ପ୍ରକାରେ ସେ ପାରିଲା ନାହିଁ । ଜଙ୍ଗଲରେ ଥିଲେ ସେ ଏ ଗଛ ସେ ଗଛ ହୋଇ ନିଶ୍ଚୟ ଫଳଟାକୁ ପାରନ୍ତା। ଏଠି ତ ଉହୁଙ୍କି କରି ଉଠିବା ଭଳି କିଛି ନାହିଁ । ଏକମାତ୍ର ଜିନିସ ହଉଚି କାଠର ଟୁଲଗୁଡ଼ାକ । ଆଉ ମଜା କଥା ଏହି ଯେ କୋଉ ଗୋଟାକ ଉପରେ ଉଠି ସେ ଫଳ ଧରି ପାରୁ ନ ଥିଲା ।

ସେହି ଟୁଲଗୁଡ଼ାକ ଏପଟ ସେପଟ କରି ରାଫେଲ୍ ଗୋଟେ ନୂତନ ଜିନିଷ ଆବିଷ୍କାର କଲା । ଗୋଟାଏ ଟୁଲ୍ ଉପରେ ଆଉ ଗୋଟାଏ ଉଠାଇଲେ ଫଳର ପାଖକୁ ଲାଗିଯିବା ସହଜ ହେବ । ବହୁତ ଚେଷ୍ଟା ପରେ ଗୋଟେ ଟୁଲ ଉପରେ ଆଉ ଏକ ଟୁଲ ଥୋଇ ସେ ଏକ ପିରାମିଡ଼ ପରି ଜିନିଷ ଛିଡ଼ା କରାଇଲା । କିନ୍ତୁ ରାଫେଲ ଏ ପର୍ଯ୍ୟନ୍ତ ସବୁଟା ଠିକ୍ କରିପାରିଲା ନାହିଁ । ତଳେ ସିନା ସବା ବଡ଼ଟା ଥୋଇ ତା ଉପରେ ସବା ଛୋଟକୁ ଥୋଇଲେ ଜିନିସଟା ଛିଡ଼ା ହୋଇ ରହନ୍ତା । କିନ୍ତୁ ରାଫେଲ ଏତେ ପାଠ ଜାଣେ ନାହିଁ । ସେ ଛୋଟ ଉପରେ ବଡ଼ ଥୋଇ ଠିଆ ହେବାକୁ ଗଲାରୁ କେତେ ଥର କଚଡ଼ା ଖାଇଲା । ତା'ପରେ କିଛିକାଳ ଗମ୍ଭୀର ହୋଇ ଘରର ଚଟାଣରେ ବସି ଭାବିଲା । ସେତେବେଳେ ତାକୁ ଦେଖିଲେ କେହି କହି ପାରନ୍ତା ନାହିଁ ଯେ ସେ ମଣିଷ ନୁହେଁ । ତୁମେ ମୁଁ ଯେମିତି କିଛି ନକରି ପାରିଲେ ମୁଣ୍ଡରେ ହାତଦେଇ ଭାବିବାରେ ବସୁଁ – ଠିକ୍ ସେଭଳି ରାଫେଲ୍ ଭାବୁଥିଲା । ଅବଶେଷରେ ସେ ରହସ୍ୟ ଉଦ୍‌ଘାଟନ କରିପାରିଲା । ଆଉ ଯିଦ କୁଆଡ଼େ ।

ଏପରି ବଡ଼ ଉପରେ ଛୋଟ ଟୁଲ୍ ଗୋଟିକ ପରେ ଗୋଟିଏ ସଜେଇ ଥୋଇ ସେ ଫଳତକ ଆସି ଖାଇବସିଲା । ସେତେବେଳେ ତାର ଆନନ୍ଦ ଦେଖେ କିଏ ?

ଅନ୍ୟ କୌଣସି ଜୀବ କି ମଣିଷ ପରି ଏହି ସବୁ କାମ କରି ପାରନ୍ତା ? କୁକୁର କି ଟୁଲ ଥୋଇ ପିରାମିଡ୍ ଗଢ଼ିପାରେ ? କୁକୁର ତ କମ୍ ବୁଦ୍ଧିମାନ ଜୀବ ନୁହେଁ !

ତା ହେଲେ ଶିମ୍ପାଞ୍ଜି କ'ଣ ମଣିଷ ହୋଇ ପାରିବ ?

ଆଚ୍ଛା ତା ହେଲେ ଶିମ୍ପାଞ୍ଜିକୁ ଚାଲିଚଲଣ ଶିଖାଇ ମଣିଷପରି କରାଯାଇ ପାରେ ? ଏକ ସର୍କସର ଜନ୍ତୁମାନଙ୍କର ଶିକ୍ଷକଙ୍କର ଏଟା ଥିଲା ଅକାଙ୍କ୍ଷା – ମିସୁମ ନାମକ ଗୋଟିଏ ଶିମ୍ପାଞ୍ଜିକୁ ସେ ଯେତେ ପ୍ରକାର ଶିକ୍ଷା ଦିଆଯାଇ ପାରେ ଦେବାରେ ହେଳା କରି ନ ଥିଲେ । ମିସୁମ ମଧ୍ୟ ଖୁବ୍ ଭଲ ପିଲା ଭଳିଆ କଣ୍ଟା ଚାମୁଚ ବ୍ୟବହାର କରି ଶିଖିଲା । ଗଳାରେ ଟୁଆଲ ବାନ୍ଧି ଖାଇବା ଟେବୁଲରେ ବସି ମଣିଷ ପରି ସେ ଖାଉଥିଲା । ଏପରିକି ସ୍ଲେଜ ଗାଡ଼ିର ଲଗାମ ଧରି ସେ ପାହାଡ଼ରୁ ତଳକୁ ଯାଇପାରୁଥିଲା । କିନ୍ତୁ ତଥାପି ତାକୁ ମଣିଷ କରାଯାଇ ନାହିଁ ।

କାହିଁକି ଯେ ତାକୁ ମଣିଷ ଭଳି କରାଯାଇନାହିଁ ତାହା ବୁଝିବା ସହଜ । ତାର ଶରୀରର ଗଢ଼ଣ ମଣିଷଠୁଁ ଅଲଗା । ତାର ହାତ, ଗୋଡ଼, ମସ୍ତିଷ୍କ, ଜିଭ କୋଉଟା ମଣିଷ ଭଳିଆ ନୁହଁ ।

ଖୁବ ଭଲ କରି ଶିମ୍ପାଞ୍ଜିର ପାଟି ଭିତରଟା ଦେଖ । ଦେଖିବ ଯେ ପାଟି ଭିତରେ ଜିଭ ହଲାହଲି କରିବା ଭଳି ବେଶୀ ଥାନ ନାହିଁ । ଯାହା ଥାନ ଅଛି ତାହା ଦାନ୍ତରେ ଭର୍ତ୍ତି । ପାଟି ଭିତରେ ଜିଭର ଚଳାଚଳର ଯଥେଷ୍ଟ ଜାଗା ନ ଥିବାରୁ ସେ କୌଣସି ଦିନ ମଣିଷ ଭଳିଆ କଥା କହି ପାରିବ ନାହିଁ । କାରଣ ତୁମ୍ଭେମାନେ ଯେତେବେଳେ କଥା କୁହ, ସେତେବେଳେ କ୍ରମାଗତ ଜିଭ ହଲେ । ଜିଭ କେତେବେଳେ ଆଗକୁ କେତେବେଳେ ପଛକୁ, କେତେବେଳେ ଅବା ବଙ୍କା ଭାବରେ ଯାଏ । କେତେ ବେଳେ ସିଧାହୁଏ, ତାହା ହେଲେ ଯାଇଁ ମୁହଁରୁ କଥା ବାହାରେ । ଏପରି ନ'କରି ପାରିଲେ କଥା ବାହାର ହୁଏ ନାହିଁ । ଶିମ୍ପାଞ୍ଜିର ପାଟିରେ ଏତେ ଜାଗା ନାଇଁ ସେଥିପାଇଁ, ସେ କଥା କହି ପାରେ ନାହିଁ । ଶିମ୍ପାଞ୍ଜିର ହାତ ମଧ୍ୟ ମଣିଷ ହାତ ଭଳି ନୁହେଁ ବୋଲି ସେ ମଣିଷ ଭଳି କାମ କରିପାରେ ନାହିଁ । ତା'ର ବୁଢ଼ା ଆଙ୍ଗୁଳି କାଣି ଆଙ୍ଗୁଳି ଠାରୁ ଛୋଟ । ଆମ୍ଭମାନଙ୍କ ହାତ ପରି ତା'ର ବୁଢ଼ା ଆଙ୍ଗୁଳି ଆଉ ଆଙ୍ଗୁଳିମାନଙ୍କଠାରୁ ଦୂରଛଡ଼ା ନୁହେଁ । ଆମ୍ଭମାନଙ୍କର ବୁଢ଼ା ଆଙ୍ଗୁଳି ସବୁଠାରୁ ବେଶି ଦରକାରୀ, ଇଚ୍ଛା କଲେ ଯେ କୌଣସି ଆଙ୍ଗୁଳି କାମ କରି ପାରେ । କିନ୍ତୁ ଶିମ୍ପାଞ୍ଜି ପକ୍ଷରେ ତାହା ସମ୍ଭବପର ନୁହେଁ ।

ଶିମ୍ପାଞ୍ଜିର ହାତଟା ଅନେକ ଅଂଶରେ ଆମରି ପାଦପରି । ଗଛରୁ କେଉଁ ଫଳ ପାରିବାକୁ ହେଲେ ସେ ହାତରେ ଡ଼ାଳ ଧରି ନିଏ ଏବଂ ଗୋଡ଼ରେ ଫଳ ପାରେ । ମାଟିରେ ଚାଲିବା ସମୟରେ ସେ ହାତରେ ଭରା ଦିଏ । ହାତର କାମ ଚଳାଏ ପ୍ରାୟ ଗୋଡ଼ ଦେଇ, ଆଉ ପାଦର କାମ କରେ ହାତ ଦେଇ । ମଣିଷ କିନ୍ତୁ ଏପରି ଓଲଟା ଭାବରେ ଚଳିଲେ ବିଶେଷ କିଛି କରି ପାରନ୍ତା ନାହିଁ ।

ହାତ ଗୋଡ଼ ପାଟି ଛଡ଼ା ଆଉ ଗୋଟିଏ ଜିନିସ ଅଛି, ଯା ପାଇଁ ଶିମ୍ପାଞ୍ଜି ମଣିଷ ହୋଇ ପାରିବ ନାହିଁ । ଶିମ୍ପାଞ୍ଜିର ମସ୍ତିଷ୍କ ମଣିଷର ଭଳି ଏତେ ବଡ଼ ନୁହେଁ । ସେଥିରେ ଏତେ ମଧ ଦହି ନାହିଁ। ହଜାର ହଜାର ବର୍ଷ ଲାଗି ବଣ ମଣିଷ ମଣିଷ ହୋଇଛି । ମସ୍ତିଷ୍କର ପାର୍ଥକ୍ୟ ହେତୁ ଶିଂପାଞ୍ଜି ମଣିଷ ପରି ଭାବିପାରେ ନାଇଁ । ତାହା ହେଲେ ମଣିଷର ତୁଳନାରେ ଯା ହେଉ ନା କାହିଁକି ନିଜର ଜଙ୍ଗଲରେ ଶିମ୍ପାଞ୍ଜି କାହାଠୁଁ ହଟିବାର ପାତ୍ର ନୁହେଁ । ଦୌଡ଼ି ଦୌଡ଼ି ସେ ଏ ଗଛ ସେ ଗଛ ସ୍ୱଚ୍ଛନ୍ଦରେ ଯାତାୟତ କରିପାରେ । ଏମାନଙ୍କର ଦେଶ ଆଫ୍ରିକାରେ । ଶିମ୍ପାଞ୍ଜିମାନେ ଜଙ୍ଗଲର ସବା ଉପର ମହଲାରେ ରୁହନ୍ତି । ସେଠାରେ ଗଛର ଡ଼ାଳ ମଧ୍ୟରେ ସେମାନେ ବସା ବାନ୍ଧନ୍ତି । ଗଛ ଗଛ ଡ଼େଇଁ ସେମାନେ ଫଳ ଖାଇ ବୁଲନ୍ତି । ମାଟିରେ ଓହ୍ଲାଇବାକୁ ସେମାନଙ୍କର ମୋଟେ ଇଚ୍ଛା ହୁଏ ନାହିଁ । ଜଙ୍ଗଲ ଛଡ଼ା କୌଣସି ସ୍ଥାନରେ ଶିମ୍ପାଞ୍ଜି ବଞ୍ଚି ପାରନ୍ତି ନାହିଁ ।

ଆଫ୍ରିକାରେ କାମେରୁନ୍‌ସ ବୋଲି ଗୋଟାଏ ଜାଗା ଅଛି । ଶିମ୍ପାଞ୍ଜିମାନେ ଆପଣା ଆପଣା ଜଙ୍ଗଲରେ କିପରି ବସବାସ କରନ୍ତି ତା ଆଖିରେ ଦେଖିବା ଲାଗି ଥରେ ଜଣେ ବିଜ୍ଞାନୀ ସେଠିକି ଗଲେ । ପ୍ରାୟ ଡ଼ଜନେ ଶିମ୍ପାଞ୍ଜି ଧରି ଆଣି ସେ ତାଙ୍କର ବସା ପାଖରେ ଏକ ଜଙ୍ଗଲରେ ତାଙ୍କପାଇଁ ରହିବା ବନ୍ଦୋବସ୍ତ କରି ଦେଲେ । ଯେପରି ସେମାନେ ଜଙ୍ଗଲ ଛାଡ଼ି ପଳେଇ ନ ଯିବେ ସେଥିପାଇଁ ସେ ଜଙ୍ଗଲର ଚାରିପାଖ ପରିଷ୍କାର କରିଦେଲେ । ଏଇ ନିର୍ଦ୍ଦିଷ୍ଟ ଜଙ୍ଗଲ ପାଖଆଖରେ ଆଉ ଗଛ ରହିଲା ନାହିଁ । ଶିମ୍ପାଞ୍ଜିମାନେ ଆଉ ସେଇ ଜଙ୍ଗଲର ବାହାରକୁ ଯାଆନ୍ତି ନାହିଁ । ଏଠାରେ ବିଜ୍ଞାନୀମାନେ ଆବିଷ୍କାର କଲେ, ଶିମ୍ପାଞ୍ଜିମାନେ ନିଜ ଇଚ୍ଛାରେ ମାଟିକୁ ଓହ୍ଲାନ୍ତି ନାହିଁ । ମେରୁଦେଶୀୟ ଭାଲୁକୁ ଯେପରି ମରୁଭୂମିରେ ରଖା ଯାଇ ପାରେ ନାଇଁ, ସେପରି ଶିମ୍ପାଞ୍ଜିକୁ ଗଛ ନ ଥିବା ଜାଗା ପାଖରେ ରଖିବା କଠିଣ ।

ଏଥର ତେବେ ବଡ଼ କଥା ହେଲାଣି, ଶିମ୍ପାଞ୍ଜି ଯଦି ନିଜ ଇଚ୍ଛାରେ ଜଙ୍ଗଲ ଛାଡ଼ି ଆସେ ନାଇଁ, ତେବେ ତା'ର କୁଟୁମ୍ବ ଅର୍ଥାତ୍ ମଣିଷର ପୂର୍ବ ପୁରୁଷ କିପରି ପ୍ରଥମେ ମାଟିରେ ଓହ୍ଲାଇଲା ।

- ୦ -

# ନାୟକର୍ ଚାଲିବା ଶିଖା

ମଣିଷର ପୂର୍ବ ପୁରୁଷ କେହି ହଠାତ୍ ଏକ ଦିନରେ ଜଙ୍ଗଲରୁ ବାହାରିପଡ଼ି ମାଟିରେ ଚାଲି ନ ଥିଲା । ଗଛରୁ ମାଟିକୁ ଓହ୍ଲାଇବାକୁ ତାକୁ ହଜାର ହଜାର, ଲକ୍ଷ ଲକ୍ଷ ବର୍ଷ ଲାଗିଛି ।

ସବା ପୂର୍ବରୁ ତାକୁ ଶିଖିବାକୁ ହେଲା ଗଛର ଉପରୁ ମାଟିକୁ ଓହ୍ଲାଇ ଆସିବା ।ଏଥର ଦେଖିବ, ଚାଲିବାକୁ ଶିଖିବା କେତେ କଠିଣ । ଛୋଟ ଛୋଟ ପିଲାଝିଲା କେତେ ଦିନ ଲାଗି ହାମୁଡ଼ନ୍ତି । ତା'ପରେ ଆଉ କେତେ ଦିନ ଲାଗେ ପୁଣି ଦୁଇ ପାଦରେ ଚାଲି ଶିଖିବାକୁ । ଶିଶୁ ପକ୍ଷରେ ଯେଉଁ କାର୍ଯ୍ୟ ଶିଖିବାକୁ ଏବେ ମାତ୍ର କେତେଟା ମାସ ଲାଗୁଚି ଆମର ପୂର୍ବପୁରୁଷଙ୍କୁ ତାହା ହଜାର ହଜାର ବର୍ଷ ଲାଗିଛି ।

ଗଛରେ ଥିଲାବେଳେ ହିଁ ଆମର ପୂର୍ବପୁରୁଷମାନେ ହାତରେ ଗୋଟେ ଯୋଡ଼େ ନୂତନ ଜିନିସ ତିଆରି କରିବା ଶିଖିଥିଲେ । ଫଳ ପାରିବା, ବସା ବାନ୍ଧିବା ଛଡ଼ା ମଧ ସେମାନେ ଡ଼ାଳ ଭାଙ୍ଗିବା କାମ ଶିଖିଥିଲେ । ଯେଉଁ ଜିନିଷକୁ ସେମାନଙ୍କର ହାତ ପାଏ ନାହିଁ, ସେଟାକୁ ଡ଼ାଳ ଭାଙ୍ଗି ତାର ସାହାଯ୍ୟରେ ପାରିବା ଜାଣୁଥିଲେ । ଅନେକ ସମୟରେ ସେଇ ଜିନିସଟା ହୁଏତ ମାଟିରେ ପଡ଼ିଥାଏ । ସେତେବେଳେ ବାଧ ହୋଇ ତଳକୁ ଓହ୍ଲାଇବାକୁ ପଡ଼େ । ମାଟିକୁ ଓହ୍ଲାଇ ପଥର ଦେଇ ସେମାନେ ଶକ୍ତ ବାଦାମ ମଧ ଭାଙ୍ଗିବାକୁ ଶିଖିଲେ ।

ସେତେବେଳେ କ୍ରମେ ସେମାନଙ୍କର ଖାଇବା ଜିନିସର ତାଲିକା ବଢ଼ିଗଲା । ସେମାନେ ଅନ୍ୟାନ୍ୟ ପଶୁପକ୍ଷୀମାନଙ୍କର ଆହାର ଖାଇବା ଆରମ୍ଭ କଲେ । ଫଳରେ ଆଗ ଅପେକ୍ଷା ବେଶୀ ଥର ସେମାନଙ୍କୁ ତଳକୁ ଆସିବାକୁ ହେଲା । ଲାଠି ଦେଇ ଗାତ ଖୋଳି ସେମାନେ କନ୍ଦା ମୂଳ ଖାଇବାରେ ଲାଗିଲେ । ପଥରରେ ଛେଚି ସେମାନେ କଠିଣ ଜିନିସ ଭିତରୁ ଶସ ବାହାର କରି ଖାଇ ଶିଖିଲେ । ଏହି ଭାବରେ ହାତରେ କାମ ବଢ଼ିବା ସଙ୍ଗେ ସଙ୍ଗେ ଚାଲିବା କାମରୁ ହାତକୁ ଟିକିଏ ନିଷ୍କୃତି ଦେବାକୁ ପଡ଼ିଲା । ଏତେ ଦିନଯାଏ ସେ ଦୁଇ ହାତ, ଦୁଇ ପାଦ ଭରା ଦେଇ ବୁଲୁଥିଲା । କିନ୍ତୁ କ୍ରମେ ହାତରେ ଭରା ଦେବା କମି ଯାଇଥିଲା। କାଳକ୍ରମେ ପୃଥିବୀରେ ଏକ ନୂତନ ଜୀବ ଦେଖାଗଲା, ଯେ ପଛ ଦୁଇ ପାଦରେ ଚାଲେ ଏବଂ ଆଗ ଦୁଇ ପାଦରେ ନାନା କାମ କରେ । ଏହାର ଚେହେରା

ସେତେବେଳେ ଥିଲା ଅନ୍ୟ ସବୁ ଜନ୍ତୁ ଭଳି / କିନ୍ତୁ ତୁମ୍ଭେମାନେ ଯଦି କେହି ସେତେବେଳେ ଦେଖନ୍ତ ସେମାନେ କିପରି ପଥର ବା ଡ଼ାଳ ପତର ନେଇ କାମ କରନ୍ତି, ତା' ହେଲେ ତକ୍ଷଣି ତୁମ୍ଭେମାନେ ବୁଝିପାରନ୍ତ ସେମାନେହିଁ ଆମ୍ଭମାନଙ୍କର ପୂର୍ବପୁରୁଷ । କାରଣ ମଣିଷ ଛଡ଼ା ଆଉ କେହି ଯନ୍ତ୍ରପାତି ବ୍ୟବହାର କରି ପାରେ ପାଇଁ । ମୂଷା ଦାନ୍ତ ଦେଇ ମାଟି ଖୋଳେ, କାଠହଣା ବି ଥଣ୍ଟ ଦେଇ ଗଛରେ ଗାତ ଖୋଳେ । ଆମ୍ଭମାନଙ୍କର ପୂର୍ବପୁରୁଷମାନଙ୍କର ଥଣ୍ଟ ବା ଦାନ୍ତ କିଛି ନ ଥିଲା । ସେମାନଙ୍କର ସମ୍ବଳ ଥିଲା ଦୁଇଟା ହାତ ।

**ନାୟକ ଏଥର ମାଟିକୁ ଆସିଲା**

ଏସବୁ କାଣ୍ଡ ଯେତେବେଳେ ଘଟୁଥିଲା ସେତେବେଳେ ପୃଥିବୀର ବେଷ୍ଟନୀ ମଧ ବଦଳି ଚାଲିଥିଲା । ଖୁବ୍ ଉତ୍ତରରେ ବରଫ ପାହାଡ଼ ଭାଙ୍ଗି ଦକ୍ଷିଣକୁ ଓହ୍ଲାଇ ଆସୁଥିଲା । ପାହାଡ଼ର ଉପରେ ଶୀତର ପ୍ରକୋପ ମଧ ବଢୁଥିଲା । ପୂର୍ବପୁରୁଷଙ୍କର ବାସସ୍ଥାନ ଜଙ୍ଗଲରେ ଆଉ ବେଶୀ ଥଣ୍ଡା ପଡୁଥିଲା । ବେଷ୍ଟନୀ ଅବଶ୍ୟ ସେପର୍ଯ୍ୟନ୍ତ ସେତେଥଣ୍ଡା ହୋଇ ନ ଥିଲା, ଟିକିଏ ଉଷ୍ଣ ଥିଲା ।

ଦେଖୁ ଦେଖୁ ଜଙ୍ଗଲର ଗଛ ଲଟା ବଦଳିବାକୁ ଲାଗିଲା । ଡ଼ିମ୍ବିରି ଗଛ, ଅଙ୍ଗୁର ଗୁଳ୍ମ ସବୁ ଦକ୍ଷିଣକୁ ଘୁଞ୍ଚି ଆସିଲା । ଆଉ କେତେକ ଗଛ ଶୀତ ସହି ନ ପାରି ସବୁପତ୍ର ଫୋପାଡ଼ି ଦେଇ ମଡ଼ା ପରି ଥୁଣ୍ଟା ହୋଇ ଠିଆ ହୋଇ ରହିଲେ । ଗ୍ରୀଷ୍ମମଣ୍ଡଳର ବଣୁଆ ଗଛ ଲତା କ୍ରମେ ଦକ୍ଷିଣକୁ ଘୁଞ୍ଚି ଆସିଲେ । ସାଙ୍ଗେ ସାଙ୍ଗେ ଜଙ୍ଗଲର ବାସିନ୍ଦାମାନେ ମଧ ଘୁଞ୍ଚିବାକୁ ଲାଗିଲେ । ହାତୀର ପୂର୍ବପୁରୁଷ ମାଷ୍ଟାଡ଼ୋନ୍ (Mastadon) ସେ ପରିବର୍ତ୍ତନରେ ନିଜକୁ ଖାପ ଖୁଆଇ ନପାରି ଲୋପ ପାଇଗଲା । ଆଗେ ଯେଉଁଠି ଜଙ୍ଗଲର ତଳେ ଗହଳିଆ ଗଛ ଲଟା ଥିଲା ଏବେ ସେ ସବୁ ଜାଗାରେ ପରିଷ୍କାର ଥାନ ଦେଖାଗଲା । ଦିନେ ଦିନେ ଗଣ୍ଡା ଏବଂ ହରିଣ ସେ ସବୁ ପଡ଼ିଆରେ ଚରିବୁଲିଲେ । ବଣମଣିଷମାନଙ୍କ ଭିତରୁ ଅନେକ ପଳାଇଯାଇ ଆତ୍ମରକ୍ଷା କଲେ । ଆଉ କେତେ ମରିଗଲେ । ଏହି ବଦଳିଥିବା ଅବସ୍ଥା ସଙ୍ଗେ ଖାପ ଖୁଆଇବା ଖୁବ୍ କାଠିକର ପାଠ । କାରଣ ଯେତେ କାଳ କଟୁ ଥିଲା ସେତେ ବଣମଣିଷର ଉପଯୁକ୍ତ ଆହାର ମଧ କମି ଆସୁଥିଲା । ବନ ଖାଲି ହୋଇଯିବାରୁ ଗୋଟିଏ ଗଛରୁ ଆଉ ଏକ ଗଛକୁ ଯିବା ଆସିବା କଠିଣ ହୋଇ ପଡ଼ିଲା । ସମସ୍ତଙ୍କୁ ସେଥିପାଇଁ ବାଧ ହୋଇ ବେଶୀ ମାଟିକୁ ଓହ୍ଲାଇବାକୁ ହେଲା । ଖାଲି ମାଟିରେ ଚାଲିଲେ ତ ହେବ ନାହିଁ ଖାଦକ ହାତରୁ ପୁଣି ଆତ୍ମରକ୍ଷା କରିବା ଦରକାର ।

ଏହାରି ଫଳରେ ବଣର ସମସ୍ତ ଆଇନ କାନୁନ ମଧ୍ୟ ଓଲଟପାଲଟ ହୋଇଗଲା । ଗୁଣ୍ଡୁଚିମୂଷା ଗଛରେ ରହୁଥିଲା । ମାଟିରେ ଓହ୍ଲାଇଲେ ତା'ର ଆଉ ପ୍ରକାର ଦାନ୍ତ ଦରକାର । ଆଗ ପରି ଫଙ୍ଗାରେ ବସିବା ଚଳିଲା ନାହିଁ। ଏଥର ତା'ର ଲମ୍ବା ଲାଙ୍ଗୁଡ଼ର ଉପକାରିତା ମଧ୍ୟ କମି ଗଲା । ଲାଞ୍ଜଟା ଆଗେ ଡ଼େଇଁବା ବେଳେ ଆକାଶ ଛତାର କାମ କରୁଥିଲା । ଏଥରକ ଶତ୍ରୁ ପାଇଁ ଏଇଟା ଗୋଟାଏ ସଙ୍କେତର କାମ କରିବ । ସେହି ହେତୁରୁ ଜଙ୍ଗଲ ଛାଡ଼ି ମାଟିରେ ଓହ୍ଲାଇଲେ ସମସ୍ତ ଚେହେରାଟା ବଦଳାଇବାକୁ ହେବ । ଗୋଟିଏ କଥାରେ ସେ ଆଉ ଆଗର ଗୁଣ୍ଡୁଚିମୂଷା ହୋଇ ରହିଲା ନାହିଁ ।

ଏହି ପ୍ରକାରେ ଆମ୍ଭମାନଙ୍କର ପୂର୍ବପୁରୁଷଙ୍କର ଭାବଭଙ୍ଗୀ ଚାଲିଚଳଣ ମଧ୍ୟ ବଦଳାଇବାକୁ ହେଲା । ତା' ନ ହେଲେ ଆଉ ଦକ୍ଷିଣକୁ ବଣମଣିଷମାନଙ୍କ ସାଙ୍ଗରେ ଯିବାକୁ ପଡ଼ିଥାନ୍ତା । ଇତିମଧ୍ୟରେ ସେମାନେ ବଣ ମଣିଷଠୁଁ ଅଲଗା ହୋଇ ପଡ଼ିଥିଲେ । କାରଣ ଖାଇବାପାଇଁ ସେମାନଙ୍କୁ ଦକ୍ଷିଣକୁ ନ ଗଲେ ମଧ୍ୟ ଚଳେ ।

ଗଛ ପତ୍ର କମିଗଲେ ମଧ୍ୟ ସେମାନଙ୍କର ଭୟର କିଛି କାରଣ ନାହିଁ । ଏ ଭିତରେ ସେମାନେ ଚାଲିବା ଶିଖିଲେଣି । କୌଣସି ଶତ୍ରୁ ହାବୁଡ଼େ ପଡ଼ିଲେ ସେମାନେ ଏକଠୁଳ ହୋଇ ଭଲ କରି ତାକୁ ମାରିବାକୁ ସମର୍ଥ । ସେଇ ଶୀତର କଠିଣ ପବନରେ ଆମରି ପୂର୍ବ ପୁରୁଷମାନେ ମରିନଯାଇ ଚଞ୍ଚଳ ମଣିଷ ହେବା ବାଟରେ ଆଗେଇ ଗଲେ ।

ଆମ୍ଭମାନଙ୍କର ପୂର୍ବପୁରୁଷଙ୍କପରି ଉନ୍ନତି ନ ହୋଇ ପାରି ଅନ୍ୟ ବଣମଣିଷଙ୍କୁ କ୍ରମେ ଦକ୍ଷିଣକୁ ରମାନା ହେବାକୁ ପଡ଼ିଲା । ସେମାନେ କିପରି ଆହୁରି ଭଲଭାବରେ ଗଛ ଚଢ଼ି ଶିଖିଲେ । ଏମାନଙ୍କର ଆଗରେ ଗୋଟେ ବିପଦ ଦେଖା ଦେଲା । ଜଙ୍ଗଲର ନାନା ଶତ୍ରୁମାନଙ୍କ ମଝିରେ କାଳ କଟାଇବାକୁ ହେଲେ ଏମାନଙ୍କର ଦେହରେ ଖୁବ୍ ଜୋର ଥିବା ଆବଶ୍ୟକ । ବଡ଼ ବଡ଼ ଜନ୍ତୁ କେବଳ ବଞ୍ଚିପାରନ୍ତି, ତା ଛଡ଼ା ଯେତେ ବଡ଼ ଶରୀର ହେବ ଗଛରେ ରହିବା ସେତିକ ମୁସ୍କିଲ୍, ତେଣୁ ସେମାନଙ୍କୁ ଗଛ ଛାଡ଼ି ତଳକୁ ଆସିବାକୁ ହେଲା । ସେହି ଗଛର ଗରିଲାହିଁ ଏବେ ମାଟିରେ ଥାଏ ।

ଏହିପରି ଭାବରେ ମଣିଷର ପୂର୍ବପୁରୁଷ ଏବଂ ବଣ ମଣିଷର ଜୀବନ ଯାତ୍ରା ପୃଥକ ହୋଇ ପଡ଼ିଲା !

**ହଜିଲା ଖିଅ**

ସେ କାଳର ମଣିଷ ଦେଖିବାକୁ କିପରି ? ସେହି ପୂର୍ବପୁରୁଷର ନମୁନା ଏବେ

ଦେଖିବାକୁ ମିଳେ ନାହିଁ । ଲକ୍ଷ ଲକ୍ଷ ବର୍ଷ ଆଗେ ସେମାନେ ମଣିଷରେ ପରିଣତ ହୋଇଥିଲେ । ତେବେ ଖୋଜିଲେ ସେମାନଙ୍କର ହାଡ ଗୋଡ଼ ଏବେ ମଧ୍ୟ ମିଳେ । ସେମାନଙ୍କର ସେଇ ହାଡ଼ ଦେଖି ବାନର ଠାରୁ ମଣିଷର ଉତ୍‌ପତ୍ତି ସଂପର୍କରେ ଆମ୍ଭେମାନେ ଯଥେଷ୍ଟ ପ୍ରମାଣ ପାଇବା । ଏହି ମାଙ୍କଡ଼ ମଣିଷ (Ape – man) ହେଉଚି ମାଙ୍କଡ଼ଠୁଁ ମଣିଷର ନୂଆ କଳେବରର ମଝିରେ ହଜିଲା ଖିଅ । ଏ ପର୍ଯ୍ୟନ୍ତ ଏହାର କୌଣସି ଚିହ୍ନ କୋଉଠୁଁ ମିଳି ନାହିଁ ।

ପୁରାତତ୍ତ୍ୱବିଦମାନେ ମାଟି ଖୋଳି ନାନା ନୂତନ ତତ୍ତ୍ୱ ଆବିଷ୍କାର କରି ପାରନ୍ତି । କିନ୍ତୁ ତା' ଆଗରୁ ସେମାନଙ୍କୁ ଠିକ୍ କରି ନେବାକୁ ପଡ଼େ କୋଉଠୁଁ ଖୋଳିଲେ ହେବ । ପୃଥିବୀତ ଖଣ୍ଡେ ଛୋଟେ କିଆରି ନୁହେଁ ସବୁ ଖୋଳି ଦେଖି ହେବ ।

ଗତ ଶତାବ୍ଦୀର ଶେଷରେ ବିଖ୍ୟାତ ବିଜ୍ଞାନୀ ହେକେଲ୍ ଏଥିର ଗୋଟାଏ ବାଟ ଫିଟାଇଲେ । ସେ ହେଉଛି ଯେ 'ମାଙ୍କଡ଼ ମଣିଷ' ବା ବିଜ୍ଞାନର ପରିଭାଷାରେ ଯାହାକୁ କୁହାଯାଏ ପିଥେକ୍ୟାନ୍‌ଥ୍ରପାସ (Pithecanthropus) ତା'ର ହାଡ଼ ଦକ୍ଷିଣ ଏସିଆରେ ମିଳିପାରେ । ସଙ୍ଗେ ସଙ୍ଗେ ମାନଚିତ୍ରରେ ସେ ଦେଖେଇ ଦେଲେ ଯେ, ପ୍ରଶାନ୍ତ ମହାସାଗରର ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜ ବା ଇଣ୍ଡୋନେସିଆର ସୁନ୍ଦା ଦ୍ୱୀପରେ ପିଥେକ୍ୟାନଥ୍ରପାସର ହାଡ଼ ଖୁବ୍ ସମ୍ଭବ ମିଳିବ । ସେତେବେଳେ ଅନେକେ ତାଙ୍କର ଏହି ମତକୁ ହସି କରି ଉଡ଼େଇ ଦେଇଥିଲେ ।

ଡ଼ାକ୍ତର ଇଉଜିନ ଦୁବୋୟା (Eugene Dubois) ଆମଷ୍ଟାରଡ଼ାମ ବିଶ୍ୱବିଦ୍ୟାଳୟର ଜଣେ ଅଧ୍ୟାପକ । ହେକେଲଙ୍କର କଥା ଉପରେ ନିର୍ଭର କରି ସେ ମାଙ୍କଡ଼-ମଣିଷ ହାଡ଼ର ସନ୍ଧାନ ପାଇଁ ବାହାରି ପଡ଼ିଲେ । ତାଙ୍କର ବନ୍ଧୁବାନ୍ଧବ ଓ ଅନ୍ୟାନ୍ୟ ଅଧ୍ୟାପକ ସମସ୍ତେ ଏତେ ଦୂରକୁ ଯାଇ ହାଡ଼ ଖୋଜିବାର ଉଦ୍ୟମ ଶୁଣି ହତବୁଦ୍ଧି ହୋଇ ବସିଲେ । ସେମାନେ ସମସ୍ତେ ଅତି ବେଶୀ ହେଲେ ଆମଷ୍ଟାରଡ଼ାମର ବଡ଼ ରାସ୍ତାରେ ବୁଲାବୁଲି କରିବାରେ ଧୁରନ୍ଧର । କିନ୍ତୁ ଏକାବେଳକେ ପାଗଳ ନ ହେଲେ ଆଉ କିଏ ଏତେ ଦୂର ଯାଇ ପାରେ ।

କିନ୍ତୁ ସେମାନଙ୍କ କଥାରେ ଦବି ନ ଯାଇ ବିଶ୍ୱବିଦ୍ୟାଳୟର ଅଧ୍ୟାପକ କାମ ଦାମ ଛାଡ଼ି ଓଲନ୍ଦାଜ ସୈନ୍ୟମାନଙ୍କ ସଙ୍ଗରେ ନିଜର ଉଦ୍ଦେଶ୍ୟ ସିଦ୍ଧି ଆଶାରେ ସାତ ସମୁଦ୍ର ସେପାରି ସୁନ୍ଦାଦ୍ୱୀପକୁ ବାହାରି ଗଲେ । ସୁମାତ୍ରା ଦ୍ୱୀପପୁଞ୍ଜରେ ପହଞ୍ଚି ଦୁବାୟା କାମ ଆରମ୍ଭ କଲେ । ସ୍ଥାନୀୟ କେତେଜଣ ଲୋକଙ୍କୁ ଧରି ଗୋଟେ ଦଳ ଗଢ଼ିଲେ ଏବଂ ମାଟି

ଖୋଳିବା ଆରମ୍ଭ କଲେ । ସେମାନେ ଅନେକ ଜାଗା ଖୋଳିଲେ । ମାଟି ଗଦା ହୋଇ ପାହାଡ଼ ହେଲା କିନ୍ତୁ କୋଉଠି ହାଡ଼ର ଗନ୍ଧ ସମ୍ବନ୍ଧ ମିଳିଲା ନାହିଁ । ଏଣେ ମାସ ପରେ ମାସ ବଢ଼ିବାକୁ ଲାଗିଲା ।

ଏତ ସହଜ କଥା ନୁହେଁ । ତୁମ୍ଭେମାନେ କୌଣସି ଜିନିସ ଯଦି ହରାଇ ବସ ତେବେ ଅକ୍ଳାନ୍ତଭାବରେ ତାକୁ ଖୋଜିବାରେ ଲାଗ । କାରଣ ତୁମେ ଜାଣ ନିଶ୍ଚିତ ଭାବେ ଯେ କେଉଁଠି ହେଲେ ଜିନିସଟା ଅଛି । କିନ୍ତୁ ଦୁବୋୟା ତ ଜାଣନ୍ତି ନାହିଁ ଯେ କୋଉଠି ସତକୁ ସତ ହାଡ଼ ଅଛି । କିନ୍ତୁ ସେ ଅଧୈର୍ଯ୍ୟ ନ ହୋଇ ମାଟି ଖୋଳି ଚାଲିଲେ । ଦେଖୁ ଦେଖୁ ବର୍ଷ ପୁରା ହେବାକୁ ବସିଲା । ବର୍ଷ ପରେ ବର୍ଷ ବିତିଲା । ଏକ । ଦୁଇ । ତିନି । ତଥାପି ହଜିଲା ଖିଅ ମିଳିଲା ନାହିଁ ।

ଆଉ କିଏ ହେଲେ ସେ ନିଶ୍ଚୟ ଆଉ ଖୋଜନ୍ତେ ନାହିଁ। କିନ୍ତୁ ଦୁବୋୟା ଥିଲେ ଭିନ୍ନ ଢ଼ଙ୍ଗର ଲୋକ । ସେ ଆବିଷ୍କାର ନିଶାରେ ପାଗଳ ହୋଇ ଥିଲେ । ତେଣୁ ସେ ସୁମାତ୍ରା ଛାଡ଼ି ଜାଭାରେ ଖୋଜିବାକୁ ବାହାରିଲେ ।

ଏଥର ଯେପରି ଭାଗ୍ୟଦେବୀ ଟିକିଏ ସୁପ୍ରସନ୍ନା ହେଲେ । କେନଡ଼େଙ୍ଗ ପାହାଡ଼ର ତଳେ ବେଙ୍ଗଭାନ ନଦୀର ଗର୍ଭରେ ଦୁଇଟା ଦାନ୍ତ ଆଉ ଉରୁର ହାଡ଼ ଏବଂ ପିଥେକ୍ୟାନଥ୍ରପାସର ମୁଣ୍ଡର ଖପୁରିର ଉପର ଅଂଶଟା ମିଳିଲା । ସେଟା ହେଉଚି କ୍ରମେ ତଳକୁ ପଶି ଆସିଥିବା କପାଳ ଏବଂ ସେଥିରେ ଦେଖାଗଲା କୁଞ୍ଚିତ ଭ୍ରୂ । ତା'ର ତଳରେ ଦେଖାଗଲା ଆଖିର ଖୋଲ । ଦେଖିବାକୁ ମଣିଷ ଅପେକ୍ଷା ବାନରର ଖପୁରି ସଙ୍ଗେ ତାର ମେଳ ଥିଲା ବେଶି ! କିନ୍ତୁ ଖପୁରିର ଭିତରଟାକୁ ନଜର ଦେଇ ସେ ଦୃଢ଼ବିଶ୍ୱାସ କଲେ ଯେ, ବଣମଣିଷ ଅପେକ୍ଷା ପିଥେକ୍ୟାନଥ୍ରପାସ ଅନେକ ବେଶୀ ଚାଲାକ ଥିଲା । ବଣମଣିଷ ଅପେକ୍ଷା ତା'ର ମସ୍ତିଷ୍କର ଗର୍ତ୍ତଟା ଅନେକ ବଡ଼ ।

ମୁଣ୍ଡର ଖପୁରିରୁ ଖଣ୍ଡେ, ଦୁଇଟା ଦାନ୍ତ ଆଉ ଉରୁର ହାଡ଼ । ଏତିକି ଅବଶ୍ୟ ବେଶୀ କିଛି ନୁହେଁ । କିନ୍ତୁ ସେଥିରୁ ଦୁବୋୟା ଅନେକ ସତ୍ୟ ଆବିଷ୍କାର କଲେ । ସେଇ ଉରୁର ହାଡ଼ ଭଲ କରି ପରୀକ୍ଷାକରି ସ୍ଥିର ନିଶ୍ଚିତ ହେଲେ ଯେ, ପିଥେକ୍ୟାନଥ୍ରପାସ ଚାଲିବା ଶିଖିଥିଲା । କିନ୍ତୁ ତଥାପି ସେ ଚାରିପାଦରେ ଚାଲିବା ବାଦ ଦେଇ ନାହିଁ । ଆମ୍ଭମାନଙ୍କ ପୂର୍ବପୁରୁଷ ଦେଖିବାକୁ କିପରି ଥିଲେ, କିପରି ସେମାନେ କୁଜା ହୋଇ ଚାଲୁଥିଲେ । ଆଣ୍ଠୁପାଖରେ ଗୋଡ଼ କିପରି ଚାଲିଲାବେଳେ ବଙ୍କା ରହୁଥିଲା ଏବଂ ହାତ ଦୁଇଟି ଝୁଲୁଥିଲା ଏସବୁ ଛବି ପରି ତାଙ୍କର ଆଖି ଆଗରେ ଭାସି ଉଠିଲା । ଚାଲିଲାବେଳେ ସେମାନଙ୍କର

ଆଖିର ଭଙ୍ଗୀ ସବୁବେଳେ ମାଟିକୁ ଚାହିଁ ରହୁଥିଲା ଆହାରର ସନ୍ଧାନରେ । ଏ ନିଶ୍ଚୟ ବଣମଣିଷ ନୁହେଁ – କିନ୍ତୁ ଯାକୁ ତ ମଣିଷ କୁହାଯାଇ ପାରିବ ନାହିଁ । ଦୁବୋୟା ଏହାର ଏକ ନୂଆ ନାମକରଣ କଲେ ପିଥେକ୍ୟାନଥ୍ରପାସ ଇରେକ୍ଟସ (Pithecanthropus Erectus) ଅର୍ଥାତ୍ ଯେଉଁ ପିଥେକ୍ୟାନଥ୍ରପାସ ସିଧା ହୋଇ ଚାଲେ ।

କିନ୍ତୁ ଦୁବୋୟାଙ୍କର କାମ ଏତିକିରେ ସରିଲା ନାହିଁ । ଏହି କଥାଟା ସିନା ଶୁଭ ଦିଆହେଲା । ମାଟି ଖୋଳିବା ଖୁବ୍ ସହଜ, କିନ୍ତୁ ମଣିଷ ମନରୁ କୁସଂସ୍କାର ଖୋଳି ଦୂର କରିବା କେଡ଼େ କଠିଣ । ସେଥିପାଇଁ ବହୁ ଲୋକ ଦୁବୋୟାଙ୍କର ଚତୁଃପାର୍ଶ୍ୱରୁ ଆକ୍ରମଣ ଆରମ୍ଭ କରିଦେଲେ । ସେମାନେ ଲାଗିପଡ଼ି ପ୍ରମାଣ କରିବାକୁ ଚାହିଁଲେ ଯେ ମୁଣ୍ଡର ଖପୁରିଟା ଗିବନ ବୋଲି ଏକ ପ୍ରକାର ଜନ୍ତୁର ଏବଂ ଉରୁର ହାଡ଼ଟା ହେଉଛି ସେହିକାଳର କୌଣସି ମଣିଷର । ମୋଟ ଉପରେ ସେମାନେ ଚକ୍ରାନ୍ତ କରି ଦୁବୋୟାଙ୍କର ଆବିଷ୍କାରକୁ ଉଡ଼େଇ ଦେବାକୁ ବାହାରିଲେ ।

କିନ୍ତୁ ନିର୍ଭୀକ ଦୁବୋୟା ବିଜୟୀ ପରି ନିଜର ମତ ପ୍ରତିଷ୍ଠିତ କରିଥିଲେ । ସେ ପ୍ରମାଣ କରିଦେଲେ ଯେ ଗିବନର କୌଣସି କାଳେ ଆଗକୁ ମାଡ଼ି ଆସିଥିବା କପାଳ ନ ଥିଲା । କିନ୍ତୁ ସେମାନଙ୍କର ସମାଲୋଚନାକୁ ବନ୍ଦ କରି ଦେବାପାଇଁ ଗୋଟାଏ ପୁରା କଙ୍କାଳ ନ ପାଇବା ପର୍ଯ୍ୟନ୍ତ କିଛି କରିବା ଅସମ୍ଭବ ।

ସେଥିପାଇଁ ସେ ଗୋଟିଏ ପୁରା କଙ୍କାଳ ଯୋଗାଡ଼ର ଚେଷ୍ଟା ଶୁରୁ କଲେ । କାର୍ଯ୍ୟତଃ ବେଙ୍ଗାଇନ ନଦୀ କୂଳ ଧରି ଖୋଳା ଚାଲିଲା । ପାଞ୍ଚ ବରଷ ମଧ୍ୟରେ ଦୁବୋୟା ପ୍ରାୟ ତିନି ଚାରିଟା ବାକ୍ସ ହାଡ଼ ଇଉରୋପର ପଣ୍ଡିତମାନଙ୍କ ପାଖକୁ ପଠାଇଲେ । କିନ୍ତୁ ଦୁର୍ଭାଗ୍ୟର କଥା, ଏହି ହଜାର ହଜାର ହାଡ଼ ମଧ୍ୟରେ କେବଳ ତିନୋଟି ଉରୁର ହାଡ଼ ଥିଲା ପିଥେକ୍ୟାନ୍ଥ୍ରପାସର ।

ଏହିପରିଭାବରେ ବର୍ଷ ପରେ ବର୍ଷ କଟିଗଲା । ଏପରି ସମୟରେ ହଠାତ୍ ଆଉଜଣେ ବିଜ୍ଞାନୀ ପିଥେକ୍ୟାନଥ୍ରପାସର ଆଉ ମଣିଷର ମଝିରେ ହଜିଥିବା ଖିଅ ଆବିଷ୍କାର କଲେ ।

ପ୍ରାୟ ଚାଳିଶ ବର୍ଷ ଆଗେ ଏହି ବିଜ୍ଞାନୀ ଚିନର ରାଜଧାନୀ ପିକିଂ ସହରରେ ଗୋଟିଏ ଔଷଧ ଦୋକାନରେ ଔଷଧ କିଣିବାକୁ ପଶିଲେ । ସେଇଠି ନାନାପ୍ରକାର ଜିନିସ ମଧ୍ୟରେ ସେ ଗୋଟେ ଅଦ୍ଭୁତ ଦାନ୍ତ ଖୋଜି କରି ପାଇଲେ । ସେଟା କୌଣସି ମଣିଷର ତ ନୁହେଁ, ଆଉ ବା କୋଉ ଜନ୍ତୁର, ତାର କୌଣସି ଟେର ସେ ପାଇଲେ ନାହିଁ । ତେଣୁ ସେ

ତାକୁ 'ଚିନା ଦାନ୍ତ' ନାମ ଦେଇ ଇଉରୋପ ପଠାଇଦେଲେ । ପ୍ରାୟ ଗୋଟିଏ ବର୍ଷ ପରେ ଚିନ୍‌ର ଚୋକୋତିୟେନ ନାମକ ଗୋଟିଏ ଗୁମ୍ଫାରେ ଏପରି ଆଉ ଦୁଇଟି ଦାନ୍ତ ମିଳିଲା । ଆଉ କେତେଦିନ ଗଲା ପରେ ଏହି ଦାନ୍ତର ମାଲିକର କଙ୍କାଳଟା ମଧ ସେଇଠି ମିଳିଲା । ସେଇଠୁ ବିଜ୍ଞାନୀମାନେ ତାର ନାଁ ଦେଲେ ସିଯନ୍‌ଥ୍ରୋପସ୍ (Sisonthropush)

ସତ କହିବାକୁ ଗଲେ ସେମାନେ ମଧ ସମଗ୍ର କଂକାଳଟା ପାଇ ନ ଥିଲେ । ୫୦ଟି ହବ ଦାନ୍ତ, ତିନୋଟି ମୁଣ୍ଡର ଖପୁରୀ, ୧୧ଖଣ୍ଡ ହାଡ଼, ଗୋଟିଏ ଉରୁର ହାଡ଼, ଗୋଟିଏ ମେରୁଦଣ୍ଡର ହାଡ଼, ଖଣ୍ଡିଏ କଣ୍ଠ ଅସ୍ଥି, ଗୋଟିଏ ମଣିବନ୍ଧର ଏବଂ ଗୋଟିଏ ଗୋଡ଼ର ହାଡ଼ ।

ଏଥିରୁ ଯେପରି ହଠାତ୍ ମନେ କରି ନିଅ ନାହିଁ ଯେ ଗୁହାବାସୀର ତିନୋଟି ମୁଣ୍ଡ ଆଉ ଗୋଟିଏ ପାଦ ଥିଲା । ୟାର ଅର୍ଥ ହେଉଚି ଯେ ଏହି ଗୁହାରେ ଦଳେ ସିଯନଥ୍ରପାସ ବାସ କରୁଥିଲେ। ହଜାର ହଜାର ବର୍ଷ ପରେ ଆଉ ସବୁ ହାଡ଼ ହୁଏତ ହଜି ଯାଇଛି । ବଣ ଜଙ୍ଗଲର ପଶୁମାନେ ସେ ସବୁ ହୁଏତ ନେଇ ଯାଇଛନ୍ତି । କିନ୍ତୁ ଯେତେକ ହାଡ଼ ମିଳିଚି ସେଥିରୁ ସହଜରେ ବୁଝାଯାଏ ଯେ ଗୁହାର ଲୋକମାନେ ଦେଖିବାକୁ କିପରି । କିନ୍ତୁ ସେମାନେ ଦେଖିବାକୁ ମୋଟେ ସୁନ୍ଦର ନ ଥିଲେ ।

ସେମାନଙ୍କୁ ଦେଖିଲେ ତୁମ୍ଭେମାନେ ହୁଏ ତ ଦଉଡ଼ି କରି ପଳାନ୍ତ । ସେତେବେଳେ ସେମାନେ ଦେଖିବାକୁ ଅନେକ ଅଂଶରେ ମାଙ୍କଡ଼ପରି ଥିଲେ । ମୁଣ୍ଡକୁ ଆଗକୁ ଝୁଙ୍କି ହାତ ଦୋହଲାଇ ସେମାନେ ଚାଲୁଥିଲେ କିନ୍ତୁ ଟିକିଏ ଭଲକରି ଲକ୍ଷ୍ୟ କଲେ ମାଙ୍କଡ଼ଠୁଁ ସେମାନଙ୍କର ପାର୍ଥକ୍ୟ ଆଖିରେ ପଡ଼ିବ । କୌଣସି ମାଙ୍କଡ଼ର ମୁଣ୍ଡ ଏମାନଙ୍କର ମୁଣ୍ଡପରି ନୁହେଁ । ଏମାନଙ୍କର ମୁଣ୍ଡ ଅନେକଟା ମଣିଷର ମୁଣ୍ଡ ଭଳି । ଥପ୍ ଥପ୍ କରି ସେମାନେ ଚାଲନ୍ତି । ହଠାତ୍ ହୁଏତ ଚାଲି ମଝିରେ ବସି ପଡ଼ନ୍ତି । ପାଖର ପଥର ଗୋଟେଇନେଇ ଘଷି ଘଷି ଏମାନେ ଆଗାନ୍ତି । କିଛି ଦୂରରେ ଗୋଟାଏ ଗୁହାର ସାମନାରେ ଆସି ପହଞ୍ଚିଲେ ସେମାନଙ୍କୁ ଦେଖିବ ଅନେକେ ଠୁଳ ହୋଇ ବସିଛନ୍ତି ସେଠି । ଏମାନଙ୍କ ଭିତରେ ଦାଢ଼ିବାଲା ଜଣେ ମୁଖିଆ ଲୋକ ପଥରର ହତିଆର ନେଇ ଶିକାର କରିଥିବା ହରିଣର ମାଂସ କାଟୁଛି । ସ୍ତ୍ରୀ ଲୋକମାନେ ପାଖରେ ରହି ସେହି ମାଂସକୁ ଟିକିଟିକି ଖଣ୍ଡ କରୁଚନ୍ତି । ସାନ ସାନ ପିଲାମାନେ ସମସ୍ତେ ଚାରିଆଡ଼େ ମାଂସ ପାଇଁ ନାଚୁଚନ୍ତି । ସେଇ ଗୁହା ଭିତରେ ଜଳୁଥିବା ନିଆଁରେ ସେହି ସଂପୂର୍ଣ୍ଣ ଦୃଶ୍ୟ ଆଖିରେ ପଡୁଚି ।

ଏତେବେଳକୁ ତୁମର ସନ୍ଦେହ ଦୂରହେଲା, ନୁହେଁ ? କୋଉ ମାଙ୍କଡ଼ଟା ଏପରି ଖାଇବା ଦେଖିଚ ? କେବେ ନୁହେଁ ।

ତୁମ୍ଭେମାନେ ପୁଣି ପଚାରିବ ସିଯନଥ୍ରପାସମାନେ ଯେ ପଥରର ହତିଆର ଆଉ ନିଆଁ ବ୍ୟବହାର କରିପାରୁଥିଲେ ତା'ର ପ୍ରମାଣ କ'ଣ ? ଚୋକୋଡ଼ିୟେନ୍‌ର ଗୁହାହିଁ ସେ ବିଷୟରେ ପ୍ରମାଣ । ସେହି ଗୁହା ଖୋଲିଲେ ମସ୍ତ ମସ୍ତ ପାଉଁଶର ସ୍ତର ଦେଖିବାକୁ ମିଳିବ । ଅନେକ ପଥରର ଅସ୍ତ୍ର ଶସ୍ତ୍ର ମିଳିବ, ହୁଏତ ସେମାନେ ନିଜେ ନିଆଁ ବ୍ୟବହାର ନ ଜାଣିଲେ ମଧ୍ୟ ଜଙ୍ଗଲରୁ ନିଆଁ ଯୋଗାଡ଼କରି ଗୁହାରେ ଆଣି ରଖନ୍ତି । ଯୁଗ ଯୁଗ ଧରି ସଞ୍ଚିତ ନିଆଁର ପାଉଁଶ ଜମି ଏହି ସ୍ତର ତିଆରି ହୋଇଚି ।

- ୦ -

# ହସ୍ତରେଖା

ପଥରର ଅସ୍ତ୍ର ଏବଂ ଗଛ ଡ଼ାଳର ଗଦା ହାତରେ ନେବା ସଙ୍ଗେ ସଙ୍ଗେ ମଣିଷର ଜୋର ବଢ଼ିଲା । ଏଥରକ ସେ ଖାଲି ଫଳ ମୂଳର ଭରସାରେ ବସି ରହିଲା ନାହିଁ । ଆହାର ଅନୁସରଣରେ ସେ ଦୂରରୁ ଦୂରକୁ ଯାଇ ପାରିଲା । ଏତେ ଦିନର ଜଙ୍ଗଲର ଆଇନ୍ କାନୁନ୍ ଭାଙ୍ଗି ସେ ବାହାର ଦୁନିଆରେ ଆତଯାତ ହେବା ଆରମ୍ଭ କଲା । ମଣିଷର ତେଣୁ ପ୍ରଥମ କାମ ହେଲା, ଜଙ୍ଗଲର ଆଇନ ବିରୋଧରେ ଯୁଦ୍ଧ ଘୋଷଣା । ଗଛର ଜୀବ ହେଲେ ମଧ ସେ ମାଟିରେ ଚାଲିଲା । ଚାରିପାଦ ସ୍ଥଳେ ସେ ଦୁଇ ପାଦରେ ଚାଲିଲା । ଏପରି ଖାଦ୍ୟ ଖାଇଲା ଯାହା କୋଉ କାଳେ ତା'ର ଖାଦ୍ୟ ନ ଥିଲା । କେବଳ ଏତିକି ନୁହେଁ; ଖାଦ୍ୟ ଯୋଗାଡ଼ର କାଇଦା ମଧ ହେଲା ଅଭିନବ । ତା'ର ସୁବୁଠୁଁ ବଡ଼ କାମ ହେଲା, ଆଗର 'ଖାଦ୍ୟ ଶୃଙ୍ଖଳ'କୁ ଭାଙ୍ଗି ଦେବା । ଏହାର ଆଗେ ସେ ଖଣ୍ଡାଦାନ୍ତପରି ଦାନ୍ତବାଲା ବାଘର 'ଖାଦ୍ୟ' ଥିଲା । ଏଣିକି ସେ ଆଉ ବାଘର ଆହାର ହେବାକୁ ରାଜି ହେଲା ନାହିଁ ।

ମଣିଷ କେବଳ ତା'ର ହାତ ଉପରେ ନିର୍ଭର କରି ଏପରି ଅସୀମ ସାହସିକ କାମ କରିବାକୁ ସାହସ ପାଇଲା । ଯେଉଁ ପଥର ଆଉ ଗଛର ଡ଼ାଳରେ ସେ ଆହାର ଯୋଗାଡ଼ କରନ୍ତା ତା ଦ୍ୱାରା ଆତ୍ମରକ୍ଷା କରିବାକୁ ଲାଗିଲା । ଆଉ କେବେ ସେ ଜଙ୍ଗଲରେ ଏକା ଏକା ବୁଲେ ନାହିଁ । ଏଥରକ  ସେମାନେ ସବୁବେଳେ ଦଳଦଳ ହୋଇ ବୁଲନ୍ତି । ସେହି କାରଣରୁ ଦଳର ହାତରେ ପଥର ଆଉ ଗଦାଥିଲେ ଯେ କୌଣସି ଜନ୍ତୁକୁ ପରାସ୍ତ କରାଯାଇ ପାରେ । ତା' ଛଡ଼ା ନିଆଁ କଥା ଭୁଲିଗଲେ ଚଳିବ ନାହିଁ । ନିଆଁର ଆଲୁଅରେ ଅନ୍ୟ ସବୁ ଜନ୍ତୁ ଭୟ ପାଇ ପଳାଇ ଯାଆନ୍ତି ।

ଥରେ କୌଣସି ଉପାୟରେ ଖାଦ୍ୟ ଶୃଙ୍ଖଳରୁ ମୁକ୍ତ ହେଲେ ମଣିଷ ଜଙ୍ଗଲ ଛାଡ଼ି ନଦୀର ଉପତ୍ୟକା ବାଟେ ଚାଲିବାରେ ଲାଗିଲା । ଆମ୍ଭେମାନେ କିପରି ଜାଣିବା ଯେ ମଣିଷ ନଦୀର କୂଳେ କୂଳେ ଚାଲିବାକୁ ଲାଗିଲା । ତା'ର ଯାତାୟତର ଚିହ୍ନରୁ, ଏତେଦିନ ଯାଏ ସେ ଚିହ୍ନ କିପରି ରହିଚି ? ସେ କଥା ଶୁଣ ।

ପ୍ରାୟ ଏକଲକ୍ଷବର୍ଷ ପୂର୍ବେ ଫ୍ରାନ୍‌ସ ଦେଶର ସୋମ ନଦୀର ଉପତ୍ୟକାରେ କେତେଜଣ ଶ୍ରମିକ ମାଟି ଖୋଳୁଥିଲେ । ସେମାନେ ସେହି ଉପତ୍ୟକାରେ ଅନାଦି କାଳ ଠାରୁ ଥିବା ବାଲୁକା ଆଉ ପଥର ଖୋଳି ଚାଲିଥିଲେ ।

ପ୍ରଥମ ଅବସ୍ଥାରେ ବହୁ ବହୁ ଯୁଗ ଆଗେ ସୋମ ନଦୀ ଥିଲା ଖୁବ୍ ଚଞ୍ଚଳ ଏବଂ ତା'ର ସ୍ରୋତ ଥିଲା ଅସମ୍ଭବ । କାର୍ଯ୍ୟତଃ ଯାହା କିଛି ନଦୀର ମୁହଁରେ ପଡ଼ିଲା ନଦୀ ତାକୁ ଟାଣିନେଲା ଅସମ୍ଭବ ଶକ୍ତିରେ । ଏପରି ଭାବରେ ପଥର ସଙ୍ଗେ ପଥର ଘଷି ହୋଇ କୋଉଟା ବା ଭାଙ୍ଗିଗଲା, କୋଉଟା ହେଲା ଚିକ୍କଣ, କୋଉଟା ହେଲା ଦାନ୍ତୁଆ, କୋଉଟା ହୋଇଗଲା ଚୂନା ଆଉ କୋଉଗୁଡ଼ାକ ବା ପଥର ହୋଇ ରହିଲା । ପରେ ନଦୀର ବେଗ କମି ଆସିଲାରୁ ଏଇ ସବୁ ପଥର ଉପରେ ପଟୁ ମାଟି ଜମିଗଲା । ଏଇ ସବୁ ଜମା ଜିନିସକୁ ଶ୍ରମିକମାନେ ଖୋଳୁଥିଲେ । କେତେଗୁଡ଼ାଏ ପଥର ଥିଲା ଅଦ୍ଭୁତ ରକମର । ସେଗୁଡ଼ାକ କ୍ରମେ ଆଗ ଆଡ଼କୁ ଧାରୁଆ ହୋଇ ଛୁଞ୍ଚି ପରି ହୋଇ ଯାଇଥିଲା । କେବେ ତ ନଦୀର ସୁଅରେ କୋଉ ଜିନିସ ଇଚ୍ଛା ମୁତାବକ ଦୁଇ ପାଖରେ ସେମିତି ଧାରୁଆ ହୋଇ ଯାଆନ୍ତା ନାହିଁ । ତାହା ହେଲେ କିପରି ଏଗୁଡ଼ାକ ଛୁଞ୍ଚି ଭଳିଆ ହୋଇ ଯାଇଥିଲା ?

ବୁସେର ଦ୍ୟ ପେରଥେ (Boucher de Parthes) ନାମକ ଜଣେ ଲୋକର ନଜରରେ ଏକଥା ପଡ଼ିଲା । ତାଙ୍କ ଘରେ ନାନା ପୁରୁଣା ଜିନିସ ସେ ସାଇତି ରଖିଥିଲେ । କିନ୍ତୁ ତାଙ୍କର ସଂଗ୍ରହ ଭିତରେ ପୁରୁଣା କାଳର ମଣିଷର କଂକାଳ ନ ଥିଲା । ଏପରି ସମୟରେ ସେ ପାଇଲେ ଏଇ ପଥର ଖଣ୍ଡଗୁଡ଼ିକ । ଏସବୁ ଉପରେ ସେ ବହୁତ ମୁଣ୍ଡ ଖର୍ଚ୍ଚ କଲେ । ମୁଣ୍ଡ ଘୂରେଇ ଘୂରେଇ ଶେଷରେ ସେ ସ୍ଥିର କଲେ ଯେ ଏଗୁଡ଼ାକ ମଣିଷର କାମ । ଏଗୁଡ଼ାକ ଯଦି ମଣିଷର ଅସ୍ତିତ୍ୱର ସ୍ପଷ୍ଟ ପ୍ରମାଣ ନୁହେଁ, ତେବେ ଏ ଗୁଡ଼ାକ ତା'ର ସ୍ମାରକ ଚିହ୍ନ, ତାହା କେହି ଅସ୍ୱୀକାର କରି ପାରିବ ନାହିଁ ।

ବୁସେର ଦ୍ୟ ପେରଥେ ଅନେକ ଗବେଷଣା ପରେ ଖଣ୍ଡିଏ ବହି ଲେଖିଲେ "ସୃଷ୍ଟି ରହସ୍ୟ – ଜୀବନ୍ତ ପ୍ରାଣୀର ଉଦ୍ଭବ ଏବଂ ପରିବୃଦ୍ଧି"।

ଏହାପରେ ଆରମ୍ଭ ହେଲା ପୁଣି ତାଙ୍କ ଉପରେ ଆକ୍ରମଣ । ଦୁବୋୟାଙ୍କୁ ଯେପରି ସମାଲୋଚନା ହୋଇଥିଲା, ଏହାଙ୍କୁ ମଧ୍ୟ ସେହିପରି ଦଳେ ସମାଲୋଚକଙ୍କର ସମ୍ମୁଖୀନ ହେବାକୁ ପଡ଼ିଲା । ପ୍ରାୟ ପନ୍ଦରବର୍ଷ କାଳ ଏହି ଲଢ଼େଇ ଚାଲିଲା । ବୁସେର କିନ୍ତୁ ଆପଣା ମନେ ମନେ କାମ କରି ଲାଗିଲେ । ପରେ ପରେ ସେ ଆଉ ଦୁଇଟା ବହି ଲେଖି ପକାଇଲେ । ଶେଷରେ ତାଙ୍କର ଜୟ ହେଲା ।

ଭୂତତ୍ତ୍ୱବିଦ୍ ଲିୟେଲ୍ (Lyell) ଏବଂ ପ୍ରେଷ୍ଟୱିଚ୍ (Prestwich) ତାଙ୍କୁ ସାହାଯ୍ୟ କଲେ । ସେମାନେ ନିଜେ ନିଜେ ସୋମ ଉପତ୍ୟକାକୁ ଯାଇ ତାଙ୍କୁ ସାହାଯ୍ୟ କଲେ । ସବୁ ପରୀକ୍ଷା କରି ଦେଖିଲେ, ପୁଙ୍ଖାନୁପୁଙ୍ଖରୂପେ ସବୁ ଆଲୋଚନା କରି ସେମାନେ ସ୍ଥିର

କଲେ ଯେ, ସେ କାଳରେ ଯେଉଁମାନେ ଫ୍ରାନ୍‌ସର ଏ ଅଞ୍ଚଳରେ ବାସ କରୁଥିଲେ, ଏହି ଅସ୍ତ୍ରଗୁଡ଼ିକ ସେହି ମଣିଷମାନଙ୍କର ।

ଲିୟେଲ ବହି ଲେଖିଲେ "ମଣିଷର ପୌରାଣିକତ୍ୱର ଭୂତାତ୍ତ୍ୱିକ ପ୍ରମାଣ', ସେତିକିରେ ପେରଥେଙ୍କ ସମାଲୋଚକଙ୍କର ମୁଖ ବନ୍ଦ ହୋଇଗଲା । ତହୁଁ ସେମାନେ ଆଉ ଗୋଟେ କଥା କହିବାକୁ ଆରମ୍ଭ କଲେ ।" ଏତ ସହଜ କଥା, ଏକଥା ସମସ୍ତେ ଜାଣନ୍ତି ।

ଲିୟେଲ କୌତୁକ କରି ତା'ର ଉତ୍ତର ଦେଲେ "ଯେତେବେଳେ କୌଣସି ବୈଜ୍ଞାନିକ ସତ୍ୟର ଆବିଷ୍କାର ହୁଏ, ସେତେବେଳେ ଲୋକେ ତାକୁ ଗାଳି ଦେଇ ତାକୁ ଅଶାସ୍ତ୍ରୀୟ ବୋଲି କହନ୍ତି । କିନ୍ତୁ ପରେ ଯେତେବେଳେ ସେ କହି ଲାଗନ୍ତି ଏ କଥା ସମସ୍ତେ ଜାଣନ୍ତି, ଏଥିରେ ପୁଣି ନୂଆ କଥା କ'ଣ ଅଛି ।"

ପେରଥେଙ୍କ ଆବିଷ୍କାର ପରେ ଆଉ ଅନେକ ଅସ୍ତ୍ରଶସ୍ତ୍ର ଆବିଷ୍କୃତ ହୋଇଛି । ସେ ସବୁ ପ୍ରାୟ ନଦୀ କୂଳରେ ମିଳିଚି । ଏଇ ସବୁ ଅସ୍ତ୍ର ହେଉଚି "ହସ୍ତରେଖା" ଯାହାକୁ ଅନୁସରଣ କରି ନଦୀ ଉପତ୍ୟକାରେ ଆମ୍ଭେମାନେ ମନୁଷ୍ୟର ଖୋଜ ପାଉଁ ।

ଏସବୁ ମଣିଷ ଛଡ଼ା ଆଉ କାହାର ହାତର କାମ ହୋଇପାରେନାହିଁ । ଅନ୍ୟ କୌଣସି ଜନ୍ତୁ ଏ ସବୁ ଅସ୍ତ୍ରଶସ୍ତ୍ର ତିଆରିକରି ପାରନ୍ତି ନାଇଁ ।

## ଖଣତି ହାତରେ ମଣିଷ

ଅସ୍ତ୍ର ଶସ୍ତ୍ର ବ୍ୟବହାର କରି ନ ପାରିଲେ ମଣିଷର ଦଶା କ'ଣ ହୁଅନ୍ତା ? ତାହା ହେଲେ ନୂଆ କୌଣସି ଅସ୍ତ୍ରଟିଏ ସେ ବ୍ୟବହାର କରିବାକୁ ଶିଖି ପାରନ୍ତା ନାହିଁ । ମାଟି ଖୋଳିବାକୁ ହେଲେ ତାକୁ ଖଣତିହସ୍ତା ହୋଇ ଜନ୍ମ ହେବାକୁ ପଡ଼ନ୍ତା ! କିନ୍ତୁ ଯଦି ସେପରି ମଣିଷ କିଏ ବା ହୁଏ, ହୁଏତ ଭଲ ମାଟି ଖୋଳି ପାରନ୍ତା । କିନ୍ତୁ ସେ ଆଉ କାହାକୁ ସେ କାମ ଶିଖାଇପାରନ୍ତା ନାହିଁ । ଏହି ଖଣତିହାତ ନେଇ ବୁଲାଚଲା କରିବାକୁ ପଡ଼ନ୍ତା । ଏଇ ହାତରେ ସେ ଆଉ କିଛି କରିପାରନ୍ତା ନାହିଁ ।

କେବଳ ସେତିକି ନୁହେଁ । ଏ ପ୍ରକାର ହାତ ସେଇ ପ୍ରକାର ଜୀବର ଥାଏ ଯିଏ ମାଟିତଳେ ରହେ । ଯେଉଁ ଜୀବ ମାଟି ଉପରେ ରହେ ତା ପକ୍ଷରେ ଏ ପ୍ରକାର ହାତ ଅନାବଶ୍ୟକ, ବିଳାସିତା ।

କାର୍ଯ୍ୟତଃ ଦେଖିବାକୁ ପାଇଲୁ ଖଣତିହାତ ମଣିଷ ହେଲେ ଆମକୁ ବିପଦ କେତେ ? ତା ନ ହୋଇଥିବାରୁ ଆମେ କେଡ଼େ ସୁଖରେ ଥାଉଁ । ଇଚ୍ଛା କଲେ ଖଣତି ଗଢ଼େଇ ନେଇ ପାରୁଥାଇ । ନୋହିଲେ ଦରକାର ହିସାବରେ ଛୁରି, କଇଁଚି – ଯା ଦରକାର ତା' ବନେଇ ନେଇ କାମ ଚଳାଉଥାଉଁ । ପୂର୍ବପୁରୁଷମାନଙ୍କ ଠାରୁ ଉତ୍ତରାଧିକାରୀ ସୂତ୍ରରେ ଯେଉଁ କୋଡ଼ିଏଟି ଆଙ୍ଗୁଠି ଏବଂ ବତିଶଟି ଦାନ୍ତ ଆମ୍ଭେମାନେ ପାଇଥାଇ ତାକୁ ନେଇ ଆମେ ହଜାର ରକମ କାମ କରୁଥାଇ। ତା'ର ହିସାବ କିଏ ରଖେ ? ଏହି ସବୁ ସୁଯୋଗରୁହିଁ ଜଙ୍ଗଲର ଅନ୍ୟ କୌଣସି ଜୀବ ମଣିଷ ସହିତ ପ୍ରତିଯୋଗିତାରେ ଜୟଲାଭ କରି ପାରି ନାହିଁ – ପାରିବ ମଧ୍ୟ ନାହିଁ ।

- ୦ -

# ମଣିଷ ଆଉ ନଦୀ ଯନ୍ତ୍ରପାତି ତିଆରି କଲେ

ମନୁଷ୍ୟତ୍ୱର ପ୍ରଥମ ଯୁଗରେ କିନ୍ତୁ ମଣିଷ ତା'ର ଅସ୍ତ୍ରଶସ୍ତ୍ର କିଛି ତିଆରି କରି ନାହିଁ । ନଦୀକୂଳରୁ ସେ ଧାରୁଆ ପଥର ସବୁ ନିଜେ ଖୋଜି ନେଉଥିଲା । ଯେଉଁଠି ନଦୀରେ ପଙ୍କ ବେଶୀ ସେଇଠି ଏହି ଅସ୍ତ୍ର ମଧ ମିଳେ ବେଶୀ । ନଦୀର ସ୍ରୋତରେ ଆସିଥିବା ସବୁ ପଥର ସେଥିପାଇଁ ମଣିଷର କାମରେ ଲାଗନ୍ତି ନାଇଁ । ଏ ସବୁ ଭିତରୁ ବାଛି ବାଛି ନେଇ ମଣିଷ କାମରେ ଲଗାଉଥିଲା ।

କ୍ରମେ ମଣିଷ ଦେଖିଲା ନଦୀର ଦୟା ଉପରେ ଭରସା ରଖି କୌଣସି ଲାଭ ନାହିଁ । ସେଥିପାଇଁ ମଣିଷମାନେ ଆପଣା ଉପାୟରେ ପଥର ଘଷି ଅସ୍ତ୍ର ତିଆରିରେ ଲାଗିଲେ । ମଣିଷର ସ୍ୱଭାବ ମଧ ଏହିପରି । କ୍ରମାଗତ ଗୋଟାକରୁ ଆଉ ଗୋଟାଏ ଆବିଷ୍କାର କରିବା ହିଁ ତା'ର ନିଶା । ପଥର ଅସ୍ତ୍ରରୁ ଆରମ୍ଭ କରି ହଜାର ହଜାର ବର୍ଷ ପରେ ମଣିଷ ସବା ଶେଷରେ ଅସ୍ତ୍ର ବ୍ୟବହାର ଆରମ୍ଭ କଲା । ଏହି ଭାବରେ ପଦେ ପଦେ ପ୍ରକୃତିର ନିଜର ଜିନିଷକୁ ବୁଦ୍ଧି ଖଟେଇ ତା'ର ନିଜ ପ୍ରୟୋଜନ ଅନୁସାରେ ତିଆରି କରି ନେଲା ମଣିଷ । ପ୍ରକୃତିର ନାଗଫାଶ ବନ୍ଧନରୁ ମୁକ୍ତ ହୋଇଗଲା ।

ପ୍ରଥମେ ପ୍ରଥମେ ମଣିଷ ଅସ୍ତ୍ରର ଉପାଦାନ ତିଆରି ଜାଣୁ ନ ଥିଲା । ଯେତେବେଳେ ଯେପରି ଉପାଦାନ ମିଳୁଥିଲା ତାକୁ ନେଇ ସେ ଅସ୍ତ୍ର ଗଢୁଥିଲା । କୌଣସି ଗୋଟିଏ ପଥର ନେଇ ଆଉ ଗୋଟେ ପଥର ଦେହରେ ତାକୁ ବାଡ଼େଇ ଭାଙ୍ଗି ତା' ଦ୍ୱାରା ସେ ଅସ୍ତ୍ର ଗଢୁଥିଲା । ଅସ୍ତ୍ର କରିବା ଭଳି ପଥର ପ୍ରଥମେ ମିଳିଲା, କିନ୍ତୁ ପରେ ସେଇ ସବୁ ପଥରରେ କାଟିବାର, ଛାଟିବାର, ଗର୍ତ୍ତ କରିବାର କାମ ଚଳୁଥିଲା ।

ଆଦିମ କାଳର ଯେ ସବୁ ଅସ୍ତ୍ରର ନମୁନା ମିଳେ, ତା'ର ସଙ୍ଗେ ନଦୀ ସୁଅରେ ଆପଣା ଛାଏଁ ଗଢ଼ି ଉଠିଥିବା ପଥରର ଏତେ ସାଦୃଶ୍ୟ ଅଛି ଯେ, କହିବା କଠିଣ । ସେ ଗୁଡ଼ାକ ମଣିଷର ନା ନଦୀର ତିଆରି । କିନ୍ତୁ ଏହା ଛଡ଼ା ଆହୁରି ଏପରି ଯନ୍ତ୍ରପାତି ମିଳିଛି ଯାହା ଦେଖିଲେ କୌଣସି ସନ୍ଦେହ ରହିବ ନାହିଁ ଯେ ସେଗୁଡ଼ାକ ମଣିଷର ହାତରେ ହିଁ ଗଢ଼ା, ମଣିଷ ଛଡ଼ା ପୃଥିବୀର ଅନ୍ୟ କେହି ସେ ସବୁ ତିଆରି କରି ପାରନ୍ତା ନାହିଁ ।

ପ୍ରକୃତିରେ ସବୁ ହୁଏ, କିନ୍ତୁ ସେ ସବୁ ହେବାରେ କୌଣସି ଭାବନା ଚିନ୍ତା ନାହିଁ – ନାହିଁ କୌଣସି ଉଦ୍ଦେଶ୍ୟ । କେବଳ ମଣିଷହିଁ ଉଦ୍ଦେଶ୍ୟ ନେଇ ସଚେତନଭାବରେ ସବୁ

କାମ କରେ । ଏହିପରି ଭାବରେ ଜଗତରେ ପ୍ରଥମେ ପରିକଳ୍ପନାର ଜନ୍ମ ହୁଏ । ଏହାଦ୍ୱାରା ମଣିଷର ସ୍ୱାଧୀନତା ଆହୁରି ବଢ଼ିଗଲା । ଏହାରି ପରେ ସେ ନିଜେ ମଧ ନାନା ପ୍ରକାରର ଅସ୍ତ୍ର ଶସ୍ତ୍ର ତିଆରି କରିବା ଶିଖିଲା ।

## ଜୀବନ ବୃତ୍ତାନ୍ତର ଆରମ୍ଭ

ଯେ କୌଣସି ଜୀବନ ଚରିତ ପଢ଼ିଲେ ତୁମ୍ଭେମାନେ ଦେଖିବ ପ୍ରଥମେ ନାୟକର ଜନ୍ମସ୍ଥାନ, ଜନ୍ମତାରିଖ ଇତ୍ୟାଦି ଦିଆଥିବ । ବହିର ମୂଳରୁ ଶେଷ ପର୍ଯ୍ୟନ୍ତ ନାୟକର ଗୋଟିଏ ନାମ ଥାଏ । କିନ୍ତୁ ଆମ୍ଭମାନଙ୍କର ନାୟକର କଥା ଏତେ ସହଜ ନୁହେଁ । ପ୍ରତ୍ୟେକ ଅଧ୍ୟାୟରେ ତା'ର ନାମ ବଦଳୁଛି !

ଅବଶ୍ୟ ଆମ୍ଭମାନଙ୍କର ନାୟକକୁ ମୂଳରୁ ଖାଲି 'ମଣିଷ' କହିଲେ ହୁଅନ୍ତା, କିନ୍ତୁ କିପରି ଆଜିକାର ମଣିଷ ଏବଂ ସେ ସମୟର ପିଥେକ୍ୟାନଥ୍ରପାସ ବା ମାଙ୍କଡ଼-ମଣିଷକୁ ଏକ ନାମରେ ଡ଼ାକିବା ? ସିନାନଥ୍ରପାସ ସେତେକାଳର ପରି ନ ହେଲେ ମଧ ପୁରାପୁରି ମଣିଷ ତ ନୁହେଁ । ଜର୍ମାନୀର ହାଇନଡ଼ଲବର୍ଗ-ମଣିଷ ଅନେକ ଅଂଶରେ ଆମ୍ଭମାନଙ୍କ ପରି, ତେବେ ସେ ଦେଖିବାକୁ କିପରି ଥିଲା ତାହା କହିବା କଠିଣ । ହାଇନଡ଼ଲବର୍ଗ ସହରରେ କେବଳ ତାର ଗୋଟିଏ ଖପୁରୀରୁ ଆମ୍ଭମାନଙ୍କର ଯାହା ଅନ୍ଦାଜ ହେବ, ସେ ଅନେକ ଅଂଶରେ ମଣିଷ ଭଳି ଥିଲା । ଏହିଥିରୁ ତାକୁ ହୁଏତ ମଣିଷ ନାମ ଦିଆଯାଇ ପାରେ । ତେବେ ତାର ଦାନ୍ତ ଜନ୍ତୁଭଳି ନୁହେଁ – ଅନେକ ଅଂଶରେ ମଣିଷର ଦାନ୍ତ ଭଳି । ଆଗ ଯୁଗର ପୂର୍ବପୁରୁଷମାନଙ୍କର ଦାନ୍ତ ଥିଲା ଅନ୍ୟରକମ । ତଳ ପାଟିର ଉପର ଦେଇ, ଉପର ପାଟି ବାହାରି ଆସିଥାଏ ଠିକ ବାଘ ବା ବିରାଡ଼ି ପରି; କିନ୍ତୁ ଏମାନଙ୍କର ଦାନ୍ତ ଆମ୍ଭମାନଙ୍କର ଦାନ୍ତ ପରି । ଏ ସବୁ ସତ୍ତ୍ୱେ ହାଇନଡ଼ଲବର୍ଗ ମଣିଷ ଖାଣ୍ଟି ମଣିଷ ନୁହେଁ ।

ଏହିଠାରେ ଆମ୍ଭମାନଙ୍କର ତିନୋଟି ନାମ ହେଲାଣି – ପିଥେକ୍ୟାନଥ୍ରପାସ, ସିନେନଥ୍ରପାସ ଏବଂ ହାଇନଡ଼ଲବର୍ଗ ମଣିଷ । ଆଉ ଶୁଣିବ। ହାଇନଡ଼ଲବର୍ଗ ପରେ ଆସିଲା ଏରିଂସ୍‌ଡ଼ର୍ଫ ମଣିଷ (Eringsdorf man), ତା' ପରେ ନିୟାନଡ଼ରଥଲ ମଣିଷ (Neanderthal man), ଏବଂ ଆହୁରି ପରେ କ୍ରୋ-ମାଗନନ୍ ମଣିଷ (Cro-magnon man)

ବର୍ତ୍ତମାନ ଅଧ୍ୟାୟରେ ଆମ୍ଭେମାନେ ଖାଲି ହାଇନଡ଼ଲବର୍ଗ ମଣିଷ ନେଇ ଆଲୋଚନା କରିବା । ଏ ମଣିଷମାନେ ନଦୀର କୂଳେ କୂଳେ ଅସ୍ତ୍ର ଶସ୍ତ୍ର ଖୋଜି ଖୋଜି

ବୁଲୁଥିଲେ । ସେମାନେ ଗୋଟିଏ ପଥର ସହିତ ଆଉ ଏକ ପଥର ବାଡ଼େଇ କୁଡ଼ୋଳର କାମ ଚଳାଇଥିଲେ । ଆଉ ସେମାନଙ୍କର ସେହି ସବୁ କୁଡ଼ୋଳ ହିଁ ଆଜି କାଲି ଅନେକ ଜାଗାରେ ଆବିଷ୍କୃତ ହୋଇଛି ।

ଆମ୍ଭମାନଙ୍କର ନାୟକର ନାମ ଦେବା ଯେପରି କାଠିକରପାଠ, କେବେ ତାର ଜନ୍ମ ହେଲା ସେକଥା ମଧ କହିବା ଠିକ ସେପରି କଠିଣ । କୌଣସି ବିଶେଷ ଦିନ ବା ଶୁଭଲଗ୍ନ ବା ବର୍ଷରେ ହଠାତ୍ ମଣିଷ ମଣିଷହୋଇ ଉଠିନି । ପିଥେକ୍ୟାନ୍ଥ୍ରପାସ, ସିନାନ୍ଥ୍ରପାସ ଏବଂ ପ୍ରକୃତ ମଣିଷର ମଧରେ ହଜାର ହଜାର ବର୍ଷର ତଫାତ୍ ରହିଚି । ତୁମ୍ଭମାନଙ୍କର କି ମନେ ଅଛି ଯେ ପିଥେକ୍ୟାନ୍ଥ୍ରପାସ ପ୍ରାୟ ଦଶଲକ୍ଷ ବର୍ଷ ଆଗେ ପୃଥିବୀରେ ପ୍ରଥମେ ଜନ୍ମ ନେଲା ? ତାହାହେଲେ ଅମ୍ଭେମାନେ କହିବା ମଣିଷର ବୟସ ଠିକ୍ ଦଶଲକ୍ଷ ବର୍ଷ ! ସବୁଠୁଁ କଠିଣ କଣ ଜାଣ ? ତାର ଜନ୍ମ ସ୍ଥାନର ଠିକଣା କହିବା, ଆମ୍ଭମାନଙ୍କର ଆଦିମ ବୁଢ଼ିମା – ଯାର ବଂଶରୁ ମଣିଷ, ଗରିଲା, ଶିଂପାଞ୍ଜି ଏସବୁ ସମ୍ଭବିଲେ, ସେମାନଙ୍କୁ ବିଜ୍ଞାନୀମାନେ ନାଁ ଦେଇଛନ୍ତି ଡ୍ରାଇୟୋପିଥକ୍ୟାସ (Dryopithocus) । ଏଇ ଡ୍ରାଇୟୋପିଥକ୍ୟାସ କୌଣସି ବିଶେଷ ଦେଶରେ ନ ଥାନ୍ତି । କେହି କେହି କହନ୍ତି ଏମାନେ ଇଉରୋପରେ ରହୁଥିଲେ । ଆଉ ଅନେକଙ୍କ ମତରେ ଉତ୍ତର ଆଫ୍ରିକା କିମ୍ବା ଦକ୍ଷିଣ ଏସିଆରେ ମଧ ଏମାନଙ୍କର ବସବାସ ବିଚିତ୍ର ନୁହେଁ ।

ତା' ଛଡ଼ା ପିଥେକ୍ୟାନଥ୍ରପାସ ଏବଂ ସିନାନଥ୍ରପାସର ହାଡ଼ ଯେ ଏସିଆରେ ମିଳେ ଏକଥା ଆମେ ଜାଣି ଥାଇଁ । ତା ହେଲେ ଦେଖ ଏମାନଙ୍କର ଜନ୍ମସ୍ଥାନ କହିବା କେଡ଼େ କଠିଣ । ତେବେ ଏଇ ସମସ୍ତ ନଜିର ଦେଖି ମନେ ହୁଏ ଯେ, ମଣିଷ ଏକ ଜାଗାରେ ଜନ୍ମ ନହୋଇ ପୁରୁଣା ଜଗତରେ (ଅର୍ଥାତ୍ ଏସିଆ, ଇଉରୋପ, ଆଫ୍ରିକା ଖଣ୍ଡରେ) କେତେକ ଜାଗାରେ ଥିଲା ।

## ମଣିଷ ଫୁରୁସତ ପାଇଲା

ଲୁହା, କୋଇଲା, ନିଆଁ ଏ ସବୁ ଆମେ ଜାଣୁ – କିନ୍ତୁ ସମୟ କିପରି ମିଳେ ? କହିପାରିବ ? ଏହାର ଉତ୍ତର ଏତେ ସହଜ ନୁହେଁ । କିନ୍ତୁ ଏଇଟା ମଧ ଠିକ୍ ଯେ ବହୁତ ଦିନ ଆଗରୁ ମଣିଷ ସମୟ ପାଇ ଆସିଛି । ଯନ୍ତ୍ରପାତି ତିଆରି ସମୟରେ ସେ ଏ ଜଗତରେ ଏକ ନୁଆ ଜିନିଷ ଆବିଷ୍କାର କଲା । ତାହା ହେଉଚି 'କାମ' ।

ପୁଣି କାମ କରିବାକୁ ଗଲେ ତ ସମୟ ଦରକାର । ଗୋଟିଏ ପଥରର ଅସ୍ତ୍ର କରିବାକୁ ଗଲେ ତ ଉପଯୁକ୍ତ ପଥର ପ୍ରଥମେ ଖୋଜି ପାଇବା ଦରକାର । ସେଇ ପଥର

ଖୋଜା ଏତେ ସହଜ କାମ ନୁହେଁ । ନଦୀ କୂଳରେ ବୁଲିଲେ ହଜାର ହଜାର ଖଣ୍ଡ ପଥର ମିଳିଯାଏ । ତା' ପରେ ସେଇ ପଥର ଭାଙ୍ଗି ଅସ୍ତ୍ର କରିବା ଆଉ ଏକ କଠିନ ବ୍ୟାପାର । ଏତେ ସମୟ ସେ କେଉଁଠାରୁ ପାଇବ ?

ଆଦିମ ମନୁଷ୍ୟର ସବୁ ସମୟ କଟିଯାଉଥାଏ ଖାଲି ଖାଇବାର ସନ୍ଧାନରେ। କାହିଁକି ତା' କହୁଚି । ସେମାନେ ଖାଆନ୍ତି ଖାଲି ଫଳମୂଳ। କେତେ ଫଳ ହେଲେ ମଣିଷର ଭୋକ ମେଣ୍ଟିବ ତା ତୁମେ ଅନ୍ଦାଜ କର । ସେହି ପରିମାଣର ଆହାର ଯୋଗାଡ଼ କରିବାଟା ସାରା ଦିନଟା ସେମାନଙ୍କର କଟିଯିବା ବିଚିତ୍ର ନୁହେଁ ।

କିନ୍ତୁ ଅସ୍ତ୍ର ଆବିଷ୍କାର ପରେ ଗୋଟାଏ ଆଶ୍ଚର୍ଯ୍ୟ ଘଟଣା ଘଟିଲା । ଅସ୍ତ୍ର ତିଆରି କରିବାକୁ ଏକ ପାଖରେ ଯେପରି ସମୟ ଲାଗିଲା, ସେପରି ଆଉ ଏକ ପାଖେ ଅସ୍ତ୍ରରେ ଅନେକ କଠିଣ କାମ କରିବା ମଧ୍ୟ ସହଜ ହୋଇଗଲା । ଯେଉଁ କାମରେ ଆମକୁ ଘଣ୍ଟା ପରେ ଘଣ୍ଟା ସମୟ ଲାଗନ୍ତା – ଏକ୍ଷଣି ସେ କାମରେ ଅଧେ ସମୟ ଲାଗିଲା । ସୁତରାଂ ଖୁବ୍ ତରବରରେ ଆହାର ସଂଗ୍ରହ କାମ କରାଯାଇ ପାରିଲା । ଅର୍ଥାତ୍ ମଣିଷ ଆହାର ଛଡ଼ା ଅନ୍ୟାନ୍ୟ କାମ ପାଇଁ ଆଉରି ବେଶୀ ସମୟ ପାଇଲା । ଏହି ବଳକା ସମୟରେ ସେ ଆହୁରି ଭଲ ଅସ୍ତ୍ର ତିଆରି କରି ଲାଗିଲା ।

ସେହି ଧାରୁଆ ଅସ୍ତ୍ରରେ ସେ ସେତେବେଳେ ଶିକାର କରିବା ଆରମ୍ଭ କରେ । ଶିକାରରେ ବଡ଼ ଲାଭ ହେଉଚି ଏହି ଯେ ଥରେ ବଡ଼ କୋଉ ଗୋଟାଏ ଶିକାର ପାଇଗଲେ ସାରାଦିନର ଖୋରାକ ସେଥିରୁ ହୋଇଯାଏ । ବାକି ସବୁ ସମୟ ଅସ୍ତ୍ରଶସ୍ତ୍ର ତିଆରି ହୁଏ ।

ସେ ଯୁଗରେ କିନ୍ତୁ ସେପର୍ଯ୍ୟନ୍ତ ମଣିଷ ଖୁବ୍ ଭଲ ଶିକାରୀ ହୋଇ ପାରି ନ ଥିଲା । ସେ ଖାଲି ଭଲ ଭଲ ଜିନିଷ ସଂଗ୍ରହ କରିବା ଶିଖିଥିଲା ।

## ଯୋଗାଡ଼ରେ ମଣିଷ

ଆମ୍ଭେମାନେ ସମସ୍ତେ କିଛି ନା କିଛି ଯୋଗାଡ଼ କରୁଁ । ହୁଏ ତ ଫୁଲ ତୋଳି କେବେ ଚାଙ୍ଗୁଡ଼ି ଭର୍ତ୍ତି ହୋଇଯାଏ ତ ଏମିତି ବି ଦିନ ଆସେ ମୋଟେ ଫୁଲ ମିଳେ ନାଇଁ । ଯା'ର ଫୁଲ ତୋଳା ହେଉଚି ଚବିଶ ଘଣ୍ଟା କାମ, ତେବେ ତା'ର ଦଶା କ'ଣ ହୁଏ ?

ଏଥିରୁ ବୁଝିପାରିବ ସେ ଯୁଗର ମଣିଷର କି ଦୁରବସ୍ଥା ଥିଲା । ସେମାନଙ୍କର ଘରଦ୍ୱାର ନଥିଲା ଯେ ଯେତେବେଳେ ଇଚ୍ଛା ସେତେବେଳେ ଦୌଡ଼ି ଆସି ଭାତ ଖାଇ ଦେଇ ପୁଣି ଫୁଲ ତୋଳିବାକୁ ବାହାରି ପଡ଼ିବେ । ସାରାଦିନ ଭ୍ରମି ଭ୍ରମି ଆହାର ଖୋଜୁଥିଲେ

ବୋଲି ଏବଂ ତା ଛଡ଼ା ଆହାର ବିଷୟରେ କୌଣସି ବାଛବିଚାର ନଥିଲା ବୋଲି ମଣିଷ ସେ କାଳରେ ବଞ୍ଚିଗଲା ।

ଅନ୍ୟ କୁଟୁମ୍ବମାନଙ୍କର ଅବସ୍ଥା ଠୁଁ ଅବଶ୍ୟ ମଣିଷର ଅବସ୍ଥା ଭଲ ଥିଲା । କିନ୍ତୁ ତା' ବୋଲି ଆପଣା ଦୃଷ୍ଟିରୁ ହିଂସା କରିବା ଭଳି ସେ ଅବସ୍ଥା କେବେ ନ ଥିଲା । ତା ଛଡ଼ା ଏକ ଭୟାନକ ବିପଦ ମୁଣ୍ଡ ଉପରକୁ ମାଡ଼ି ଆସୁଥିଲା ।

- ୦ -

# ଗୋଟେ ଜଗତର୍ ଶେଷ ଏବଂ ଆଉ୍ ଏକ ଜଗତର୍ ଆରମ୍ଭ

ସେହି ଯୁଗର ଅନେକ ଘଟଣାବଳିର କାରଣ ଏପର୍ଯ୍ୟନ୍ତ ମଧ୍ୟ ଆବିଷ୍କାର କରିବା ସମ୍ଭବ ହୋଇ ନାହିଁ । ସେହି କାରଣରୁ ଏହି ସମସ୍ତ ଘଟଣା ଆଜି ମଧ୍ୟ ଆମ୍ଭମାନଙ୍କ ପାଖରେ ରହସ୍ୟରେ ବେଢ଼ା ହୋଇ ରହିଛି ।

ଗୋଟିଏ ଘଟଣା ହେଉଛି ବରଫର ସ୍ରୋତ । ଏହାର ଆଗେ ଆଉ ଥରେ ବରଫର ସ୍ରୋତ କଥା ଉଲ୍ଲେଖ କରାଯାଇଛି । କିନ୍ତୁ ଠିକ୍ ସେଇ ପ୍ରକାରର ଆଉ ଗୋଟିଏ ପ୍ରବଳ ସ୍ରୋତ ସେତେବେଳେ ପୃଥିବୀ ବୁକୁରେ ବାହିବାକୁ ଲାଗିଲା । ସେହି ସ୍ରୋତର ତୋଡ଼ରେ ବଡ଼ ବଡ଼ ପାହାଡ଼ର ଶିଖ ଖସିପଡ଼ିବାକୁ ଲାଗିଲା । ମାଟିର ବୁକୁରେ ଗଭୀର ଖାତ ହେବାକୁ ଲାଗିଲା ଏବଂ ସେହି ସ୍ରୋତ ସଙ୍ଗେ ଭାସିଗଲା ପ୍ରଚୁର ଆବର୍ଜ୍ଜନା ।

ବିରାଟ ସୈନ୍ୟବାହିନୀ ପରି ବରଫର ସ୍ରୋତଟି ଉତ୍ତର ଦିଗଠାରୁ ଦକ୍ଷିଣକୁ ଧାଇଁବାକୁ ଲାଗିଲା । ଆଜି ମଧ୍ୟ ଆମ୍ଭେମାନେ ଇଉରୋପର ବିଭିନ୍ନ ଦେଶରେ ସେ ବିରାଟ ଅଭିଯାନର ଚିହ୍ନ ଦେଖିବାକୁ ପାଇବା ।

କିନ୍ତୁ ଦିନକରେ ଏ ସ୍ରୋତ ବହିବାକୁ ଆରମ୍ଭ କରି ନାହିଁ । ପ୍ରଥମେ ସମୁଦ୍ରର ଜୀବଜନ୍ତୁମାନେ ଟେର ପାଆନ୍ତି । ବହୁତ ସାମୁଦ୍ରିକ ଜୀବ ସେଇ ଶୀତର ଦାଉରେ ଲୋପ ହୋଇ ଗଲେ । ଯେଉଁମାନେ ନୂତନ କରି ଶୀତ ସଙ୍ଗେ ଖାପ ଖୁଆଇ ପାରିଲେ ସେମାନେ ଖାଲି ବଞ୍ଚିଗଲେ । ସମୁଦ୍ରର ସ୍ରୋତରେ ଭାସିଆସିଥିବା କଙ୍କାଳ ଆଜି ମଧ୍ୟ ତା'ର ସାକ୍ଷୀଦିଏ ।

ସେଇ ଶୀତରେ ଆରମ୍ଭ ହେଲା ଜଙ୍ଗଲର ଲଢ଼େଇ । ଜଙ୍ଗଲର ସବୁ ଗଛ ଏକ ପ୍ରକାର ନୁହେଁ । ଫର୍ ଗଛ କେବେ ଖରାରେ ବଢ଼ି ପାରିବ ନାହିଁ । ଆଉ ଆସ୍‌ପେନ୍ ଗଛର ଆନନ୍ଦ ଦେଖେ କିଏ ? ସେ ତର ତର ହୋଇ ବଢ଼ିବାରେ ଲାଗେ । ଆଉ ଥରେ ଜଙ୍ଗଲ ମଧ୍ୟରେ ଆସ୍‌ପେନ୍ ଗଛର ବଡ଼ିମା ବଢ଼ିଲା – ଫର୍ ଗଛ ଗଲା ତଳକୁ । କିନ୍ତୁ ଆସପେନ୍ ଗଛ ଯେତେବେଳେ ଖୁବ୍ ବଡ଼ ହୋଇଗଲା ତା'ର ପତ୍ର ଛାଇରେ ଫର୍ ଗଛ ପୁଣି ବଢ଼ିବାକୁ ଲାଗିଲା । ଯୁଗ ପରେ ଯୁଗ ଏଇ ଲଢ଼େଇ ଚାଲିଲା । ଅବଶେଷରେ ଫର୍ ଗଛର ହେଲା ଜୟ । ସଂଗ୍ରାମର ମଧ୍ୟରେ ଯେତେବେଳେ ଆସ୍‌ପେନ୍ ଜିତେ, ସେତେବେଳେ

ଜଙ୍ଗଲର ଜୀବମାନଙ୍କର ସ୍ୱଭାବ ବଦଳି ଯାଏ । କାରଣ ଫର୍ ଗଛର ବନ୍ଧୀମାନେ ତ ଆସପେନ ଗଛରେ ରହିପାରନ୍ତି ନାହିଁ ।

ସେହି ବରଫ ସ୍ରୋତର ଅଭିଯାନର ଫଳାଫଳ ହେଲା ଭୀଷଣ । ଯେଉଁ ସବୁ ଗଛ ଶୀତ ସହ୍ୟ କରି ନ ପାରିଲେ ସେମାନେ ମରିଗଲେ; ନତୁବା ଆହୁରି ଦକ୍ଷିଣରେ ଅପେକ୍ଷାକୃତ ଗରମ ବାତାବରଣରେ ରହିବାକୁ ପଳେଇ ଆସିଲେ ।

ଆଉ ମଣିଷର କି ଅବସ୍ଥା ହେଲା । ମଣିଷ ଯେକୌଣସିମତେ ମାଟି କାମୁଡ଼ି ପଡ଼ି ରହିଲା । ଯେଉଁମାନେ ଗରମ ଦେଶରେ ଥିଲେ ସେମାନେ ତ ଏକରକମ ଭଲ ଥିଲେ । ଆଉ ଯେଉଁମାନେ ଶୀତ ଦେଶରେ ଥିଲେ ସେମାନେ ଗଛ ଡ଼ାଳର ଆଡୁଆଳରେ କୁକୁରିକାକୁରି ହୋଇ ବସି ଠକ୍ ଠକ୍ କରି କମ୍ପି ଦିନ କାଟିବାରେ ଲାଗିଲେ । କ୍ଷୁଧା, ଶୀତ ଆଉ ଜଙ୍ଗଲି ଜାନୁଆରମାନେ ତାଙ୍କୁ ପ୍ରତି ମୁହୂର୍ତ୍ତରେ ଭୟ ଦେଖାନ୍ତି । ଚିନ୍ତା କରିବା ଶକ୍ତି ଥିଲେ ସେମାନେ ସେଦିନ ନିଶ୍ଚୟ ମନେ କରିଥାନ୍ତେ ପ୍ରଳୟ ଆସିଗଲା । ବହୁତ ଲୋକ ବହୁତ ଦିନ ଧରି ଏ ଜ୍ୟୋତିଷ ବାଣୀ କରିଚନ୍ତି ଯେ ପୃଥିବୀ ରସାତଳକୁ ଯିବାକୁ ଆଉ ବାକୀ ନାହିଁ । ମଧ୍ୟ ଯୁଗରେ ଥରେ ଆକାଶରେ ଲଞ୍ଜା ତାରା ଦେଖି ସମସ୍ତେ ଭୟରେ କୁହାକୋହି ହେଉଥିଲେ, ''ଏଥର ଆଉ ରକ୍ଷା ନାହିଁ, ପୃଥିବୀ ଧ୍ୱଂସ ହେବ ନିଶ୍ଚେ ।''

ପୁଣି ଯେତେବେଳେ ଭୟଙ୍କର ମଡ଼କରେ ଦେଶର ସବୁ ଉଜୁଡ଼ି ଯାଏ' ସେତେବେଳେ ସମସ୍ତେ ସେଇ ଗୋଟିଏ କଥା କହନ୍ତି, ଧ୍ୱଂସର ଆଉ ଡ଼େରି ନାହିଁ ।

ନିଜର ରାସ୍ତାରେ ଚକର ଦେଉଛି ଲାଞ୍ଜ ତାରା । ସେଇ ବାଟରେ ଯାଉଁ ଯାଉଁ କେତେବେଳେ ତାହା ପୃଥିବୀ ଲୋକଙ୍କର ଦୃଷ୍ଟିରେ ପଡୁଚି । ପୃଥିବୀର ଲୋକ ସାଧାରଣ ସେଥିରେ କ'ଣ ଭାବୁଛନ୍ତି ନଭାବୁଛନ୍ତି ତା'ର ଯାଏ କେତେ ଆସେ କେତେ ?

ଆମ୍ଭେମାନେ ଆଉ ମଧ ଜାଣୁ ଯେ ମହାମାରୀରେ ପୃଥିବୀ ଧ୍ୱଂସ ହୋଇଯାଏ ନାଇଁ । ସବୁଠାରୁ ଦରକାରୀ ହେଉଚି ସେହି ମହାମାରୀର କାରଣ ଜାଣିବା । କାରଣ ଜାଣିଲେ ଆମ୍ଭେମାନେ ଆହୁରି ଭଲ କରି ତା' ବିରୋଧରେ ସଂଗ୍ରାମ କରି ପାରିବା ।

ଅନ୍ଧବିଶ୍ୱାସୀ ଏବଂ କୁସଂସ୍କାରାଚ୍ଛନ୍ନ ଲୋକମାନେ ଯେ କେବଳ ପୃଥିବୀ ଧ୍ୱଂସପାଇବ ବୋଲି କହନ୍ତି ତାହା ନୁହେଁ । ବହୁତ ବିଜ୍ଞାନୀ ମଧ ଏଇ ଧରଣର କଥା କହନ୍ତି । ସେମାନଙ୍କର ମତରେ କ୍ରମେ ଉତ୍ତାପର ଅଭାବରେ ଏ ମନୁଷ୍ୟ ମରିଯିବ । ସେମାନେ ହିସାବ କଷି ଦେଖାଇ ଦିଅନ୍ତି ଯେ ପୃଥିବୀରେ ଯେତେ କୋଇଲା ମାଟିତଳେ ଅଛି ଏବଂ

ଆଉ ଯେତେ ପ୍ରକାର ଉତ୍ତାପର ଉପାଦାନ ଅଛି ସବୁ କ୍ରମେ ଶେଷ ହୋଇ ଆସୁଛି । ସେ ସବୁ ଏକାବେଳେ ସରିଯିବାର ଦିନ ଏଥରକ ବେଶୀ ଦୂର ନାହିଁ । ଆମ୍ଭମାନଙ୍କ ସାମନାରେ ବିଜ୍ଞାନୀମାନେ ଏ ପ୍ରକାରର ନାନା ଭୟାବହ ଛବି ଆଙ୍କିଲେଣି ।

ଏ ଅନୁମାନ ଠିକ୍ ନୁହେଁ । ପୃଥିବୀର ସବୁ ରକମର ଶକ୍ତିର ମୂଳ ଉତ୍ସ ହେଉଚି ସୂର୍ଯ୍ୟ । ଯେତେବେଳେ ଅନ୍ୟ ଶକ୍ତିର ଉତ୍ସ ଶେଷ ହୋଇଯିବ ମଣିଷ ଯେତେବେଳେ ସିଧା ସୂର୍ଯ୍ୟଙ୍କ ଠାରୁ ଶକ୍ତି ଆଦାୟ କରି କାମ ଚଳାଇ ପାରିବ । ଏବେ ତ ଏକାଧିକ ଦେଶର ଅନେକ ବିଜୁଳି କାରଖାନାରେ ସୂର୍ଯ୍ୟଙ୍କର ଖାଣ୍ଟି ଶକ୍ତି ନେଇ କାମ କରାଯାଉଛି । ସୋଭିଏତ ଦେଶରେ ସୂର୍ଯ୍ୟଙ୍କର ଆଲୁଅରେ ବିସ୍ତର ରନ୍ଧାବଢ଼ା କାମ ମଧ ଚାଲିଚି ।

କିନ୍ତୁ ଏଥିରେ ନୈରାଶ୍ୟବାଦୀ ବିଜ୍ଞାନୀମାନେ ଟିକିଏ ନ ଦବି କହିବେ ''କିନ୍ତୁ ସୂର୍ଯ୍ୟ ଯେ ଥଣ୍ଡାହୋଇ ଆସୁଚି'' – ତେବେ ?

ତାର ଉତ୍ତରରେ ମଣିଷ କହିବ ''ଭୟ କ'ଣ ? ଆଦିମ ମଣିଷ ଯଦି ବରଫ ସ୍ରୋତର ଧକ୍କା ସମ୍ଭାଳି ବଞ୍ଚିପାରିଲା ତାହା ହେଲେ ଆମ୍ଭେମାନେ ମଧ ଏପରି ଅବସ୍ଥାରେ ଠିକ୍ ବଞ୍ଚିଯାଇପାରିବୁ, କିନ୍ତୁ ସେତିକି ନୁହେଁ । ଆମ୍ଭେମାନେ ଶୀତକୁ ଜୟ କରିବୁ । ଅଣୁପରମାଣୁର ଦେହରୁ ଶକ୍ତି ଆହରଣ କରି ସୂର୍ଯ୍ୟର ସହାୟତାରେ କାମ ଚଳାଇବୁ । ଏପର୍ଯ୍ୟନ୍ତ ଅଣୁପରମାଣୁର ଶକ୍ତି ସେତେ କାମରେ ଲଗାଯାଇନି । ସେତେବେଳେ ସେଇଟାକୁ କାମରେ ଲଗାଇଲେ ଶକ୍ତି ଲାଗି କୌଣସି ଭାବନା ପଡ଼ିବ ନାହିଁ ।'' ସେ କଥା ଥାଉ, ସେ ସବୁ ଭବିଷ୍ୟତର କଥା ।

## ପୃଥିବୀର ଆରମ୍ଭ

ମଣିଷ ଯଦି ଖାଦ୍ୟ ଶୃଙ୍ଖଳ ନ ଭାଙ୍ଗିଥାନ୍ତା ତାହାହେଲେ ଜାଡ଼ର ଦାଉରେ ଅନ୍ୟ ସବୁ ଜନ୍ତୁଙ୍କ ଭଳି ତାକୁ ମଧ ଲୋପ ପାଇବାକୁ ହୋଇଥାନ୍ତା । ସୁଖର କଥା, ପୃଥିବୀ ଧ୍ୱଂସ ନହୋଇ ଖାଲି ପରିବର୍ତ୍ତିତ ହେଉଥିଲା । ମଣିଷ ତା'ର ଆଗର ଖାଦ୍ୟ ବଦଳରେ ନୂତନ ଖାଦ୍ୟ ଯୋଗାଡ଼ କରିବା ଶିଖିଥିଲା । ସେ ଅବସ୍ଥାରେ କେବଳ ମଣିଷହିଁ ନିଜକୁ ଖାପଖୁଆଇ ନେଇ ଚଳିପାରନ୍ତା । ସେହି ଜାଡ଼ ଭିତରେ ବାଘ ପ୍ରଭୃତି ହିଂସ୍ର ଜାନୁଆର ଗରମ ଲୁଗାପଟା ଦେହରେ ଦେବା ଜାଣି ନ ଥିଲେ । କିନ୍ତୁ ମଣିଷ ତାହା ଜାଣିଥିଲା ବୋଲି ଶୀତ ହାତରେ ମଣିଷ ହାର ମାନି ନାହିଁ । କେବଳ ଦିନେ ଖୁବ୍ ଚେଷ୍ଟା କରି ଗୋଟାଏ ଭାଲୁ ମାରିପାରିଲେ ବେଶ୍ । ତା' ପରେ ତା'ର ଚମଡ଼ା ଦେହରେ ଦେଇ ମଣିଷ ଶୀତ

କଟାଉଥିଲା । ସେତେବେଳେ ମଣିଷ ଇଚ୍ଛା କଲେ ନିଆଁ ଜାଳିପାରୁଥିଲା । ଏହି ଭାବରେ ହଜାର ହଜାର ବର୍ଷର ପରିବର୍ତ୍ତନର ଭିତର ଦେଇ ମଣିଷହିଁ କେବଳ ନୂତନ କରି ବଢ଼ି ଉଠିଥିଲା ।

ଏ ସବୁର ନଜିର ଆମ୍ଭେମାନେ ପାଉ ପୃଥିବୀରୁ । ମାଟି ତଳେ ପ୍ରତି ସ୍ତରରେ ଯେପରି ପୃଥିବୀ ବହିର ଗୋଟିଏ ଗୋଟିଏ ପତ୍ର । ଆମ୍ଭେମାନେ ସେହି ବହିର ଶେଷ ପୃଷ୍ଠାରେ ଥାଇଁ । ପ୍ରଥମ ପୃଷ୍ଠା ହେଉଚି ସାଗର ମହାସାଗରର ତରଳ ଜଳ। ଯେଉଁ ପୃଷ୍ଠା ଆମର ଯେତେ ପାଖରେ ରହିଚି ଆମ୍ଭେମାନେ ତାକୁ ସେତେ ସହଜରେ ପଢ଼ିପାରୁଁ । କେତେଗୁଡ଼େ ପତ୍ର କିନ୍ତୁ ଘୋଡ଼ି ହୋଇଯାଇଛି । ଗଳିତ ଧାତୁର ସ୍ରୋତ ଲାଭା ଭରତି ହୋଇଛି, ସେଥିରୁ ଆମେ ଜାଣିପାରୁ କିପରି ମାଟିତଳୁ ଲାଭା ସ୍ରୋତ ବାହାରି ଆସି ପୃଥିବୀକୁ ଗ୍ରାସ କରିବାକୁ ବସିଥିଲା, ଆଉ ସବୁ ପୃଷ୍ଠାରେ ମିଳିବ କିପରି ଭାବରେ ତା'ର ବୁକୁରେ ସାତ ସମୁଦ୍ର ତେର ନଈ ସୃଷ୍ଟି ହେଲା; ତା'ର ଇତିହାସ । ଏହାର ପର ପୃଷ୍ଠା ଅର୍ଥାତ୍ ପର ସ୍ତରରେ ଦେଖାଯିବ ଘନ କାଳିଆ କୋଇଲା ପରି ରଙ୍ଗ । ଏହି ଜାଗାରେ କୋଇଲା ମିଳେ – କୋଇଲାର ସ୍ତର ଏଇଟା । ଏହି କୋଇଲାର ସ୍ତର ଦେଖି ଆମ୍ଭେମାନେ ଜାଣିପାରୁ ଏକ ସମୟରେ ପୃଥିବୀ ବୁକୁରେ ମସ୍ତବଡ଼ ଗଛର ଜଙ୍ଗଲ ଥିଲା ଏବଂ ସେଗୁଡ଼ିକ ଶୀତ ଚାପରେ ମରିଯାଇଥିଲା । ସେ ସବୁ ପଚି ଶକ୍ତ ହୋଇ କୋଇଲା ହୋଇଯାଇଛି । ଏଇ ଭାବରେ ପୃଷ୍ଠା ପରେ ପୃଷ୍ଠା ପଢ଼ି ପଢ଼ି ଆମେ ପୃଥିବୀର ଜନ୍ମ କଥା ଏବଂ ତା'ର ଗଢ଼ି ଉଠିବାର ଇତିହାସ ଜାଣିପାରୁ । ଏହି କ୍ରମବିକାଶର ଶେଷ ପୃଷ୍ଠାରେ ଜନ୍ମିଛୁଁ ଆମେ ମଣିଷ ।

ବରଫ ସ୍ରୋତର ପାଖେ ପାଖେ ଆମ୍ଭେମାନେ କାଳିଆ ଦାଗ ଦେଖିବାକୁ ପାଉ । ସେଗୁଡ଼ିକ ଗଛର ଡ଼ାଳପତ୍ର ଏକାଠି କରି ମଣିଷ ନିଆଁ ଜାଳିବାର ଚିହ୍ନ । ସେହି ବରଫ ସ୍ରୋତରେ ସାମନାରେ ମଣିଷ ନିଆଁ ଏବଂ ପଶୁ ଶିକାର ସମ୍ବଳକରି ଦିନେ ଖାତିର ନ କରି ଠିଆ ହୋଇ ରହିଥିଲା ।

### ଶେଷରେ ମଣିଷ ଜଙ୍ଗଲ ଛାଡ଼ିଲା

ସେଇ ଶୀତ ସ୍ରୋତର ଦାଉରେ ମଣିଷ ଆଉ ଜଙ୍ଗଲରେ ରହିବାରେ କୌଣସି ପ୍ରୟୋଜନ ବୋଧକରିଲା ନାହିଁ । ସେମାନେ ସେତେବେଳକୁ ରୀତିମତ ଶିକାର କରିବା ଆରମ୍ଭ କରି ଦେଲେଣି । କ୍ରମେ ମାଂସ ମଣିଷର ଆହାର ତାଲିକାରେ ବେଶୀ କରି ଆସି ପହଞ୍ଚିଲାଣି । ଯେତେ ଅସ୍ତ୍ର ଶସ୍ତ୍ର ଭଲକରି ତିଆରି ହେବାରେ ଲାଗିଲା, ସେତେ ଶିକାରର

ଢ଼ଗତ ମଧ୍ୟ ମଣିଷର ବଢ଼ିବାରେ ଲାଗିଲା । ଦୁରନ୍ତ ଶୀତର ଚାପରେ ଆତ୍ମରକ୍ଷାର ଚେଷ୍ଟାରେ ଯେଉଁମାନେ ଦକ୍ଷିଣ ଅଞ୍ଚଳକୁ ବାହାରି ଆସିଲେ ସେମାନେ ଯେ କେବଳ ଶିକାର ଉପରେ ନିର୍ଭର କଲେ ସେତିକି ନୁହେଁ, ଭୂପୃଷ୍ଠର ଉତ୍ତରରେ ମଧ୍ୟ ଶିକାର ଛଡ଼ା ବଞ୍ଚିବାର ଅନ୍ୟ ଉପାୟ ନ ଥିଲା । ଏପରି ଶିକାର ମଧ୍ୟ ମଣିଷ ଖୋଜିବାକୁ ଆରମ୍ଭ କଲା ଯାର ମାଂସ କେତେ ଦିନ ରଖାଯିବା ଦରକାର, ସେ ରକମ ଶିକାର । ବଡ଼ ବଡ଼ ହରିଣ, ବାଇସନ ପ୍ରଭୃତି ଜାନୁଆରମାନେ ବଣ ଜଙ୍ଗଲ ବାହାରେ ତୃଣଭୂମିରେ ବାସ କରୁଥିଲେ । ସେଥିଁ ମଣିଷ ତା'ର ନିଜର ଏତେଦିନର ଆବାସ ଜଙ୍ଗଲ ଛାଡ଼ି ଶିକାରର ପଛେ ପଛେ ଧାଉଡ଼ି କରି ସମର ଭୂମିରେ ଆସି ପହୁଞ୍ଚିଲା । ସେମାନଙ୍କ ବସତି କ୍ରମେ କ୍ରମେ ନାନା ଉପତ୍ୟକାରେ ବିଞ୍ଚି ହୋଇ ପଡ଼ିଲା ।

ଆଦିମ ଶିକାରୀ ମଣିଷର ତମ୍ବୁରେ ନାନା ଜୀବଜନ୍ତୁର ହାଡ଼ ମିଳେ । ସେ ସବୁ ହାଡ ଭିତରେ ମାମଥ (Mammoth) ର ହାଡ଼ ମଧ୍ୟ ମିଳିଛି । ଭାବି ଦେଖ, ମାମଥ ପରି ବିରାଟକାୟ ଜନ୍ତୁକୁ ମାରିବାକୁ ହେଲେ କି ଭୀଷଣ ସାହସ ଏବଂ ଦେହର ବଳ ଦରକାର। ତା'ର ମୁଣ୍ଡ ଖପୁରୀଟା ଏକା ଗୋଟାଏ ମଣିଷ ଶରୀର ସଙ୍ଗେ ସମାନ ହେବ ! ଆଜିକାଲି ଆମ୍ଭେମାନେ ବନ୍ଧୁକରେ ହାତୀମାରୁ, କିନ୍ତୁ ସେତେବେଳେ ଏ ପ୍ରକାର ଅସ୍ତ୍ର ମଧ୍ୟ କିଛି ନଥିଲା । ମଣିଷର ଏକମାତ୍ର ସମ୍ବଳ ଥିଲା ପଥରର ଧାରୁଆ ଅସ୍ତ୍ର । ତାକୁ ନେଇ ମଧ୍ୟ ସେ ବଡ଼ ବଡ଼ ଶିକାରରେ ବାହାରି ପଡୁଥିଲା ।

ଏହି କୃତିତ୍ୱର ମୂଳରେ ରହିଛି ଗୋଟାଏ ବଡ଼ କଥା । ଏକା ମଣିଷର ପକ୍ଷେ ଏ ସବୁ ବିରାଟ ଜୀବ ଶିକାର କରିବା ଅସମ୍ଭବ । ତେଣୁ ମଣିଷ ସେତେବେଳେ ଦଳ ଦଳ ହୋଇ ଏକ ସାଙ୍ଗରେ ରହୁଥିଲେ । ଏକ ସଙ୍ଗେ ଅସ୍ତ୍ର ତିଆରି କରି, ନିଆଁ ଜାଳି ଶିକାର କରି ଘରଦ୍ୱାର ତୋଳି ଏକ ସଙ୍ଗରେ ବାସ କରେ । ଏକ ସଙ୍ଗରେ ଥିଲେ ମଧ୍ୟ ମଣିଷ ତା ଠାରୁ ଅନେକ ବେଶୀ ବୁଦ୍ଧିମାନ ବୋଲି ସେ ସେମାନଙ୍କୁ ଶିକାର କରି ପାରିବ । କିନ୍ତୁ କି ଭାବରେ ?

'ମାମଥ' ଦେଖିଲେ ମଣିଷ ଦଳ ନିଆଁ ନେଇ ଦଳ ବାନ୍ଧି ତା'ର ପଛରେ ଗୋଡ଼ାନ୍ତି । ମଶାଲର ନିଆଁ ଦେଖି ଆଖି ଝାପସା ହୋଇଯାଉଥିବାରୁ ମାମଥ ଦିଗ୍‌ବିଦଗ ଭୁଲି ଦୌଡ଼ିବାରେ ଲାଗେ । ମଣିଷ ତା' ପଛରେ ଝପଟି ଯାଏ ଏବଂ ତାକୁ ଖେଦି ଯାଇ କାଦୁଅ ଭରା ଜଳ ଭୂଇଁକୁ ତଡ଼ି ନିଏ । ମାମଥର ବିରାଟ ଦେହ କାଦୁଅ ଭୂଇଁରେ ପଡ଼ିଲେ ତା'ର କି ଦଶା ହେବ ସେ କଥା ଟିକିଏ ଭାବ ! ଗୋଟିଏ ପାଦ ଉପରକୁ ଉଠାଇଲା ବେଳକୁ

ଆର ପାଦ କାଦୁଅ ଭିତରେ ଗଳି ପଡ଼େ । ସେଥୁଁ ମଣିଷ ତାକୁ ସ୍ୱଚ୍ଛନ୍ଦରେ ମାରିପାରେ । କିନ୍ତୁ ମୁସ୍କିଲ ହଉଚି ତାକୁ ଟାଣିକରି ଆଣିବା, ବାଧ ହୋଇ ଶରୀରର ଗୋଟେ ଗୋଟେ ଅଂଶ କାଟି ମାଟିରେ ଘୋଷାରି ଆଣିବାକୁ ହୁଏ । ଦଶ ପନ୍ଦର ଜଣ ଲୋକ ତା ପରେ ଏକାଠି ହୋଇ ଉଲ୍ଲାସରେ ଚିତ୍କାର କରି କରି ମାମଥର ଗୋଟାଏ ଗୋଟାଏ ଅଙ୍ଗପ୍ରତ୍ୟଙ୍ଗ କାଟି ନେଇ ଆସନ୍ତି । ସେତେବେଳେ ସେମାନଙ୍କର ଆନନ୍ଦ ଦେଖେ କିଏ ?

ଅବଶେଷରେ ଏଇପରିଭାବରେ ଅନ୍ୟ ସବୁ ଜୀବର ସଙ୍ଗେ ମଣିଷର ଏତେ ଦିନର ଲଢ଼େଇର ଚୂଡ଼ାନ୍ତ ଫଳାଫଳ ଦେଖା ଦେଲା । ମଣିଷ ବିଜୟ ମାଲ୍ୟ ପିନ୍ଧି ଜୀବ ଜଗତରେ ଅଦ୍ୱିତୀୟ ହୋଇ ଛିଡ଼ା ହେଲା । ମଣିଷ ସେଣିକି ସବୁ ଜନ୍ତୁକୁ ଖାଇପାରିଲା; କିନ୍ତୁ ତାକୁ କେହି ଖାଇପାରିଲେ ନାହିଁ । ଦେଖୁ ଦେଖୁ ସଂସାରରେ ମଣିଷର ବଂଶ ବଢ଼ିବାକୁ ଲାଗିଲା ।

ପଶୁ ପକ୍ଷୀ ମଣିଷ ଭଳି ଏତେ ବେଶୀ ସଂଖ୍ୟାରେ ବଞ୍ଚି ବଢ଼ି ପାରିଲେ ନାହିଁ । କାରଣ ସେମାନଙ୍କର ଖାଇବାର ଜିନିଷର ମୋଟ ପରିମାଣ ଖୁବ୍ ସୀମାବଦ୍ଧ । ଗୋଟାଏ ଜୀବ ବଢ଼ିଲେ ଆଉ ଦଶଟା ଜୀବ ତ ବଢ଼ିବେ । ଖାଦ୍ୟ ଶୃଙ୍ଖଳ ରହିଛି ବୋଲି ତ ଗୋଟିଏ ଜାତିର ଜୀବ ଆଉ ଏକ ଜାତିର ପେଟରେ ପଶିଲେ ବେଶୀ ବେଶୀ । ତେଣୁ ଅସରନ୍ତି ଜନ୍ମ ହେଲେ ମଧ ଶେଷପର୍ଯ୍ୟନ୍ତ ବଞ୍ଚିଲେ ଖୁବ୍ କମ୍ । ଅର୍ଥାତ୍ ପୃଥିବୀରେ ଜନ୍ତୁ ଜାନୁଆରମାନଙ୍କର ସଂଖ୍ୟାବୃଦ୍ଧିର ମୋଟା ମୋଟି ଗୋଟାଏ ସୀମା ଅଛି ।

କିନ୍ତୁ ମଣିଷ ପ୍ରକୃତିର ବନ୍ଦୀ ଦଶା ଠାରୁ ଆଗରୁ ମୁକ୍ତି ପାଇଥିଲା । ସେହି କାରଣରୁ ଦଳ ଦଳ ବଢ଼ିଯିବାର ସଙ୍ଗେ ସଙ୍ଗେ ସେଇ ଅନୁସାରେ ବେଶୀ ବେଶୀ ଆହାରର ବନ୍ଦୋବସ୍ତ ମଧ ସେ କରି ପାରିଲା । ସେ ନିତ୍ୟ ନୂତନ ଅସ୍ତ୍ର ତିଆରି କରିବାରେ ଲାଗିଲା । ନୂତନ ନୂତନ ଆହାର ଖାଇବାକୁ ଲାଗିଲା । ଆଉ ବଡ଼ ବଡ଼ ପଶୁ ଶିକାର କରି ସେ ଆହୁରି ବେଶୀ ଲୋକଙ୍କର ଖାଇବାର ଦାୟିତ୍ୱ ନେବାକୁ ଲାଗିଲା ।

ସାଙ୍ଗେ ସାଙ୍ଗେ ଖାଦ୍ୟ ମହଜୁତ କରିବାର ପ୍ରୟୋଜନ ମଧ ତା'ର ଦେଖାଗଲା । କୌଣସି ଦିନ ଗୋଟାଏ ବଡ଼ ଜନ୍ତୁ ଶିକାର କଲେ ସେ ଦିନରେ ହିଁ ସେଇ ଜାଗା ଛାଡ଼ି ଅନ୍ୟ ଜାଗାକୁ ଯିବା ସମ୍ଭବ ହୁଏ ନାହିଁ । ବାଧ ହୋଇ ସେଥିପାଇଁ ମଣିଷକୁ ମଝିରେ ମଝିରେ ଅନ୍ତତଃ କିଛିଦିନ ଗୋଟାଏ ଜାଗାରେ ରହିବାକୁ ହେଲା । ଆଉ ମଧ ଗୋଟିଏ କାରଣ ତାକୁ ଗୋଟିଏ ସ୍ଥାନରେ ବସବାସ କରିବାକୁ ବାଧ କଲା; ସେଟା ହେଉଛି ଶୀତ ହାତରୁ ବଞ୍ଚିବାର ଚେଷ୍ଟା ।

ଏଥର ମଣିଷ କୌଣସି ଏକ ଗୁହାରେ ରହି ଶୀତର ହାତରୁ ବଞ୍ଚିବାକୁ ଚାହିଁଲା । ଖାଲି ଶୀତ ନୁହେଁ – ଝଡ଼ – ବନ୍ୟା – ବୃଷ୍ଟି ସବୁ । ତା'ର ସେହି ଗୁହାରେ ଥାଏ ନିଆଁ – ଶୀତ ହାତରୁ ବଞ୍ଚିବା ପାଇଁ ଆଉ ମଧ ରାତିରେ ଆଲୁଅ ଦେବାପାଇଁ ।

ଏପରି ମଣିଷ ପ୍ରକୃତିର ଇଲାକା ଭିତରେ ତା'ର ନିଜର ହାତଗଢ଼ା ଦ୍ୱିତୀୟ ଏକ ପ୍ରକୃତି ତିଆରି କଲା ଆପଣାର ସୁବିଧା ଅନୁସାରେ ।

## ହଜାରବର୍ଷର ଆଗର ସ୍କୁଲ୍

'ବାଇସନ – ମାମଥ' ବାଣୁଆମାନଙ୍କର ତମ୍ବୁରେ ଦୁଇ ରକମର ପଥରର ଅସ୍ତ୍ର ଦେଖିବାକୁ ମିଳେ – ଛୋଟ ଆଉ ବଡ଼ । ବଡ଼ଗୁଡ଼ିକ ତ୍ରିଭୁଜ ଭଳି ପଥରର – ତା'ର ଦୁଇ ପାଖରେ ଧାର, ଆଉ ଛୋଟଗୁଡ଼ିକ ଲମ୍ୱା ସରୁ ଫଳା ପରି ସେଗୁଡ଼ାକ ଗୋଟାଏ ପାଖ ଧାର ।

ଏସବୁ ଅସ୍ତ୍ର କି କାମରେ ଲାଗୁଥିଲା ? ଏହି ଦୁଇ ପ୍ରକାରର ପଥର ଅସ୍ତ୍ରଗୁଡ଼ିକ ଯେତେବେଳେ ଦାନ୍ତୁଆ' ସେଥିରୁ ସହଜରେ ବୁଝାଯାଏ ଯେ, ସେଗୁଡ଼ିକ ବଣ୍ଟା ଛଣ୍ଟା କାମରେ ଲାଗେ । କିନ୍ତୁ ଠିକ୍ କି କି କାମରେ ସେଗୁଡ଼ିକ ବ୍ୟବହାର କରାହୁଏ ତା ସଠିକ୍ କୁହାଯାଇପାରିବ ନାହିଁ। ଆମ୍ଭମାନଙ୍କ ଉଦ୍ଦେଶ୍ୟ ହେଉଚି ସେକଥାକୁ ଜାଣିବା । ତା' ହେଲେ ଆମ୍ଭେମାନେ କିନ୍ତୁ ସେଇ ପ୍ରସ୍ତର ଯୁଗକୁ ଫେରିଆସିବାକୁ ପଡ଼ିବ – ସେ କିପରି କଥା ।

ଗୋଟିଏ ଛୋଟ ତମ୍ବୁନିଅ । ସଙ୍ଗରେ ଆହାର ସବୁ ବନ୍ଦୋବସ୍ତ କରିପକାଇବ । ବନ୍ଧୁକଟି ନେବାକୁ ଭୁଲ ନାହିଁ; କାରଣ ପ୍ରସ୍ତର ଯୁଗରେ ସମସ୍ତଙ୍କୁ ହିଁ ଶିକାର କରିବାକୁ ହୁଏ । ଷ୍ଟୋଭ, ମୁଣ୍ଡର ଟୋପି, କପ୍, ଚାମଚ, କମ୍ପାସ, ମାପ କୌଣସିଟା ଯେପରି ବାଦ ନ ଯାଏ – ତା ପରେ ପାଖରେ କୌଣସି ବନ୍ଦରରେ ଯାଇ ଟିକଟ କିଣ ।

କୋଉଁଠାକୁ ଟିକଟ ? କେବେ କହିବ ନାଇଁ ପ୍ରସ୍ତର ଯୁଗକୁ ଯିବାର ଟିକଟ ଦିଅନ୍ତୁ । ତେବେ ଟିକଟ ମାଷ୍ଟର ତୁମ୍ଭମାନଙ୍କୁ ସିଧା ପାଗଳଖାନାକୁ ପଠାଇବା ବନ୍ଦୋବସ୍ତ କରିଦେବେ । ଟିକଟ ମାଗିବ ଅଷ୍ଟ୍ରେଲିଆର ମେଲବୋର୍ଣ୍ଣକୁ । ଦେଖୁ ଦେଖୁ କେତେ ସପ୍ତାହ ମଧରେ ତୁମେ ମେଲବୋର୍ଣ୍ଣରେ ହାଜର ହୋଇଯିବ । ଏହି ଦେଶରେ ଏପର୍ଯ୍ୟନ୍ତ ପ୍ରସ୍ତର ଯୁଗର ଲୋକ ବାସ କରନ୍ତି । ସେଥିପାଇଁ ତୁମର ଯିବାର ପ୍ରୟୋଜନ ଏଇଠିକି ।

ଶୂନ୍ୟ ମରୁଭୂମି ଭିତରେ ଦେଇ, ବେଳେ ବେଳେ ମରୁଦ୍ୱୀପ ଭଳି ତୃଣଗୁଳ୍ମର ଛାୟାର ଭିତର ଦେଇ ସେମାନଙ୍କର ବାସସ୍ଥାନକୁ ଯିବାକୁ ହେବ । ଅଷ୍ଟ୍ରେଲିଆର ପ୍ରସ୍ତର

ଯୁଗର ଶିକାରୀମାନେ ସେଇ ସବୁ ଜାଗାର ନଦୀର କୂଳେ କୂଳେ ଥାଆନ୍ତି । ଚମଡ଼ାରେ ସେମାନଙ୍କର ଘରସ୍ଥଳୀ ତିଆରି ।

ଦେଖିବ ପିଲାମାନେ ଘର ସାମନାରେ ଖେଳୁଚନ୍ତି । ସ୍ତ୍ରୀ ପୁରୁଷ ସମସ୍ତେ ଏକାଠି ବସି ମାଟିରେ କାମ କରୁଛନ୍ତି । ଦଳ ମଧ୍ୟରେ ସବୁଠାରୁ ଦାଢ଼ିବାଲା ବୁଢ଼ା ବସି ଶିକାର କଂଗାରୁର ଚମଡ଼ା ଛଡ଼ାଉଚି ଗୋଟାଏ ତିନିକୋଣିଆ ପଥରର ଛୁରା ଦେଇ ।

ଆଗ ଯେଉଁ ତ୍ରିଭୁଜ ଭଳି ପଥରର କଥା କହିଚି; ବୁଢ଼ାର ଏଇ ଛୁରାଟି ଠିକ୍ ସେପରି । ତା'ର ପାଖେ ଗୋଟିଏ ସ୍ତ୍ରୀଲୋକ ବସି ଲମ୍ୱା ପଥରରେ ଛୁରି ଦେଇ ଜାମା କାଟୁଚି । ଏଇ ଅସ୍ତ୍ରଟା ହେଉଚି ସେଇ ଲମ୍ୱା ଦାନ୍ତୁଆ ଛୋଟ ପଥରର ଛୁରି ଯା'ର କଥା ଆଗେ କହିଲି ।

ଏଥିରୁ ଯେପରି ମନେକରିବ ନାହିଁ, ଅଷ୍ଟ୍ରେଲିଆରେ ସମସ୍ତେ ପ୍ରସ୍ତର ଯୁଗର ଲୋକ ! ଏମାନଙ୍କ ସଙ୍ଗେ ସେହି ଆଦିମ ଯୁଗର ଲୋକମାନଙ୍କର ହଜାର ହଜାର ବର୍ଷର ପାର୍ଥକ୍ୟ ରହିଚି । ଏ ହତିଆରଗୁଡ଼ିକ ଖାଲି ଅତୀତର ସ୍ମୃତି ରୂପରେ ଏମାନେ ବୋହି ନେଇ ଆସିଛନ୍ତି । ଏମାନଙ୍କ ପାଖରୁ ଆମ୍ଭେମାନେ ଏତିକ ଶିଖିବା ଯେ ବଡ଼ ତ୍ରିଭୁଜ ଭଳି ହତିଆର ଗୁଡ଼ାକ ପୁରୁଷମାନେ ଶିକାର କରିବାକୁ ବ୍ୟବହାର କରନ୍ତି ଏବଂ ସ୍ୱାନଗୁଡ଼ିକ ବ୍ୟବହାର କରନ୍ତି ସ୍ତ୍ରୀ ଲୋକ ଘରକରଣା ବିଷୟରେ ।

ଦୁଇ ପ୍ରକାର ଅସ୍ତ୍ରରୁ ଏକଥା ସ୍ପଷ୍ଟ ବୁଝାଯାଏ ଯେ ସେହି ଆଦିମ ଯୁଗରେ ମଣିଷ ଶ୍ରମ ବିଭାଗ ସମ୍ୱନ୍ଧରେ ସଚେତନ ଥିଲା । ସେହି କାରଣରୁ ଖୁଣ୍ଟି ଖୁଣ୍ଟି ଯେତେ ବଢ଼ିବାକୁ ଲାଗିଲା କାର୍ଯ୍ୟର ଧରଣଧାରଣ ମଧ୍ୟ ସେପରି ଗୋଳଘାଣ୍ଟ ହେବାକୁ ଲାଗିଲା । ସେତେବେଳେ ଜଣ ଜଣକୁ ଗୋଟିଏ ଗୋଟିଏ ବିଶେଷ କାମ କରିବାକୁ ହେଉଥିଲା । ପୁରୁଷ ଯେତେବେଳେ ଦୌଡ଼ି ଦୌଡ଼ି ଶିକାର କରୁଥିଲା ସ୍ତ୍ରୀମାନେ ସେତେବେଳେ ନିଶ୍ଚିତ ମନରେ ଘରେ ବସି ରହୁଥିଲେ । ସେମାନେ ମଧ୍ୟ ଘର ତିଆରି କରିବା, ଫଳ ମୂଳ ଯୋଗାଡ଼ କରିବା; ଏପରି ଅନେକ କିଛି କାମ କରିବାର ଦାୟିତ୍ୱ ପାଳନ କରୁଥିଲେ ।

ପିଲା ଏବଂ ବୁଢ଼ାଙ୍କ ମଧ୍ୟରେ କାମର ପାର୍ଥକ୍ୟ ଥିଲା ।

କୌଣସି କାର୍ଯ୍ୟ କରିବାକୁ ଗଲେ ପ୍ରଥମେ ସେଇ କାମ ଶିଖିବା ଆବଶ୍ୟକ । ତାହା ନହେଲେ କେହି ହଠାତ୍ କିଛିହିଁ କରିପାରନ୍ତା ନାହିଁ । ସେହି ଶିକ୍ଷା ଅନ୍ୟ କାହାଠାରୁ ନେବାକୁ ହୁଏ । କେତେକ ନିଆଯାଏ ଜୀବିତ ଲୋକର ଅଭିଜ୍ଞତାରୁ । ତାଠାରୁ ବେଶୀ

ମିଳେ ଅତୀତର ଶତ ସହସ୍ର ଜ୍ଞାନୀ ଏବଂ ଗୁଣୀଙ୍କର ସଞ୍ଚିତ ଶିକ୍ଷାର ଫଳାଫଳ ଆୟତ୍ତକରି ନିଜର କରି ନେଇ । ଯଦି ପ୍ରତ୍ୟେକ ମିସ୍ତ୍ରୀକୁ କରତ ଏବଂ ବଟାଳି ନିଜେ ଆବିଷ୍କାର କରି କାମ ଚଳାଇବାକୁ ହୁଅନ୍ତା, ତେବେ ଜଗତରେ କୋଉ କାଳରେ କେବେ ହଠାତ୍ କୌଣସି ମିସ୍ତ୍ରୀ ମିଳନ୍ତା ନାହିଁ । ଆଜି କାଲି ଜଣେ ଦକ୍ଷ ମିସ୍ତ୍ରୀର ପଛରେ ରହୁଚି ବହୁ ବହୁ ଯୁଗର ଅସଂଖ୍ୟ ମିସ୍ତ୍ରୀ । ଯଦି ଭୂଗୋଳ ଶିଖିବା ପାଇଁ ସାରା ପୃଥିବୀ ବୁଲିବାକୁ ହୁଅନ୍ତା ତେବେ ଭୂଗୋଳ ଶିକ୍ଷାରେ ମଣିଷର ମୁଣ୍ଡ ଗରମ ହୋଇ ଯାଆନ୍ତା !

ଏପରି ମଣିଷ ଯେତେ ଅଗ୍ରସର ହୋଇଚି ସେତେ ତା'ର ଶିଖିବାର ଜିନିଷ ମଧ ବଢ଼ିଚି । ପ୍ରାୟ ଦୁଇଶ ବରଷ ଆଗେ ମଧ ମଣିଷ ଷୋଳ ବର୍ଷ ବୟସରେ ଅଧ୍ୟାପକର କାମ କରୁଥିଲା । କିନ୍ତୁ ଏବେ ଚେଷ୍ଟାକଲ ଦେଖିବ ଏ ବୟସରେ ଗୋଟାଏ ସ୍କୁଲ୍ ମାଷ୍ଟର ଜୁଟିବ ନାହିଁ । ଏ ବୟସରେ ତୁମେ ହୁଏତ ମାଟ୍ରିକ୍ୟୁଲେସନ ଲାଗି ପ୍ରସ୍ତୁତ ହେଉଥିବ ।

ପ୍ରସ୍ତର ଯୁଗରେ ଅବଶ୍ୟ ଆଜିକାଲିର ଭଳି ଜ୍ଞାନ ବିଜ୍ଞାନ ବିଷୟରେ ଏତେ ଘଣ୍ଟାଘଣ୍ଟି କରିବାକୁ ହେଉ ନଥିଲା । ମଣିଷ ସେତେବେଳେ ସବୁ ନୂତନ ନୂତନ ଅଭିଜ୍ଞତା ଲାଭ କରିବାକୁ ଲାଗିଛି ଏବଂ ତେଣୁ ଜୀବନ ଯାତ୍ରାରେ ବଞ୍ଚେଇ ରଖିବାକୁ ଚାହିଁଚି । ମଣିଷର କାର୍ଯ୍ୟ ମଧ ସେତେବେଳେ ଏତେ ବିଚିତ୍ର ନଥିଲା । ତେବେ ସେତେବେଳଠାରୁ କିନ୍ତୁ ମଣିଷକୁ ଟିକିଏ ଟିକିଏ ମୁଣ୍ଡ ଖର୍ଚ୍ଚ କରିବାକୁ ପଡ଼ିଚି । ନ ଜାଣିଥିବା କଥା ଏବଂ ନ ବୁଝିବା ଜିନିଷ ଶିଖିବାକୁ ହେଉଥିଲା ।

ଜୀବଜନ୍ତୁ ପଛରେ ଧାଉଡ଼ି କରିବା, ଶିକାର କରିବା, ବସା ବନେଇବା, ଛାଲ ଉତାରିବା ସବୁ କାମରେ ଧୂରନ୍ଧର ହେବା ଦରକାର । ଏସବୁ ସେମାନଙ୍କୁ ଶିଖିବାକୁ ହେଉଥିଲା ।

ଏଇଠି ମଣିଷ ସାଙ୍ଗେ ଅନ୍ୟପଶୁର ପ୍ରଭେଦ । ସେମାନେ ଜନ୍ମ ସାଙ୍ଗେ ସାଙ୍ଗେ ବାପ ମା'ଙ୍କଠୁଁ ଆପଣାଛାଏଁ ସବୁ ପାଆନ୍ତି । କାମ କରିବାର ଧରଣଧାରଣ ସବୁ କିଛି ସେମାନେ ବାପ ମା'ଙ୍କ ଠାରୁ ଅନାୟାସରେ ହାସଲ କରନ୍ତି । ଯେପରି ମହୁମାଛିର ବସା ତିଆରି କରିବା ପାଇଁ ମହୁମାଛିକୁ ଶିଖିବାକୁ ପଡ଼େ ନାହିଁ । ସେପରି ଉଇହୁଙ୍କା ବା ବାୟା ଚଢ଼େଇ ବସା । ଗୋଟିଏ କଥାରେ ସେମାନଙ୍କୁ କିଛି ଶିଖିବାକୁ ହୁଏ ନାହିଁ ।

ମଣିଷ ଯନ୍ତ୍ରପାତି ବ୍ୟବହାର କରେ; କିନ୍ତୁ ତାକୁ ସବୁ ଜନ୍ମ ହେଲା ବେଳେ ସେ ସାଙ୍ଗରେ ଆଣି ନ ଥାଏ । ତେଣୁ ତାକୁ ପ୍ରତ୍ୟେକଟି କାମ ଜାଣିବାକୁ ପଡ଼େ, ଶିଖିବାକୁ ପଡ଼େ ।

ତୁମ୍ଭମାନଙ୍କର ମନରେ ହୁଏତ ଏ ଭାବ ଉଠୁଥିବ, ପଶୁପକ୍ଷୀ ପରି ସବୁ ଆପଣା ଛାଏଁ ଆସି ଯାଉଥିଲେ କ'ଣ ଭଲ ହୁଅନ୍ତା ନାହିଁ । ପଣିକିଆ ବା ବ୍ୟାକରଣର କଠିଣ ସୂତ୍ର ମୁଖସ୍ତ କରିବା ପାଇଁ ଏତେ ଭାବନା କାହିଁକି ପଡ଼ନ୍ତା । ଅଙ୍କ ଭୁଲ ହେବାର ଭୟ ନଥାନ୍ତା । କି ମଜା ହୁଅନ୍ତା । କିନ୍ତୁ ଏ ସବୁ ଯେତେ ମଜା ବୋଲି ଭାବ ସେତେ ମଜା କଥା ନୁହେଁ । ପ୍ରତ୍ୟେକ ସ୍କୁଲର ଛାତ୍ରକୁ ପଢ଼ିବାକୁହିଁ ହୁଏ । ସାରା ପୃଥିବୀର ଏହି ନିୟମ । ସମସ୍ତ ମନୁଷ୍ୟ ଜାତିକୁ ମଧ୍ୟ ନିତ୍ୟ ନୂତନ ଜିନିଷ ଶିଖିବାକୁ ହୋଇଛି । ସେଇଟା ହେଉଛି ପ୍ରସ୍ତର ଯୁଗଠାରୁ ଆରମ୍ଭ କରି ହଜାର ହଜାର ବରଷର ସ୍କୁଲ୍ !

ପୁରୁଣାକାଳର ଶିକ୍ଷିତ ନିପୁଣ ଶିକାରୀମାନେ ସେମାନଙ୍କର ପିଲା ଛୁଆମାନଙ୍କୁ ଶିଖାଇଲେ କିପରି ଭଲକରି ଶିକାର କରିବା ଉଚିତ୍ । ଝିଅମାନଙ୍କୁ ମଧ୍ୟ ସେପରି କାମ ଶିଖା ଯାଇଛି । ପ୍ରତ୍ୟେକ ଗୋଷ୍ଠୀର ଭିତରର ନିପୁଣ ଲୋକହିଁ ଭବିଷ୍ୟତ ବଂଶଧରଙ୍କୁ ଅନେକ କିଛି ଶିଖାଇବା ପାଇଁ ଥାଆନ୍ତି ।

କିନ୍ତୁ ଏ ସବୁ ସେମାନେ କିପରି ଶିଖାନ୍ତି, ତା' ବୋଧହୁଏ ତୁମ୍ଭମାନଙ୍କର ଏକାବେଳକେ ମନେ ହୋଇନି । ସେମାନେ ସବୁ ବିଷୟକୁ ଦେଖାଇ କହି କହି ଶିଖାନ୍ତି ।

ଏଥିପାଇଁ ଦରକାର ହେଲା ଭାଷା । ତା ହେଲେ ସେତେବେଳେ ଲୋକମାନେ କଥା କହୁଥିଲେ କିପରି ?

- ୦ -

# ଅତୀତ ଯୁଗରେ ଦ୍ୱିତୀୟ ଅଭିଯାନ

ଘରେ ବସି ଯେଉଁମାନଙ୍କର ରେଡ଼ିଓ ଅଛି ସେମାନେ ଯେତେବେଳେ ବୋତାମ ଟିପି ଦିଅନ୍ତି, ସେତେବେଳେ ଆମ୍ଭେମାନେ ଏକ ମୁହୂର୍ତ୍ତରେ ଆମେରିକା ରାଜଧାନୀ ନିଉୟର୍କ ବା ଫ୍ରାନ୍ସର ରାଜଧାନୀ ପ୍ୟାରିସ୍‌ର କଥା ଶୁଣିବାକୁ ପାଉ । ନୋହିଲେ ସୋଭିଏଟର ଶକ୍ତି କେନ୍ଦ୍ର ମସ୍କୋକୁ ଯାଇପାରୁ । ଆଉ ଯଦି ଟେଲିଭିଜନ ଥାଏ (ବା ବେତାର ଦୃଶ୍ୟ ଥାଏ) ତା' ହେଲେ ଆମ୍ଭେମାନେ କଥା ଶୁଣିବା ସଙ୍ଗେ ସଙ୍ଗେ କହିଲାବାଲାକୁ ଦେଖିବାକୁ ପାଇବା ।

କିନ୍ତୁ ଯେଉଁ ମଣିଷମାନଙ୍କ ସଙ୍ଗେ ଆମ୍ଭମାନଙ୍କର ଯୁଗ ଯୁଗାନ୍ତର ବ୍ୟବଧାନ, ସେମାନଙ୍କର କଥା କିପରି ଶୁଣିବା ?

ଇଥାର (Ether) ପ୍ରବାହ ମଧ୍ୟରେ ଆମ୍ଭେମାନେ ଆତଯାତ ହୋଇ ପାରୁଥାଇଁ, ସମୟର ଭିତର ଦେଇ ଚଳାଚଳ ହେବାର ବି କୌଣସି ଉପାୟ ନାହିଁ । ଯାହାଅଛି ତା' ହେଉଚି ସବାକ୍ ଚିତ୍ର ଯାହାକୁ ତୁମେ କୁହ ଟକି ସିନେମା ।

ଛବିରେ ଆମ୍ଭେମାନେ କେବଳ ଏହି ଜଗତଟା ଦେଖୁନାହିଁ । ଅତୀତ ଜଗତକୁ ମଧ୍ୟ ଦେଖିବାକୁ ପାଉଁ । କିନ୍ତୁ ଚଳଚିତ୍ର ସାହାଯ୍ୟରେ ଆମ୍ଭେମାନେ କେତେ ଦୂର ଯାଇପାରିବା ? ଟକି ସିନେମା ଆସିଲା ଏବେ ୧୯୨୭ ସାଲରେ । ତେଣୁ ତା'ର ଆଗ କଥାର କିମ୍ବା କୌଣସି ପୁରୁଣା କଥାର କିଛି ପ୍ରମାଣ ଟକିର ମାରଫତ୍‌ରେ ମିଳିବ ନାହିଁ ।

ତା' ହେଲେ ବାୟସ୍କୋପ ଛବିରେ ପାଇ ପାରିବା ? କିନ୍ତୁ ସେତ ବେଶୀ ପୁରୁଣା ଜିନିଷ ନୁହେଁ । ୧୮୯୫ ସାଲର ଆଗେ କୌଣସି ଜିନିଷ ବାୟସ୍କୋପରେ ରହିପାରନ୍ତା ନାହିଁ । ତା' ହେଲେ ଗ୍ରାମଫୋନ୍ ଇତ୍ୟାଦି ? ତାହାତ ୧୮୭୬ ସାଲ ପରେହିଁ ଆବିଷ୍କାର । ଫଟୋରେ ଛବି ଉଠିପାରେ – ଅଙ୍ଗଭଙ୍ଗୀ ସବୁ ସେଥିରେ ଉଠିପାରେ, କିନ୍ତୁ ତା ମଧ୍ୟ ୧୮୩୮ ସାଲର ଆଗରୁ ନୁହେଁ ।

ବର୍ଷ ପରେ ବର୍ଷ ଧରି ଅତୀତରେ ଇତିହାସରେ ପ୍ରବେଶ କଲେ ଏପରି ୧୯୨୭, ୧୮୯୫, ୧୮୭୭, ୧୮୩୮ ପ୍ରଭୃତି ସନ ତାରିଖ ଗୋଟି ଗୋଟି ହୋଇ ଚାଲିଯିବେ । ଏହି ପଟୁଆର ମଧ୍ୟ ଠିଆହେବ କିଛି ବାଟ ଯାଇ – ୧୦୫୬ ସାଲ ! ତା ଆଗର କୌଣସି ପ୍ରମାଣ ସଂଗ୍ରହ କରାଯାଇ ପାରିବ ନାହିଁ । ସେତେବେଳେ ଆମେ ପାଉ ଖାଲି ହାତଲେଖା

ପୋଥି । ଯେତେ ଅତୀତକୁ ଯିବା ସେତେ ହାତ ଲେଖା ଅବୋଧ ହୋଇ ଲାଗିବ । ସେଠୁ ହାତର ଲେଖା ମଧ ଲୁଚିଯିବ । ତା' ପରେ ପ୍ରତ୍ନତାତ୍ତ୍ୱିକମାନେ ଅନେକ ଥାନର ମାଟି ଖୋଳି ମଣିଷର ଚାଲିବା ଚିହ୍ନ ଆବିଷ୍କାର କରିବେ । ଅତୀତର ଯନ୍ତ୍ରପାତି, ଘରଦୁଆର, ପଥର – ଏହିସବୁ ପରୀକ୍ଷାକରି ଆମ୍ଭେମାନେ ଶିଖୁଁ ସେତେବେଳର ମଣିଷର ଜୀବନଯାତ୍ରା କି ପ୍ରକାରର ଥିଲା ।

## ବାକ୍ୟହୀନ ଭାଷା

ଅତୀତର ଗୁହାରେ "ଆମ୍ଭେମାନେ ଯେଉଁ ମଣିଷର ଖୋଜକରିବା ତା'ର ନାମ ହେଉଛି "ନିୟାନତାରଥାଲ ମଣିଷ" । ଜର୍ମାନୀର ନିୟାନତାରଥାଲ ଉପତ୍ୟକାରେ ଏହି ଜାତିର ମଣିଷର ମୁଣ୍ଡର ଖପୁରି ଖୋଳା ହୋଇ ବାହାରିଚି ବୋଲି ଏହି ନାମକରଣ ହୋଇଛି । ଏହି ମଣିଷ ମାମଥ ଜାତିର ଜୀବର ସମସାମୟିକ ।

ଏତେଦିନ ପରେ ମଣିଷନାମକ ଜୀବର ମେରୁଦଣ୍ଡ ସଳଖ ହୋଇଛି । ହାତ ଆହୁରି ହାଲୁକା ଏବଂ କର୍ମପଟୁ, ମୁହଁର ଗଢ଼ଣ ମଣିଷର ଆହୁରି ନିକଟ ।

ସାଧାରଣ ଉପନ୍ୟାସର ଲେଖକମାନେ ନାୟକର ରୂପବର୍ଣ୍ଣନା କରିବାରେ ବ୍ୟସ୍ତ ଥାନ୍ତି । ଆଖି, ନାକ, ମୁହଁ, ସାରା ଦେହରେ କେତେ ଖୁଁଟିନାଁଟି ବର୍ଣ୍ଣନା କରନ୍ତି । କିନ୍ତୁ ଭୁଲରେ ସୁଦ୍ଧା ସେମାନେ ମସ୍ତିଷ୍କ କଥା ଉଲ୍ଲେଖକରନ୍ତି ନାହିଁ । ଆମର ଏ ଓଲଟା ବ୍ୟପାର । ଆମମାନଙ୍କ ପାଖରେ ମଣିଷର ମସ୍ତିଷ୍କ ପ୍ରଧାନ । ଆଖିର ଚାହାଣିଠାରୁ ମସ୍ତିଷ୍କ ଆମ ପାଇଁ ବେଶୀ ଦରକାର ।

ହଜାର ହଜାର ବର୍ଷର ଶିକ୍ଷା ବୃଥା ଯାଏ ନାହିଁ । ଏତେବେଳକୁ ସମଗ୍ର ମଣିଷର ବିରାଟ ପରିବର୍ତ୍ତନ ହୋଇଥିଲା । ବିଶେଷକରି ତା'ର ହାତର ଏବଂ ମୁଣ୍ଡର । କାରଣ ସମସ୍ତ କାମ କରିବାକୁ ହୁଏ ହାତକୁ; ଆଉ ହାତକୁ ଚଳାଏ ମୁଣ୍ଡ ।

ପଥର ଦ୍ୱାରା ଯେତେବେଳଠୁଁ ମଣିଷ ଅସ୍ତ୍ରଶସ୍ତ୍ର ତିଆରି କରୁଥିଲା, ସେତିକିବେଳକୁ ଆପଣାର ଅଜାଣତରେ ମଣିଷ ମଧ ଅଳ୍ପାଧିକ ବଦଳୁଥିଲା । ପଥର କଟାଛଟା କରୁ କରୁ ତା'ର ହାତର ଅଙ୍ଗୁଳି ଆଉ ବେଶୀ ଦକ୍ଷ ହେଲା ଏବଂ ଆଉ ବେଶୀ ଅନାୟସରେ କାମ କରିବାଭଳି କରି ସେଗୁଡ଼ାକ ତିଆରି ହେବାରେ ଲାଗିଲା । ସେଥି ସଙ୍ଗରେ ମସ୍ତିଷ୍କର କ୍ଷମତା ମଧ ବଢୁଥିଲା । ସେହି କାରଣରୁ 'ନିୟାନତାରଥାଲ' ମଣିଷକୁ ତୁମେ କେବେ 'ମାଙ୍କଡ଼-ମଣିଷ' କହି ପାରିବ ନାହିଁ । ତଥାପି "ମାଙ୍କଡ଼-ମଣିଷ" ସହିତ ତା'ର ଅନେକ

ମେଳ ଖାଉଥିଲା । ନୀଚ କପାଳ, ଆଖିର ଉପର ଝୁଲି ରହିବ, ଠିକ୍ ''ମାଙ୍କଡ଼-ମଣିଷ'' ପରି । ତା'ର ଦାନ୍ତ ସେତେବେଳେ ବାହାରି ଥାଏ । କେବଳ ତା'ର ଚିବୁକ ଆଉ କପାଳ ଦିଗରୁ ସେ ମଣିଷଠାରୁ ଅନେକଟା ଅଲଗା ।

ନୀଚ କପାଳଧାରୀ ମୁଣ୍ଡର ଖପୁରିରେ ସେତେବେଳେ ବେଶୀ ମସ୍ତିଷ୍କ ରହିପାରେ ନାହିଁ । ଆଉ ତଳ ପାଟି ଏବଂ ଓଠ ଢ଼ାଲୁହୋଇ ଓହଳି ପଡ଼ିଥିବାରୁ ମଣିଷପରି ଭାଷାର ସାହାଯ୍ୟରେ କଥା କହିବା ସମ୍ଭବ ହେଉଥିଲା ।

ତଥାପି ତାହାକୁ କଥା କହିବାକୁ ହୁଏ । ଏକାଠି କାମ କରିବାକୁ ଗଲେ ତା ନ କରି ଅନ୍ୟ ଉପାୟ ନ ଥିଲା । ସେ ସେତେବେଳେ ନାନା ଅଙ୍ଗଭଙ୍ଗୀ ଆଉ ଇଙ୍ଗିତ ଇସାରା ଦ୍ୱାରା ମନର ଭାବ ପ୍ରକାଶ କରୁଥିଲା । ତା'ର ମୁଖର ମାଂସପେଶୀମାନେ ଯେପରି ଅକୁହା କଥା କହି ପାରୁଥିଲେ, ମୁଣ୍ଡ ହଲାଇ ମନର କଥା ବୁଝାଇବା ଚଳୁଥିଲା । ତଥାପି ହାତ ଦେଇ ତାକୁ ବେଶୀ ଭାବ ମନର କଥା କହିବାକୁ ହେଉଥିଲା ।

ତୁମ୍ଭମାନଙ୍କର ଘର କୁକୁରକୁ ଖୁବ୍ ଭଲ କରି ଲକ୍ଷ୍ୟ କଲେ ବୁଝିପାରିବ ଯେ ସେ ସମୟରେ ମଣିଷ କି ଭଳି ମନର ଭାବ ବୁଝାଉଥିଲା । କୌଣସି ଭାବ ପ୍ରକାଶ କରିବାକୁ ହେଲେ କୁକୁର ଏକ ଦୃଷ୍ଟିରେ ପ୍ରଭୁର ଦିଗକୁ ଚାହିଁ ତା'ର ଦୃଷ୍ଟି ଆକର୍ଷଣ କରିବାକୁ ଚାହେଁ, ନ ହେଲେ ପାଦରେ ନେଇ ମୁହଁ ଘଷେ । ଆଉ କେତେବେଳେ ଦେଖିବ ଯେ ସେ ଲାଞ୍ଜ ହଲାଇ ତା'ର ଆନନ୍ଦ ପ୍ରକାଶ କରେ । କହିପାରେ ନି ବୋଲି ବିଚାରି ତାର ସମସ୍ତ ଶରୀର ଦେଇ ମନର ଭାବ ପ୍ରକାଶ କରେ ।

ସେଇ ମଣିଷ ମଧ ଏପରି କରି ହାତ ଗୋଡ଼ ନାକ ମୁଖ ଆଖିରେ ଦିନେ କଥା କହୁଥିଲା । ମନେକର ସେ ଦିନର ମଣିଷ ଅସ୍ତ୍ର ନେଇ କ'ଣ ଗୋଟାଏ କାଟିବାକୁ ବସିଛି । କିପରି ସେ ଏ କଥା ବୁଝାଇବ ? ହାତ ଦେଇ କାଟିବାର ଭଙ୍ଗୀ କରିବା ଛଡ଼ା ସେତେବେଳେ ଅନ୍ୟ କିଛି ଉପାୟ ନଥିଲା । କିଛି ଗୋଟାଏ ଦେବାକୁ କହିଲାବେଳେ ସେ ହାତ ଚିତ୍ କରି ଆଗେଇ ଦେଉଥିବ, 'ଏ ଆଡ଼କୁ ଆସ' କହି ପାରେ ନି ବୋଲି ନିଜ ଆଡ଼କୁ ଟାଣି ଆଣିବାର ଭଙ୍ଗୀ କରୁଥିବ । ସେହି ସଙ୍ଗେ ସଙ୍ଗେ ଅନ୍ୟର ଦୃଷ୍ଟି ଆକର୍ଷଣକରିବା ପାଇଁ ସେ କ୍ରମାଗତ ଗୁଁଗୁଁ ହେଉଥିବ ବା ଚିତ୍କାର କରୁଥିବ ।

ତୁମ୍ଭେମାନେ ପଚାରିପାର —ଏ ସବୁ ସତ କଥା ତ ! କିପରି ଆମେ ସବୁ ଏକଥା ଜାଣୁ ନାଇଁ !

ସେ କାଳରେ ଲୋକମାନେ ଆମ୍ଭମାନଙ୍କର ପୂର୍ବପୁରୁଷ ବୋଲି ଆମ୍ଭେମାନେ ସେମାନଙ୍କର କିଛି କିଛି ଜ୍ଞାନ ଓ ଶିକ୍ଷା ଉତ୍ତରାଧିକାର ସୂତ୍ରେ ପାଇଥାଇଁ । ସେ କଥା ପାଇଥିବାରୁ ଆମ୍ଭେମାନେ ଅତୀତର ସଙ୍ଗେ ତୁଳନା କରି ଆଗର କଥାଗୁଡ଼ାକ କହି ପାରୁଥାଇଁ ।

**ଭଙ୍ଗୀର ଛବି**

କେତେ ବର୍ଷ ଆଗେ ଉତ୍ତର ଆମେରିକାରୁ ଜଣେ ଆଦିମ ଅଧିବାସୀ ଇଉରୋପ ଦେଖିବାକୁ ଆସିଥିଲେ । ସେ ନେଜ୍ ପେରସେଜ୍ (Nez perces) ନାମକ ଆଦିମ ଜାତିର ଲୋକ । ଇଂରାଜୀ ଏବଂ ମାତୃଭାଷା ସେ ସମାନ ଭାବରେ କହି ପାରୁଥିଲେ । ଆପଣାର ପୋଷାକ ପତ୍ରରେ ସେ ଖାଣ୍ଟି ବିଲାତି, ଏ ଦୁଇଟା ଭାଷା ଛଡ଼ା ସେ ଆମେରିକାର ଆଦିମ ଅଧିବାସୀମାନଙ୍କ ଭିତରେ ଅତି ପୁରାକାଳର ଭାଷାକୁ ମଧ୍ୟ ଆୟତ୍ତ କରିଥିଲେ । ତାଙ୍କ ପାଖରୁ ଏ ଭାଷାର ନମୁନା ମିଳିଥିଲା । ଏଥିରେ ବ୍ୟାକରଣର ସୂତ୍ର ନାହିଁ, ଉଚ୍ଚାରଣ ଭୁଲର ଭୟ ନାହିଁ, ଉଚ୍ଚାରଣ ମଧ୍ୟ ଦରକାର ହୁଏନାହିଁ । ଏମାନଙ୍କର ଭାଷା ଶବ୍ଦରେ ନୁହେଁ – ଭଙ୍ଗୀରେ ।

**ଭଙ୍ଗୀ ଭାଷାର ଅଭିଧାନରୁ ଗୋଟିଏ ପୃଷ୍ଠା**

ଧନୁ – ଗୋଟିଏ ହାତ ଗୋଟିଏ କାଳ୍ପନିକ ଧନୁ ଧରିଥାଏ ଏବଂ ଅନ୍ୟ ହାତ ତହିଁରେ ଟଙ୍କାର ଦିଏ ।

ବାଘ – ହାତର ଦୁଇଟା ଆଙ୍ଗୁଳି କାନପରି କରି ଦେଖାଇବା ।

ମାଛ – ପାପୁଲି ତଳକୁ କରି ହାତକୁ ଘନ ଘନ ହଲାଇବା, ମୋଟ କଥା ପ୍ରତ୍ୟେକ ଭଙ୍ଗୀ ପବନରେ ହାତ ଦେଇ ଅଙ୍କା ଛବି ।

ସେତେବେଳେ କାଗଜ ନ ଥିଲା । ଆଙ୍କିବାର ଉପକରଣ ନ ଥିଲା । ପବନ ଥିଲା କାଗଜ ଏବଂ ହାତ ଥିଲା ଉପକରଣ, ପବନ ଦେହରେ ଖାଲି ହାତରେ ଛବି ଆଙ୍କିବା ଥିଲା ସେକାଳର ଭାଷା । ବର୍ତ୍ତମାନ ଆଦିମ ଆମେରିକାବାସୀଙ୍କ ଭିତରେ ଯେଉଁ ଭଙ୍ଗୀ ଭାଷା ଚଳୁଛି ତା'ର ସଙ୍ଗରେ ଏହାର ପୁରାପୁରି ମେଳ ଅଛି । ଏବେ ଏପରି ଅନେକ କଥା ହେଲାଣି ଯାହା ଆଗେ ଥିବା ସମ୍ଭବ ନ ଥିଲା । ଯେପରି ମୋଟର ଗାଡ଼ି ହାତ ଘୁରାଇ ଚକପରି କରି ହୁସ କରି ଆଗକୁ ଯିବା – ତା' ପରେ ଗାଡ଼ିର ଷ୍ଟିଅରିଂ ଚଳାଇବାର ଭଙ୍ଗୀ ।

ଏକଥାଟା କ'ଣ ଠିକ୍ ନୁହେଁ ଯେ ଏବେ ମଧ୍ୟ ସଭ୍ୟ ଜଗତରେ ଭଙ୍ଗୀ ଭାଷା ଅଳ୍ପସ୍ୱଳ୍ପ ଚଳୁଚି । 'ହଁ'କହିବା ବଦଳରେ ଆମ୍ଭେମନେ ଅନେକ ବେଳେ ମୁଣ୍ଡ ହଲାଉ – 'ଏ

ଦିଗରେ' ବା 'ସେ ଦିଗରେ' କହିବାକୁ ହେଲେ ଆମ୍ଭେମାନେ ଆଙ୍ଗୁଳି ଚଳାଇ ଦେଖାଉଁ, କାହାର ସଙ୍ଗେ ଦେଖା ହେଲେ ହାତ ଯୋଡ଼ି ନମସ୍କାର କରୁ ।

ଥିଏଟରରେ ଭଙ୍ଗୀ ଭାଷା ବହୁତ ଦରକାର । ଅନେକ ସମୟରେ ଆକାର ଇଙ୍ଗିତରେ ଏପରି ସୁନ୍ଦର କରି ମନର ଭାବ ପ୍ରକାଶ କରାଯାଏ– ଯାହା ଭାଷା ଦେଇ ବୁଝାଇବା କଠିଣ ହୋଇ ପଡ଼ନ୍ତା । ଜାହାଜ ଜାହାଜ ଭିତରେ ସିଗ୍‌ନାଲ୍ ଦେଲାବେଳେ କଥା କହିଲେ ଚଳେ ନାଁ – ସେତେବେଳେ ଆଲୁଅରେ ଭଙ୍ଗୀ କରି ବୁଝେଇ ଦିଆଯାଏ ।

ଭଙ୍ଗୀର ଭାଷା ଏକ ସମୟରେ ଖୁବ୍ ଚଳଣ ଥିଲା ସତ; କିନ୍ତୁ ଶେଷରେ ତାକୁ ଭାଷା ନିକଟରେ ହାର ମାନିବାକୁ ହେଲା । **ଅନେକ ଅନୁନ୍ନତ ଦେଶରେ ତ ଏ ପର୍ଯ୍ୟନ୍ତ ଚାକର ଏବଂ ଦାସମାନଙ୍କୁ କଥା କହିବାକୁ ଅନୁମତି ଦିଆଯାଏ ନାହିଁ ।** ଭଙ୍ଗୀ ଦେଇ ସେମାନେ କାମ ଚଳାଇବାକୁ ବାଧ କରାଯାଏ । ଆମରି ଓଡ଼ିଶା ଗାଁ ଗହଳରେ ବୋହୂ ଭୂଆଷୁଣୀ ମାନ୍ୟଗଣ୍ୟ ବୁଢ଼ି ପୁରାତନଙ୍କୁ ହାତ ମୁହଁର ଭଙ୍ଗୀରେ କଥା କହିବା ଏବେ ଅବଶ୍ୟ ଲୁଚି ଆସିଲାଣି ! ଏକ ସମୟରେ ସ୍ତ୍ରୀ ଲୋକଙ୍କୁ ସବୁ ଦେଶରେ ହୀନ ବୋଲି କଳ୍ପନା କରାଯାଉଥିଲା । ଏହି କିଛିଦିନ ପୂର୍ବେ ରୁଷିଆର କକେଶଶ୍ ଅଞ୍ଚଳରେ ସ୍ତ୍ରୀମାନେ ପୁରୁଷମାନଙ୍କ ଆଗରେ କଥା କହିବାର ଅଧିକାର ନ ଥିଲା । ସେମାନେ ଇଙ୍ଗିତ ଇସାରାରେ ସବୁ କଥା ବୁଝାଇବାକୁ ବାଧ ହେଉଥିଲେ । ସିରିଆ ଦେଶରେ ମଧ ଏ ପ୍ରକାର ଭାଷାର ଅସ୍ତିତ୍ୱ ଅଛି । ପାରସ୍ୟର ଶାହାଙ୍କର ଦରବାରରେ ମଧ ଚାକରମାନଙ୍କୁ ଇଶାରାରେ କଥା କହିବାକୁ ହୁଏ । ସମାନ ସମାନ ନ ହେଲେ କଥା କହିବାର ଅଧିକାର ନ ଥିଲା ।

ଆଜି ରୁଷିଆର କକେଶଶ୍‌ରେ ଏ ଘଟଣା ନାହିଁ କାରଣ ସେଠି ସ୍ତ୍ରୀ ପୁରୁଷ ସଭିଏଁ ସମାନ । କିନ୍ତୁ ଏ ପର୍ଯ୍ୟନ୍ତ ମଧ ଅନେକ ଦୁର୍ଭାଗାଙ୍କର ମନର କଥା ଜଣାଇବାର ଏବଂ ବୁଝାଇବାର ସହଜ ସ୍ୱାଧୀନତା ଟିକ ମଧ୍ୟ ସେମାନଙ୍କର ନାହିଁ ।

## ମଣିଷ ମନର ଜନ୍ମ କଥା

ଜଙ୍ଗଲର ପ୍ରତ୍ୟେକ ପ୍ରାଣୀହିଁ ଚାରିଆଡ଼କୁ ନଜର ରଖେ । କେତେବେଳେ କି ବିପ୍ରାତ ଘଟିବ ସେଥିପାଇଁ ସେମାନେ ସତର୍କ ଥାଆନ୍ତି । ଖସ୍ ଖସ୍ କରି କୋଉଠି ଗୋଟାଏ ଶବ୍ଦ ହେଲା ! ହୁଏତ କୌଣସି ଶତ୍ରୁ ସେଠି ଲୁଚି ରହିଚି । ମେଘର ଘଡ଼ଘଡ଼ି ଶୁଭିଲା ଆଉ ପବନର ଝାଇଁ ଝାଇଁ – ଆସନ୍ନ ଝଡ଼ ହାତରୁ ଆତ୍ମରକ୍ଷାର ବ୍ୟବସ୍ଥା ପାଇଁ ସେ ଦୌଡ଼େ ।

ଆଦିମ ମଣିଷ ମଧ୍ୟ ଏହି ଭାବରେ ସବୁ ଲକ୍ଷଣରୁ ଉପରକୁ ତଳକୁ ଚାହିଁ ଏବଂ ଏପାଖ ସେପାଖ ଚାହିଁ ଚଳାଚଳ ହେଉଥିଲା । ଏହା ଛଡ଼ା ମଧ୍ୟ ସେ ଦଳର ଅନ୍ୟଲୋକର ସଙ୍କେତରୁ ବୁଝିବାକୁ ଶିଖିଗଲା ।

ମନେକର କୌଣସି ବାଣୁଆ ହରିଣର ସନ୍ଧାନ ପାଇଲା । ସଙ୍ଗେ ସଙ୍ଗେ ସେ ଅନ୍ୟ ସମସ୍ତଙ୍କୁ ହାତର ଠାରରେ ସେ କଥା ଜଣାଇଲା "ସଜବାଜ ହୋଇ ହରିଣକୁ ଗୋଡ଼ାଇବାକୁ ହେବ", ହରିଣ ନଦେଖିଲେ ମଧ୍ୟ ସେମାନେ ତାଙ୍କର ବର୍ଚ୍ଛା ନେଇ ପ୍ରସ୍ତୁତ ହୋଇ ବାହାରି ପଡ଼ନ୍ତି । ମାଟିରେ ହରିଣ ଚାଲିବା ଚିହ୍ନ ଯେପରି ଗୋଟାଏ ସଙ୍କେତ ସେପରି ହାତ ହଲାଇ ସେହି ଚିହ୍ନ ଖୋଜି ପାଇବା କଥା ମଧ୍ୟ ସଙ୍କେତର ସଙ୍କେତ ।

ଯେତେଥର କୌଣସି ବାଣୁଆ ଏ ପ୍ରକାର ଚିହ୍ନ ଖୋଜି ପାଇବ, ସେ ସେତେଥର ଅନ୍ୟମାନଙ୍କୁ ତିଆରି ହେବାକୁ ସଙ୍କେତ ଦେବ । କାର୍ଯ୍ୟତଃ ଏହି ସବୁ ଶବ୍ଦମାନଙ୍କର ସଙ୍କେତ ପ୍ରକୃତରେ ଦିଆ ସଙ୍କେତ ସହିତ ମିଶି ରହିଲା । ଆଇଭାନ୍ ପେଟ୍ରୋଭିଚ ପାଭଲୋଭ ଜଣେ ରୁଷିଆର ବଡ଼ ଜୀବତ ତତ୍ତ୍ୱବିଦ୍। ତାଙ୍କର ଗାଁରେ ରାଫେଲ ଏବଂ ରୋଜା ସିଂପାଞ୍ଜି କଥା ଆଗରୁ କହିଚି । ତାଙ୍କର ଗାଁ ନାଁ ଥିଲା କଟୁସି । ଏବେ ସୋଭିଏଟ ଦେଶ ଲୋକ ସମ୍ମାନରେ ସେଇ ଗାଁର ନାଁକୁ ପାଭଲଭ୍ ରଖିଛନ୍ତି ଏବଂ କହୁଛନ୍ତି "ମଣିଷର କଥା ହେଉଚି ଏପରି ସଙ୍କେତର ସଙ୍କେତ ମାତ୍ର ।"

ପ୍ରଥମେ ପ୍ରଥମେ ଥିଲା ଖାଲି ଭଙ୍ଗୀ ଏବଂ ଚିତ୍କାର । ଆଖି ଏବଂ କାନ ମାରଫତ୍ ଏଇ ସଙ୍କେତ ପାଇ ସେଗୁଡ଼ିକ ମସ୍ତିଷ୍କକୁ ପଠାଇ ଦିଆ ଯାଉଥିଲା । ସେଇ ମସ୍ତିଷ୍କରେ ସଙ୍କେତ ପହୁଞ୍ଚେ । ଯେପରି ଧର କୌଣସି ପଶୁ ଆସୁଛି – ସେଇଠୁଁ ଆଦେଶ ଚାଲି ଆସିଲା ଆଖି, ହାତ, କାନ, ପାଦ ସମସ୍ତଙ୍କ ପାଖକୁ । ସେମାନେ ତିଆରି ହେବାକୁ ସଙ୍କେତ ପାଇଲେ । ଯେତେ ଭଙ୍ଗୀ ବଢ଼ିବାକୁ ଲାଗିଲା ସେତେ ମସ୍ତିଷ୍କର କେନ୍ଦ୍ରୀୟ ସମିତିର କାମ ମଧ ବଢ଼ିଗଲା । ଏସବୁ କାରଣରୁ କେନ୍ଦ୍ରୀୟ ସମିତିକୁ ବଡ଼ କରିବାର ପ୍ରୟୋଜନ ଦେଖାଦେଲା । ତା ପରେ କ୍ରମାଗତ ମସ୍ତିଷ୍କରେ ନୂଆ ନୂଆ କୋଷ ବା କୋଠରୀ (Cell) ଗଢ଼ି ଉଠିବାକୁ ଲାଗିଲା । ଏଇ ସବୁ ଜୀବକୋଷଗୁଡ଼ିକର ସମ୍ପର୍କ ମଧ କ୍ରମେ ବେଶୀ ଜଟିଳରୁ ଜଟିଳତର ହେବାକୁ ଲାଗିଲା ଏବଂ ମସ୍ତିଷ୍କର ଆୟତନ ମଧ ବଢ଼ିଗଲା । ଏଥିଲାଗି ପିଥେକ୍ୟାନ୍ଥ୍ରପାସ୍ ଠାରୁ ନିୟାନଡାରଥାଲ ମଣିଷର ମୁଣ୍ଡ ବଡ଼ । ଏତେ ଦିନରେ ମଣିଷର ଚିନ୍ତା କରିବାର କ୍ଷମତା ଆସିଲା ।

ଏକା ସଙ୍ଗେ କାମ କରୁ କରୁ ମଣିଷ କଥା କହିବା ଶିଖିଲା । **କାମ ଜନ୍ମ ଦେଲା କଥାର** । କଥା ନେଇ ଆସିଲା ଚିନ୍ତା । ପ୍ରକୃତି ଦେବୀର ଦୟାରୁ ମଣିଷ ଚିନ୍ତାଶକ୍ତି ପାଇନାହିଁ, ଏହାକୁ ସେ ନିଜର ଗୁଣରୁ ଅର୍ଜନ କରିଛି ।

- ୦ -

# ତା' ପରେ

ମନୁଷ୍ୟ ଶୈଶବ କିପରି କଟିଛି ସେ କାହାଣୀ ଶୁଣିବାକୁ ତୁମର ନିଶ୍ଚୟ କୌତୂହଳ ହେଉଥିବ । ନାନା ଗୁହାର ପ୍ରମାଣରୁ ଆମ୍ଭେମାନେ ସେ ସବୁ ପରିଚୟ ପାଉଁ । ଭାଗ୍ୟକ୍ରମେ ବଡ଼ ବଡ଼ ପାହାଡ ଭିତରେ ଅନେକ ଗୁହା ବହୁ ପ୍ରାଚୀନ କାଳର ମନୁଷ୍ୟର ପ୍ରାଣ ଯାତ୍ରାର ସାକ୍ଷୀ ଦେଇ ଚାଲିଛି । ହଜାର ହଜାର ବର୍ଷ ପୂର୍ବେ ସେଗୁଡ଼ାକ ଖାଲି ପାଣିରେ ଭରି ଥିଲା । କାରଣ ସେ ସବୁ ଗୁହାର ଏକଦମ ତଳସ୍ତରରେ ଖୋଳିଲେ ଦେଖାଯିବ, ତାହା କାଦୁଅ ଏବଂ ବାଲିରେ ଭର୍ତ୍ତି ।

ପରେ ପାଣି କମିଗଲେ ମଣିଷ ସେଠି ବସା ବାନ୍ଧେ । ପୁରୁଣା ପଥରର ଅସ୍ତ୍ରରୁ ଆମ୍ଭେମାନେ ସେ ସମ୍ବନ୍ଧରେ ଅକେକକଥା ଧାରଣା କରିପାରିବା । ପରିଷ୍କାରଭାବରେ ଜଣା ପଡୁଛି, ଏହି ଗୁହାମାନଙ୍କରେ ଯେଉଁମାନେ ଦିନେ ବସା ବାନ୍ଧିଥିଲେ ସେମାନେ ଥିଲେ ଶିକାରୀ । ତାହାର ଅର୍ଥ ଏହା ଭିତରେ ମଣିଷ ଶିକାର କରିବାକୁ ଶିଖିଥିଲା ।

ବର୍ଷ ପରେ ବର୍ଷ କଟି ଯାଇଛି । ସେହି ଗୁହା ସେହି ପରି ଜନମାନବଶୂନ୍ୟ ହୋଇ ପଡ଼ି ରହିଥିଲା । ଆଉ ଏକ ସମୟ; ଆଉ ଅନେକ ନିଦର୍ଶନରୁ ମନେ ହୁଏ ଯେ ଗୁହା–ଜୀବୀ ଭାଲୁ ସେଠାରେ ଆସ୍ଥାନ ଜମାଇ ଅଛି ।

ଏହାର ପରସ୍ତରରେ ଆଉଥରେ ମଣିଷର ଜୀବନ ଯାତ୍ରାର ଚିହ୍ନ ମିଳେ । କୋଇଲା, ପାଉଁଶ, ହାଡ଼ଗୋଡ଼, ଅସ୍ତ୍ରଶସ୍ତ୍ର ଏ ସବୁ ପ୍ରମାଣରୁ ମନୁଷ୍ୟର ଅସ୍ତିତ୍ୱ ଅନୁମାନ କରାହୁଏ ।

ଏହି ସ୍ତରକୁ ଆସିଲେ ଆମ୍ଭେମାନେ ସର୍ବପ୍ରଥମେ କେତେଗୁଡ଼ିଏ ନୂତନ ଅସ୍ତ୍ରର ସନ୍ଧାନ ପାଉ । ଏହି ସବୁ ଆଦିମ ଅସ୍ତ୍ରରୁ ହିଁ କାଳକ୍ରମେ ଭବିଷ୍ୟତରେ ଗୋଟି ଗୋଟି ହୋଇ ଦେଖାଦେଲା ହାତୁଡି, ଛୁରା, କରତ ଏବଂ ଛୁଞ୍ଚି । ଅବଶ୍ୟ ସେତେବେଳେ ଯେ ହାତୁଡ଼ି ନଥିଲା, ସେ କଥା ନୁହେଁ, କିନ୍ତୁ ପର ଯୁଗର ହାତୁଡ଼ି ପ୍ରଭୃତି ସହିତ ତୁଳନା କଲେ ସେଗୁଡ଼ିକ ପିଲାଖେଳ ବୋଲି ମନେହେବ । ଏହି କଞ୍ଚା ହାତର ହାତୁଡ଼ି ଯେତେବେଳେ ମିଳିଲା, ସେତେବେଳେ ସେହି ପ୍ରକାରର ମୁଗୁର ମଧ୍ୟ ମିଳନ୍ତା, ତାହା ମଧ୍ୟ ମିଳେ । ହାଡ଼ରେ ମୁଗୁର ମଧ୍ୟ ଏହି ସବୁ ଗୁମ୍ଫାମାନଙ୍କରେ ମିଳିଛି । ଆମ୍ଭେମାନେ ବର୍ତ୍ତମାନ

ଜାଣିପାରିଲେ ପଛ ବେଳକୁ ମନୁଷ୍ୟ ଆଗ ଅପେକ୍ଷା ଅନେକ ଉନ୍ନତ ହୋଇଛି । ଏହା ଭିତରେ ଯେଉଁ ହଜାର ହଜାର ବର୍ଷର ବ୍ୟବଧାନ ରହିଛି । ସେ ମଧ୍ୟରେ ମନୁଷ୍ୟର କାମ ମଧ୍ୟ ଜଟିଳ ହୋଇଛି । କେତେ ଦିଗରେ କେତେ ବିଚିତ୍ର କାମ ଆସି ପହଞ୍ଚିଛି ।

ବାସ୍ତବରେ ମଣିଷକୁ ଆଗ ଅପେକ୍ଷା ବେଶୀ ଖଟିବାକୁ ପଡୁ ଥିଲା । ପ୍ରଚଣ୍ଡ ଶୀତରୁ ବଞ୍ଚିବାର ଉପାୟ ବାହାର କରିବାକୁ ହୋଇଥିଲା । ଭବିଷ୍ୟତ ଲାଗି ଖାଦ୍ୟ ସଞ୍ଚୟ କରିବାକୁ ହେଉଥିଲା । ଏହିପରି ଆହୁରି ଅନେକ କାମ । ଏଥିପାଇଁ ଯନ୍ତ୍ରପାତିର ଯଥେଷ୍ଟ ଦରକାର ।

**ଜିଭ ଓ ହାତ ମଧ୍ୟରେ ଅଦଳ ବଦଳ**

ଯେତେଦିନ ଯାଏ ମଣିଷର ଯନ୍ତ୍ରପାତି ବେଶୀ କିଛି ନଥିଲା, ଏବଂ ଯେତେଦିନ ତାର ଅଭିଜ୍ଞତାର ଦୌଡ଼ ମଧ୍ୟ ବେଶୀ ନଥିଲା, ସେତେଦିନ ଯାଏ ସହଜ ଭଙ୍ଗୀକୁ ଘେନି ସେ କାମ ଚଲାଇ ନେଉଥିଲା । କିନ୍ତୁ ଯେତେ ବିଭିନ୍ନ କାମର ଜଟିଳତା ବଢ଼ିଲା ସେତେ ଭଙ୍ଗୀ ମଧ୍ୟ ଜଟିଳ ହେବାକୁ ଲାଗିଲା । ପ୍ରତ୍ୟେକ ଜିନସ ବୁଝିବା ଲାଗି ବିଶେଷ ଭଙ୍ଗୀ ଦରକାର ହେଲା । ସେଇଠୁ ଆରମ୍ଭ ହେଲା ପବନର ପଟରେ ଭଙ୍ଗୀର ଛବି ଆଙ୍କିବା ।

ଯଦି ସଜାରୁର କଥା ବୁଝାଇବାକୁ ହେବ ତେବେ ସଜାରୁକୁ ଆଂକି ଦେଖେଇବାକୁ ହେବ । ମଣିଷକୁ ସେତେବେଳ ପାଇଁ କ୍ଷଣିକ ନକଲି ସଜାରୁ ସାଜିବାକୁ ହେବ । ସଜାରୁର କାନଟେକା କାଇଦା, ମାଟି ଖୋଳିବା ଧରଣ, ସବୁ ତାକୁ ଅଙ୍ଗଭଙ୍ଗୀ କରି ବୁଝାଇବାକୁ ହେଉଥିଲା । ଆମ୍ଭମାନଙ୍କ ପାଇଁ ଶିକାର କଥାଟା ଖୁବ୍ ସହଜ ଶବ୍ଦ । କିନ୍ତୁ ସେତେବେଳ ସମୟରେ କିଏ ସେ କଥା କହିବାକୁ ଗଲେ, ତାକୁ ଶିକାରର ସବୁ କାଣ୍ଡକାରଖାନା ଅଭିନୟ କରି ଦେଖାଇବାକୁ ହେଉଥିଲା ।

ଏଥର ଦେଖିବାକୁ ପାଉଚ ଭଙ୍ଗୀ ଭାଷାର ବିସ୍ତର ସୁବିଧା ଥିଲେ ବି ସେଥିରେ ଅସୁବିଧା ମଧ୍ୟ କମ୍ ନୁହେଁ । ସୁବିଧା କହୁଚି ଏହି କାରଣରୁ ଯେ ଇଙ୍ଗିତ ଏବଂ ଭଙ୍ଗୀରେ ବୁଝାଇଲେ ସବୁ ଜିନିଷ ଖୁବ୍ ପରିଷ୍କାର ବୁଝାଯାଏ । ଆଉ ଅସୁବିଧା ଏହି କାରଣରୁ ଯେ କଳ୍ପନା ବିଷୟ ଓ ମନଗଢା ବସ୍ତୁ ଭଙ୍ଗୀ ଦେଇ ବୁଝାଇବା ସୁବିଧା ନୁହେଁ । ତା' ଛଡ଼ା ରାତିରେ କିମ୍ବା ଅନ୍ଧାର ମଝିରେ ଭଙ୍ଗୀ ଦେଇ କିଛି ବୁଝାଇ ହୁଏ ନାହିଁ । ଏପରିକି ଦିନବେଳରେ ମଧ୍ୟ ବଣ ଜଙ୍ଗଲରେ ଭଙ୍ଗୀଭାଷାରେ କଥା କହିବା କଠିଣ । ଏ ସବୁ ଅସୁବିଧା ଦୂର କରିବାକୁ **ଶବ୍ଦର ଭାଷା ଆବିଷ୍କାରର ପ୍ରୟୋଜନ ଆସିଲା ।**

ପ୍ରଥମେ ପ୍ରଥମେ ଜିଭ ଏବଂ ଗଳାର କାମ ଖୁବ୍ ଭଲ ଭାବରେ ହୋଇ ନଥିଲା ।

ଗୋଟିଏ ଶବ୍ଦରୁ ଆଉ ଗୋଟିଏ ଶବ୍ଦର ପାର୍ଥକ୍ୟ ବୁଝିବା କଠିଣ ହେଉଥିଲା । ସେ ସମୟଟା **ଖାଲି ଆବାଜ ଆଉ ଚିତ୍କାର ଏବଂ କିଚମିଚର ଯୁଗ** । ମୂଳରୁ ଭଙ୍ଗୀର କାମରେ ସାହାଯ୍ୟ କରିବା ଥିଲା ଜିଭର କାମ ।  କିନ୍ତୁ ଜିଭର ଜଡ଼ତା ଭାଙ୍ଗିବା ସଙ୍ଗେ ସଙ୍ଗେ ଭଙ୍ଗୀର ପ୍ରୟୋଜନ କମିଗଲା । ଭଙ୍ଗୀଠାରୁ ଉଦ୍‌ଭବ ଥିବାରୁ ପ୍ରଥମ ସ୍ତରର 'କଥା' ଭଙ୍ଗୀର ପ୍ରଭାବରୁ ମୁକ୍ତ ନ ଥିଲା । ପ୍ରଥମ ପ୍ରଥମ ନବ ଜାତ କଥାବାର୍ତ୍ତା ଥିଲା ପୁରାପୁରି ଶବ୍ଦ ଚିତ୍ରର ଗୋଟାଏ ପଟୁଆର ଅର୍ଥାତ୍ କୌଣସି ବିଷୟରେ ବୁଝାଇବାକୁ ଯାଇ ବିସ୍ତର କଥାର ବା ଆବାଜର କସରତ କରିବାକୁ ହେଉଥିଲା । ନୋହିଲେ ଯାହା କହିବାକୁ ଇଚ୍ଛା ତାହା ହୋଇ ପାରନ୍ତା ନାହିଁ ।

ଇଭି (Yeve) ଜାତିର କଥା ଜାଣ । ସେମାନେ 'ଚାଲି'କୁ 'ଚାଲି' କହନ୍ତି ନାହିଁ । ସେମାନେ କହନ୍ତି ''ଜୋ ଝ ଝ'' ଅର୍ଥାତ୍ ଖୁବ୍ ପଇନ୍ତରା ଦେଖାଇ ଚାଲିବା ।
''ଜୋ  ବଚୋ ବଚୋ'' ମୋଟା ମଣିଷ ପରି ଥପ୍ ଥପ୍ କରି ଚାଲିବା – ''ଜୋ ପୁକ୍'' ଅର୍ଥାତ୍ ତରତରରେ ଚାଲିବା; ''ଜୋ ଗୋଭୁ ଗୋଭୁ'' ଅର୍ଥାତ୍ ମୁଣ୍ଡ ପୋତି ଚାଲିବା ।

ଏ ସବୁ ପ୍ରତ୍ୟେକଟି ହେଉଚି ଶବ୍ଦଚିତ୍ର । କୌଣସି ଗୋଟାଏ ବିଶେଷ କାମ ବୁଝାଇବା ହେଉଚି ଏହାର କାମ । ପ୍ରଥମେ ଥିଲା ଭଙ୍ଗୀଚିତ୍ର – ତା' ପରେ ଶବ୍ଦଚିତ୍ର – ସେଥିରୁ ଆସିଲା କଥା ।

ଏ ପର୍ଯ୍ୟନ୍ତ ଅତୀତର ଅଭିଯାନରୁ ଆମ୍ଭେମାନେ କି ଜ୍ଞାନ ଲାଭ କରିଥାଇଁ । ଯୁଗ ପରେ ଯୁଗ କଟିଯାଇଛି । ସେ ସମୟରେ କେତେ ଜାତିର ଉଦ୍‌ଭବ ହୋଇଛି । ଆଉ କେତେ ଜାତି ଜୀବ ଜଗତର ଇତିହାସରୁ ପୋଛି ହୋଇ ଯାଇଛନ୍ତି। ସେମାନଙ୍କର ସାମାନ୍ୟ ଚିହ୍ନ ମଧ ହୁଏତ ବଳି ନାହିଁ । ସେତେବେଳେ ମନେ ହୁଏ, ହୁଏତ କାଳର କରାଳ ଗ୍ରାସରୁ ମଣିଷ ସ୍ମୃତି ଚିହ୍ନ ବଞ୍ଚିବାର କୌଣସି ଉପାୟ ନାହିଁ । କିନ୍ତୁ ମଣିଷ ତଥାପି ମଧ ଦବି ନାହିଁ । ମଣିଷର ଅଭିଜ୍ଞତା ଲୋପ ପାଇନି । କାଳର ଦାଉକୁ ବେଖାତିର କରି ମଣିଷର ଅନୁଭୂତି ତା'ର ଭାଷାରେ, ତା'ର ଯନ୍ତ୍ରରେ, ତା'ର ବିଜ୍ଞାନରେ, ତା'ର ଶିଳ୍ପରେ ଅନେକ ପ୍ରକାରରେ ରହିଚି । ଭାଷାର ପ୍ରତ୍ୟେକର କଥାର, ବିଜ୍ଞାନର ପ୍ରତି ଆବିଷ୍କାର ପଛରେ ରହିଚି ଯୁଗଯୁଗାନ୍ତରର ଅଭିଜ୍ଞତାର ଦାଗ । ଏଇ ଭାବରେ ଅସଲ ମଣିଷର ଆବିର୍ଭାବ – ଯେଉଁ ମଣିଷ କାମ କରେ, କଥା କହେ, ମଥା ଖେଳାଏ ।

'ମାଙ୍କଡ଼-ମଣିଷ' ଆଉ ମଣିଷ ଭିତରେ ଯେଉଁ ହଜାର ହଜାର ବର୍ଷ କଟି ଯାଇଚି

ତା'ରି କଥା ଭାବିଲେ ଫ୍ରିଡ୍‌ରିସ୍ ଏଙ୍ଗେଲସ୍‌ଙ୍କର କଥା ମନେ ପଡ଼େ । ତାଙ୍କ ମତରେ ''କାର୍ଯ୍ୟ ହିଁ ମଣିଷର ସୃଷ୍ଟିକର୍ତ୍ତା'' ।

ଯନ୍ତ୍ରପାତି ସବୁ ମିଳି ନାହିଁ । ହଜାର ହଜାର ବର୍ଷର ଧ୍ୱଂସର ହାତରୁ ଖାଲି ଯେଉଁତକ ବଞ୍ଚିଛି ସେଗୁଡ଼ିକ କେବଳ ଆମେ ଦେଖିବାକୁ ପାଇଛୁଁ କାଠ ଆଉ ଚମଡ଼ା ଜିନିଷ, କୌଣସି ଅସ୍ତିତ୍ୱର ଚିହ୍ନ ତ ନାହିଁ । ଅଛି ଖାଲି ପଥର ଆଉ ହାଡ଼ର ଯନ୍ତ୍ରପାତି ! ପୁଣି ତାପରେ ହଜାର ହଜାର ବର୍ଷ ବୋହି ଯାଇଛି । ଏଥର ମନୁଷ୍ୟ ଗୁହା ଛାଡ଼ି ବାହାରେ ଆସି ବସା ବାନ୍ଧିଛି । ସେମାନେ ଶିଖିଛନ୍ତି ଘରବାନ୍ଧି ରହିବା । କେତେବେଳେ ଖାଲି ଗୋରୁର ଜଗୁଆଳମାନେ ଗୋରୁ ଚରାଇବାକୁ ଆସି ଗୁହାରେ ବିଶ୍ରାମ କରନ୍ତି । ମଣିଷ ଗୁହାକୁ ବାସସ୍ଥାନର ଅଯୋଗ୍ୟ ବୋଲି ଛାଡ଼ି ଦେଇଛି ।

ପ୍ରତ୍ୟେକ ସ୍ତରର ସଙ୍ଗେ ଆଗ ସ୍ତରର ପାର୍ଥକ୍ୟ ଅଛି । ରହିବ ତ ! କ୍ରମେ ମନୁଷ୍ୟ ଉନ୍ନତ ହୋଇଛି । କ୍ରମେ କ୍ରମେ ଭଲ ଭଲ ଅସ୍ତ୍ର ତିଆରି କରି ଶିକାରରେ ବାହାରିଛି ।

## ଲମ୍ୱା ହାତ

ବର୍ଚ୍ଛାର ଫଳା ପରି ଦାନ୍ତୁଆ ପଥର ବାନ୍ଧିବା ସଙ୍ଗେ ସଙ୍ଗେ ମନୁଷ୍ୟର ହାତର ଲମ୍ୱ ବଢ଼ିଗଲା । ଏଥର ତା'ର ଜୋର ଆଉ ସାହସ ଦୁଇଟା ବଢ଼ିଗଲା ।

ଆଗେ ଭାଲୁ ଦେଖିଲେ ମଣିଷ ପଳେଇ ଯାଉଥିଲା । ସେତେବେଳେ ମଣିଷର ସବୁତକ ଜୋର ସାନ ସାନ ଜନ୍ତୁ ଉପରେ ଖଟୁଥିଲା । କିନ୍ତୁ ବର୍ଚ୍ଛା ହାତରେ ପାଇ ମଣିଷର କ୍ଷମତା ବଢ଼ିଗଲା । ସେ ଭୟରେ ନ ପଳାଇ ଭାଲୁକୁ ସିଧାସଳକ ଆକ୍ରମଣ କରିବାକୁ ବସିଲା । ପଛ ଦୁଇ ପାଦରେ ଛିଡ଼ା ହୋଇ ଭାଲୁ କାଳେ ତାକୁ ଆକ୍ରମଣ କରିପାରେ, ତା' ପୂର୍ବରୁ ସେ ବର୍ଚ୍ଛା ଭାଲୁ ଦେହରେ ବିନ୍ଧି ଦେଉଥିଲା । ଦେଖୁଁ ଦେଖୁଁ ଚାରିଦିଗରୁ ଦଳବଳ ଆସି ସେହି ଭାଲୁକୁ ଚିରି ପକାଉ ଥିଲେ । ସେତେବେଳେ ଖାଲି ବର୍ଚ୍ଛାରେ ହୁଏ ତ ମଣିଷର କାମ ଚଳିଥାନ୍ତା । କିନ୍ତୁ ତା ତ ନୁହେଁ, ସେ ଯେ ନାନା ଜୀବଜନ୍ତୁ ଶିକାର କରିବ । ମଣିଷର ହାତ ଘୋଡ଼ା, ବାଇସନ୍ ଏବଂ ଆଉ ସବୁ ଜନ୍ତୁ ଶିକାର କଲାଭଳି ବଡ଼ ହୋଇ ନାହିଁ ।

ତା ପରେ ସେ ଆହୁରି ହାଲୁକା ବର୍ଚ୍ଛା ତିଆରି କଲା । କାଠ ସଙ୍ଗେ ଲଗା ହାଡ଼ର ତିଆରି ଏହିସବୁ ଛୋଟ ଛୋଟ ବର୍ଚ୍ଛା ଅନେକ ଦୂର ଫୋପଡ଼ା ଯାଇ ପାରୁଥିଲା । କାର୍ଯ୍ୟତଃ ତହୁଁ ଜୀବଜନ୍ତୁ ଶିକାର ଅନେକ ପରିମାଣରେ ସହଜ ହୋଇଗଲା । ଦୂରରୁ ଶିକାରୀକୁ ଦେଖି ଶିକାର ଜନ୍ତୁ ଆଉ ପଳେଇ ଯିବାର ଗତି ପାଉ ନଥିଲା । କିନ୍ତୁ ସେ ସବୁ ଜନ୍ତୁ

ଜାନୁଆର ଶିକାର ପାଇଁ ହାତ ସଫେଇ ଦରକାର । ସେଥିପାଇଁ ପିଲାଟି ଦିନରୁ ମଣିଷ ଲକ୍ଷ୍ୟଭେଦ ଶିଖିବାକୁ ଆରମ୍ଭ କଲା ।

କିନ୍ତୁ ଏତିକିରେ ମଣିଷ ସନ୍ତୁଷ୍ଟ ହେଲା ନାହିଁ । ସେ ଆହୁରି ଜୋରରେ ଆହୁରି ବେଗରେ ଫୋପାଡ଼ିବାର ଅସ୍ତ୍ର ତିଆରି କରିବାକୁ ଚାହିଁଲା; ଯାହା ବଳରେ ଆହୁରି ବହୁ ଦୂରର ଶିକାର ଅନାୟାସରେ ମାରିପାରିବ । ସେତେବେଳେ ଦେଖା ଦେଲା ଧନୁ । ଧନୁର ଗୁଣ ଟାଣି ଦେଲେ ହାତର ମାଂସ ପେଶୀରୁ ଏହି ଗୁଣରେ ଶକ୍ତି ସଞ୍ଚାରିତ ହୁଏ । ତା' ପରେ ହାତ ଛାଡ଼ି ଦେଲାମାତ୍ରେ ସମସ୍ତ ଶକ୍ତି ଯାଇ ପଡ଼େ ତୀରର ଉପରେ । ସେହି ତୀର ସେଇଠୁଁ ଆଖିର ପଲକରେ ଉଡ଼ି ବାହାରି ଯାଏ । ଛୋଟ ବର୍ଚ୍ଛା ଆଉ ତୀର ଦେଖିବାକୁ ପ୍ରାୟ ଏକ ରକମ । ତା ବୋଲି ତୀର ଏବଂ ବର୍ଚ୍ଛା – ଏକ ଜିନିସ ନୁହେଁ ବା ଏକ ସମୟର ନୁହେଁ । ଏ ଦୁହିଁଙ୍କର ମଧରେ ହଜାର ହଜାର ବର୍ଷର ବ୍ୟବଧାନ ରହିଛି । ସେ କଥା ଥାଉ, ଏଥର ମଣିଷର ହାତର ଶକ୍ତି ଅସମ୍ଭବ ହୋଇ ଉଠିଲା । **ସେ ସତକୁ ସତ ହେଲା ଦୈତ୍ୟ ।**

## ଜୀବନ୍ତ ଝରଣା

ଫ୍ରାନ୍‌ସର ସଲୁତ୍ରେ (Salutra) ବୋଲି ଜାଗାରେ ଏକ ଗଭୀର ପଥରର ଖାତ ଅଛି । ପ୍ରତ୍ନତାତ୍ତ୍ୱିକମାନେ ସେ ଜାଗା ଖୋଳି ଏକ ଗଦା ହାଡ଼ ପାଇଛନ୍ତି । ତା ଭିତରେ ମାମଥ୍‌ଠାରୁ ଆଦିମ ଗୋରୁ, ଭେଡ଼ା, ଏପରି କି ଗୁହାବାସୀ ଭାଲୁ ପର୍ଯ୍ୟନ୍ତ ନାନା ଜୀବର ହାଡ଼ ଆଉ ମୁଣ୍ଡର ଖପୁରି ମିଳିଛି । ତେବେ ଏ ସବୁର ବେଶୀ ଭାଗ ଘୋଡ଼ାର ହାଡ଼ । ସ୍ଥାନେ ସ୍ଥାନେ ପୁରା କେତେକ ଫୁଟ ଗଭୀର ହୋଇ ଜମି ରହିଚି ହାଡ଼ ଗୋଡ଼ । ପ୍ରତ୍ନତାତ୍ତ୍ୱିକମାନଙ୍କର ମତରେ ସେଠାରେ ଲକ୍ଷ ଲକ୍ଷ ଘୋଡ଼ାର କଙ୍କାଳ ପଡ଼ି ରହିଚି ।

ଏତେ ଗୁଡ଼ାଏ ଘୋଡ଼ାର ହାଡ଼ ଏଇଠି ଜମିଲା କିପରି ? ଗୋଟି ଗୋଟି କରି ପରୀକ୍ଷା କଲାବେଳେ ପ୍ରତ୍ନତାତ୍ତ୍ୱିକମାନେ ଲକ୍ଷ୍ୟ କରନ୍ତି, ଏ ହାଡ଼ ଗୋଡ଼ରୁ ଅନେକ ଗୁଡ଼ାଏ ଭଙ୍ଗା ନତୁବା ଦନ୍ତୁଡ଼ା । ଅନେକ ଗୁଡ଼ାଏ ପୁଣି ପୋଡ଼ା । ସେଥିରୁ ମନେ ହୁଏ ଏହି ସମୟରେ ଅସଂଖ୍ୟ ଘୋଡ଼ା ପୋଡ଼ା ହେଉଥିଲେ । ଅନୁସନ୍ଧାନ ପରେ ଆବିଷ୍କୃତ ହୁଏ ଯେ ଏ ଗୁଡ଼ିକ ସତକୁ ସତ କୌଣସି ଘୋଡ଼ାର କବର ନ ଥିଲା । ପ୍ରକୃତ ପକ୍ଷରେ ଏ ସବୁଥିଲା ରନ୍ଧା ହୋଇଥିବା ଖାଦ୍ୟର ମଇଳାସ୍ତୂପ । ଏଡ଼େ ବିରାଟ ଅବର୍ଜନା ସ୍ତୂପ କୌଣସି ଗୋଟିଏ ଦିନରେ ଜମିପାରେ ନା । ସୁତରାଂ ଆମ୍ଭେମାନେ ସହଜରେ ଅନୁମାନ କରି ପାରିବା ଯେ

ଏଇ ଅଞ୍ଚଳରେ ବହୁଯୁଗ ଧରି ଲୋକ ବାସ କରୁଥିଲେ । ଅନ୍ୟ ସମତଳ ଭୂମି ଛାଡ଼ି ଏଠି ବାସ କରିବାର କାରଣ କ'ଣ ହୋଇ ପାରେ ?

ମନେ କର ଜଣେ ଶିକାରୀ ଦୂର ବଣରେ ଦଳେ ଘୋଡ଼ା ଦେଖିଲା । ସେ ତତ୍‌କ୍ଷଣାତ୍ ସଙ୍କେତ କରି ସମସ୍ତଙ୍କୁ ତିଆରି ହେବାକୁ ଇସାରା କଲା । ତା' ପରେ ତିନି ଦିଗରୁ ଶିକାରୀମାନେ ଘୋଡ଼ାଗୁଡ଼ିକୁ ତଡ଼ିବାକୁ ଆରମ୍ଭ କଲେ। ଘୋଡ଼ାମାନେ ମଧ ଭୟ ପାଇ ପଳାଇବାର ଚେଷ୍ଟା କଲେ କିନ୍ତୁ ସେତେବେଳକୁ ଡ଼େରି ହୋଇଗଲାଣି । ଗୋଟା ଗୋଟା ଛୋଟ ବର୍ଚ୍ଛା ଆସି ସେମାନଙ୍କର ଦେହରେ ଭୂଷି ହୋଇ ଯାଉଛି । ସେତିକିବେଳେ ଦିଗବିଦିଗ ଜ୍ଞାନଶୂନ୍ୟ ହୋଇ ଘୋଡ଼ାମାନେ ସେହି ପାହାଡ଼ ଖାତ ଆଡ଼କୁ ଧାଆଁନ୍ତି । ଶିକାରୀମାନେ ତ ସେଇ କଥା ଚାହାଁନ୍ତି, ସେମାନେ ମଧ ଚିତ୍କାର କରି ଆକାଶ ଫଟାଇ ସେହି ଜୀବନ୍ତ ନଈର ସ୍ରୁଅପରି ଘୋଡ଼ା ପଲକୁ ତଡ଼ି ଦିଅନ୍ତି ।

ଭୟରେ ପଥହରା ହୋଇ ଘୋଡ଼ା ପଲ ଛୁଟିଛନ୍ତି । ଆକାଶରେ ଲାଞ୍ଜ ଉଡୁଚି । ସାରା ଦେହ ଝାଳରେ ବୁଡୁଛି । ବର୍ଚ୍ଛାର ଆଘାତରେ ଦେହ ଜର୍ଜ୍ଜର । ହଠାତ୍ ଆଗରେ ଏକ ଭୀକ୍ଷଣ ଗାତ । ଆଉ ରୋକିବାର ଉପାୟ ନାହିଁ । ଦଳେ ଆସି ଚମକି ଠିଆ ହେଲାବେଳକୁ ପଛରୁ ଆଉ ଦଳକ ଆସି ସେମାନଙ୍କ ଉପରେ ପଡ଼ିଲେ । ଧକ୍କା ପରେ ଧକ୍କା । ଦଳ ଦଳ ହୋଇ ଖସି ପଡ଼ିଲେ ଖାତ ଭିତରେ । ଦେଖୁ ଦେଖୁ ଦଳଟା ଯାକ ଝରଣା ପରି ଉପରୁ ତ଼ଳକୁ ଖସିପଡ଼ିଲେ । ଦେଖୁଁ ଦେଖୁଁ ତଳେ ଜମିଲାଣି ବିରାଟ ମଲା ଘୋଡ଼ାର ସ୍ତୂପ ।

ଏଥରକ ଶିକାର ସରିଲା । ପାହାଡ଼ର ଚୂଡ଼ାର ତଳେ ତା ପରେ ଜଳି ଉଠିଲା ନିଆଁ, ବୁଢ଼ାମାନେ ଶିକାର ଭାଗକରିବାରେ ଲାଗିଲେ । ଏହି ସବୁ ତକ ଶିକାର କାହାର ଏକୁଟିଆ ନୁହେଁ । ସେମାନଙ୍କର ଦଳରେ ସମସ୍ତଙ୍କର ସମାନ ଅଧିକାର । ଅବଶ୍ୟ ଦଳ ମଧରେ ସବୁଠୁଁ ସାହସୀ ଆଉ ଦକ୍ଷ ଶିକାରୀମାନେ ପାଇଲେ ବେଶୀ ଭାଗ ।

## ନୂତନ ମଣିଷ

ଘଡ଼ିର ଘଣ୍ଟା କଣ୍ଟାକୁ ଦେଖିଲେ କ'ଣ ଜଣାଯାଏ, ସେଟା ଚାଲୁଚି ? କିନ୍ତୁ ଘଣ୍ଟା ପାର ହୋଇଗଲେ ଦେଖାଯାଏ ସେଟା ଆଗ ସ୍ଥାନରେ ନାହିଁ, ଚାଲୁଚି । ଜାତିର ଜୀବନରେ ଠିକ୍ ଏପରି ଘଟେ । ସାଧାରଣତଃ ଆମର ଚାରି ଦିଗରେ ଏବଂ ନିଜର ମଝିରେ ଯେ ପରିବର୍ତ୍ତନ ଘଟୁଚି ଆମ୍ଭେମାନେ ତାକୁ ବିଶେଷ ଲକ୍ଷ୍ୟ କରିପାରୁ ନାଇଁ । ଇତିହାସର

ଘଣ୍ଟା କଣ୍ଟାଟି ଯେପରି ମନେ ହୁଏ ସ୍ଥିର ହୋଇ ରହିଚି । ଏପରି ଭାବରେ ଅନେକ ଦିନ ଚାଲିବା ପରେ ଯେପରି ଆମେ ଆବିଷ୍କାର କରୁଁ ଯେ ଘଣ୍ଟା କଣ୍ଟା ଚାଲୁଥିଲା ଏବଂ ଆମ୍ଭେମାନେ ମଧ୍ୟ ତା' ସାଙ୍ଗେ ଚାଲୁଥିଲୁଁ ଏବଂ ଆମରି ଚଉଦିଗର ଜିନିଷ ମଧ୍ୟ ଆମର ସଙ୍ଗେ ସଙ୍ଗେ ବଦଳୁ ଥିଲେ ।

ଆମ୍ଭମାନଙ୍କର ଡ଼ାଇରୀ ଅଛି, ଫଟୋଗ୍ରାଫ ଅଛି, ଅନେକ ପୁରୁଣା ଜିନିସ ସାଙ୍ଗରେ ଆମେ ନୂଆର ତୁଳନା କରିପାରୁ । କିନ୍ତୁ ସେ କାଳର ଲୋକଙ୍କର ସେ ସୁଯୋଗ ନ ଥିଲା । ସେମାନଙ୍କୁ ମନେ ହେଉଥିଲା ସମୟ ଆଉ ଚାଲିବ କଣ ? ସମୟର ଆଦି ନାଇଁ କି ଅନ୍ତ ନାଇଁ । ସେଥିପାଇଁ ସବୁ ସମୟରେ ଆମେ ଯେପରି ଏକ ସମୟର ମଧ୍ୟ ଦେଇ ଚାଲିଛୁ – ସେ ସମୟର ନାହିଁ ବିକାର, ନାହିଁ କୌଣସି ପରିବର୍ତ୍ତନ । ଅର୍ଥାତ୍ ସମୟ ବା କାଳକୁ ମନେ କରା ହେଉଥିଲା ଅପରିବର୍ତ୍ତନୀୟ ।

ସେତେବେଳେ ପ୍ରତ୍ୟେକ କାରିଗର ଯେଉଁ ଜିନିସ ତିଆରି କରନ୍ତା ତାହା ସାଧାରଣତଃ ଆଗପରି କରିବାକୁ ଚାହାନ୍ତା । କିନ୍ତୁ ସେ କଥା କି ହୁଏ ? ତା ସତ୍ତ୍ୱେ ମଣିଷର ନିଜର ଅଜାଣତରେ କ୍ରମଶଃ ତାର ଯନ୍ତ୍ରପାତି, ବାସସ୍ଥାନ ଆଉ କାମର ଧରଣ ବଦଳୁ ଥିଲା । ପ୍ରତ୍ୟେକ ନୂତନ ଯନ୍ତ୍ର ପ୍ରଥମେ ସାଧାରଣତଃ ପୁରୁଣା ଜିନିଷ ପରି ଦେଖାଯାଉଥିଲା । ପ୍ରଥମ ଦିନର ସେହି ଛୋଟ ବର୍ଚ୍ଛା ଠାରୁ ପଛର ବର୍ଚ୍ଛାର ବଡ଼ ପ୍ରଭେଦ ନଜରରେ ପଡୁ ନଥିଲା । ତଥାପି ପୃଥକ ଜିନିଷ ତ ନିଶ୍ଚୟ । ତୀର ଧନୁ ନେଇ ଶିକାର କରିବା ଏବଂ ବର୍ଚ୍ଛା ନେଇ ଶିକାର କରିବା କ'ଣ ଏକା କଥା !

ତାହାହେଲେ ମଣିଷର ତିଆରି ଯନ୍ତ୍ରପାତିର କ'ଣ ଖାଲି ପରିବର୍ତ୍ତନ ହେଲା ? ନାଁ ତା ସାଙ୍ଗେ ସାଙ୍ଗେ ମଣିଷ ମଧ୍ୟ ଧୀରେ ଧୀରେ ବଦଳିଗଲା । ପ୍ରତ୍ନତାତ୍ତ୍ୱିକମାନଙ୍କର ଗବେଷଣା ଫଳରେ ନାନା କଂକାଳରୁ ଏ ବିଷୟରେ ବିସ୍ତର ପ୍ରମାଣ ମିଳିଛି । **ନିୟାନତାରଥ୍ୟାଲ ମଣିଷର ସେତେବେଳେ ପିଠି ଆଡ଼ଟା କୁଜା ଥିଲା** । ତା'ର ଚାଲିବା ଢ଼ଙ୍ଗ ବି ଥିଲା ଅଷ୍ଟବକ୍ର ପରି । କିନ୍ତୁ **'କ୍ରୋ-ମ୍ୟାଗନନ ମଣିଷ'** ଏକା ବେଳେକେ **ସଳଖ ହେଲା** । ଆମ ସାଙ୍ଗେ ତା'ର ବାହାରର ଫରକ ନାହିଁ କହିଲେ ଚଳେ । କିନ୍ତୁ ଏଇ ଦୁଇ କିସମର ମଣିଷର ମଧ୍ୟରେ ଏତେ ତଫାତ୍ ଯେ ଦଳେ ପ୍ରତ୍ନତାତ୍ତ୍ୱିକ କହନ୍ତି କ୍ରୋ-ମ୍ୟାଗନନ ମଣିଷର ସଙ୍ଗେ ନିୟାନତାରଥ୍ୟାଲ୍ ମଣିଷର କୌଣସି ସମ୍ପର୍କ ନାଇଁ । ଅସଲ କଥା ତାହା ନୁହେଁ । ଗୋଟିଏ କିସମରୁ ଆର କିସମର ଉତ୍ପତ୍ତି ।

## ଘର ତୋହର ଅସଲ କଥା

ମଣିଷ ସାଙ୍ଗେ ସାଙ୍ଗେ ତା'ର ରହିବା ଘର ବି ବଦଳିଲା । ଆଗରୁ ତ ଜାଣିଚ ମଣିଷ ପ୍ରଥମେ ପ୍ରକୃତି ଦତ୍ତ ତିଆରି ଗୁହାରେ ବାସ କରୁଥିଲା । କିନ୍ତୁ ସେ ସବୁ ଗୁହାସବୁ ସମୟରେ ସୁବିଧା ମୁତାବକ ହୁଏ ନାଇଁ ବୋଲି ମଣିଷର ଦଳ ଧୀରେ ଧୀରେ ତାକୁ ଅଦଳ ବଦଳ କରି ଆପଣାର ଉପଯୋଗୀ କରି ନେଇଥିଲା । ଗୁହାର ବାଟ ମୁହଁର ଗୋଟେ ପାଖରେ ଗାତ କରି ରୋଷେଇ ବସାଇ ଦେଉଥିଲା । ଆଉ ଟିକିଏ ଭିତରେ ଥିଲା ପିଲାପିଲିଙ୍କର ଶୋଇବା ଜାଗା – ମାଟିରେ ଗାତ କରି ପାଉଁଶରେ ତାକୁ ଭର୍ତ୍ତି କରି ବିଛଣା କରା ଯାଉଥିଲା ।

ଯେତେ ଦିନ ଆଗକୁ ଚାଲିଲା ମଣିଷ ସେତେ ତାର ବାସସ୍ଥାନର ଉନ୍ନତିର ଦିଗ ଆଡ଼େ ନଜର ଦେବାରେ ଲାଗିଲା । କେଉଁଠି ପାହାଡ଼ର ଶିଖର ମୁଣ୍ଡ ଟିକିଏ ବାହାର କରିଛି ଦେଖିଲେ ସେମାନେ ସେଇଠି ପାଚେରୀ ତିଆରି କରି ନେବାକୁ ଶିଖିଲେ । କିମ୍ବା କେଉଁଠି ପାଚେରୀ ପରି ପାହାଡ଼ ପାଇଲେ ସେମାନେ ଲତା ପତ୍ର ଛାତ ଗଢ଼ି ନିଅନ୍ତି ।

ଏପରି ଆଦି କାଳର ଘରଦ୍ୱାର ଦକ୍ଷିଣ ଫ୍ରାନ୍‌ସର ଗୋଟିଏ ଜାଗାରେ ଅଛି । ସେ ଜାଗାର ଲୋକମାନେ ତା ନାଁ ଦେଇଛନ୍ତି ''ଭୂତର ରୋଷେଇ ଘର'' । ସେମାନଙ୍କର ଧାରଣା ଭୂତ ଛଡ଼ା ଆଉ କିଏ ସେଇଠି ଏତେ ବଡ଼ ପାହାଡ଼ର ମଧ୍ୟରେ ନିଆଁ ପୋଇବ । କିନ୍ତୁ ନିଜର ପୂର୍ବପୁରୁଷମାନଙ୍କର ଇତିହାସ ଟିକିଏ ଜାଣିଲେ ସେମାନେ ବୁଝିପାରନ୍ତେ ଏ ସବୁ ଭୂତର କାମ ନୁହେଁ – ମଣିଷ ସେ ସବୁ ତିଆରି କରିଥିଲା ।

ଏହି ଭୂତର ଉହ୍ଲେଇଟା ଅଧେ ଘର ଆଉ ବାକୀ ଅଧେ ଗୁହା । ପାହାଡ଼ର ଚୂଡ଼ା ହୋଇଛି ଛାତ; ଆଉ ପାହାଡ଼ର ଝୁଲି ପଡ଼ିଥିବା ଦୁଇଟା ଦିଗରେ ଅଛି ଦୁଇଟା ପାଚିରୀ, ବାକି ଦୁଇଟା ଦେବାଲ ମଣିଷ ନିଜେ ଗଢ଼ିଚି ।

ଥରକେ ଦୁଇଟା ପାଚେରୀ ଗଢ଼ିପାରିଲେ ମଣିଷ ତା' ପରେ ନିଶ୍ଚୟ ଚାରୋଟି ପାଚେରୀ ଗଢ଼ିବାକୁ ଶିଖିବ । ତାହା ମଧ୍ୟ ହେଲା । ଏହାର କିଛି ପରେ ଆମ୍ଭେମାନେ ଖୋଲା ଆକାଶ ତଳେ ମଣିଷର ତିଆରି ଚାରି ପାଚେରୀର ଘର ଦେଖିବାକୁ ପାଉଁ । ସେତେବେଳର ଘର ଅବଶ୍ୟ ଏବ କାଳର ଘର ପରି ନୁହେଁ । ଆଜି କାଲିର ଘର ତୁଳନାରେ ସେଗୁଡ଼ିକ ଦେଖିବାକୁ ସାନ ସାନ ଗାତ ପରି ଥିଲା । ଆଦିମ ମଣିଷମାନେ ଖୁବ୍ ଗଭୀର ଗର୍ତ୍ତ କରି ଘର ତିଆରି କରୁଥିଲେ, ଚାରି ପାଖରେ ପାଚେରୀ ଯେପରି ପଡ଼ି

ନ ଯାଏ ସେଥି ଲାଗି ବଡ଼ ବଡ଼ ମାମଥ୍ (ଅତିକାୟ ଜନ୍ତୁ) ଦାନ୍ତରେ ଠେକ ଦେଉଥିଲେ । ଡ଼ାଳ ପତ୍ରର ଉପରେ ମାଟି ଲେପି ତା'ର ଛାତ ତିଆରି କରି ବରଫ ଆଉ ଝଡ଼ର ହାତରୁ ନିଜର ଘର ବଞ୍ଚାଉ ଥିଲେ । ଦୂରରୁ ଦେଖିବାକୁ ମିଳୁଥିଲା ଖାଲି ମାଟିର ଠିପି ପରି ଛାତ ଭିତରେ ଢୁକିବାର ବାଟ ଥିଲା ମାତ୍ର ଗୋଟିଏ । ତାହା ମଧ୍ଯ ଛାତର ଉପରର ଗାତ ଦେଇ ମୂଳକର କଳା ଅଳନ୍ଧୁ ଭିତରେ । ମାମଥର ହାଡ଼ରେ ସେମାନେ ବେଞ୍ଚର କାମ ଚଳାନ୍ତି । ମାଟିଥିଲା ସେମାନଙ୍କର ବିଛଣା, କାଠ ଦେଇ ତକିଆର କାର୍ଯ୍ୟ ଚଳାନ୍ତି । ଉହ୍ନେଇ ପାଖରେ ବେଶୀ ଆଲୁଅ ଥାଏ ବୋଲି ସେମାନେ ସେଇଠି ପଥରର ଚକତି ବସାଇ ଟେବୁଲ ତିଆରି କରନ୍ତି । ପୁରୁଣା କାଳର ଘରମାନଙ୍କର ଏହି ପ୍ରକାର ଟେବୁଲ ଉପରେ ଏହି ପରି ଛୋଟଖାଟର ଅନେକ ଜିନିଷ ମିଳିଛି । ସେ ଭିତରେ ଖୁବ୍ ବଡ଼ ଗୋଟିଏ ସରୁ ହାଡ଼ ମଧ୍ଯ ଅଛି । ଜିନିଷ ଗୁଡ଼ିକ ଏପରି ଭାବରେ ବିଞ୍ଚି ହୋଇ ରହିଚି ଯେ ଦେଖିଲେ ମାତ୍ର ମନେ ହେବ ଏକ୍ଷଣି ଲୋକେ କାମ କରି କରି ବାହାରି ଯାଉଛନ୍ତି । ହୁଏ ତ ତାହା ହୋଇପାରେ । ପ୍ରକୃତିରେ କୌଣସି ବିଷମ ଭୟର ଆଶଙ୍କାରେ ସେହି ଗୁହାର ଲୋକମାନେ କାମ ଦାମ ଫୋପାଡ଼ି ଦେଇ ପ୍ରାଣର ଭୟରେ ପଳାଇ ଯାଇଛନ୍ତି– ଆଉ ଫେରି ନାହାନ୍ତି ।

ସେ ଜିନିଷଗୁଡ଼ାକ କରିବାକୁ ସେମାନଙ୍କୁ କମ୍ ଖଟିବାକୁ ହୋଇନି । ଛୁଞ୍ଚିର କଥା ଧର ନା । ଏଇଟା ତ ମଣିଷର ଇତିହାସର ପ୍ରଥମ ଛୁଞ୍ଚି । ତୁମ୍ଭେମାନେ ଦେଖିଲେ ମନେ କରିବ ଏ ପୁଣି କି କଥାଟାଏ – ଛୁଞ୍ଚି କରିବା ? କିନ୍ତୁ ଏଇ ଛୋଟ ଟିକକ କରିବାକୁ ଯେ କେତେ ବୁଦ୍ଧି ଦରକାର ହୋଇଛି ତାହା କଳ୍ପନା ସୁଦ୍ଧା କରିପାରିବ ନାହିଁ । ହାଡ଼ କାଟିବାର ଛୁରା ନେଇ ସେମାନେ ସରୁ ହାଡ଼ କାଟି ବାହାର କରୁଥିଲେ । ପଥରରେ ଘସି ସେ ହାଡ଼ର ଅଗ ମୁନିଆ କରୁଥିଲେ । ତାହା ପରେ ଆଉ ଗୋଟିଏ ଖୁବ୍ ସରୁ ପଥର ନେଇ ସେହି ହାଡ଼ର ମୁଣ୍ଡରେ ଗୋଟିଏ କଣା କରୁଥିଲେ । ଏଥିରେ ତ ସବୁ କାମ ହୋଇଗଲା । ତାହା ପରେ ସେହି ଛୁଞ୍ଚିର ହାଡ଼ଟି ବଡ଼ ପଥରରେ ଘସି ପାଲିସ କରି ଏକବାରେ ସତକୁ ସତ ଛୁଞ୍ଚି ତିଆରି କରିପାରୁଥିଲେ । ତାହା ହେଲେ ଦେଖ ସାମାନ୍ୟ ଗୋଟିଏ ଛୁଞ୍ଚି କରିବା ପାଇଁ ସେତେବେଳେ କେତେ କି ରକମର ଯନ୍ତ୍ରପାତି ଲାଗୁଥିଲା । କିନ୍ତୁ ଯେ ସେ ଲୋକେ ଛୁଞ୍ଚି ବନେଇବାର କାଇଦା ଜାଣୁ ନ ଥିଲେ; ଯେଉଁମାନେ ଖୁବ୍ ଚାଲାକ୍ କେବଳ ସେମାନେ ସବୁ ତିଆରି କରି ପାରନ୍ତି ବୋଲି ଅତି ଯତ୍ନରେ, ସେମାନଙ୍କର ସବୁ ଯନ୍ତ୍ରପାତି ଯୋଗାଡ଼କରି ରଖୁଥିଲେ ।

ଆଉ ମଧ ଚାଲ ଭଲ କରି ଦେଖିବା, କି ଭାବରେ ସେମାନେ ସେତେବେଳେ ଦିନ କାଟୁଥିଲେ । ଦେଖାଯିବ ଯେ ଘରଗୁଡ଼ିକ ମଥାନରୁ ଅସରନ୍ତି ଧୂଆଁ ଉଠୁଛି । ଧୂଆଁ ଆଖିରେ ଚରିଗଲେ ଭିତରର ମଣିଷମାନଙ୍କର ଚେହେରା ସ୍ପଷ୍ଟ ନଜରରେ ପଡ଼ିବ । ସେମାନେ ଦେଖିବାକୁ ତିଳେ ହେଲେ ମାଙ୍କଡ଼-ମଣିଷ ପରି ନୁହନ୍ତି । ମଝିରେ ବସି ସ୍ତ୍ରୀ ଲୋକମାନେ ଚମଡ଼ାରେ ଜାମା ସିଲାଇ କରୁଛନ୍ତି । ପିଲାପିଲିମାନେ ଚାରିଆଡ଼େ ବିଞ୍ଚା ହୋଇଥିବା ହାଡ଼ ନେଇ ଖେଳୁଛନ୍ତି ।

ଗୋଟିଏ କୋଣରେ ଚଉଡ଼ା ବଡ଼ ବଡ଼ ହାଡ଼ ଉପରେ ଆଉ ଜଣେ ଛବି ଆଙ୍କୁଛି । ଏ କେତୋଟି ଗାର କାଟି ସେ ଘୋଡ଼ାର ମୁର୍ତ୍ତି ଆଙ୍କିଲା । ଏହିପରି ଅବିକଳଭାବରେ ଅସୀମ ଧୈର୍ଯ୍ୟ ସହିତ ସେହି ଘୋଡ଼ାର ମୂର୍ତ୍ତି ଆଙ୍କିଲା । ତାକୁ ଦେଖିଲେ ଜୀବନ୍ତ ଘୋଡ଼ା ବୋଲି ମନେ ହେବ ।

ଘୋଡ଼ା ଅଙ୍କା ହେଲା । କିନ୍ତୁ ଏ ପୁଣି କଣ ଛବି ଉପରେ ପଟା ପଟା କରି ସେ ଅନେକ ଗୁଡ଼ାଏ ଦାଗ ଟାଣିଲା । ପ୍ରଥମେ ମନେ ହେବ, ଏଡ଼େ ସୁନ୍ଦର ଘୋଡ଼ାର ଛବିକୁ ଏମାନେ କାହିଁକି ନଷ୍ଟ କରି ଦେଉଛନ୍ତି । କିନ୍ତୁ ଅନେକ ସମୟ ପରେ ଦେଖିବ ଯେ ଏ ସବୁ ଦାଗଗୁଡ଼ିକ ଦ୍ୱାରା ଗୋଟିଏ ଅସ୍ପଷ୍ଟ କୁଣ୍ଡ ଫୁଟି ଉଠୁଛି । କେଉଁ ମାମଥର ଛବି ଉପରେ ଦେଖିବ ଦୁଇଟା କୁଣ୍ଡ ଅଙ୍କା ହୋଇଛି । କେଉଁ ବାଇସାନ ଉପରେ ହୁଏତ ତିନିଟା । ଗୁହାର ପାଚେରୀ ଦେହରେ ସବୁଠୁ ବେଶୀ ଛବି ଅଙ୍କା ହୁଏ । ଗୁହାର ଭିତରକୁ ଗଲେ, ସେ ଗୁଡ଼ାକ ଭଲଭାବରେ ନଜରରେ ପଡ଼ିବ ।

## ମାଟିର ତଳେ ଛବିର ଗେଲେରି

ଗୁହା ଭିତରେ ଅନୁସନ୍ଧାନ କରିବାକୁ ଗଲେ, ଅମ୍ଭମାନଙ୍କୁ ଲଣ୍ଠନ ନେଇ ଯିବାକୁ ପଡ଼ିବ ଏବଂ ଯିବାବେଳେ ପ୍ରତ୍ୟେକଟି ଅଳିଗଳି ମନେ ରଖିବାକୁ ହେବ । ଆମ୍ଭେମାନେ ଏପରି ଖୋଜି ଚାଲିଥିବା, ଏପରି ସମୟରେ ହୁଏତ କିଏ ଚିତ୍କାର କରି କହି ଉଠିବ – ହୋ ଇଆଡ଼େ ଦେଖ ।

ଫେରି ଦେଖିବା ପାଚେରୀ ଦେହରେ ଲାଲ ଓ କଳାରଙ୍ଗରେ ଅଙ୍କା ଗୋଟିଏ ବାଇସାନର ଛବି, ଦେହରେ ବର୍ଛା ବିନ୍ଧା ହୋଇଛି । ଆଗ ଆଡ଼କୁ ମୁହଁମାଡ଼ି ସେ ପଡ଼ିଛି । ବହୁକାଳ ଧରି ସେହି ସେଠାରେ ଛିଡ଼ାହୋଇଛି । ଆମ୍ଭେମାନେ ଅଜଣା ସେହି ଶିଳ୍ପଚିତ୍ର ଦେଖିବାରେ ଲାଗିଲୁ । ଆଉ ଟିକିଏ ଆଗକୁ ଗଲେ ନୂଆଧରଣର ଆଉ ଗୋଟିଏ ଛବି,

ଯେପରି ଆଖିରେ ପଡ଼ିଲା, ଗୋଟିଏ ଦୈତ୍ୟ ଯେପରି ନାଚୁଛି । ସେ ଦେଖିବାକୁ ଅନେକଟା ଜାନୁଆର ପରି, କିମ୍ବା ଜାନୁଆର ଯେପରି ମନୁଷ୍ୟ ପରି ଅଙ୍କା ହୋଇଅଛି । ଦୈତ୍ୟ ମୁହଁରେ ଦାଢ଼ି, ମୁଣ୍ଡରେ ଯୋଡ଼ିଏ ଶିଙ୍ଗ, ତା ଲାଞ୍ଜଟା ବେଶ ଲୋମଶ, ଏବଂ ତାର ପିଠି ଉପରେ ଅଛି ଗୋଟାଏ କୁଜ ।

ଭଲ କରି ନିରେଖି ଚାହିଁଲେ ବୁଝାଯିବ କୌଣସି ମଣିଷ, ବାଇସାନର ଚମଡ଼ା ପିନ୍ଧି, ଛଦ୍ମବେଶ ହୋଇଛି ।

ଏହି ପ୍ରକାର ଅନେକ ଛବି ତୁମ୍ଭଙ୍କୁ ଦେଖିବାକୁ ମିଳିବ । ଏ ଗୁଡ଼ିକର ଅର୍ଥ କଣ ? ତେବେ ଶୁଣ ।

କେତେଜଣ ଶିକାରୀ ମିଶି ନାଚୁଛନ୍ତି । ପ୍ରତ୍ୟେକଙ୍କ ଦେହରେ ବାଇସାନର ଚମଡ଼ା, ମୁଣ୍ଡରେ ଶିଙ୍ଗ, ପ୍ରତ୍ୟେକର ହାତରେ ଧନୁଃଶର ଆଉ ବର୍ଚ୍ଛା । ଏମାନେ ବାଇସାନ ଶିକାରର ଅଭିନୟ କରୁଛନ୍ତି । ନାଚି ନାଚି କେହି ଯଦି ହାଲିଆ ହୋଇ ପଡ଼ିଯିବାର ଛଳନା କରେ ଅନ୍ୟ କେହି ଜଣେ ତାକୁ ମିଛରେ ଦାଢ଼ ନ ଥିବା ଶର ମାରେ । ତା ପରେ ସମସ୍ତେ ମିଶି ତା ପାଦ ଧରି ଟାଣି ଟାଣି ତାହାର ଚାରିପାର୍ଶ୍ୱରେ ଛୁରା ଘୂରାଇ ଖେଳନ୍ତି । ଅବଶେଷରେ ତାକୁ ଛାଡ଼ିଦେଇ ଆଉ ଜଣକୁ ନେଇ ଖେଳନ୍ତି ।

ଏହି ହେଉଛି ଆଦିମ ଯୁଗର ଶିକାରର ନାଚର ଅର୍ଥ । ଏହି ଅଦ୍ଭୁତ ନାଚ ବେଳେ ବେଳେ ଏକାଦମରେ ଦୁଇ ତିନି ସପ୍ତାହ ଧରି ଚଳେ । ଥରେ ଜଣେ ପର୍ଯ୍ୟଟକ ଉତ୍ତର ଆମେରିକାର ଆଦିମ ଅଧିବାସୀମାନଙ୍କ ଭିତରେ, ଏହି ନାଚ ଦେଖିଥିଲେ । ଏ ନାଚର ଆହୁରି ମଧ୍ୟ ବିଶେଷତ୍ୱ ଅଛି । ଏ ଠିକ୍ ସାଧାରଣ ନାଚ ନୁହେଁ । ଏ ନାଚର ତଦାରଖ କୌଣସି ଗୁଣିଆ ହାତରେ ଥାଏ । ତାହାର କଥା ଅନୁସାରେ ସମସ୍ତଙ୍କୁ ନାଚିବାକୁ ହୁଏ । ସତକଥା କହିବାକୁ ଗଲେ ଏଗୁଡ଼ିକ ଠିକ୍ ନାଚ ପରି ନୁହେଁ । ଗୁଣିଆ ଯେଉଁଠି ନାଚ କର୍ତ୍ତା,ସେ ନାଚକୁ ନାଚ ବୋଲି କହିଲେ ଭୁଲ୍ ହେବ । ଏସବୁ ନାଚ ଭୂତ, ଡ଼ାହାଣି, ଗୁଣି ଗାରଡ଼ି କାରଖାନା ଛଡ଼ା ଆଉ କିଛି ନୁହେଁ । ଏହାର ଅର୍ଥ ହେଉଛି, ଗୁଣି କରି ବାଇସାନକୁ ଫାନ୍ଦରେ ପକାଇବା । ସେଥିପାଇଁ ଘରୁ ବାହାରିବା ଆଗରୁ, ସେମାନେ ଶିକାରର ଉତ୍ସବ କରି ନେଇ ଥାନ୍ତି । ଶିକାରରେ ଯାହା ପାଇବାକୁ ଚାହାନ୍ତି, ତାହା ପୂର୍ବରୁ ଉତ୍ସବରେ ତାହା ଦେଖାଇ ଦେଇଥାନ୍ତି । ଶିଳ୍ପୀ ମଧ୍ୟ ସେଥିଲାଗି ଶିକାର ପୂର୍ବରୁ ପାଚେରୀ ଦେହରେ ଶିକାରର ଛବି ଆଙ୍କିଯାଏ ।

## ପୂର୍ବପୁରୁଷମାନଙ୍କ ସହିତ ଆଳାପ

ପିଲାଦିନେ ଆମ୍ଭେମାନେ କେତେ ରାଜା ପୁଅ ଝିଅର କଥା ଶୁଣିଥାଉଁ । ଆରବ ଉପନ୍ୟାସ କାହାଣୀ ମଧ୍ୟ ପଢ଼ିଥାଉଁ । ଏ ଗୁଡ଼ିକ ବିଶ୍ୱାସ କଲେ, କହିବାକୁ ହୁଏ ଯେ ପୃଥିବୀ ସାରା ନାନା ପ୍ରକାର ରହସ୍ୟମୟ ଜୀବ ରହିଛନ୍ତି । କିଏ କାହାକୁ ଖାଲି ଆଖିରେ ଦେଖି ଚିହ୍ନି ବା ଜାଣିବାକୁ ଭରସା ପାଉନାହାନ୍ତି । ହଠାତ୍ କୁତ୍ସିତ ବେଙ୍ଗଟିଏ ଗୋଟିଏ ପରମସୁନ୍ଦରୀ କନ୍ୟା ହୋଇ ତୁମ୍ଭ ସଙ୍ଗରେ ସୁଖଦୁଃଖ ହେଉଛି କିମ୍ବା ସୁନ୍ଦର ଏକ ତରୁଣ ଯୁବକ ଆଖି ସାମନାରେ ଅଜଗର ହୋଇଯାଉଛି ।

ଏ ସବୁ ବିଚିତ୍ର କାଣ୍ଡ କାରଖାନା, କାହାଣୀ ପଢ଼ିବା ସମୟରେ ଆମ୍ଭେମାନେ ବିଶ୍ୱାସ ନ କରି ରହିପାରୁ ନାହିଁ । କିନ୍ତୁ ବହି ବନ୍ଦ କଲେ ଆମେ ସେହି ମାୟାପୁରୀରୁ ପୁଣି ସଂସାରକୁ ଫେରିଆସୁ । ପରୀ ରାଜ୍ୟ ଯେତେ ଚମତ୍କାର ହେଉ ନା କାହିଁକି, ଆମ୍ଭେମାନେ କିନ୍ତୁ ସାରାଦିନ ସେହିଠାରେ ରହିବାକୁ ଚାହୁଁ ନାହିଁ ।

କିନ୍ତୁ ଆମ୍ଭମାନଙ୍କ ପୂର୍ବପୁରୁଷଙ୍କ ପାଖରେ ପୃଥିବୀଟା ସତକୁ ସତ ଏପରି ମନେ ହୁଏ। ସେମାନେ ବାସ୍ତବ ଓ କାଳ୍ପନିକ ଜଗତର ପାର୍ଥକ୍ୟ ଜାଣନ୍ତି ନାହିଁ, ସେମାନଙ୍କର ମନେ ହୁଏ ଭଲ ମନ୍ଦ ସବୁ ଏକ ଅଦୃଶ୍ୟ ଶକ୍ତି ଚାଳନାରେ ଘଟେ । ଝୁଣ୍ଟି ପଡ଼ିଲେ ଆମର ଅସାବଧାନତା ଦୋଷ ଦେଉଁ । କିନ୍ତୁ ସେମାନେ ଏକ ଅଦେଖା ସଇତାନର ମୁଣ୍ଡରେ ଦୋଷକୁ ବୋଳି ଦିଅନ୍ତି । କିଏ ଛୁରାର ଆଘାତରେ ମରିଗଲେ ଆମେ କହୁଁ ସେ ଛୁରାର ଆଘାତରେ ମରିଛି । କିନ୍ତୁ ସେ ଯୁଗର ଲୋକ କହନ୍ତି, ଛୁରାଟି ତାର ନିଶ୍ଚୟ ଗୁଣି କରାହୋଇଛି । ସେହି ଗୁଣିଗାରଡ଼ିରୁ ଲୋକଟା ମରିଗଲା । ଅବଶ୍ୟ ବର୍ତ୍ତମାନ ସୁଦ୍ଧା ଏପରି ଲୋକ ଅଛନ୍ତି, ଦେହ ଖରାପ ହେଲେ – ଅମକ ଲୋକର ଦୃଷ୍ଟିପଡ଼ିଛି; ତାକୁ ଆମେ ହସରେ ଉଡ଼ାଇ ଦେଉଁ । ଏ ସବୁ କୁସଂସ୍କାରର କଥା ଶୁଣିଲେ ଆମ୍ଭମାନଙ୍କ ହସ ବନ୍ଦ କରିବା କଠିଣ ହୁଏ । କିନ୍ତୁ ତାହା ବୋଲି ପୂର୍ବପୁରୁଷଙ୍କୁ ଦୋଷ ଦେବା ଠିକ୍ ନୁହେଁ । କୌଣସି ଅଘଟଣ ଘଟଣା ହେଲେ, ସେମାନେ ଗୋଟାଏ କାରଣ ଖୋଜି ନ ପାଇ ଯେକୌଣସି ଗୋଟାଏ କିଛି କାରଣ ଭାବରେ ଛିଡ଼ା କରିବାକୁ ଚାହାନ୍ତି । ମଣିଷର ସ୍ୱଭାବ ଏହି ଯେ କାହିଁକି ହୁଏ, ଏବଂ କିପରି ହୁଏ ଏ ସବୁ ନ ଜାଣିବା ଭଳି ଜ୍ଞାନ ବିଜ୍ଞାନର ଭଣ୍ଡାର ଆଜିପରି ସେତେବେଳେ ଗଢ଼ି ଉଠି ନାହିଁ । ସେମାନଙ୍କର ଜ୍ଞାନର ପରିଧି ଖୁବ୍ କମଥିଲା ବୋଲି ସେମାନେ ଏହିପରି ଭୁଲ ବାଖ୍ୟା ଦିଅନ୍ତି ଏବଂ କୁହୁକରେ ବିଶ୍ୱାସ କରନ୍ତି । ଥରେ ନିଉଗିନି ଦ୍ୱୀପରେ ମତୁମତୁସ ଜାତି ଭିତରେ ଭୀଷଣ ମହାମାରୀ ଦେଖାଗଲା । ଦଳେ ଦଳେ ଲୋକ ମରିବାକୁ ଲାଗିଲେ । ପ୍ରତ୍ୟେକ ଘରରୁ କାନ୍ଦଣା ଉଠିଲା । ଗୋଟା ଯାକ

ଜାତି ଭୟରେ ଶିହରି ଉଠିଲା । ସେମାନେ ଭାବିବାକୁ ଲାଗିଲେ କାହିଁକି ଏପରି ହେଲା । ଅନେକ ସମୟ ସେମାନେ ଭାବି ଭାବି ଗୋଟାଏ କାରଣ ଆବିଷ୍କାର କଲେ । ସେମାନଙ୍କ ସଙ୍ଗରେ ସେଇଠି ଗୁଡ଼ାଏ ସାହେବ ଆସି ରହିଥିଲେ । ସେମାନେ ଆସିବା ପରେ ଏହି ମହାମାରୀ ଦେଖା ଦେଇଛି । ସେମାନେ ହେଉଛନ୍ତି ଏହି ମହାମାରୀର କାରଣ । ସେମାନଙ୍କୁ ମାର, ତାହାହେଲେ ସବୁ ଠିକ ହୋଇଯିବ । ଏହି ହେଲା ସେମାନଙ୍କର ଧାରଣା ।

ସାଙ୍ଗେ ସାଙ୍ଗେ ସେମାନେ ପାଦ୍ରି ସାହେବ ଘରକୁ ଆସି ଚଢ଼ାଉ କଲେ । ସେ ବିଚାରା ପ୍ରାଣ ଭୟରେ ଅସ୍ଥିର – ନାନା ଅଙ୍ଗଭଙ୍ଗୀକରି ସେମାନଙ୍କୁ ଘଣ୍ଟା ଘଣ୍ଟା ଧରି ବକ୍ତୃତା ଦେଲା । କିନ୍ତୁ ସେମାନେ ନଛୋଡ଼ବନ୍ଧା, ଏପରି ସମୟରେ ଗୋଟାଏ ଛେଳି ଛୁଆ ସେମାନଙ୍କ ଆଖି ଆଗରେ ପଡ଼ିଲା । ଛେଳିକୁ ଦେଖି ଏମାନଙ୍କ ଚିନ୍ତା ବଦଳି ଗଲା । ସେମାନେ ଭାବିଲେ ଏହି ଛେଳିଟା କଣ ଦାୟୀ ? ସେମାନେ ଟିକି ଟିକି କରି ଛେଳିଟାକୁ କାଟି ପକାଇଲେ– କିନ୍ତୁ ମହାମାରୀ ସେଥିରେ କମିଲା ନାହିଁ ।

ଆଉଥରେ ସେହି ପାଦ୍ରିଙ୍କ ଘର ଉପରେ ଚଢ଼ାଉ ହେଲା । ଏଥର କିନ୍ତୁ ନିସ୍ତାର ନାହିଁ । ପାଦ୍ରିଙ୍କୁ ମାରିବାକୁ ଆସିଲା ବେଳେ ମହାରାଣୀ ଭିକ୍ଟୋରିଆଙ୍କର ଗୋଟାଏ ଛବି ତାଙ୍କ ଆଖି ଆଗରେ ପଡ଼ିଲା । ସେମାନେ ତାକୁ ଚିରି ମହାମାରୀ ହାତରୁ ରକ୍ଷା ପାଇବା ପାଇଁ ଚେଷ୍ଟା କଲେ ।

ଏ ଗପଟିରୁ ଆମ୍ଭେମାନେ ବେଶ କରି ବୁଝିପାରିବା ଯେ ପ୍ରକୃତିର ନିୟମ କାନୁନ ଆମ୍ଭମାନଙ୍କୁ ଭଲକରି ଜଣା ନଥିଲେ ଘଟଣାର ତାତ୍ପର୍ଯ୍ୟ ସମ୍ବନ୍ଧରେ ଯେତେ ଅଦ୍ଭୁତ ଧାରଣା ଜନ୍ମେ । କ୍ରମେ ଅଭିଜ୍ଞତାର ଫଳରେ ମନୁଷ୍ୟ ଜାଣିପାରେ ପୃଥିବୀରେ ସବୁ ଜିନିଷ ଗୋଟାଏ ଯୋଗସୂତ୍ରରେ ଗୁନ୍ଥା । ତା ନ ଜାଣି କେହି ମନେ କରେ ଏହିଟା କୁହୁକର କାମ । ଏହା ପଛରେ କୌଣସି ଅଦୃଷ୍ଟର ଶକ୍ତି ରହିଛି । ଏହି ପ୍ରକାର କେତେ କଣ ।

କୌଣସି ଗୋଟିଏ ନୂତନ ଜିନିଷ ଦେଖିଲେ ସେହି ସମୟର ଲୋକ ତାକୁ ଇନ୍ଦ୍ରଜାଲ ବୋଲି ମନେକରୁଥିଲେ ଏବଂ ଭୟ ପାଇ ତାହା ହାତରୁ ବଞ୍ଚିବା ନିମିତ୍ତ ନାନା "ପ୍ରକାର ଡ଼େଉଁରିଆ ବ୍ୟବହାର କରୁଥିଲେ । ନାନା ରକମ ପଥର ଖଣ୍ଡ, ବିଶେଷ ବିଶେଷ ଜୀବଜନ୍ତୁଙ୍କର ବିଶେଷ ବିଶେଷ ହାଡ଼, ଗଛ, ଅନାବନା ଗଛର ଓହଳ– ଏପରି କେତେ ରକମର ଠୁଣୁକା ଠୁଣୁକି ଏବଂ ଝଡ଼ା ଫୁଙ୍କା ସେତେବେଳେ ଚାଲୁଥିଲା । ଡ଼େଉଁରିଆ, ତାବିଜର ବ୍ୟବହାର ମଧ ଆଜି ପର୍ଯ୍ୟନ୍ତ ଆମ ଦେଶରେ ରହିଛି ।

- ୦ -

# ଜଗତ ସମ୍ବନ୍ଧେ ପୂର୍ବପୁରୁଷଙ୍କ ଧାରଣା

ପ୍ରାକୃତିକ ନିୟମାବଳି ଜାଣି ନ ଥିଲେ, କାହାରି ପକ୍ଷରେ ପୃଥିବୀରେ ଚଳିବା ସହଜ ନୁହେଁ । ପ୍ରତି ପଦରେ ଅଦୃଶ୍ୟ ଶକ୍ତି ସାମନାରେ ନିଜକୁ ଅସହାୟ ଓ ଦୁର୍ବଳ ମନେ ହେବ । ଯେଉଁ ଲୋକ ଗୋଟାଏ ଅଦ୍ଭୁତ କାର୍ଯ୍ୟ କରିବ, ତାକୁ ଲୋକେ ଗୁଣୀ ନଚେତ୍ ଉଟା–ଡ଼ାହାଣୀ ବୋଲି ମନେ କରିବେ । ଅଜ୍ଞତାରୁ ଆସେ ଭୟ । ମଣିଷ ଏପର୍ଯ୍ୟନ୍ତ ଆଜିକାଲି ପରି ଅନେକ କଥା ଜାଣୁ ନ ଥିଲା । ତେଣୁ ପୃଥିବୀ ଉପରେ ଖବରଦାରୀ ନ କରି ଭୟରେ ଜୀବନ କାଟୁଥିଲା । ଅବଶ୍ୟ ସେତେବେଳେ ମଣିଷ ମାମଥ ମାରିବାକୁ ଶିଖିଥିଲା । କିନ୍ତୁ ପ୍ରକୃତି ଦେବୀର ଅସୀମ ଶକ୍ତି ଆଗରେ ସେ ଶକ୍ତି କିଛି ନୁହେଁ । ଦିନେ ଶିକାରରେ କିଛି ନ ଜୁଟିଲେ ଦଳକଯାକ ସବୁ ମଣିଷ ସେଦିନ ଉପବାସ ରହୁଥିଲେ ।

କିନ୍ତୁ ଏପରି ଅସହାୟ ଅବସ୍ଥାରୁ କିପରି ମନୁଷ୍ୟ ପ୍ରକୃତିର ନାନା ବାଧାକୁ ଜୟକଲା । ମନୁଷ୍ୟ ଶକ୍ତିର ମୂଳ ଉତ୍ସ ଥିଲା ଏକତା । ଏକ ସଙ୍ଗେ ଦଳବଦ୍ଧ ଭାବରେ ସେ ପ୍ରକୃତିର ପ୍ରତିକୂଳ ଶକ୍ତି ବିରୁଦ୍ଧରେ ସଂଗ୍ରାମ କରୁଥିଲା । ସମାଜ କାହାକୁ କହନ୍ତି, ସେ ବିଷୟରେ ସେମାନଙ୍କର ସେତେବେଳେ କୌଣସି ଧାରଣା ନ ଥିଲା । କିନ୍ତୁ ସେମାନେ ଏତକ ଅନୁଭବ କରୁଥିଲେ ଯେ କୌଣସି ଏକ ଅଦୃଶ୍ୟ ବନ୍ଧନରେ ସେମାନେ ସମସ୍ତେ ଆବଦ୍ଧ, ସେମାନେ ବୁଝି ପାରନ୍ତି ଯେ ସେମାନେ ଅନ୍ୟଭାବରେ ଅନେକ ହେଲେ ମଧ କୌଣସି ଭାବରେ ଯେପରି ଏକ । ମନୁଷ୍ୟ ଶରୀରର ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକ ପୃଥକ ହେଲେ ମଧ ଯେପରି ଏକ ହୋଇ ରହିଛନ୍ତି, ସେପରି ଏକ ଅସ୍ପଷ୍ଟ ଧାରଣା ସେମାନଙ୍କ ମଧରେ ମଧ୍ୟ ଥିଲା ।

ସେ ବନ୍ଧନଟା କଣ ? ମଣିଷ ସେତେବେଳେ ଆତ୍ମୀୟତା ବନ୍ଧନରେ ଆବଦ୍ଧ ଥିଲା । ପିଲାମାନେ ବାପ ମାଆଙ୍କ ସଙ୍ଗରେ ରହୁ ଥିଲେ ! ସେମାନଙ୍କର ପିଲାମାନେ ଆଉ ଭାଇ ଭଉଣୀ, କକା ପୁତରା ଏକ ସଙ୍ଗରେ ରହୁଥିଲେ । ଏହି ଭାବରେ କୁଳର ଉତ୍ପତ୍ତି ହୁଏ । ଆଦିମ ଶିକାରୀ ମଣିଷମାନଙ୍କର ସମାଜ ଥିଲା ଏହି ପ୍ରକାର । ଗୋଟାଏ ପୂର୍ବପୁରୁଷରୁ ଜନ୍ମ ନେଇଥିବା ଗୋଟାଏ କୁଳ । ଜନ୍ମ ସୂତ୍ରରେ ଲୋକେ ଏକ ଅନ୍ୟ ସଙ୍ଗରେ ଆବଦ୍ଧ ରହୁଥିଲେ । ଶିକାର କରିବା, ଯନ୍ତ୍ରପାତି ବନେଇବା ସେମାନେ ପୂର୍ବପୁରୁଷ ଠାରୁ ଶିଖୁଥିଲେ ।

ମଣିଷ ସେତେବେଳେ ମନରେ ଭାବୁଥିଲା, କାମ କଲେ ଏବଂ ଶିକାର କଲେ ହିଁ ପୂର୍ବପୁରୁଷର ଆଦେଶ ପାଳନ କରାହେଲା । ସେମାନଙ୍କ ଆଦେଶ ଯେଉଁମାନେ ଶୁଣନ୍ତି, ସେମାନେହିଁ କୌଣସି ବିପଦର ସମ୍ମୁଖୀନ ହୁଅନ୍ତି ନାହିଁ । ଅଦୃଶ୍ୟଭାବେ ପୂର୍ବପୁରୁଷମାନେ ସବୁ ସମୟରେ ବଂଶଧରମାନଙ୍କୁ ରକ୍ଷା କରି ଆସିଛନ୍ତି । ସବୁ କଥା ମୃତ ପୂର୍ବପୁରୁଷମାନେ ଜାଣି ପାରନ୍ତି ଏବଂ ସେମାନଙ୍କ ଆଖିର ଆଢୁଆଳରେ କାହାର କିଛି କରିବାର ଉପାୟ ନ ଥିଲା । ଦୃଷ୍ଟ ଦମନ ଓ ଶିଷ୍ଟପାଳନହିଁ ସେମାନଙ୍କର ଧାରଣା ଥିଲା । ଏହିଭାବରେ ଆଦିମ ମଣିଷର ମନରେ ସମସ୍ତଙ୍କର ଭଲ ନିମିତ୍ତ ସମସ୍ତେ ମିଳି କାର୍ଯ୍ୟ କରିବାର ତାଗିଦ ଆସିଲା । ଏହି ଏକତାବୋଧ ହିଁ ପୂର୍ବପୁରୁଷର ଆଦେଶ ପାଳନର ନାମାନ୍ତର ।

ଆମ୍ଭମାନଙ୍କର କାର୍ଯ୍ୟ ଧାରଣା ନେଇ ଯେପରି ଆମ୍ଭେମାନେ ଆମ୍ଭମାନଙ୍କ ପୂର୍ବପୁରୁଷଙ୍କ କାର୍ଯ୍ୟର ବିଚାର ନ କରୁଁ । କାରଣ ସେମାନଙ୍କର ଧାରଣା ଥିଲା ଅନ୍ୟ ରକମର । ଆମ୍ଭମାନଙ୍କ ମତରେ ବାଇସାନ ଶିକାର କରି ଶିକାରୀମାନେ ଖାଇବାର ବନ୍ଦୋବସ୍ତ କରନ୍ତି; କିନ୍ତୁ ସେମାନେ ମନେକରନ୍ତି ବାଇସାନ ଦୟାକରି ତାର ମାଂସ ଖାଇବାକୁ ଦିଏ । ଅବଶ୍ୟ ଆମ୍ଭେମାନେ ଏହିକ୍ଷଣି ମଧ୍ୟ ଏପରି କଥା କହୁଁ । ଆମ୍ଭେ କହୁଁ ଗାଈ ଦୁଧ ଦିଏ, କିଏ କେବେ କହେ ନାହିଁ ଗାଈଠାରୁ ଆମେ ଦୁଧ ଆଦାୟ କରୁଁ । କାହା ପାଟିରୁ କେବେ ଶୁଣିଛ ଆମେ ଗାଈ ଦୁଧକୁ କାଢ଼ି ଖାଉଁ ?

ଆମ୍ଭମାନଙ୍କ ପରି ଆଦିମ ମଣିଷମାନେ ବାଇସାନ,ମାମଥର ମାଂସ ଶିକାର କରି ଖାଉଥିଲେ ବୋଲି ସେମାନଙ୍କୁ ଉପକାରୀ ଜନ୍ତୁ ବୋଲି ମନେ କରୁଥିଲେ । ସେମାନଙ୍କ ମତରେ ଶିକାରୀମାନେ ବାଇସାନ ମାରନ୍ତି ନାହିଁ, ବାଇସାନ ଦୟା କରି ତାର ମାଂସ ଖାଇବାକୁ ଦିଏ । ସେମାନେ ମନେକରୁଥିଲେ ଜୀବ ଜନ୍ତୁ ଦୟା ନ କରି ଇଚ୍ଛା ନ କଲେ ତାକୁ କେହି ମାରି ପାରନ୍ତେ ନାହିଁ ।

ବାଇସାନର କୃପାରୁ ମାଂସ ଖାଇବାକୁ ମିଳୁ ଥିଲା । ତେଣୁ ତାକୁ ସମସ୍ତେ କୁଳ ରକ୍ଷାକର୍ତ୍ତା ବୋଲି ମନେ କରୁଥିଲେ । ଜଗତ ସମ୍ବନ୍ଧରେ ଆଦିମ ଅଧିବାସୀମାନଙ୍କର ସେ ପର୍ଯ୍ୟନ୍ତ ପରିଷ୍କାର ଧାରଣା ନ ଥିଲା । ଏହି କାରଣରୁ ସେମାନେ ଜୀବନ ରକ୍ଷାକାରୀ ପଶୁ ଏବଂ ନିଜର ପୂର୍ବପୁରୁଷମାନଙ୍କର ଧାରଣା ଓ ପାର୍ଥକ୍ୟ ଏକାଠି ଗୋଳି ଦେଉଥିଲେ । ସେମାନଙ୍କର ମନେ ହେଲା ଯେ ସେମାନେ ବାଇସାନ ବା ଏହି ଜାତିର କେଉଁ ଜୀବଠାରୁ ଜନ୍ମ ହୋଇଚନ୍ତି । ଏହି କାରଣରୁ ସେ କାଳର ଚିତ୍ରକର ଯେତେବେଳେ ବାଇସାନର ଛବି ଆଙ୍କେ, ସେତେବେଳେ ସତକୁ ସତ ମନେକରୁଥିଲା ଯେ ସେମାନେ ସମସ୍ତେ ବାଇସାନରୁ ଜନ୍ମ ।

ମଣିଷ ସେତେବେଳେ ନାନା ସୂତ୍ରରେ ବଣୁଆ ଜନ୍ତୁମାନଙ୍କ ସଙ୍ଗରେ ସମ୍ବନ୍ଧ ରଖିଥିଲା । ଏହି ସବୁ ପଶୁକୁ ସେମାନେ ନିଜ ନିଜର ଆତ୍ମୀୟ କୁଟୁମ୍ବ ବୋଲି ମନେ କରୁଥିଲେ ।

ତେଣୁ କୌଣସି ପଶୁ ଶିକାର କଲେ ସମସ୍ତେ ମିଳି ତା ପାଖରୁ ସେହିକ୍ଷଣି କ୍ଷମା ଚାହୁଁଥିଲେ । ସେହି ପଶୁର ଚମଡ଼ା ଦେହରେ ଦେଇ ସେମାନେ ଭାବୁଥିଲେ, ଆଉ ସେମାନଙ୍କର ଆପଦ ବିପଦର ସମ୍ଭାବନା ନାହିଁ ।

ମଣିଷ ସେପର୍ଯ୍ୟନ୍ତ ପୁରା ପୁରି "ମୁଁ" ବୋଲି ଭାବିବାକୁ ଶିଖି ନ ଥିଲା । ତେଣୁ ଯେଉଁ କୁଳର ଲୋକ ସେ, ସେହି ସମସ୍ତ କୁଳର ଗୋଟାଏ ଛୋଟ ଅଂଶ ବା ଭଗ୍ନାଂଶ ବୋଲି ନିଜକୁ ମନେ କରୁଥିଲା । ଆମ୍ଭେମାନେ "ମୋର ମୋର" ନ କହି ଚଳିପାରୁ ନାହିଁ, ସେମାନଙ୍କର କିନ୍ତୁ ସେପରି ଆପଣାର କିଛି ନ ଥିଲା । ସମସ୍ତେ ସମସ୍ତଙ୍କର । ତେଣୁ ପ୍ରତ୍ୟେକ ଆମ୍ଭେମାନେ ବା ଆମ୍ଭମାନଙ୍କର ଏକ ଏକ କୁଳର– ଏକ ଏକ ବିଶେଷ ପଶୁଚିହ୍ନ ବା ପ୍ରତୀକ ଥିଲା । ପ୍ରଧାନତଃ ଯେଉଁ ଯେଉଁ ପଶୁ ଶିକାର କରି ସେମାନଙ୍କର କୁଳର ଜୀବନଯାତ୍ରା ଚଳୁଥିଲା ସେହି ସେହି ପଶୁ ହିଁ ସେମାନଙ୍କ ପୂର୍ବ ପୁରୁଷଙ୍କର ଚିହ୍ନ ହେଉଥିଲା । ହରିଣ, ବାଇସାନ, ଭାଲୁ ଏହି ସବୁ ପଶୁ ଥିଲେ ନାନା କୁଳର ପ୍ରତୀକ । ଏହି ସବୁ କୁଳର ଆଚାର ବ୍ୟବହାର ସମସ୍ତ ସେହି ପଶୁଚିହ୍ନର ଆଦେଶ ବୋଲି ସେମାନେ ହୃଦୟରେ ଶିରୋଧାର୍ଯ୍ୟ କରୁଥିଲେ ।

## ପୂର୍ବ ପୁରୁଷମାନଙ୍କ ସହିତ ଗଳ୍ପ

ସେ କାଳର ଲୋକମାନେ କି ଭାବରେ ଚଲାବୁଲା କରୁଥିଲେ, କେଉଁ ଭାଷାରେ କଥା କହୁଥିଲେ, ସେମାନଙ୍କର ଆଚାର, ବ୍ୟବହାର, ସଂସ୍କାର କଣ ଥିଲା, ଏହି ସବୁ ଜାଣିବା ପାଇଁ କୌତୁହଳୀ ହେବା ସ୍ୱାଭାବିକ । କିନ୍ତୁ ତାହା ଜାଣିବାର ଉପାୟ କଣ ? କାଳ କବଳରେ ସବୁ ଲୋପ ପାଇଯାଇଛି । ମଝିରେ ମଝିରେ ଆମ୍ଭେମାନେ ଖୋଜି ପାଇଛୁ– କୋଉଠି ମଥାର ଖପୁରି; କେଉଁଠି ବା ଭଙ୍ଗା ହାଡ଼ଖଣ୍ଡି । ସେଥିରୁ ବା କିପରି ଜଣାଯିବ ସେ କାଳର ଲୋକମାନେ କି ଭାବରେ କଥା ବାର୍ତ୍ତା କରୁଥିଲେ ।

ଆମ୍ଭମାନଙ୍କର ଚଳନ୍ତି ଭାଷାରୁ ହିଁ ଖୋଜି ଖୋଜି ବାହାର କରିବାକୁ ହେବ ସେ କାଳର ଭାଷା । କଥାଟା ଶୁଣି ଯେତେ ସହଜ ମନେ ହେଉଛି, ଅସଲ କାର୍ଯ୍ୟଟା କିନ୍ତୁ ସେତେ ସହଜ ନୁହେଁ । ଅତୀତର ଭାଷା ଆବିଷ୍କାର କରିବା ନିମିତ୍ତ, ଉତ୍ସାହୀମାନଙ୍କୁ ନଦନଦୀ ପାହାଡ଼ପର୍ବତ ଡ଼େଇଁ ନାନା ଦେଶକୁ ଯାଇ ଅନୁସନ୍ଧାନ କରିବାକୁ ହୋଇଛି ।

ଅଷ୍ଟ୍ରେଲିଆ, ଆଫ୍ରିକା ଓ ଆମେରିକା ଆଦିମ ଅଧିବାସୀଙ୍କ ଭାଷା ଆମ୍ଭେମାନେ ଶିଖିନ୍ତୁ, ତେଣୁ ସେ ସବୁ ଛାଡ଼ି ଏଥରଜ ପଲିନେସିଆ ପ୍ରଶାନ୍ତ ମହାସାଗର ଦ୍ୱୀପପୁଞ୍ଜକୁ ଯିବାକୁ ହେବ, ତାହା ଛଡ଼ା ଦକ୍ଷିଣର ମରୁଭୂମି ଏବଂ ଉତ୍ତରରେ ତୁନ୍ଦ୍ରା ଅଞ୍ଚଳରେ ମଧ ସେମାନେ ଭାଷା ଆବିଷ୍କାର କରିବାକୁ ଯାଇଛନ୍ତି । ଖୁବ୍ ଉତ୍ତରର ଚଳନ୍ତି ଭାଷାରେ ଏହିକ୍ଷଣି ଏପରି ଅନେକ ଶବ୍ଦ ଅଛି; ଯେଉଁଥିରୁ ବୁଝାଯିବ ଯେ ସେଗୁଡ଼ିକ ମଣିଷର ଏକାନ୍ତ "ମୋର" ଧାରଣା ହେବା ଆଗ ଯୁଗର ପ୍ରଚଳିତ ।

ସବୁ ସମୟରେ ସତର୍କ ହେବାକୁ ହେବ, ଯେପରି ଆମର ଭୁଲ ନ ହୁଏ । କାରଣ ବହୁ ଯୁଗର ପ୍ରଚଳନ ଭିତରେ ଭାଷା ମଧ ରୂପ ବଦଳାଇ ଦେଇଛି । ଏପରିକି ଅନେକ ଶବ୍ଦର ଆଗେ ଯେଉଁ ଅର୍ଥ ଥିଲା ବର୍ତ୍ତମାନ ହୁଏ ତ ତାହା ସମ୍ପୂର୍ଣ୍ଣ ଓଲଟା ହୋଇଯାଇଛି । ନୂଆ ଭାଷା ତିଆରି କରିବା ଅସୁବିଧାକୁ ଏଡ଼ିବା ଲାଗି ଆମ୍ଭେମାନେ ଅନେକ ସମୟରେ ପୁରୁଣା ଶବ୍ଦରେ ନୂତନ ଅର୍ଥ ଆରୋପ କରିଥାଉଁ । ଆମ୍ଭମାନଙ୍କର ଭାଷା ଦୃଷ୍ଟାନ୍ତରୁ ଆରମ୍ଭ କରାଯାଉ । ଏକ ସମୟରେ ଭଲ ଭଲ ଜିନିଷ ସବା ଆଗେ ରାଜାଙ୍କ ଭୋଗରେ ଲାଗୁଥିଲା । ବଡ଼ ବଡ଼ ବ୍ୟାପାର ରାଜାଙ୍କ ନାମରେ ହେଉଥିଲା । ଏହିଥିରୁ ଶ୍ରେଷ୍ଠ ଅର୍ଥରେ ରାଜ ଶବ୍ଦ ବ୍ୟବହାର ହୋଇଛି । ତେଣୁ ଏ ଦେଶରେ ଆଜି ଆଉ କେହି ରାଜା ନାହିଁ । କିନ୍ତୁ ରାଜଧାନୀ ଅଛି । ଆମ୍ଭମାନଙ୍କର କଟକ ଓଡ଼ିଶାର ରାଜଧାନୀ ଥିଲା । ରାଜା ପଥରେ ଚାଲନ୍ତି ନାହିଁ; କିନ୍ତୁ ରାଜପଥର ଅଭାବ ନାହିଁ । ଭିକାରୀ ମଧ ପଇସା ଦେଲେ ଗୁଡ଼ିଆସାହୁ ତାକୁ ରାଜଭୋଗ ଖାଇବାକୁ ଦିଏ । ରାଜା ଯେଉଁଦିନୁ ଉଡ଼ିଯାଇଛନ୍ତି କିନ୍ତୁ ଶବ୍ଦଟା ଅର୍ଥର ବାଗ ଫେରାଇ ନାନା ଭାବରେ ବଞ୍ଚିଅଛି । ଇଂରେଜିରେ Quill ଶବ୍ଦଟାକୁ ନିଅ । ଆଗେ ପକ୍ଷୀର ପର ଅର୍ଥରେ ଏଇଟା ବ୍ୟବହାର ହେଉଥିଲା । କିନ୍ତୁ ଅଗେ ପକ୍ଷୀର ପରରେ ଲେଖା ହେଉଥିଲା ବୋଲି ଆଜି କିରାନିଙ୍କୁ Quill driver କହିଲେ ଏକ ମୁହୂର୍ତ୍ତ ଡ଼େରି ହେବ ନାହିଁ । ବାଷ୍ପୀୟ ହାତୁଡ଼ୀ ମୋଟେ ହାତୁଡ଼ୀ ପରି ଦେଖିବାକୁ ନୁହେଁ, କିନ୍ତୁ ତାହା ହାତୁଡ଼ୀର କାମ କରେ ବୋଲି ସେ ନାମକରଣ ହୋଇ ଆସିଅଛି ।

ଆଗେ ଯେ ତୀର ମାରୁଥିଲା, ତାକୁ ତୀରନ୍ଦାଜ କୁହାଯାଉ ଥିଲା, କିନ୍ତୁ ଆଜି ତୀର ନାହିଁ । ତୀରର ବ୍ୟବହାର ନାହିଁ । ତଥାପି ରୁଷୀୟ ଭାଷାରେ ଯିଏ ଭଲ ଗୁଳିମାରିପାରେ ତାକୁ ତୀରନ୍ଦାଜ କହନ୍ତି । ହସ୍ତଲିପିର ଇଂରେଜି Manuscript, କିନ୍ତୁ ବର୍ତ୍ତମାନ Type Writer ଆବିଷ୍କାର ଯୋଗୁ ଖୁବ୍ କମ ଇଂରେଜ ହସ୍ତଲିପି ହାତରେ ଲେଖାହୁଏ । ତଥାପି ତାର ନାମ ରହିଛି ହସ୍ତଲିପି ।

ଏଗୁଡ଼ିକ କେତେ ପରିମାଣରେ ଆଧୁନିକ ବୋଲି ଆମ୍ଭେମାନେ ବାହାର କରିପାରିଲେଇଁ । କିନ୍ତୁ ଆହୁରି ପୁରୁଣା ଭାଷା ଆବିଷ୍କାର ହିଁ ଖୁବ୍ କଠିନ । ମାର୍ ନାମକ ଜଣେ ପଣ୍ଡିତ ଏ ବିଷୟରେ ବିଶେଷ ଗବେଷଣା କରିଛନ୍ତି । ସେ ବାହାର କରିଛନ୍ତି ଯେ ଏକ୍ଷଣି ଅନେକ ଦେଶରେ ଲୋକେ ଘୋଡ଼ାକୁ ବଲଗା ହରିଣ ବା କୁକୁର କହନ୍ତି । କାରଣ ସେମାନେ ଘୋଡ଼ା ଚଢ଼ିବା ଆଗରୁ ବଲଗାହରିଣ ଓ କୁକୁର ପିଠିରେ ଚଢୁଥିଲେ । ଅନେକ ଭାଷାରେ ବଡ଼ କୁକୁର କହିଲେ ସିଂହ ବୁଝାଏ । ତାହାର କାରଣ ସିଂହ ଆଗରୁ କୁକୁର ଆବିଷ୍କୃତ ହୋଇଥିଲା । ମଉଚାନିନୋଭ (Mauchaninove) ନାମକ ଆଉ ଏକ ଭାଷାବିଦ୍ ପୁରୁଣା ଭାଷାର ଏକ ସଞ୍ଚୟନ ଗ୍ରନ୍ଥ ପ୍ରକାଶ କରନ୍ତି । ତହିଁରେ ଓକାଗିର (Youkagir) ଜାତିର ଗୋଟାଏ ଶବ୍ଦ ଅଛି । ସେହି ଶବ୍ଦ ଧରି ମାନେ କଲେ ଅର୍ଥ ହେବ, "ମଣିଷ ବଲଗା ହରିଣ ମାରିବା" – ଏତେ ବଡ଼ କଥା ଉଚ୍ଚାରଣ କରିବା କଠିନ ।

ଏଥିରୁ ମଧ୍ୟ କିଏ କାହାକୁ ମାରିଛି ବୁଝିବା ମଧ୍ୟ କଠିନ, ମଣିଷ ମାରିଛି ବଲଗା ହରିଣ ନା ବଲଗା ହରିଣ ମାରିଛି ମଣିଷ; କିନ୍ତୁ ଏହାର ଅର୍ଥ ଓକାଗିରି (Youkagir) ମାନଙ୍କୁ ଖୁବ୍ ସହଜ । ମଣିଷ ବଲଗା ହରିଣ ମାରିଛି, ଏ ହେଉଛି ଏହାର ଅର୍ଥ ।

ଶବ୍ଦଟି ଏପରି ଅଦ୍ଭୁତ ହେଲା କିପରି ? କାରଣ ମଣିଷ ସେପର୍ଯ୍ୟନ୍ତ ଠିକକରି ଜାଣି ନାହିଁ ଯେ ସେ କିମ୍ବା ତାହାର ସାରା ବଂଶ ବଲଗା ହରିଣ ମାରିବାରେ ସକ୍ଷମ । କୌଣସି ଅଦୃଷ୍ଟ ଶକ୍ତି ମାରିଥିଲା । ଏହା ଥିଲା ଧାରଣା । ମନୁଷ୍ୟ ସେତେବେଳେ ନିଜକୁ ଖୁବ୍ ଦୁର୍ବଳ ମନେ କରୁଥିଲା ବୋଲି ଭାଷାରେ ମଧ୍ୟ ତାହାର ଚାପ ପଡ଼ିଛି । କୌଣସି ଦିନ ହୁଏ ତ ଅଜଣା ଶକ୍ତିର ସାହାଯ୍ୟରେ ମଣିଷ ବଲଗା ହରିଣ ମାରିବା ସଫଳତା ହାସଲ କରିଥିଲା । ତାର ପରଦିନ ହୁଏତ ବରାଦ ନଥିବାରୁ ସେମାନେ ଖାଲି ହାତରେ ଫେରି ଆସିଛନ୍ତି । ତେଣୁ ମଣିଷ ବଲଗା ହରିଣ ମାରିବା ଶବ୍ଦଟିରେ କୌଣସି ସ୍ପଷ୍ଟ କର୍ତ୍ତୃକାରକ ନାହିଁ । ରହିବ କିପରି ? କିଏସେ ମାରିଲା ମଣିଷ ନା ହରିଣ ତାହା ମଧ୍ୟ ଏପର୍ଯ୍ୟନ୍ତ ସ୍ପଷ୍ଟ ନୁହେଁ । ଆଗରୁ ତ କହି ଆସିଛି ମଣିଷର ଧାରଣା ଥିଲା ଯେ ସେହି ହରିଣଟିକୁ ତାର କୌଣସି ପୂର୍ବପୁରୁଷ ଦୟା କରି ପଠାଇଛନ୍ତି ।

ଆଉ ଗୋଟିଏ ଶବ୍ଦ ନିଅ । ଏହି ଶବ୍ଦଟି ହେଉଛି, ଚୋକଟ ଜାତିର "ମନୁଷ୍ୟ ଜରିଆରେ ମାଂସ ଦିଆ ହୋଇ କୁକୁର ।"

ଏହାର ଅର୍ଥ ଆମ୍ଭମାନଙ୍କ ପାଖରେ ଅଭେଦ୍ୟ । କିନ୍ତୁ ସେମାନେ ତାହାର ମାନେ କରନ୍ତି; ମଣିଷ କୁକୁରକୁ ମାଂସ ଦେଲା । ମଣିଷ ତ ନିଜେ କିଛି କରିପାରେ ନାହିଁ । ସେହି କାରଣରୁ କୌଣସି ଅଦୃଷ୍ଟ ଶକ୍ତି ମଣିଷ ଜରିଆରେ କୁକୁରକୁ ମାଂସ ଦେଇଛି ।

ଫରାସୀ ଭାଷାରେ "ଇଲ ଫେତ୍ ଫରୟାତ"– ଶୀତ ପଡୁଛି । କିନ୍ତୁ ଏହାର ଅର୍ଥ ହେଉଛି ସେ ଶୀତ କରିଛନ୍ତି, ଏଠାରେ ସେମାନେ ସେ ଜଗତ ଚଳାନ୍ତି ଯିଏ । ବର୍ତ୍ତମାନ ଇଂରେଜିରେ ମଧ୍ୟ ବହୁତ ଶବ୍ଦ ଚଳେ ଯାହାର ଗଠନ ମଧ୍ୟ ଟିକିଏ ଅଦ୍ଭୁତ । It is raining, ବର୍ଷା ହେଉଛି। ଏହିଠାରେ ମଧ୍ୟ ସେହି ରହସ୍ୟମୟ It ବା ଏହା ? ଆମ୍ଭେମାନେ କହୁଁ, ଘଡ଼ିଟା ମିଳିଛି । ଯେପରି ଘଡ଼ିଟା ଆମ୍ଭେମାନେ ପାଇ ନାହୁଁ । କୌଣସି ମନ୍ତ୍ର ବଳରେ ଆଶ୍ଚର୍ଯ୍ୟଜନକଭାବରେ ଘଡ଼ିଟା ଆମ ହାତରେ ଆସି ପହଞ୍ଚିଛି । ଆମ୍ଭେମାନେ ବର୍ତ୍ତମାନ ଏପରି କୌଣସି ଶକ୍ତିକୁ ବିଶ୍ୱାସ ନ କଲେ ମଧ୍ୟ ଭାଷାରେ ଏହି ଶବ୍ଦଟା ବଞ୍ଚାଇ ରଖିଛୁ ।

କ୍ରମେ ଯେତେଦିନ ଆଗକୁ ଚାଲିଲା ମନୁଷ୍ୟ ସେତେ ଶକ୍ତିଶାଳୀ ହେଲା । ଆଉ ସେ ବର୍ତ୍ତମାନ କହେ ନାହିଁ "ମଣିଷ ଦ୍ୱାରା ଏହିଟା ହରିଣ ମାରିଲା ।" ତା ଜାଗାରେ ସେ କହିଲା "ମଣିଷ ହରିଣ ମାରିଛି ।"

ଆମ୍ଭେମାନେ ବର୍ତ୍ତମାନ କହୁଁ "ଦୁର୍ଭାଗ୍ୟ, କପାଳର ଲେଖା ।" ଏସବୁ ମଧ୍ୟରେ ହିଁ ଅଦୃଷ୍ଟ ଜିନିଷର ପ୍ରଭାବ । ଆମ୍ଭମାନଙ୍କ ଦେଶର ଭାଷା ପରି ପ୍ରାୟ ସବୁ ଦେଶର ଭାଷାରେ ଏପରି ଶବ୍ଦ ଅଛି । କିନ୍ତୁ ସୋଭିଏଟ୍ ଦେଶର ଲୋକ ମନେକରେ ଯେ ଦୂର ଭବିଷ୍ୟତରେ ସେମାନଙ୍କ ଭାଷାରେ ଏହି ସବୁ ଶବ୍ଦ ଅଚଳ ହୋଇଯିବ । କାରଣ ସେହିଠାରେ ନିରୁପାୟ ଚାଷୀ, ପ୍ରକୃତିର ମୁହଁ ଆଡ଼କୁ ଚାହିଁ ତାହାର କୃପାର ଆଶାରେ ଚାଷ କରେ ନାହିଁ । ଯନ୍ତ୍ରର ସାହାଯ୍ୟରେ ମନୁଷ୍ୟ ପାଣି ମଡ଼େଇବା ଏବଂ ମାଟି କାଟିବା କାର୍ଯ୍ୟକରେ । ଅଜ୍ଞାନତାରୁ ଯେଉଁ ସବୁ ଭୟ ଜନ୍ମିଥିଲା, ଆଜି ଜ୍ଞାନର ପରିଧି ବଢ଼ିଯିବା ସଙ୍ଗେ ସଙ୍ଗେ ମନୁଷ୍ୟ ସେହି ସବୁ ଭୟ କାଟି ଶକ୍ତି ବଢ଼ାଇଛି ।

ପ୍ରକୃତିର ନିୟମ କାନୁନ୍ ନ ଜାଣିବା ପର୍ଯ୍ୟନ୍ତ ଏବଂ ସେ ସବୁ ନିୟମ କାନୁନ୍ ନିଜର ପ୍ରୟୋଜନରେ ଲଗାଇବା ନ ଶିଖିବା ପର୍ଯ୍ୟନ୍ତ, ମନୁଷ୍ୟ ଭୟରେ ପ୍ରକୃତି ଦେବୀର ଦାସ ପରି ଜୀବନ କାଟିଛି, କିନ୍ତୁ ଜ୍ଞାନ ବଢ଼ିବା ସଙ୍ଗେ ସଙ୍ଗେ ସେହି ମନୁଷ୍ୟ ବରଂ ପ୍ରକୃତିକୁ ଶାସନ କରିପାରିଛି ।

- ୦ -

# ବିରାଟ ବସନ୍ତ

ବରଫ ଦେଶମାନଙ୍କରେ ପ୍ରତ୍ୟେକ ବର୍ଷ ବରଫ ଗଳିବା ସମୟରେ ଏକ ଅଦ୍ଭୁତ ଦୃଶ୍ୟ ଦେଖାଯାଏ । ଯେଉଁଆଡ଼େ ଚାହଁ ସେଆଡ଼େ ଦେଖିବ ପ୍ରକୃତିର ରୂପ ବଦଳି ଯାଉଛି । ଆଗେ ଯେଉଁ ଜାଗାଟା ବରଫରେ ଢ଼ଙ୍କା ଥିଲା, ବର୍ତ୍ତମାନ ସୂର୍ଯ୍ୟାଲୋକର ଦାଗ ଲାଗି ସେଇଠି ପଡ଼ିଆରେ ଘାସ ଉଠିବାକୁ ଆରମ୍ଭ କରିଛି । ଗଛର ଡ଼ାଳରେ ଡ଼ାଳରେ ପୁନର୍ବାର ନୂଆ ପଚର କଅଁଳି ଅଛି । ବର୍ଷେ ବର୍ଷେ ବରଫ ତରଳିବା ସମୟରେ ଯଦି ଏପରି ଘଟେ, ତାହା ହେଲେ ମନେ କର; ବହୁ ବହୁ ଯୁଗଯୁଗାନ୍ତର ଆଗର କଥା ।

ସେହି ବିରାଟ ବରଫର ଅଭିଯାନ, ସେହି ବରଫ ଭାଙ୍ଗିବା ସମୟରେ କି ଅବସ୍ଥା ହୋଇଥିଲା; ମନେ କରି ଦେଖ ।

ପ୍ରକୃତି ଦେବୀ ସେତେବେଳେ ଯେମିତି ଗଭୀର ନିଦ୍ରାରୁ ଜାଗି ଉଠିଥିଲେ । ଚାରି ଦିଗରେ ବିଶାଳ ବିଶାଳ ନଦୀ–ସମସ୍ତ ଭସାଇ ନେଇ ବୋହିବାକୁ ଲାଗିଲା । ଉତ୍ତରାଞ୍ଚଳରେ ଯେ ସବୁ ପର୍ବତ ଉପତ୍ୟକା ଭରି ଏତେ ଦିନ ଶୀତର ଅବାଧ ରାଜତ୍ୱ ଥିଲା । ସେଇଠି ଦେଖା ଦେଲା ସୁନ୍ଦର ବସନ୍ତ କାଳ । କିନ୍ତୁ ଏ ବସନ୍ତ ସମାଗମ ଗୋଟିଏ ବର୍ଷରେ ସମ୍ଭବ ହୋଇ ନାହିଁ । ସମସ୍ତ ବରଫର ଚାପ ଧୀରେ ଧୀରେ ଅପସରି ଯାଉଥିଲା । ଧୀରେ ଧୀରେ, ଯେପରି କି ସେ ଯିବାକୁ ଚାହୁଁ ନ ଥିଲା । ସେ ସବୁ ଚାଲିଯିବାକୁ ଶତ ଶତ ବର୍ଷ ଲାଗିଲା । କିଛି ଦୂର ଯାଇ ସେ ପୁଣି ଥକ୍କାହୋଇ ଛିଡ଼ା ହେଲା । ଆଉ ଥରେ ନୂଆ କରି ଆରମ୍ଭ ହେଲା ବରଫର ଶୋଭା ଯାତ୍ରା ।

ଏହି ବରଫର ଅବସାନ ସଙ୍ଗେ ସଙ୍ଗେ ଦେଖା ଦେଲା ଲମ୍ବା ଘାସର ବିଶାଳ ପ୍ରାନ୍ତର । ଆସିଲା ବଲ୍‌ଗା ହରିଣ, ବାଇସାନ, ଘୋଡ଼ା ଚରିବାର ପଡ଼ିଆ ଆହୁରି ଦକ୍ଷିଣକୁ ଘୁଞ୍ଚି ଆସିଲା । ଏଥର ଶୀତ ଓ ଗ୍ରୀଷ୍ମ ମଧ୍ୟରେ ଅନେକ ଦିନ ଧରି ଶକ୍ତି ପରୀକ୍ଷା ଲାଗିଲା । ଅବଶେଷରେ ଗ୍ରୀଷ୍ମକାଳର ଜୟ ହେଲା । ଭୂପୃଷ୍ଠ କ୍ରମେ ଗରମ ହେବାକୁ ଲାଗିଲା । ପାଇନ ଗଛର ଫାଙ୍କରେ ଆସ୍‌ପେନ୍ (Aspen) ଗଛ ମୁଣ୍ଡ ଟେକିଲା । ଉତ୍ତରରେ ଏସବୁ ନୂତନ ଗଛ ଜଙ୍ଗଲର ସଙ୍ଗେ ସଙ୍ଗେ ଏପରି ସବୁ ଜନ୍ତୁମାନେ ମଧ୍ୟ ଦେଖା ଦେଲେ; ଯେଉଁମାନେ ଏ ସବୁ ଗଛପତ୍ର ଇଲାକା ଭଲ ପାନ୍ତି; ସେ ସବୁ ଜଙ୍ଗଲ ଭରିଗଲା ବନ୍ୟ ବରାହ, ବଣୁଆ ଷଣ୍ଢ ଏବଂ ଧୂସର ବର୍ଣ୍ଣର ଭାଲୁ! ବଣ ଜଙ୍ଗଲର ଭିତରେ ବଣୁଆ ହଂସ ବିଲ ନାଳରେ ଭାସି ବୁଲିଲେ ।

ଚାରି ଦିଗର ଏହି ସବୁ ପରିବର୍ତ୍ତନର ଅବସ୍ଥାରେ ମଣିଷ ଚୁପ ହୋଇ ବସି ପାରି ନ ଥିଲା । ଏହି ପରିବର୍ତ୍ତନରେ ତାକୁ ମଧ ଅଂଶ ଗ୍ରହଣ କରିବାକୁ ହୋଇଥିଲା । ପ୍ରତ୍ୟେକ ଦୃଶ୍ୟ ପରିବର୍ତ୍ତନର ସଙ୍ଗେ ସଙ୍ଗେ ମଣିଷକୁ ମଧ ତାର ଆତ୍ମରକ୍ଷା ପାଇଁ ଜୀବନଯାତ୍ରାର ଚଳଣି ବଦଳେଇବାକୁ ହୋଇଛି । ଚାରିଦିଗରେ ଚାଲିଥିବା ଓଲଟପାଲଟ ସଙ୍ଗେ ଖାପ ଖୁଆଇ ନେବାକୁ ହୋଇଚି ।

ତୁନ୍ଦ୍ରା ଅଞ୍ଚଳ ଯେତେବେଳେ ଦକ୍ଷିଣକୁ ଆସିଛି, ସଙ୍ଗେ ସଙ୍ଗେ ଅଦୃଶ୍ୟ ଶିକୁଳିରେ ବନ୍ଦୀ ବଲ୍‌ଗା ହରିଣ ଠାରୁ ଆରମ୍ଭକରି ଶିଉଳି, ଘାସ ପ୍ରଭୃତି ପର୍ଯ୍ୟନ୍ତ ଘୁଞ୍ଚି ଯାଇଛି । ମନୁଷ୍ୟ ମଧ ସେମାନଙ୍କ ପଛେ ପଛେ ଆସିଛି । ଯେଉଁଆଡ଼େ ବରଫ ଜମିଯାଇ ନାହିଁ; ସେହି ଦିଗରେ ମନୁଷ୍ୟ, ବାଇସାନ ଓ ଘୋଡ଼ା ଶିକାର କରିବାରେ ଲାଗିଛି । ତୁନ୍ଦ୍ରା ଅଞ୍ଚଳରେ, ତାକୁ ଖାଲି ବଲ୍‌ଗା ହରିଣ ଶିକାର କରିବାକୁ ହୋଇଛି । ଏହା ପୂର୍ବରୁ ଅଧିକାଂଶ ପ୍ରାଣୀଙ୍କୁ ମନୁଷ୍ୟମାରି ଶେଷ କରି ଆସିଥିଲା । ତା'ପରେ କେବଳ ବଳି ପଡ଼ିଲା ବଲ୍‌ଗା ହରିଣ । ତେଣୁ ବଲ୍‌ଗା ହରିଣ ପଛେ ପଛେ ମନୁଷ୍ୟ ବୁଲାବୁଲି କରିବାକୁ ଲାଗିଲା । କେଉଁଠାରେ ସ୍ଥିର ହୋଇ ମନୁଷ୍ୟ ରହି ପାରିଲା ନାହିଁ ।

ଏଥର ଦଳେ ଶିକାରୀ ମେରୁ ପ୍ରଦେଶକୁ ଆସିଲେ । କାରଣ ସେମାନଙ୍କର ଏତେ ଦିନ ଧରି,ଏହି ରକମ ଜଳବାୟୁରେ ଚଳାଚଳ ହେବାର ଅଭ୍ୟାସ ଥିଲା । ଶୀତ ରାଜତ୍ୱ ଚାଲିଥିଲା ପ୍ରାୟ ୩୫ ହଜାର ବର୍ଷ ଧରି । ସେହି ପ୍ରଚଣ୍ଡ ଶୀତ ମଧରେ ଚମଡ଼ାର ଜାମା, ଲୁଗା ତିଆରି କରି, ସାରା ଶରୀରକୁ ଗରମ ରଖିବା ମନୁଷ୍ୟ ଶିଖିଥିଲା ।

ଏହି ଭାବରେ ଉତ୍ତରରୁ ଚାଲିଯିବା ସବୁ ସମୟରେ ଭଲ ଫଳ ଦେଇ ନାହିଁ । ଯେଉଁମାନେ ଉତ୍ତରକୁ ଗଲେ ଶେଷପର୍ଯ୍ୟନ୍ତ ସେମାନେ ଠକେଇରେ ପଡ଼ିଲେ । ସେହି ଅଞ୍ଚଳମାନଙ୍କରେ ମଧ ସେଇ ବରଫ ଯୁଗର ସ୍ଥାୟିତ୍ୱ ଆହୁରି ବଢ଼ିଗଲା । ସେଥିପାଇଁ ଆମ୍ଭେମାନେ ଦେଖିବାକୁ ପାଇବା ଯେ ଗ୍ରୀନଲାଣ୍ଡର ଏସ୍କିମୋମାନେ ଆଦିମ ପ୍ରକୃତି ସହିତ ରାତ୍ରି ଦିନ ସଂଗ୍ରାମକରି ଜୀବନ କଟାଇ ଆସିଛନ୍ତି । ତାର ଅର୍ଥ, ମନୁଷ୍ୟର କ୍ରମୋନ୍ନତିର ସ୍ତରେ ସ୍ତରେ ସେମାନେ ବେଶୀ ଦୂର ଉଠିପାରି ନାହାନ୍ତି ।

ଯେଉଁମାନେ ପୂର୍ବ ଜାଗାରେ ରହିଗଲେ, ସେମାନଙ୍କୁ ଅବଶ୍ୟ କିନ୍ତୁ ମୂଳରୁ କଷ୍ଟ କରିବାକୁ ହେଲା ଖୁବ୍ ଏବଂ ଗୋଟାଏ ଦିଗରୁ ସେମାନଙ୍କର ଭଲ ହେଲା । ପିତୃ ପିତାମହଙ୍କ ପରି ବରଫର ପିଞ୍ଜରା ଭିତରେ ସେମାନେ ବନ୍ଦୀ ହୋଇ ରହିଲେ ନାହିଁ । ଆଗର ସମଭୂମିରେ ଏ ଥରକ ଭୀଷଣ ଜଙ୍ଗଲ ଦେଖା ଦେଲା । ସେଇ ଗହନ ବନରେ

ପଶିବାର ସାଧ କାହାର ! ମନୁଷ୍ୟଙ୍କୁ ଏଥରକ ସବୁ ସମୟ ଗଛ କାଟି ଜଙ୍ଗଲ ସଙ୍ଗେ ସଂଗ୍ରାମ କରି ବଞ୍ଚିବାକୁ ହେଉଥିଲା । ଗଛ କାଟିବା ପାଇଁ ଏଥରକ ନୂତନ ଅସ୍ତ୍ର ଦରକାର ହେଲା । ସେଥିଲାଗି ମଣିଷ ଆଗର ସେହି ପଥର ପରି ଅସ୍ତ୍ରକୁ କାଠ ସାଙ୍ଗରେ ବାନ୍ଧି କୁରାଢ଼ୀ ତିଆରି କରି ଦେଲା ।

ଜଙ୍ଗଲ ଟିକିଏ ପରିଷ୍କାର କରି, ମଣିଷ ସେଇଠି ଚାରିଆଡ଼େ କାଠର ଖୁଣ୍ଟି ପୋତି ଘର ତିଆରି କରି ନେଲା । ଏତେ ଦିନଯାଏ ତ ଜଙ୍ଗଲରେ ବସବାସ କରିବା କଠିନ ଥିଲା । ଏଥର ସମସ୍ୟା ଆହୁରି କଠିଣ ହେଲା । ଖାଇବା ହେଲା ପ୍ରଥମ ସମସ୍ୟା, ଆଗେ ମନୁଷ୍ୟର ଶିକାର ଦୂରରୁ ଦେଖା ପଡୁଥିଲା । କିନ୍ତୁ ଏଥରକ ସେମାନେ ଜଙ୍ଗଲ ଆଢୁଆଳରେ ରହିଲେ । ଖାଲି ଆଓଆଜରୁ ଶୁଣା ଯିବ ସିନା ! ଯଦି କୌଣସି ଶିକାର ଆଖିରେ ପଡ଼ିଲା ତାକୁ ଆଖି ପିଛୁଳାରେ ନ ମାରିଲେ ସେ କୁଆଡ଼େ ଉଭାନ ହୋଇଯିବ । ପ୍ରୟୋଜନରୁ ବର୍ଚ୍ଛା ବଦଳରେ ତେଣୁ ଆସିଲା ଧନୁଶର । ତୀର ଭର୍ତ୍ତି ତୂଣୀର କାନ୍ଧରେ ପକାଇ ଶିକାରୀ ଶିକାର ଲାଗି ବାହାରିଲେ । ସେମାନଙ୍କର ସାଥୀ ହେଲା ଏକ ଚତୁଷ୍ପଦ ଜୀବ–କୁକୁର ।

ହଜାର ହଜାର ବର୍ଷ ଧରି କୁକୁର ମଣିଷର ବନ୍ଧୁ ରୂପେ କାମ କରି ଆସିଛି । ଯେଉଁଠି ମଣିଷର ଚିହ୍ନ ମିଳିଛି ସେଇଠି କୁକୁରର ମଧ ହାଡ଼ ଗୋଡ଼ ମିଳିଛି । ବିନା କାରଣରେ ଅବଶ୍ୟ ମଣିଷ କୁକୁର ପୋଷି ନାହିଁ । ମଣିଷ ଟେର ପାଇବା ଆଗରୁ କୁକୁର ଠଉରେଇ ନେଇପାରେ ଶିକାର କେଉଁ ଦିଗରେ ରହିଚି । ମଣିଷ ଉପରେ ନିଶ୍ଚିନ୍ତରେ ତାକୁ ଅନୁସରଣ କରି ଶିକାର ଦେଖିବାକୁ ପାଏ । ଗୋଟିଏ କଥାରେ କୁକୁର ପୋଷି ମଣିଷର ଶକ୍ତି ଆହୁରି ବଢ଼ିଗଲା । କୁକୁର ଯେପରି ଶିକାରରେ ସାହାଯ୍ୟକରେ ସେପରି ସ୍ଲେଜ୍ ଗାଡ଼ିରେ ବରଫ ଉପରେ ମଣିଷକୁ ଟାଣି ନେଇ ମଧ ବୁଲାଏ ।

ପୁଣି ଜଙ୍ଗଲକୁ ମଧ ସମସ୍ତେ ଗଲେ ନାହିଁ । ଦଳେ ଜଙ୍ଗଲ ଛାଡ଼ି ନଦୀ ଏବଂ ହ୍ରଦର ତୀରକୁ ଚାଲିଗଲେ । ସେଠାରେ ଜଙ୍ଗଲ ଆଉ ନଦୀ ମଝିର ସରୁ ଜମିରେ ସେମାନେ ବସତି ଆରମ୍ଭ କଲେ । ଜଙ୍ଗଲରେ ରହିବା ତ କଠିଣ; କିନ୍ତୁ ତା'ର ତୁଳନାରେ ଏଠାରେ ମଧ ମଣିଷକୁ କମ ବ୍ୟତିବ୍ୟସ୍ତ ହେବାକୁ ପଡ଼ି ନାହିଁ । ହଠାତ୍ ନଦୀ ବଢ଼ି ଉଠି ସେମାନଙ୍କର ଘରବାଡ଼ି ଭସାଇ ନେଇ ଯାଏ । ମଣିଷ ସେତେବେଳ ଗଛରେ ଚଢ଼ି ଆତ୍ମରକ୍ଷା କରେ । ପ୍ରଥମ ପ୍ରଥମ ବନ୍ୟା ଆସି ମଣିଷକୁ ହଠାତ୍ ଆକ୍ରମଣ କରୁଥିଲା ।

କିନ୍ତୁ କ୍ରମେ ମଣିଷ ନଦୀର କାରସାଦିକୁ ବୁଝିଗଲା । ସେ କାଠ କାଟି ଉଚ୍ଚ ମଞ୍ଚା ତିଆରି କରି ତା'ରି ଉପରେ ବସା ବାନ୍ଧିଲା । ଏଥରକ ବନ୍ୟାର ଭୟ ତୁଟିଲା ।

ମଣିଷ ପକ୍ଷରେ ଏ ଗୋଟାଏ ମସ୍ତବଡ଼ ଜୟ । ନଦୀର ନୀଚ ଉପକୂଳକୁ ଉଞ୍ଚା କରିବା ସହଜ କଥା ନୁହେଁ । କିନ୍ତୁ ଦିନେ ଏହି ଶକ୍ତ କାମ ସହଜ ହୋଇ ପାରିଥିଲା ବୋଲି ଆଜି ସବୁ ବଡ଼ ବଡ଼ ବନ୍ଧ ଦେଖୁଚ !

ନଦୀ ସାଙ୍ଗରେ ଏ ଭାବରେ ମଣିଷକୁ ଅନେକ ସଂଗ୍ରାମ କରିବାକୁ ହୋଇଛି । ମଣିଷ କାହିଁକି ଆଗ୍ରହରେ ଏହି ସଂଗ୍ରାମକୁ ବରଣ କରି ନେଲା ? ଜାଲୁଆ କେଉଟକୁ ପଚାରିଲେ ଏହାର ଜବାବ ମିଳିବ । ମାଛର ଅକର୍ଷଣହିଁ ସେମାନଙ୍କୁ ନଦୀରେ ଓହ୍ଲାଇବାକୁ ଶିଖାଇଲା ।

କିନ୍ତୁ ଶିକାରୀ ପୁଣି କେମିତି ଧୀବର ହେଲା ? ଶିକାରୀର ଧନୁବାଣ ନେଇ ତ ମାଛ ମରାଯାଏ ନାହିଁ । ମାଛ ଧରିବାର କାଇଦା କାନୁନ ତ ଅଲଗା । ରାତାରାତି ଶିକାରୀ ତ ଜାଲୁଆ ହୋଇ ଯାଇ ନାହିଁ । ଜାଲରେ ମାଛ ଧରିବା ଶିଖିବା ପୂର୍ବରୁ ସେ ଡ଼ଙ୍ଗାରେ ଶିକାର କରି ମାଛ ଶିକାର ଶିଖେ । ଆଣ୍ଠୁଆଣି ପାଣିରେ ବର୍ଚ୍ଛା ଛାଡ଼ି ମାଛ ମାରିବାକୁ ଆରମ୍ଭ କରେ । ସେହି ସମୟରେ ଗଛର ପକ୍ଷୀ ଧରିବା ଲାଗି ଜାଲ ବୁଣାର ବିଦ୍ୟା ସେ କାମରେ ଲଗାଇଲା । ନଦୀରେ ମଧ ସେ ଜାଲ ପକାଇଲା । କ୍ରମେ କ୍ରମେ ମଣିଷ ବନ୍‌ଶୀରେ ମାଛଧରା ଶିଖିଲା ।

ଆଜିକୁ ଷାଠିଏ ବର୍ଷ ଆଗେ ରୁଷିଆରେ ଲାଦୋଗା ହ୍ରଦ ତୀରରେ କେତେ ଜଣ ଶ୍ରମିକ ମାଟି ଖୋଳୁ ଖୋଳୁ ଗୋଟାଏ ମଣିଷର ଖପୁରୀ ଏବଂ କେତେଟା ପଥର ଯନ୍ତ୍ରପାତି ପାଇଲେ । ସେହି ଖବର ପ୍ରତ୍ନତାତ୍ତ୍ୱିକମାନଙ୍କ କାନରେ ପହୁଞ୍ଚିଗଲା । ସେମାନେ ଆସି ସେଇଠି ଆବିଷ୍କାର କଲେ ପଥରର କୁରାଢ଼ୀ, ପଥରର ଛୁରା, ମାଛର ବନ୍‌ଶୀ, ତୀରର ମୂନ, କରତ ପରି ଦାନ୍ତ ତିଆରି ହାରପୁନ୍ (ତିମି ମରା ବର୍ଚ୍ଛା) ଆଉ ଗୋଟିଏ କବଚ । ଏଗୁଡ଼ିକ ପାଇବା ପରେ ଆଉ ମାଟି ଖୋଳାହେଲା । ମିଳିଲା ସେ କାଳର ଗୋଟାଏ ଡ଼ଙ୍ଗା ନୌକା, ସେଠୁଁ ସେମାନଙ୍କର ଆନନ୍ଦ ଦେଖେ କିଏ ? ଲମ୍ବା ଓକ୍ ଗଛର ଗଣ୍ଡି କାଟି ସେ ଡ଼ଙ୍ଗା ତିଆରି କରା ହୋଇଥିଲା । ପଥରର କୁରାଢ଼ୀରେ ଏତେ ବଡ଼ ଶକ୍ତ କାଠ ସବୁବେଳେ କାଟି ପାରିବା ସମ୍ଭବ ନୁହେଁ ବୋଲି, ବେଳେ ବେଳେ ଗଛର ଗଣ୍ଡି ନିଆଁରେ ପୋଡ଼ି କାମରେ ଉପଯୋଗୀ କରି ନିଆହୋଇଛି । ଯେଉଁ କୁରାଢ଼ିରେ ଡ଼ଙ୍ଗାଟି ତିଆରି ହୋଇଥିଲା ସେଇ

କୁରାଢ଼ିଟା ସେଇଠି ପଡ଼ିଥିଲା । ତା'ର ଦାଢ଼ ଯେ ବେଶ୍ ପାଳିସ ତା ବୁଝାଗଲା । ଦିନେ ମଣିଷ ଅନେକ କଷ୍ଟରେ ଡ଼ଙ୍ଗା ତିଆରି କରି ତାକୁ ଟାଣି ହ୍ରଦରେ ଓହ୍ଲାଇ ପଡ଼ିଥିଲା । ସାଙ୍ଗରେ ନେଇ ଯାଇଥିଲା ମାଛ ମାରିବାର ସାଜ ସରଞ୍ଜାମ । ଯେଉଁ ଓକ୍ ଗଛକୁ ଝଡ଼ ମଧ ଭାଙ୍ଗିପାରେ ନାଁ – ମଣିଷ ତାକୁ ଅନାୟାସରେ କାଟି ନଦୀର ଉପର ଦେଇ ଭସାଇ ନେଇ ପାରିଥିଲା ।

ଭାବିବାକୁ ଗଲେ ଅବାକ୍ ଲାଗେ । ଏପରି ଦିନ ଥିଲା ଯେତେବେଳେ ମଣିଷ ନିଜର ଚତୁଃସୀମାରୁ ଟିକିଏ ବାହାରିବାକୁ ଯିବା ଅସମ୍ଭବ ଥିଲା; ତା'ର ଇଲାକାର ବାହାରେ ସବୁ ଜାଗାରେ ଯେପରି ଟଣା ଯାଇଥାଏ "ପ୍ରବେଶ ନିଷେଧ" । ମଣିଷ ତା'ର ନିଜ ଶକ୍ତିରେ ସେ ବାଧାକୁ ଡ଼େଇଁ ପାରିଛି । ପାଣି ବି ଆଉ ମଣିଷ ଆଗରେ ଅଗମ୍ୟ ହେଲା ନାହିଁ ।

## ମଣିଷ କାରିଗର

ଆଜି ଆମ୍ଭମାନଙ୍କର ଚାରିପାଖରେ କେତେ କାରିଗର ଅଛନ୍ତି, ଅକ୍ଳେଶରେ କେତେ ନୂଆ ନୂଆ ଜିନିଷ ତିଆରି କରୁଛନ୍ତି । ଗୋଟିଏ ଯନ୍ତ୍ରରେ ନ ହେଲେ ହଜାର ଯନ୍ତ୍ରର ସାହାଯ୍ୟ ନେଉଛନ୍ତି । କିନ୍ତୁ ଏହି ହଜାର ହଜାର ସୁଯୋଗ ସୁବିଧା ମୂଳରେ ପୂର୍ବ ପୁରୁଷମାନଙ୍କର ସେଇ ସବୁ ଛୋଟ ଛୋଟ ନଗଣ୍ୟ ଯନ୍ତ୍ରପାତିର ଆବିଷ୍କାର ଏବଂ ସେମାନଙ୍କର ବ୍ୟବହାର ରହିଛି ।

ସେହିକାଳର ପ୍ରଥମେ କୁମ୍ଭାରର କଥା ଧର । ପ୍ରକୃତିର ରାଜ୍ୟରେ ଯାର ଅସ୍ତିତ୍ୱ ନ ଥିଲା, ମାଟି ଦେଇ ଏପରି ନୂତନ ଜିନିଷକୁ ସେ ଗଢ଼ିଲା । ଯା' ମଧରେ ରହିଛି ଦୁଇଟା ଦିଗରେ ମଣିଷର ଜୟର ଇତିହାସ; ମାଟି ଏବଂ ନିଆଁ ଦୁଇ ଉପରେ ମଣିଷର କର୍ତ୍ତୃତ୍ୱ ।

ଆଗରୁ ମଣିଷ ନିଆଁ ବ୍ୟବହାର କରିଛି । ନିଆଁ ପୋଇଁ ସେ ସମସ୍ତ ଶରୀର ଗରମ କରୁଥିଲା । ହିଂସ୍ର ଜନ୍ତୁକୁ ତଡୁଥିଲା, ଜଙ୍ଗଲ ପରିଷ୍କାର କରୁଥିଲା । ଡ଼ଙ୍ଗା ତିଆରି କାମରେ ନିଆଁ ଓ କୁରାଢ଼ୀର ସାହାଯ୍ୟ ନେଉଥିଲା । କାଠକୁ କାଠରେ ଘଷିଲେ ଆଲ୍ଲାଦୀନର ଦୈତ୍ୟ ପରି ଅନାୟାସରେ ନିଆଁ ଜଳି ଉଠେ । ମଣିଷ ତାକୁ ମଧ ବାହାର କରିଛି, କିନ୍ତୁ ତା ଉପରେ ମଣିଷ ନିଆଁ ର ସାହାଯ୍ୟରେ ଜିନିଷକୁ ଆଉ ଏକ ଜିନିଷରେ ରୂପାନ୍ତରିତ କରିବାକୁ ଶିଖିଲା । ପୂର୍ବପୁରୁଷଙ୍କର ଏହି ନୂତନ ଆବିଷ୍କାର ଓ ଅପୂର୍ବ ଅଭିଜ୍ଞତାର ଫଳରେ କଳକାରଖାନାରେ ଏବଂ ଘରେ ଘରେ ନିଆଁ ଜଳି ଆଜି କେତେ କାମ ହେଉଛି ।

## ବିହନର ପୁରୁଣା କଥା

ପ୍ରତ୍ନତାତ୍ତ୍ୱିକମାନେ ଗୋଟିଏ ଜାଗା ଖୋଳୁ ଖୋଳୁ ଅନ୍ୟସବୁ ଜିନିସ ସଙ୍ଗେ କେତୋଟି ହାଣ୍ଡି ପାଇଥିଲେ । ସବୁ ହାଣ୍ଡି ଦେହରେ ନାନାପ୍ରକାର ଦାଗ କଟା । ଏଥିରୁ ବୁଝାଯାଏ ସେ କାଳର କୁମ୍ଭାରମାନେ କିପରି ମାଟିର ବାସନ ତିଆରି କରୁଥିଲେ । ଆଗେ ବାଉଁଶର କି କାଠର ଫ୍ରେମ ତିଆରି କରି ତା' ଉପରେ ମାଟି ଲିପି ରଖି ଦିଆଯାଉଥିଲା । ପରେ ନିଆଁରେ ପୋଡ଼ିଲେ ସେ ବାଉଁସ ବା କାଠ ପୋଡ଼ି ଯାଇ ଖାଲି ମାଟି ରହିଯାଉଥିଲା, ଏହି ମାଟିର ବାସନ ଦେହରେ ତେଣୁ ଏହି ସବୁ ଫ୍ରେମ୍‌ର ଚିହ୍ନ ଦାଗ କାଟି ଯାଏ ।

ମଣିଷର ବଂଶଧରମାନେ ଯା' ପରେ ଆଉ ଭାବରେ ବାସନ ତିଆରି କରିବାକୁ ଶିଖିଲେ ମଧ୍ୟ । ସେସବୁର ଦେହରେ ନାନା ଏଆଡୁସିଆଡୁ ଦାଗ କାଟନ୍ତି; କାରଣ ସେମାନଙ୍କର ଧାରଣା ଥିଲା ଗାର ନପକାଇଲେ ସେ ବାସନ ସବୁ କେବେ ଭଲ କାମ ଦେବ ନାହିଁ । ଅନେକ ହାଣ୍ଡି ମିଳିଛି ଯାହା ଦେହରେ କୁକୁରର ଚିତ୍ର ଅଙ୍କା ରହିଛି । ଫ୍ରାନ୍‌ସର କପିଏଁ ସହରରେ ଏପ୍ରକାର ଗୋଟିଏ ହାଣ୍ଡିର ଦେହରେ ଦେଖାଯାଏ ନାନା ବିହନର ଛବି । ଏ ଆବିଷ୍କାର ଫଳରେ ପ୍ରତ୍ନତାତ୍ତ୍ୱିକମାନେ ସେତେବେଳେ ଆନନ୍ଦିତ ହୋଇ ଉଠୁଥିଲେ । ବିହନର ଚିତ୍ର ଯେତେବେଳେ ମିଳିଲାଣି, ସେତେବେଳେ ଅବଶ୍ୟ ମଣିଷ ବିହନ କ'ଣ ଜାଣିଥିଲା ଏବଂ ଚାଷ ବାସ ଶିଖିଥିଲା । ସେହିଠାରେ ସେମାନେ **ଲଟଲଇ** ଆଉ **ପଥରର ଲଙ୍ଗଳ** ମଧ୍ୟ ଖୋଜି ପାଇଲେ । ସେତେବେଳକୁ ଶିକାରୀ ଏବଂ ଧୀବର ତା' ହେଲେ ଚାଷବାସ ଶିଖିସାରିଛି ।

କୂଳର ପ୍ରତ୍ୟେକ ଲୋକହିଁ ଯେ ଶିକାର କରୁଥିଲା ବା ମାଛ ମାରୁଥିଲା ଏକଥା ଯେପରି ତୁମ୍ଭେମାନେ ମନେ ନ କର । ପୁରୁଷମାନେ ଶିକାରରେ ବାହାରି ଗଲେ ସ୍ତ୍ରୀ ମାନେ ଆଉ ଛୋଟ ଛୋଟ ପିଲାପିଲିମାନେ ଟୋକେଇ ନେଇ ବାହାର ହୋଇ ଯାଆନ୍ତି ଏବଂ ଜିନିଷ ଗୋଟେଇ ଆଣନ୍ତି । ଜଙ୍ଗଲରୁ ଫଳମୂଳ, ସମଦ୍ରର ଆର ପାଖରୁ ଶାମୁକା କିଛି ସେମାନେ ଛାଡ଼ନ୍ତି ନାହିଁ ।

ଏ ପ୍ରକାର ଭାବରେ ଘୁରି ଘୁରି ସେମାନେ ମହୁମାଛିର ଫେଣା ଆବିଷ୍କାର କଲେ । ସେତେବେଳେ କି ଆନନ୍ଦ ! ପାହାଡ଼ ଦେହରେ ଅଙ୍କା ଅଛି ଗୋଟିଏ ସ୍ତ୍ରୀ ଲୋକର ମୂର୍ତ୍ତି । ସେ ଗଛରେ ଉଠି ଗୋଟିଏ ହାତରେ ହାଣ୍ଡି ଧରି ଅନ୍ୟ ହାତରେ ତାର ମଝିରେ ମହୁଫେଣାରୁ ମହୁ ଢ଼ାଳୁଚି । ଚାରିଆଡ଼େ ପୁଞ୍ଜାପଞ୍ଜା ମହୁମାଛି; କିନ୍ତୁ ତାହାର ଭୃକ୍ଷେପ ନାହିଁ । ସେଇ

ମହୁ ଆଣି ସେମାନେ ଖାଇକରି ମଉଚ୍ଚ ମଜଲିସରେ ଉଡ଼େଇ ଦେଉ ନ ଥିଲେ । ସେତେବେଳକୁ ମଣିଷ ସଞ୍ଚିବାର ଉପକାରିତା ବୁଝିଚି । ସେ ସେହି ମହୁକୁ ଦୁର୍ଦ୍ଦିନ ଲାଗି ସଞ୍ଚି କରି ରଖିବାକୁ ଶିଖିଚି ।

ସ୍ତ୍ରୀ ଲୋକମାନେ ବାହାରୁ ଅନେକ ଜିନିଷ ଯୋଗାଡ଼ କରି ଆଣୁଥିଲେ । ତାରି ସାଥିରେ ଗୋଟେଇ ଆଣିଥିବା ମଞ୍ଜି କେବେ ଅଜାଣତରେ ମାଟିରେ ଖସି ପଡ଼ିଗଲା । କାଳକ୍ରମେ ସେଥିରୁ ଅଙ୍କୁର ଉଠିଲା । ସେଇ ଅଙ୍କୁରରୁ ହେଲା ଶିଷା । ଫୁଲ ଫୁଟିଲା, ଫଳ ଧରିଲା । ଦେଖି ଶୁଣି ସେମାନେ ଶିଖିଲେ, ମାଟିରେ ମଞ୍ଜି ବୁଣି ଦେଲେ ସେଥିରୁ ଫସଲ ଫଳିପାରେ । ସେତେବେଳେ ପ୍ରଥମେ ଆବିଷ୍କୃତ ହେଲା କୃଷି କାମ । ହଠାତ୍ ଏହାର ଉତ୍‌ପତ୍ତି ! ବୀଜ ବୁଣି ସେଥିରୁ ଗଛ ହେବାରୁ ସେ କାଳର ଲୋକମାନଙ୍କ ମନରେ ନାନା କାହାଣୀ ସୃଷ୍ଟି ହୋଇଥିଲା । ସ୍ୱପ୍ନ ରାଜ୍ୟର ଏକ ସୁନ୍ଦର ତରୁଣ ତରୁଣୀକୁ କେନ୍ଦ୍ରକରି ସେ ସବୁ କାହାଣୀ ରଚନା ହେଉଥିଲା । ସେମାନେ ପାତାଳର ଯମପୁରୀକୁ ଯାଇ ଆଉଥରେ ସେଠାରୁ ଆଶ୍ଚର୍ଯ୍ୟଜନକଭାବରେ ବାହାରି ଆସି ପୃଥିବୀରେ ଜୀବନ ପାଇ ରହିଲେ । ପାତାଳପୁରୀକୁ ଯିବାଟା ହେଲା ଦୁଃଖର, ଆଉ ଆସିବାଟା ହେଲା ସୁଖର । ଆମରି ଦେଶରେ ମଧ୍ୟ ଏପରି ବହୁତ କାହାଣୀ ଅଛି । ବିହନ ବୁଣିଲା ବେଳେ ସେହି ପ୍ରାଚୀନ କାଳର ସ୍ତ୍ରୀଲୋକମାନେ ମନେକରନ୍ତି ଯେ ସତକୁସତ ସେମାନେ କୌଣସି ଦେବତାକୁ ମାଟିରେ ପୋତି ରଖିଛନ୍ତି । ଆଉଥରେ ହେମନ୍ତ କାଳରେ ସେହି ଶସ୍ୟ କାଟିଲେ ସେମାନେ ମନେ କରନ୍ତି ସେହି ଶକ୍ତିକୁ ଯେପରି କେହି ମୁକ୍ତି ଦେଇଛି । ସେଥିଲାଗି ସେମାନେ ସେତେବେଳେ ସେହି ସବୁ ଶସ୍ୟକୁ ଘେରି ନଚାନଚି ଉତ୍ସବ ଆରମ୍ଭ କରିଦିଅନ୍ତି । ସ୍ତ୍ରୀ ଲୋକମାନେ ଫସଲର ସୁଖ୍ୟାତି କରନ୍ତି; ଆଉ ମାତା ବସୁନ୍ଧରାଙ୍କଠାରୁ ବର ମାଗନ୍ତି । ସେମାନଙ୍କ ଉପରେ ସବୁ ସମୟ ଦୟା ଦୃଷ୍ଟି ରଖିବାକୁ ପ୍ରାର୍ଥନା ଜଣାନ୍ତି ।

## ନୂଆ ମଝିରେ ପୁରୁଣା

ବିଂଶ ଶତାବ୍ଦୀର ପ୍ରଥମ ଅବସ୍ଥାରେ ଅନେକ ସ୍ଥାନରେ ଫସଲ କଟା ବେଳେ ସମସ୍ତେ ମିଳିମିଶି ନାଚ ଗାନ କରି ଫସଲ କାଟିବାର ଉତ୍ସବ କରନ୍ତି । ଧାନର ଶିଷା ନେଇ ତହିଁରେ ଲୁଗା ଘୋଡ଼ାଇ ତାକୁ ଘେରି ଗ୍ରାମର ସବୁ ପୁରୁଷ, ସ୍ତ୍ରୀ ନାଚନ୍ତି ଆଉ ଗାନକରନ୍ତି ।

ଫସଲ କଟା ଉତ୍ସବ ପ୍ରଥମ ଚାଷର ଯୁଗଠାରୁ ଚାଲି ଆସିଛି । ସେତେବେଳେ ଏ ସମସ୍ତର ମୂଳରେ ଥିଲା ନାନା ଅଦୃଶ୍ୟ ଶକ୍ତିକୁ ସନ୍ତୁଷ୍ଟ କରିବା ନିମିତ୍ତ ବନ୍ଦନା ଛଳରେ

ଉତ୍ସବ । ଆଜି ଆମ୍ଭମାନେ ସେ ଯାଦୁବିଦ୍ୟାର ଦିଗଟା ଭୁଲିଯାଇ ଆନନ୍ଦର ଦିଗଟାକୁ ଗ୍ରହଣ କରିଥାଇଁ । ଆମ୍ଭ ଦେଶର ହିନ୍ଦୁମାନଙ୍କ ମଧ୍ୟରେ ନବାନ୍ନ ପ୍ରଥା ମଧ୍ୟ ଏହି ରକମ ।

ମଣିଷ ସେତେବେଳେ ପ୍ରାକୃତିକ ନିୟମ ଜାଣୁ ନ ଥିଲା । ଶୀତ ପରେ ବସନ୍ତ, ବସନ୍ତ ପରେ ଗ୍ରୀଷ୍ମ, ଗ୍ରୀଷ୍ମ ପରେ ବର୍ଷା ତା' ପରେ ହେମନ୍ତ ଯେ ଆସିବ ତାହା ସେମାନେ ଜାଣନ୍ତି ନାହିଁ । ପ୍ରତ୍ୟେକ ଥର ବସନ୍ତ ବା ଶୀତ ଦେଖି ସେମାନେ ଅବାକ୍ ହୋଇ ଯାଉଥିଲେ । ଶୀତ ବେଶୀ କଷ୍ଟକର ବୋଲି ସବୁଠୁଁ ଶୀତକୁ ବେଶୀ ଭୟ – ଯେପରି ଶୀତ ଆଉ ଥରେ ନ ଆସେ ସେଥିପାଇଁ ସମସ୍ତେ ବ୍ୟସ୍ତ । ଚାଷୀମାନେ ଚାହୁଥିଲେ ଯେପରି ବର୍ଷା ଶେଷ ନ ହୁଏ । ଏହି କୁସଂସ୍କାରକୁ ହିଁ ଆମ୍ଭେମାନେ ଏ ପର୍ଯ୍ୟନ୍ତ ବଞ୍ଚାଇ ରଖିଚୁ ନାନା ଆମୋଦ ଉତ୍ସବର ଭିତର ଦେଇ ।

ଆଉ ଗୋଟେ ଭାବରେ ମଧ୍ୟ ଆମେ ଏ ସବୁ ବଞ୍ଚାଇ ରଖିଚୁ । ଉତ୍ସବର ଆମୋଦରେ ସାଧାରଣଭାବରେ ଯାହା ଆମ୍ଭେମାନେ କରୁଁ ଓ କହୁଁ, ତାହାକୁ ପୁରୋହିତ ବା ପାଦ୍ରିମାନେ ଧର୍ମର ଆବରଣରେ କରୁଥିଲେ ଏବଂ କହୁଥିଲେ । ସେମାନେ ମଧ୍ୟ ଦେବତାଙ୍କୁ ସନ୍ତୁଷ୍ଟ କରିବା ନିମିତ୍ତ ନାନା ମନ୍ତ୍ର ପଢୁଥିଲେ । ସେ ସବୁ ମନ୍ତ୍ରର ମାନେ କଲେ ଉତ୍ସବ ପ୍ରଭୃତି ଗାନର ଆବେଦନ ନିବେଦନ ହିଁ ବୁଝାଯାଏ । ଅର୍ଥାତ୍ ବର୍ତ୍ତମାନ ବାହାରେ ଯେଉଁ ପୂଜାପାଠ ଆମ୍ଭମାନଙ୍କ ମଝିରେ ରହିଛି – ଧର୍ମ ସେହି କୁସଂସ୍କାରକୁ ବଞ୍ଚାଇ ରଖିଚି ନାନା ଭଣ୍ଡାମି ଦେଇ ।

ସ୍ତ୍ରୀଲୋକମାନେ ଗୋଟିଏ ଦିଗରେ ମାଟି ଖୋଳି ଚାଷୀର ଉଦ୍ୟୋଗ ଆୟୋଜନ କରନ୍ତି, ଆଉ ଅନ୍ୟ ଦିଗରେ ତେଣେ ପୁରୁଷମାନେ ଦିନ ଶେଷରେ ଘରକୁ ଆସନ୍ତି ଶିକାର ସମ୍ଭାର ନେଇ । ସେହି ଶିକାର ଭିତରେ ଅନେକ ସମୟରେ ସେମାନେ ଜୀବନ୍ତ ଜନ୍ତୁ ମଧ୍ୟ ଧରିଆଣନ୍ତି । ଜୀବନ୍ତ ଜନ୍ତୁ ଧରି ପାରିଲେ ସେମାନଙ୍କର ଆନନ୍ଦ ବେଶୀ ହୁଏ । କାରଣ ସେମାନଙ୍କୁ ହଠାତ୍ ନମାରି ଖାଇବା ପିଇବାକୁ ଦେଇ ପୋଷି ରଖିଲେ ପରେ ଦୁର୍ଦ୍ଦିନରେ ମାରି ଖାଇବାର ସୁବିଧା ହୁଏ । ସବୁଠୁଁ ମଜାର କଥା ହେଉଛି ଯେ ଏମାନଙ୍କୁ ବଞ୍ଚାଇ ରଖିବା ଅର୍ଥ ଭବିଷ୍ୟତରେ ଆଉ ବେଶି ମାଂସ ପାଇବାର ଆଶା । ପ୍ରଥମେ ପ୍ରଥମେ ଲୋକେ ମାଂସ ଲାଗି ଏସବୁ ପଶୁ ପାଳୁଥିଲେ । ତେଣୁ ଦିନେନା ଦିନେ ସେମାନଙ୍କୁ ମାରି ଖାଉଥିଲେ । କିନ୍ତୁ ବଞ୍ଚାଇ ରଖିଲେ ଯେ ଆଉ ବେଶି ଉପକାରରେ ଲାଗେ ସେ କଥାଟା ସେ ପର୍ଯ୍ୟନ୍ତ ମଣିଷକୁ ଧରା ଦେଇ ନାହିଁ । ଗୋଟାଏ ଗୋରୁ ମାରି ସମସ୍ତେ ମିଳି ଥରେ ଖାଲି ଖାଇ ପକାଉଥିଲେ । ମାତ୍ର ଗୋଟେ ଗାଈର ଦୁଧ କେତେ ଥର ଖିଆ ଯାଇପାରେ ।

ଅବଶ୍ୟ ଯେତେଦିନ ସେହି ଗାଈ ଦୁଧ ଦିଏ । ଭେଡ଼ୀର କ୍ଷେତ୍ରରେ ମଧ ସେଇୟା । ଲାଳନପାଳନ କଲେ ସେହି ଭେଡ଼ୀର ବଂଶ ବୃଦ୍ଧି ଯୋଗୁଁ ମଣିଷମାନଙ୍କର ଅସୁବିଧା ହେବ ନାହିଁ ।

କିନ୍ତୁ ଏଥିରୁ ଆରମ୍ଭ ହେଲା ଆଉ ଏକ ଜୀବନଯାତ୍ରା । ଶିକାରୀର ଜୀବନ ଛାଡ଼ି ରଖୁଆଳର ଜୀବନ । ଏଥର ମଣିଷର ପ୍ରୟୋଜନ ହେଲା ଗୋଚର ଜମି । ଜଙ୍ଗଲ କାଟି କ୍ଷେତ ଖମାର ତିଆରି କରିବାକୁ ହେଲା । ହଜାର ରକମ ବାଧା ବିପତ୍ତି ଅତିକ୍ରମ କରିବା ପରେ ମଣିଷ ବିଜୟୀ ହେଲା । ଚାଷ ଭିତରେ ଯେପରି ଆନନ୍ଦ ଥିଲା ସେପରି ଦୁଃଖ ମଧ କମ୍ ନ ଥିଲା । ବେଶୀ ଖରାରେ ଚାରା ଗଛ ପୋଡ଼ିଯାଇ ପାରେ, ଅତି ବୃଷ୍ଟିରେ ଶସ୍ୟ ବିହନ ଧୋଇ ଭାସି ଯାଇ ପାରେ ।

ଆହୁରି ଆଦିମ ମଣିଷ ମାଂସ ଲାଗି ବାଇସନର ଆରାଧନା କରୁଥିଲେ । ଆହୁରି ଆଦିମ ଚାଷୀକୂଳ ପୃଥିବୀର, ସୂର୍ଯ୍ୟର, ବରୁଣର ପୂଜା ଆରମ୍ଭ କଲେ । କହିବା ବାହୁଲ୍ୟ ଭଲ ଶସ୍ୟ ପାଇବା ପାଇଁ ଏ ସବୁ ଅନୁଷ୍ଠାନ । ଏମାନେ ହିଁ ଆଲୋକ ଦିଅନ୍ତି, ବୃଷ୍ଟି ଆଣନ୍ତି, ବିଦ୍ୟୁତ୍‌ର ଚମକ ଆଣନ୍ତି, ଏମାନଙ୍କୁ ନେଇ ମଣିଷ ନୂତନ ନୂତନ ଦେବତା ତିଆରି କଲା । ଏ ସବୁ ଦେବତା ମଣିଷ ପରି ରୂପ ନେଇ ଥାଆନ୍ତି ଏବଂ ସେମାନଙ୍କର ନାମକରଣ ହେଲା ସୂର୍ଯ୍ୟ, ବରୁଣ, ଇନ୍ଦ୍ର । ଦୈତ୍ୟ ପରି ପରାକ୍ରମଶାଳୀ ହେଲେ ବି ମଣିଷ ଏ ପର୍ଯ୍ୟନ୍ତ ନିଜର ଶକ୍ତି ସମ୍ବନ୍ଧରେ ସେପରି ସଚେତନ ନ ଥିଲା । ଆଗ ପରି ସେ ଏକ୍ଷଣି ମଧ ମନେକରେ ଯେ ଦେବତାମାନେ ତାକୁ ଖାଇବାକୁ ଦେଉଛନ୍ତି । ନିଜର ଶକ୍ତିରେ ସେ କିଛି କରିପାରନ୍ତା ନାହିଁ, ଏହା ଥିଲା ତାର ଭ୍ରାନ୍ତ ଧାରଣା ।

**ତିନି ହଜାର ବର୍ଷ ପରେ**

ମନେକର, ଆମ୍ଭେମାନେ ଏହା ଭିତରେ ତିନି ହଜାର ବର୍ଷ କାଟି ଆସିଥାଇଁ । ଚାଳିଶ ଶତାବ୍ଦୀର ଆଗ କଥା କହୁଚି । ସେଥିପାଇଁ ଆଶ୍ଚର୍ଯ୍ୟ ହୁଅ ନାହିଁ । ଆମ୍ଭେମାନେ କୌଣସି ବିଶେଷ ଯୁଗର ବିଶେଷ ମଣିଷ କଥା ଏକ୍ଷଣି ଆଲୋଚନା କରୁ ନଥାଇଁ । ସମଗ୍ର ମଣିଷର ସମାଜ ହେଉଚି ଆମର ଆଲୋଚନାର ବିଷୟ । ସେହି ମଣିଷ ସମାଜର ବୟସ ସେତେବେଳେ ଧର ଦଶ ଲକ୍ଷ ବର୍ଷ । ତା' ଲାଗି ଚାଳିଶ ଶତାବ୍ଦୀଟା ଏମିତି କଣ ବଡ଼ କଥା !

ଯା’ ଭିତରେ ଏ ବସୁନ୍ଧରା ଏବଂ ଜଗତର ଆହୁରି କେତେ ପରିବର୍ତ୍ତନ ହୋଇଛି । ଯେଉଁଠି ଖାଲି ଗହନ ଜଙ୍ଗଲ ଥିଲା ସେ ଜାଗା ଏକ୍ଷଣି ପରିଷ୍କାର ସଫା । ମଝିରେ ମଝିରେ ଦୁଇ ବିରାଟ ଜଙ୍ଗଲ ମଧ୍ୟରେ ଖୋଲା ପଡ଼ିଆ ଦେଖାଯାଏ । ନଦୀ ଓ ହ୍ରଦର ତୀର କ୍ରମଶଃ ବେଶୀ ଚଉଡ଼ା ହୋଇଛି । ଆଉ ନଦୀର ବାଙ୍କରେ ପାହାଡ଼ ଦେହରେ ହଳଦିଆ ରୁମାଲ ପରି ଏ ସବୁ କଣ ? ମଣିଷର ହାତରେ ଚାଷ ହୋଇଛି ଖଣ୍ଡେ ଖଣ୍ଡେ ଭୂଇଁ । କ୍ଷେତର ମଝିରେ ମଝିରେ ଦେଖ ସ୍ତ୍ରୀ ଲୋକମାନେ ନଇଁ ପଡ଼ି କାମରେ ଲାଗିଛନ୍ତି । ବହୁ ଆଗରୁ ଆମେ ହାତୁଡ଼ିର ପରିଚୟ ପାଇଥାଇଁ । ଏଥରକ ଆସିଲା ଦାଆ । ଆଜିର ଦାଆଠାରୁ ଏ ଦାଆ କେତେ ଆକାଶ ପାତାଳ ପ୍ରଭେଦ । ଏ ଦାଆ ହେଉଚି ପଥରରେ ତିଆରି । ଏ ପର୍ଯ୍ୟନ୍ତ ମଣିଷ ବାଲୁଙ୍ଗା ଓପାଡ଼ିବା ଶିଖି ନାହିଁ । ତେଣୁ ବିଲରେ ବାଲୁଙ୍ଗା ଭର୍ତ୍ତି ହୋଇ ରହିଛି । ଦୂରରେ ଶାଗୁଆ ପଡ଼ିଆରେ ଚରୁଛନ୍ତି ଧଳା, ଲାଲ ଆଉ ହଳଦିଆ ରଙ୍ଗର ଗୋରୁ ମେଣ୍ଢାର ପଲ ।

କ୍ଷେତ ଏବଂ ପଶୁପାଳନ । ତେବେ ନିଶ୍ଚୟ ପାଖରେ ମଣିଷର ବସବାସ ଅଛି । ସତକୁସତ ଦେଖ – ନଦୀ କୂଳରେ ଉଞ୍ଚ ଜାଗାରେ ମଣିଷର ଘରବାଡ଼ି ରହିଛି । ଏତେଦିନ ପରେ ଆମେ ସତକୁସତ କାଠ ଘରର ସନ୍ଧାନ ପାଇଲେଇଁ । କାନ୍ଥରେ ମାଟି ଲିପା, ଦରଜାର ସାମନାରେ ଷଣ୍ଢର ପ୍ରତିମୂର୍ତ୍ତି ଅଙ୍କା । ସେ ଯେପରି ଏ ଘରର ରକ୍ଷା କର୍ତ୍ତା । ସେଇ ବସତି ଘେରି ରହିଛି ଉଞ୍ଚ ବାଡ଼ ଆଉ ବନ୍ଧ । ବନ୍ଧରେ କିଛି ଗଛ ପତ୍ର ନାଇଁ । ଉଠୁଛି ଚାରିଦିଗରୁ ଧୂଆଁ ଆଉ କଞ୍ଚା ଦୁଧର ଗନ୍ଧ । ଶିଶୁମାନେ ବସତିର ଚାରିଆଡ଼େ ଖେଳୁଛନ୍ତି । ଘୁଷୁରି ପଲ କାଦୁଅ ଖୋଳୁଛନ୍ତି । ବୁଢ଼ୀମାନେ ଉହ୍ଲେଇରେ ରୁଟି ସେକୁଛନ୍ତି । ଗରମ ପାଉଁସ ଉପରେ ରୁଟି ଫୋପାଡ଼ି ଦେଇ ତା ଉପରେ ମାଟିର ବାସନ ଚାପା ଦେଉଛନ୍ତି । ସେମାନଙ୍କ ପାଖରେ ରାନ୍ଧଣାର ସବୁ ସାଜ ସରଞ୍ଜାମ ପ୍ରସ୍ତୁତ ହୋଇ ରହିଛି ।

ସେହି ନଦୀ ବାଟେ ବାଟେ ଆଗକୁ ଗଲେ ତା’ର ଉତ୍ପତ୍ତି ସ୍ଥାନ ହ୍ରଦ ଦେଖିବାକୁ ମିଳିବ । ସେଠି ଆହୁରି ଜନବସତି । ଏଠାର ଲୋକମାନେ ନଦୀ ଭିତରେ ମଞ୍ଚା ବାନ୍ଧି ରହିଛନ୍ତି । ମାଛ ଧରିବା ସେମାନଙ୍କର ପ୍ରଧାନ ଜୀବିକା । କିନ୍ତୁ ଖାଲି ମାଛ ଉପରେ ନିର୍ଭର କରି ସେମାନେ ଚଳନ୍ତି ନାହିଁ ।

ଏତେଦିନ ତଳର ଇତିହାସ କ’ଣ କିଏ ଲେଖିଚି ? ମଣିଷ ତ ସେ ପର୍ଯ୍ୟନ୍ତ ଲେଖା ଶିଖି ନାହିଁ, ଆମେ ଜାଣିଲେ କିପରି ? ନଦୀ ଏବଂ ହ୍ରଦ ମଝିରେ ମଝିରେ ଲିଭିଯାଆନ୍ତି ଏବଂ ଦୂରକୁ ଘୁଞ୍ଚି ଯାଆନ୍ତି କିନ୍ତୁ ଛାଡ଼ି ଯାଆନ୍ତି ଏ ସବୁର ପ୍ରମାଣ ।

ଇଉରୋପର ସୁଇଜରଲ୍ୟାଣ୍ଡ ଦେଶକୁ ତୁମ୍ଭେମାନେ ଜାଣ । ତାକୁ ପୃଥିବୀର ଖେଳ ପଡ଼ିଆ କହନ୍ତି । ବହୁତ ହ୍ରଦ ଏବଂ ସୁନ୍ଦର ପାହାଡ଼ ପାଖକୁ ପାଖ ଲାଗି ଯେପରି ଧୀରେ ଧୀରେ କଥା କହନ୍ତି ସେଇ ଦେଶରେ । ସେହି ସୁନ୍ଦର ଦେଶରେ ମଧ ବର୍ଷେ ଭାରୀ ମରୁଡ଼ି ପଡ଼ିଲା । ପ୍ରାୟ ସବୁ ହ୍ରଦର ପାଣି ଶୁଖି କାଦୁଅ ବାହାରି ପଡ଼ିଲା । ଜୁରିକ୍ (Zurich) ହ୍ରଦ କୂଳରେ ଓ ବେରମାଇଲେନ୍ ସହରର ଲୋକମାନେ ଏହି ସୁଯୋଗରେ କିଛି ଜମି ଉଦ୍ଧାର କରିବାରେ ଲାଗିଲେ । ଦଳ ଦଳ ଲୋକ ସେଠୁଁ ମାଟି ଖୋଳିବାକୁ ଆରମ୍ଭ କଲେ । କିନ୍ତୁ କିଛି ବାଟ କାମକଲା ପରେ ସେମାନଙ୍କର କୋଦାଳରେ ଲାଗିଲା ଅଧପଚା ଗୋଟିଏ ସ୍ତୂପ । କ୍ରମେ ଗୋଟିଏ ପରେ ଗୋଟିଏ ବହୁ ସ୍ତୂପ ବାହାର ହେବାକୁ ଲାଗିଲା ଏବଂ ସେଥିରୁ ବାହାରିଲା ଅସୁମାରି ଯନ୍ତ୍ରପାତି ।

ଡ଼ାକ ପ୍ରତ୍ନତାତ୍ତ୍ୱିକମାନଙ୍କୁ । ଦେଖୁଁ ଦେଖୁଁ ସବୁ କଥାର ଖୁଣ୍ଟିନାଣ୍ଟି ଆଲୋଚନା ହେଲା । ଆମ୍ଭେମାନେ ଜାଣି ପାରିଲେଇଁ ଯେ ମଣିଷ ସେଠାରେ ଦିନେ ଏହି ଭାବରେ ବସବାସ କରୁଥିଲା । ତାହାର ଧ୍ୱଂସାବଶେଷ ଏଗୁଡ଼ିକ ।

ସେହି ଧ୍ୱଂସ ସ୍ତୂପ ଭିତରୁ ଅନେକ ଜାଗାରେ ପୋଡ଼ା କାଠ ମଧ ମିଳିଥିଲା । କାହିଁକି ? ଏହାର ଉତ୍ତର ତୁମେ ମଧ ଦେଇ ପାରିବ । ବଢ଼ିରେ କେତେ ମାଟି ଅତଡ଼ା ଖାଇ ପଡ଼ିଯାଏ ବୋଲି ମଣିଷ ପାଣିକୁ ଭୟ କରୁଥିଲା । କାଠର ଘରବାଡ଼ି ହେଲା ପରେ ମଣିଷ ନିଆଁକୁ ଭୟ କଲା । କୌଣସି ଏକ ଅସତର୍କ ମୁହୂର୍ତ୍ତରେ ନିଆଁ ଲାଗି ଗୋଟାଏ ବସ୍ତି ପୋଡ଼ି ଛାରଖାର ହୋଇଗଲା । ସମସ୍ତ ଘର ଦ୍ୱାର ହୁଏତ ପୋଡ଼ି ଜଳି ଭାଙ୍ଗିପଡ଼ିଲା । ପାଣିରେ ପଡ଼ିବା ସଙ୍ଗେ ସଙ୍ଗେ ନିଆଁ ଲିଭିଗଲା । ପୋଡ଼ା କୋଇଲାରେ ଢଙ୍କା ଥିଲା ବୋଲି ସେହି କାଠର ଜିନିଷପତ୍ର ପୋଡ଼ିଯାଇ ନାହିଁ । ତେଣୁ ପ୍ରତ୍ନତାତ୍ତ୍ୱିକମାନେ ପ୍ରାୟ ସମସ୍ତ ଜିନିଷପତ୍ର ନିଖୁଣ ଭାବରେ ପାଇପାରିଥିଲେ ।

- ୦ -

# ତନ୍ତ ଆସିଲା

ପ୍ରଥମ ବୁଣା ଲୁଗା କିନ୍ତୁ ତନ୍ତରୁ ଆସି ନାହିଁ – ହାତରେ ବୁଣା । ଆଜିପର୍ଯ୍ୟନ୍ତ ଏସ୍କିମୋମାନେ ହାତରେ ଲୁଗା ବୁଣନ୍ତି, ତନ୍ତରେ ନୁହେଁ । ଲମ୍ବା ଫ୍ରେମ୍ ଭିତରେ ସେମାନେ ସୂତା ଟାଣି ଦେଇ ତା'ର ଉପରେ ଏବଂ ତଳେ ଛୋଟ ସୂତାର ଭରଣୀଦେଇ ସେମାନେ ଲୁଗା ବୁଣନ୍ତି । ହ୍ରଦର ତଳୁ ମିଳିଥିଲା ଦରପୋଡ଼ା ଲେଙ୍କଡ଼ା ଛିଣ୍ଡାକନା । ସେଥିରୁ ଆମ୍ଭେମାନେ ଜାଣିପାରିଲୁ ସେତେବେଳେ ମଣିଷ ଆଉ ଜନ୍ତୁଜାନୁଆରର ଛାଲରେ ଦେହ ଢ଼ାଙ୍କୁ ନ ଥିଲା । ସେ ଲୁଗା ବୁଣିବା ଶିଖି ନେଲାଣି ।

ଛଣପଟର ଗଛ ବଡ଼ ହେଲେ ସ୍ତ୍ରୀଲୋକଙ୍କର ଖଟଣି ଆହୁରି ବଢ଼ିଯାଏ । ସେହି ଛଣପଟ ଗଛ କାଟି ପାଣିରେ ଭିଜାଇ ସେଥିରୁ ସୂତା ବାହାର କରିପାରିଲେ ଯାଇ ସେମାନଙ୍କର ରକ୍ଷା । ଖଟଣି ଥିଲା ବେଶୀ, କିନ୍ତୁ ଲୁଗା ବୁଣା ହୋଇଗଲେ ସେମାନଙ୍କର ଆନନ୍ଦ ଦେଖେ କିଏ ?

**ପ୍ରଥମ ଖଣିକର ଏବଂ ଧାତୁକର**

ଆଜି ଆମରି ପ୍ରତି ଘରେ ଏପରି ଅନେକ ଜିନିଷ ପତ୍ର ଅଛି ଯାହା ଠିକ୍ ଏପରି ଅବସ୍ଥାରେ ପ୍ରକୃତିର ରାଜ୍ୟରେ ମିଳେ ନାହିଁ । କାଗଜ, ଇଟା, ଚିନା ମାଟିର ବାସନ କେଉଁଟା ଆପଣା ଛାଏଁ ସିଧାସଳଖ ଆମେ ପାଇଛୁ ? ପ୍ରାକୃତିକ ଅବସ୍ଥାରେ ଯେଉଁ ସବୁ ଜିନିଷ ମିଳେ ତାକୁ ନେଇ ଏପରି ଭାବରେ ମଣିଷ ତା'ର ରୂପ ବଦଳାଇ ଦିଏ ଯେ ତାକୁ ଚିହ୍ନିବା ମୁସ୍କିଲ । ଚକ୍ ଚକ୍ ଚିନା ମାଟିର ବାସନ ଦେଖିଲେ କିଏ କହିବ ତାହା କାଦୁଅରୁ ତିଆରି ବୋଲି ?

କିନ୍ତୁ ଯେଉଁ ମଣିଷ ଯୁଗ ଯୁଗ ଧରି ପଥରର କାମ କରି ଆସିଥିଲା ସେ ହଠାତ୍ କେଉଁ ଧାତୁର ଅସ୍ତ୍ର ତିଆରି କରିବାକୁ ଶିଖିଲା ? ଆମ୍ଭମାନଙ୍କ ଆଖିରେ ରାସ୍ତାଘାଟରେ ଆଜି ଅଜସ୍ର ତମ୍ବା ଖଣ୍ଡ ପଡ଼ିନାହିଁ ଯେ ଆମେ କହିପାରିବା ସେଗୁଡ଼ାକ ଏତେ ମିଳୁଥିଲା ଯେ ମଣିଷ ତାକୁ ନେଇ ପ୍ରଥମେ ପଥର ଛାଡ଼ି ଧାତୁ ଅସ୍ତ୍ର ତିଆରି କଲା । କିନ୍ତୁ ଏକଥା ସତ । ଏକ୍ଷଣି ନଜରରେ ନ ପଡ଼ିଲେ ବି ସେକାଳରେ ତମ୍ବା ପ୍ରଚୁର ମିଳୁଥିଲା । ତେଣୁ ତମ୍ବା ହେଲା ମଣିଷର ପ୍ରଥମ କାର୍ଯ୍ୟୋପଯୋଗୀ ଧାତୁ ।

କ୍ରମେ କ୍ରମେ ବେଶୀ ବେଶୀ ବ୍ୟବହାର ଫଳରେ ପଥର ମିଳିଲା ନାହିଁ । ମାଟି ଖୋଳି ପଥର ବାହାର କରିବାକୁ ପଡ଼ିଲା । ପଥର ଖୋଳା ଚାଲିଲା । ଚକ୍‌ଖଡ଼ି ଆଉ ପଥର ପାଖେ ପାଖେ ମିଳେ । ଏକଥା ମାଟିର ତତ୍ତ୍ୱ ଜାଣୁଥିବା ଲୋକେ କହିପାରିବେ । ସେହି ସମୟରେ ତିରିଶ ଫୁଟ, ବେଳେ ବେଳେ ଷାଠିଏ ଫୁଟ ଗଭୀର ଖାତରୁ ମଣିଷ ପ୍ରୟୋଜନ ଅନୁସାରେ ପଥର ଯୋଗାଡ଼ କରୁଥିଲା । ସେଥିରେ ବି ବହୁ ହଇରାଣ ହରକତ ଥିଲା । ଦେହରେ ଦଉଡ଼ି ବାନ୍ଧି ତଳକୁ ଯିବାକୁ ହେଉଥିଲା । ଖଣି ଭିତରେ ଖାଲି ଅନ୍ଧାର । ଖାତ ଯେ କେତେବେଳେ ଧସିଯିବ ତାର କିଛି ଠିକଣା ନାହିଁ ।

ସେଥିପାଇଁ ବ୍ୟସ୍ତ ହୋଇ ମଣିଷ ଭାବିବାକୁ ଲାଗିଲା ପଥର ନହେଲେ କଅଣ ଚଳିବ ନାହିଁ । ସେତିକିବେଳେ ତା'ର ଆଖିରେ ପଡ଼ିଲା ଚାରିପାଖରେ ଶାଗୁଆ ରଙ୍ଗର ଗୋଟାଏ ଜିନିଷ ବିଞ୍ଚି ହୋଇ ରହିଲା ପରି ରହିଚି । ଏହି ସବୁ ଶାଗୁଆ ଜିନିସ ହେଉଛି ତମ୍ବା । ଗୋଟାଏ ବଡ଼ ତମ୍ବାର ଖଣ୍ଡ ଧାତୁ ନେଇ ମଣିଷ ହାତୁଡ଼ି ପିଟି ତାକୁ ଲମ୍ବା କରିବାରେ ଲାଗିଲା । ଯେତେ ପିଟେ ତାହା ତେତେ ଲମ୍ବା, ଶକ୍ତ ଓ ଚେପା ହୋଇଯାଏ । ସେତେବେଳେ ନିଆଁରେ ଏ ତମ୍ବାକୁ ତରଳାଇବାର ଚେଷ୍ଟା ହୁଏତ କରାଯାଇଥିଲା । ନିଆଁରେ ତରଳି ଶାଗୁଆ ତମ୍ବାର ଢ଼ାଲ ଜାଗାରେ ମିଳିଲା ସୁନ୍ଦର ଲାଲ୍ ଧାତୁ । ଅବାକ୍ ହୋଇ ମଣିଷ ଚାହିଁଲା ଶାଗୁଆ ତମ୍ବାର ଢ଼ାଲ ଲାଲ୍ ଧାତୁ ହୋଇଗଲା । ଏ ନିଆଁରେ କିଛି ଭୂତପ୍ରେତ ନିଶ୍ଚୟ ଅଛି । ନିଆଁ ଦେବତା ଏସବୁ ତିଆରି କରି ଦେଲା ବୋଲି ମଣିଷ ମନରେ ଏକ ଅଦ୍ଭୁତ ଧାରଣା ଆସିଲା । ତା' ପରେ ସେହି ତମ୍ବାଖଣ୍ଡରୁ ମଣିଷ ନୂତନ ଯନ୍ତ୍ରପାତି ସବୁ ଗଢ଼ିବାରେ ଲାଗିଲା । ଏ ସବୁର କୃତିତ୍ୱ କିନ୍ତୁ ଥିଲା ମଣିଷର ପ୍ରାପ୍ୟ ।

### ଶ୍ରମ ପଞ୍ଜି

ମଣିଷର ଇତିହାସକୁ ବିଭିନ୍ନ ସ୍ତରରେ ଭିନ୍ନ ଭିନ୍ନ ନାମ ଦିଆଯାଇଛି । 'ପୁରୁଣା ପ୍ରସ୍ତର ଯୁଗ', 'ନୂତନ ପ୍ରସ୍ତର ଯୁଗ' 'ତାମ୍ର ଯୁଗ' 'କଂସା ପିତ୍ତଳ ଯୁଗ' ଇତ୍ୟାଦି । ଏଗୁଡ଼ିକ ବର୍ଷ ଅନୁସାରେ ହିସାବ ନୁହେଁ; ଶତାବ୍ଦୀ ନୁହେଁ । ଏଗୁଡ଼ିକ ରାଜା ସମ୍ରାଟଙ୍କର ଗଦି ଅନୁସାରେ 'ମୌର୍ଯ୍ୟ ଯୁଗ' ବା 'ଗୁପ୍ତ ଯୁଗ' ନୁହେଁ । ଏ ସବୁ ମଣିଷର ପରିଶ୍ରମ ଅନୁସାରେ ତିଆରି – ଶ୍ରମପଞ୍ଜି । ଏଥିରେ ଆମ୍ଭେମାନେ ଜାଣିପାରୁଁ ଯେ ମଣିଷ କେତେବେଳେ ଉନ୍ନତିର କେଉଁ ସ୍ତରରେ ଥିଲା ।

ସବୁସ୍ଥାନରେ ମଣିଷର ଉନ୍ନତିର ମାତ୍ରା ସମାନ ନୁହେଁ । ତେଣୁ ବିଭିନ୍ନ ଯୁଗ କେଉଁ କେଉଁ ଦେଶ ବିଦେଶରେ ଘଟିଥିଲା ଏବଂ କେଉଁ ଦେଶରେ ଆଗର ଯୁଗର ପ୍ରଭାବ ବିଦ୍ୟମାନ

ରହିଥିଲା । ବର୍ତ୍ତମାନ କାଳରେ ମଧ୍ୟଅଷ୍ଟ୍ରେଲିଆର ନାନା ଜାଗାରେ ପ୍ରସ୍ତର ଯୁଗର ପ୍ରଭାବ ଦେଖିବାକୁ ମିଳେ ।

ଅପେକ୍ଷାକୃତ ଉନ୍ନତ ଦେଶର ଲୋକେ ଆଉ ଦେଶର ଲୋକଙ୍କ ସାଙ୍ଗରେ ଜିନିଷ ପତ୍ର ଅଦଳବଦଳ କରୁଥିଲେ । ଜିନିଷ ପତ୍ର ସାଙ୍ଗେ ସାଙ୍ଗେ ସେମାନେ ପରସ୍ପରର ଅଭିଜ୍ଞତା ମଧ୍ୟ ବିନିମୟ କରୁଥିଲେ । ଏମାନେ ଯାହା ଜାଣନ୍ତି ନାହିଁ ତାହା ସେମାନଙ୍କ ଠାରୁ ଜାଣି ନିଅନ୍ତି ଅଥବା ଏମାନେ ଯାହା ଶିଖି ଅଭିଜ୍ଞ ହୋଇଛନ୍ତି ସେମାନେ ତାହା ଶିଖାଇ ଦିଅନ୍ତି । ଅର୍ଥାତ୍ ବିନିମୟ ବଜାରକୁ ଆସି ପରସ୍ପରର ଜ୍ଞାନ ଏବଂ ଅଭିଜ୍ଞତାର ଦିଆନିଆ ଆରମ୍ଭ ହୋଇଗଲା । ବିନିମୟ କରିବାକୁ ଆସିଲାବେଳେ ମନର ଭାବ ପ୍ରକାଶର ପ୍ରୟୋଜନୀୟତା ଦେଖାଦେଲା ଏବଂ ଧୀରେ ଧୀରେ ନାନା ଭାଷାର ମିଶ୍ରଣ ହେବାକୁ ଲାଗିଲା । ନିଜର ଦେବଦେବୀମାନଙ୍କ ସାଙ୍ଗେ ବିଦେଶୀ ଦେବଦେବୀ ମାନଙ୍କୁ ପୂଜାର୍ଚ୍ଚନା କରିବା ଆରମ୍ଭ ହେଲା । ପୁରାକାଳର ନାନା ଜାତିର ଇତିହାସ ଆଲୋଚନା କଲେ ଏହାର ସତ୍ୟତା ପ୍ରମାଣିତ ହେବ । ବ୍ୟାବିଲନିୟମାନଙ୍କର ତାମୁଜ (Tamuj) ଏବଂ ମିଶରର ଓସିରିସ (Osiris) ଏବଂ ଗ୍ରୀସର ଆଡ଼ୋନେସ୍ (Adonais) ବିଭିନ୍ନ ନାମର ଏକ କୃଷିର ଦେବତା । ମାନଚିତ୍ର ଦେଖିଲେ ଆମ୍ଭେମାନେ ବାହାର କରିପାରିବା ଦେବଦେବୀମାନେ କିପରି ଗୋଟିଏ ଦେଶରୁ ଅନ୍ୟ ଦେଶକୁ ଆସନ୍ତି । ଇହୁଦୀମାନଙ୍କର ଦେଶ ସିରିଆରୁ ଏଡ଼ୋନିସ ଗ୍ରୀସ୍ କୁ ଯାଇଛନ୍ତି । ଏଡ଼ୋନିସ୍ ନାମଟି ହିଁ ତାହାର ପ୍ରମାଣ, ଇହୁଦୀ ଭାଷାରେ ଏଡ଼ୋନିସ୍ ନାମର ଅର୍ଥ 'ମହାଶୟ' । ଗ୍ରୀକମାନେ ସେହି ଅର୍ଥ ନବୁଝି ଶବ୍ଦଟାକୁ ଏକ ବିଶେଷ ଦେବତାର ନାମରେ ଚଳାଇଦିଅନ୍ତି । ଏହି ଭାବରେ ଜିନିଷପତ୍ର, ଭାଷା ଓ ଧର୍ମର ଆଦାନ ପ୍ରଦାନ ହୋଇଥାଏ ।

ସବୁ ସମୟରେ କିନ୍ତୁ ଏହି ଆଦାନ ପ୍ରଦାନ ନିର୍ବିବାଦରେ ହୁଏ ନାହିଁ । ଆଗନ୍ତୁକ ଦଳ ଜୋର କରି ଜିନିଷ ପତ୍ର ଆଦାୟ କରିପାରିଲେ, ବଦଳରେ କିଛି ଦେବାକୁ ଚାହାନ୍ତି ନାହିଁ । ବ୍ୟବସାୟ ଚିରକାଳ ଧପ୍ପାବାଜୀ; କିନ୍ତୁ ସେତେବେଳେ ସେଟା ଖୋଲାଖୋଲି ଲୁଟତରାଜ ବ୍ୟାପାର ଥିଲା । ତେଣୁ ସେତେବେଳେ ସବୁ ଗ୍ରାମ ଦୁର୍ଗ ପରି ଆତ୍ମରକ୍ଷାର ବ୍ୟବସ୍ଥା କରୁଥିଲେ ।

ଅପରିଚିତ ଲୋକଙ୍କୁ ସମସ୍ତେ ସନ୍ଦେହ କରୁଥିଲେ । ତାକୁ ମାରିବା କିମ୍ବା ତା'ର ସମ୍ପତ୍ତି ଲୁଟି କରିନେବା ପାପ ବୋଲି ଗଣା ଯାଉ ନଥିଲା । ସବୁ କୁଳର ଲୋକ କେବଳ ନିଜ ଲୋକଙ୍କୁ ମଣିଷ ବୋଲି ମଣୁଥିଲେ । ଆଉ କାହାକୁ ମଣିଷ ବୋଲି ଗଣିବାକୁ

ସେମାନେ ଘୃଣା କରୁଥିଲେ । ନିଜ ବେଳକୁ ସେମାନଙ୍କର ନାମ ହେଉଥିଲା – ''ସୂର୍ଯ୍ୟବଂଶ,'' ''ଚନ୍ଦ୍ରବଂଶ'' – ଅନ୍ୟ ବେଳକୁ ନାଁ ନାନା କୁତ୍ସିତ ଧରଣର ! ଆମେରିକାର ଦୁଇଟା କୂଳର ଏପରି ଅଦ୍ଭୁତ ନାମ ମିଳେ ଲୋକେ ଆପଣା ଆପଣାକୁ ଦେଇନାହାନ୍ତି ! 'ଧୂଳିଆ ନାକ' Dusty nose ଆଉ 'ଶଇତାନ୍' Crooke folk ! ସେ କାଳର ବର୍ଣ୍ଣବିଦ୍ୱେଷ ଯେ ଆଜି ଜଗତରୁ ଲିଭିଯାଇଛି ଏକଥା ନୁହେଁ । ଆଜି ଜଗତ ଏତେ ଆଗେଇ ଗଲେ ମଧ ମଣିଷ ମଣିଷକୁ ଏ ପର୍ଯ୍ୟନ୍ତ ହିଂସା କରେ । ଏପର୍ଯ୍ୟନ୍ତ ବହୁ ଜାତି ମନେକରନ୍ତି ଯେ ଜଗତରେ ସେମାନେ ସବୁଠୁଁ ଉଚ୍ଚରେ । ଅନ୍ୟମାନେ ଅସଭ୍ୟ କିମ୍ବା କମ୍ ସଭ୍ୟ । ଆଜି ମଧ ଆମ ଦେଶରେ ଉଚ୍ଚ ବର୍ଣ୍ଣ ହିନ୍ଦୁମାନେ ନିଜକୁ ଉଚ୍ଚ ମନେକରି ଅନୁନ୍ନତ ଜାତି ଓ ଉପଜାତିମାନଙ୍କୁ ଘୃଣାରେ ଦେଖନ୍ତି । ଅନେକଙ୍କର ସେମାନଙ୍କୁ ଛୁଇଁଲେ ମଧ ଜାତି ଯାଏ । ଠିକ୍ ଏପରି ମନୋଭାବ ନେଇ ନାତ୍‌ସୀ ଜର୍ମାନୀ ଆମ୍ଭମାନଙ୍କୁ ଖାଣ୍ଟିଭାବରେ ଅସଭ୍ୟ ବୋଲି ନାମ ଦେଇଥିଲେ । ଆମେରିକା ଲୋକେ ନିଗ୍ରୋମାନଙ୍କୁ ମଣିଷ ବୋଲି ମର୍ଯ୍ୟାଦା ଦିଅନ୍ତି ନାଇଁ ।

ଇତିହାସ ଆମ୍ଭମାନଙ୍କୁ ଶିକ୍ଷା ଦିଏ ମଣିଷ ମଧରେ ଉଚ୍ଚନୀଚ କିଛି ନାହିଁ । ଅସଲ ଭାବରେ କିଏ ବେଶୀ ଉନ୍ନତ – କେହି ବା କମ୍ । ସବୁ ଜାତି ଅବଶ୍ୟ ସମାନ ଭାବରେ ଉନ୍ନତ ନୁହନ୍ତି । ଉନ୍ନତ ଜାତିର କର୍ତ୍ତବ୍ୟ ହେଉଛି ପଛରେ ପଡ଼ିଥିବା ଜାତିର ଉନ୍ନତି ପାଇଁ ସାହାଯ୍ୟ କରିବା । ସୋଭିଏଟ୍ ଦେଶରେ ଏହି ବିଷୟରେ ବେଶି ନଜର ଦିଆ ହୋଇଛି । ସେଥିପାଇଁ ସେଠାରେ ମଧ ଏସିଆର, ସାଇବିରିଆର ଆଉ ଉତ୍ତରରେ ଥିବା ବିଭିନ୍ନ ଜାତିମାନେ ଋଷ୍ ବିପ୍ଳବର କୋଡ଼ିଏ ବର୍ଷ ଭିତରେ ବହୁ ଶତାବ୍ଦି ଆଗେଇ ଆସିଛନ୍ତି । ବହୁ ପଛରେ ପଡ଼ିଥିବା ଜାତି ଉନ୍ନତ ଜାତିମାନଙ୍କ ସହିତ ଆଜି ସମାନ ତାଳରେ ଚାଲିବାକୁ ଆରମ୍ଭ କରିଚନ୍ତି ।

ଅଷ୍ଟ୍ରେଲିୟାର ଆବିଷ୍କାରକ ଇଉରୋପୀୟମାନେ କେବେ ଭାବି ନାହାନ୍ତି ଯେ ବର୍ତ୍ତମାନର ଇଉରୋପୀୟମାନଙ୍କର ପୂର୍ବପୁରୁଷ ହେଉଚନ୍ତି ଏହି ଅଷ୍ଟ୍ରେଲିଆବାସୀ । ତେଣୁ ସେମାନେ ଏମାନଙ୍କ ଉପରେ ଅତ୍ୟାଚାର କରିବାକୁ ପଛେଇ ନାହାନ୍ତି ।

**ବିଭିନ୍ନ ଜଗତର ସଂଘର୍ଷ**

ଜାହାଜରେ ଯାଇ ଯାଇ ମଣିଷ ଯେ ଖାଲି ନୂତନ ଦେଶ ଆବିଷ୍କାର କରିଛି ସେତିକି ନୁହେଁ – ତାହା ସଙ୍ଗେ ବହୁ ପୁରୁଣା ଯୁଗର ସ୍ମୃତି ମଧ ସେତିକି ଟାଣି ବାହାର କରି ଆଣିଛି ।

ଅଷ୍ଟ୍ରେଲିଆ ଆବିଷ୍କାର କରି ଇଉରୋପୀୟମାନଙ୍କର କପାଳ ଖୋଲିଗଲା । ସେମାନେ ଗୋଟାଏ ମହାଦେଶ ଉପରେ ହୁକୁମଜାରୀ କରିବାର ଅଧିକାର ପାଇଲେ । କିନ୍ତୁ ଅଷ୍ଟ୍ରେଲିଆବାସୀଙ୍କ ପକ୍ଷରେ ଏଟା ହେଲା କାଳ । ଶ୍ରମପଞ୍ଜି ଅନୁସାରେ ଅଷ୍ଟ୍ରେଲିଆ ଲୋକେ ଇଉରୋପୀୟମାନଙ୍କ ତୁଳନାରେ ଅନେକ ପଛରେ ପଡ଼ିଥିବା ଯୁଗରେ ବାସ କରୁଥିଲେ । ସେମାନେ ଇଉରୋପୀୟମାନଙ୍କର ଚାଲିଚଳନ ମାନିବାକୁ ପ୍ରସ୍ତୁତ ନଥିଲେ । ତେଣୁ ଇଉରୋପୀୟମାନେ ସେମାନଙ୍କୁ ଘଉଡ଼ିଘଉଡ଼ି ବଣୁଆ ଜାନୁଆର ପରି ମାରିଚନ୍ତି ।

ଅଷ୍ଟ୍ରେଲିଆ ଲୋକେ ସେତେବେଳେ ମାଟିରେ ଗାତ କରି ରହୁଥିଲେ; ଅଥଚ ଇଉରୋପୀୟମାନେ ରହୁଥିଲେ ଆଧୁନିକ କୋଠା ଘରେ । ବ୍ୟକ୍ତିଗତ ସମ୍ପତ୍ତିର କୌଣସି ଧାରଣା ଅଷ୍ଟ୍ରେଲିଆ ଲୋକଙ୍କର ନଥିଲା । କିନ୍ତୁ ଇଉରୋପରେ ସେତେବେଳେ ଅନ୍ୟ ଜଙ୍ଗଲର ହରିଣ ଶିକାର କଲେ, ସେମାନଙ୍କୁ ଜେଲରେ ଭରି ଦେବା ବନ୍ଦୋବସ୍ତ ହେଉଥିଲା ।

ଅଷ୍ଟ୍ରେଲିୟମାନଙ୍କର ଆଖିରେ ଯାହା ବିଧି ଇଉରୋପୀୟମାନଙ୍କର ଆଖିରେ ତାହା ଅପରାଧ । ଦଳେ ମେଣ୍ଢା ଦେଖିଲେ ସେମାନେ ହୁଏତ ଉଲ୍ଲାସରେ ମିଳି ଶିକାର ପାଇଁ ମାତି ଉଠିଲେ ଆଉ ଅନ୍ୟ ଦିଗରେ ଇଉରୋପୀୟ ଚାଷୀମାନଙ୍କର ବନ୍ଧୁକ ଗର୍ଜି ଉଠିଲା । କାରଣ ଗୃହପାଳିତ ମେଣ୍ଢା ଇଉରୋପୀୟମାନଙ୍କର ବ୍ୟକ୍ତିଗତ ସମ୍ପତ୍ତି । କିନ୍ତୁ ଆଦିମ ଅଷ୍ଟ୍ରେଲିୟମାନଙ୍କ ପାଇଁ ତାହା ଚମତ୍କାର ଶିକାର । ଇଉରୋପୀୟ ଆଇନ୍ କହେ ''ଯେ ମେଣ୍ଢା ମାରେ ମେଣ୍ଢା ତା'ର'' ।

ଇଉରୋପୀୟମାନେ ଅଷ୍ଟ୍ରେଲିୟ ଆଇନ ନ ଜାଣିଥିବାରୁ ଅଷ୍ଟ୍ରେଲିୟମାନେ ମେଣ୍ଢା ଶିକାର କରି ବାହାରିଲେ ବାଘ, ଭାଲୁ ଗୋଠରେ ପଡ଼ିଲା ପରି ସେମାନଙ୍କୁ ଗୁଳି କରି ମାରୁଥିଲେ ।

**ଆମେରିକା ଆବିଷ୍କାର**

ଆମେରିକା ଆବିଷ୍କାର ସମୟରେ ଆଉ ଏକ ଲଢ଼େଇ ଲାଗିଥିଲା । ଆମେରିକା ଆବିଷ୍କାର ବେଳେ ଇଉରୋପୀୟମାନେ ମନେକରିଥିଲେ ଗୋଟାଏ ନୁଆ ଜଗତ ଆବିଷ୍କାର ହୋଇଛି । ନୂତନ ଜଗତ ଆବିଷ୍କାର କରିଥିଲେ ବୋଲି କଲମ୍ବସଙ୍କୁ ଏତେ ବଡ଼ ବୋଲି ଧରି ନିଆଯାଏ । ବାସ୍ତବିକ ଆମେରିକା ମୋଟେ ନୂତନ ଜଗତ ନୁହେଁ । ଅଜ୍ଞାତସାରରେ ଇଉରୋପୀୟମାନେ ଆମେରିକାରେ ସେମାନଙ୍କର ଭୁଲିଯାଇଥିବା ଅତୀତର ସନ୍ଧାନ ପାଇଛନ୍ତି ।

ମହାସାଗରର ସେପାରିରେ ଏହି ସବୁ ନବାଗତମାନଙ୍କ ଆଖିରେ ଆମେରିକା ଅଧିବାସୀମାନଙ୍କର ଆଚାର ବ୍ୟବହାର ଅସଭ୍ୟ ଏବଂ ଅବୋଧ୍ୟ ମନେହୋଇଥିଲା । ଉତ୍ତର ଆମେରିକାର ବାସିନ୍ଦାମାନେ ସେପର୍ଯ୍ୟନ୍ତ ପଥରର ଅସ୍ତ୍ର ତିଆରି କରିପାରୁଥିଲେ । ଜୀବନରେ ସେମାନେ ଲୁହାର ନାମ ଶୁଣି ନାହାନ୍ତି । କୃଷିକାମ ଶିଖିଥିଲେ ମଧ ସେମାନଙ୍କର ସେତେବେଳେ ପ୍ରଧାନ ଉପଜୀବିକା ହେଉଛି ଶିକାର । କାଠ ଘରେ ସେମାନେ ରହୁଥିଲେ ଏବଂ ତାର ଚାରିପାଖ ବିରାଟ ଉଞ୍ଚା ବେଢ଼ା ଦେଇ ଘେରିରଖୁଥିଲେ ।

ଆହୁରି ଦକ୍ଷିଣରେ ମେକ୍‌ସିକୋର ଲୋକମାନେ ସୁନା ଓ ତମ୍ବାର ଗହଣା ପିନ୍ଧୁଥିଲେ । ଖରାରେ ପୋଡ଼ା ଇଟା ଦେଇ ଘର ତିଆରିକରି ସେଥିରେ ଜିପ୍‌ସମ୍ (Gypson) ଧାତୁ ଦେଇ ପଲସ୍ତରା କରୁଥିଲେ । ସେତେବେଳର ଭ୍ରମଣ ବୃତ୍ତାନ୍ତରୁ ଏମାନଙ୍କର ବାସସ୍ଥାନ ଓ ଅନ୍ୟାନ୍ୟ ବିବରଣୀ ଖୁବ୍ ଭଲଭାବରେ ମିଳେ । କିନ୍ତୁ ସେମାନଙ୍କର ଆଚାର ବ୍ୟବହାର ସମ୍ବନ୍ଧରେ ସେପରି ଭଲ ବର୍ଣ୍ଣନା ମିଳେ ନାଁ ।

ଏହି ନୂତନ ଜଗତର ବିରାଟ ଅଂଶରେ ସେପର୍ଯ୍ୟନ୍ତ ମୁଦ୍ରା ପ୍ରଚଳନ ହୋଇ ନାହିଁ । ବ୍ୟବସାୟ ବାଣିଜ୍ୟ ବୋଲି କିଛି ନଥିଲା, ଧନୀ ଦରିଦ୍ରର ଭେଦ ନ ଥିଲା । ଆମେରିକାର ଅନେକ ଗୋଷ୍ଠୀ ସୁନାକୁ ଚିହ୍ନିଥିଲେ, କିନ୍ତୁ ତାର କଦର ପାଇ ନଥିଲେ । କଲମ୍ବସଙ୍କର ବର୍ଣ୍ଣନାରେ ଅଛି ଯେ ବହୁ ଆମେରିକାବାସୀମାନଙ୍କର ଦେହରେ ସୁନା ଗହଣା ଥିଲା, କିନ୍ତୁ ସେମାନେ ନିର୍ବିକାରରେ କାଚର ବଲ, ଲୁଗା ଏବଂ ନାନା ଠୁଣକା ଶସ୍ତା ଜିନିଷର ବଦଳରେ ସେହି ସବୁ ସୁନା ଦେଇ ଦେଉଥିଲେ ।

ଆମେରିକାବାସୀମାନେ କାହାକୁ ବନ୍ଦୀ କଲେ ତାକୁ ମାରି ପକାଉଥିଲେ ବା ନିଜ ଦଳକୁ ଟାଣି ନେଉଥିଲେ । ସେମାନେ କଦାପି ତାକୁ ଗୋଲାମ ବା ଦାସ କରି ରଖୁ ନ ଥିଲେ । ସେତେ ବଡ଼ ବଡ଼ ଘରବାଡ଼ି ମଧ ନଥିଲା । ଇରୋକୁଇ କୁଳରେ ସମସ୍ତେ ଗୋଟିଏ ବସତିରେ ରହୁଥିଲେ । ସେଥିପାଇଁ ସେ ଘର ନାମ ଥିଲା "ବଡ଼ ଘର" । ସମସ୍ତ ଗୋଷ୍ଠୀ ଏକା ସାଙ୍ଗରେ ରହୁଥିଲେ, କାମ କରୁଥିଲେ । ଜମି ଜମା କାହାର ଏକୁଟିଆ ସମ୍ପତ୍ତି ହୋଇ ନ ଥିଲା । ତା'ରି ଉପରେ ଥିଲା ଗୋଟାକ ଯାକ ଗୋଷ୍ଠୀର କର୍ତ୍ତୃତ୍ୱ । ଏହି ଜମି ଉପରେ ମଧ କୌଣସି ଭାଡ଼ିଆଭଡ଼ିଆ (Surf) ନ ଥିଲେ – ଯେପରି ବେଠିଆ ବିନା ପଇସାରେ ଜମିଦାରର ଜମି ଚଷନ୍ତି । ସେପରି ବ୍ୟବସ୍ଥା ନଥିଲା ଏଠି । ସମସ୍ତେ ଥିଲେ ସ୍ୱାଧୀନ ।

ଇଉରୋପୀୟମାନେ ସେତେବେଳେ ସାଆନ୍ତିଆ ଯୁଗରେ ବାସ କରୁଥିଲେ । ସେମାନେ ଜାଣୁଥିଲେ ପୃଥିବୀରେ ଯୋଡ଼ାଏ ଜାତି; ଜମିଦାର ଏବଂ ବେଠିଆ । ସେଠି

କେହି ଅନ୍ୟର ସମ୍ପତ୍ତି ନେବାକୁ ବାହାରିଲେ ପୋଲିସ ତାକୁ ଜେଲଖାନାରେ ଭର୍ତ୍ତି କରି ରଖିବ – କିନ୍ତୁ ଏଠି ସେ ସବୁ କିଛି ନାହିଁ । ଏଠି ନିଜ ଗୋଷ୍ଠୀର ସମସ୍ତେ ସମସ୍ତଙ୍କୁ ରକ୍ଷା କରନ୍ତି । କେହି ଖୁଣ୍ ହେଲେ ଅନ୍ୟ ସମସ୍ତେ ସେହି ଖୁଣୀର ପ୍ରତିଶୋଧ ନିଅନ୍ତି । ଇଉରୋପରେ ଥିଲେ ସମ୍ରାଟ, ରାଜା, ଜମିଦାର କେତେକାଂଶ । ଏଠି ସେ ସବୁ କିଛି ନାହିଁ । ଖାଲି କୁଳର ନେତାମାନେ ସଂଘବଦ୍ଧ ହୋଇ କୁଳର ସମସ୍ତଙ୍କର ସାମନାରେ ଶାସନ ବ୍ୟବସ୍ଥା ପରିଚାଳନା କରୁଥିଲେ । କାମ ଅନୁସାରେ ନେତା ନିର୍ବାଚିତ ହେଉଥିଲେ ଏବଂ ଭଲ କାମ କରି ନ ପାରିଲେ ତଡ଼ା ଖାଉଥିଲେ । ନେତା କେବେ ହେଲେ କୁଳର ଅଧିବାସୀମାନଙ୍କର ଏକଛତ୍ର ନ ଥିଲେ । ସେଥିପାଇଁ ଅନେକ ଆଦିବାସୀଙ୍କର ଆଦିମ ଭାଷାରେ ଦେଖାଯାଏ 'ନେତା'ର ଅର୍ଥ 'ବକ୍ତା' ।

ପୁରୁଣା ଜଗତର ରାଜା ହେଉଛନ୍ତି ସମାଜର ମଥା, ପରିବାର ଭିତରେ ବାପା ହେଉଛନ୍ତି କର୍ତ୍ତା । ସମାଜର ସବୁଠାରୁ ବଡ଼ ସଂଗଠନ ହେଉଛି ରାଷ୍ଟ୍ର ଏବଂ ଛୋଟ ସଂଗଠନ ହେଉଛି ପରିବାର । ରାଜା ହିଁ ପ୍ରଜାପୁଞ୍ଜର ବିଚାରକରି ଶାସ୍ତି ବିଧାନ କରନ୍ତି । ରାଜା ମରିଗଲେ ବଡ଼ ରାଜପୁତ୍ର ସିଂହାସନରେ ବସନ୍ତି, ଆଉ ବାପା ମରିଗଲେ ବଡ଼ ପୁଅ ସବୁ ସମ୍ପତ୍ତି ପାଇଥାଏ ।

ଆମେରିକାର ନୂତନ ଜଗତର ଆଚାର ବ୍ୟବହାର ଅଲଗା । କୌଣସି କୌଣସି କୁଳରେ ପିଲାପିଲିଙ୍କ ଉପରେ ବାପାଙ୍କର କୌଣସି କର୍ତ୍ତୃତ୍ୱ ନ ଥିଲା ! ପିଲାପିଲି ଥିଲେ ମାଆର ସମ୍ପତ୍ତି । ''ବଡ଼ ଘରେ'' ସବୁ କର୍ତ୍ତୃତ୍ୱ ଥିଲା ସ୍ତ୍ରୀ ଲୋକ ପାଖରେ । କିଛି ୟୁରୋପର ପିଲାମାନେ ବିଭା ହୋଇ ଆଉ ଝିଅମାନେ ଅନ୍ୟ ପରିବାରରେ ବିଭାହୋଇ ଘରୁ ବାହାରି ଯାଆନ୍ତି । ଏକାଠି ସ୍ତ୍ରୀଲୋକମାନେ ବିଭାହୋଇ ସ୍ୱାମୀକୁ ଘରକୁ ଆଣୁଥିଲେ । ଏହା ସଂପୂର୍ଣ୍ଣ ଓଲଟା ବ୍ୟାପାର । ଜନ୍ ଭ୍ରମଣକାରୀ କ'ଣ ଲେଖିଛନ୍ତି ଶୁଣ ''ମାଇପିମାନେ ସାଧାରଣତଃ ପରିବାର ପରିଚାଳନା କରନ୍ତି, ତାହା ଫଳରେ ସେମାନେ ପରସ୍ପର ସଙ୍ଗରେ ଖୁବ୍ ଘନିଷ୍ଠଭାବରେ ମିଳାମିଶା କରି ରହିପାରନ୍ତି । ଖାଇବା ପିଇବା ସବୁ ଆଣନ୍ତି । ଚିଜ ସାଧାରଣ ସମ୍ପତ୍ତି । କିନ୍ତୁ ଯେଉଁ ସ୍ୱାମୀ ବେଶୀ ପରିମାଣରେ ଖାଇବା ଜିନିଷ ଯୋଗାଡ଼ କରି ନ ପାରେ ତା' କପାଳରେ ବହୁତ ଦୁଃଖ । ତା'ର ଯେତେ ପିଲାପିଲି ଥଆନ୍ତୁ ନାଁ କାହିଁକି ଯେକୌଣସି ମୁହୂର୍ତ୍ତରେ ତାକୁ ଲୋଟା କମ୍ବଳ ଧରି ପଳେଇବାକୁ ହୋଇପାରେ । ସେ ଆଦେଶ ଲଙ୍ଘନ କରିବାର ସାଧ ନାହିଁ କାହାର ? ମାଇପି ଲୋକଙ୍କର ଅସୀମ କ୍ଷମତା, ପ୍ରକୃତପକ୍ଷେ ସେମାନେ କୁଳର ଦେବତା ନିର୍ବାଚନ କରନ୍ତି ।"

## ଆଜି ଇଉରୋପର ପୁରୁଣା ଜଗତରେ

ସେଇଠି ସ୍ତ୍ରୀମାନେ ପୁରୁଷର ଦାସୀ । ରୁଷୀୟ ଲେଖକ ପୁଷ୍କିନଙ୍କର ଗୋଟିଏ ଗଳ୍ପ ଅଛି; କିପରି ଜନ୍ ଟ୍ୟାନର ନାମକ ଜଣେ ଇଂରେଜ ଆମେରିକାନ୍‌ମାନଙ୍କର ବଳରେ ପହଞ୍ଚି ଯାଇଥିଲା ! ଓଟୋୟା କୁଳର ପ୍ରଧାନ ନିୟେତ୍‌ନୋଚୁୟା ନାମକ ଗୋଟିଏ ସ୍ତ୍ରୀ ଲୋକ ତାକୁ ଆଶ୍ରୟ ଦେଇଥିଲା । ଏହି ସ୍ତ୍ରୀ ଲୋକର ନୌକାରେ ସବୁ ସମୟରେ ନିଶାଣ ବନ୍ଧାଥାଏ ଏବଂ ତା'ର ନୌକା ଆସିବାର ଦେଖିଲେ ଇଂରେଜମାନେ ମଧ ତୋପ ଫୁଟାଇ ଅଭ୍ୟର୍ଥନା ଜଣାଉଥିଲେ ।

ଯେଉଁଠି ସ୍ତ୍ରୀମାନଙ୍କର ଏତେ ଦୂର ପ୍ରତାପ ସେଇଠି ମାଆ ଆଡୁ ବଂଶ ପରିଚୟ ଦେବାକୁ ହେବ । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଇଉରୋପର ପିଲାମାନେ ବାପାଙ୍କର ନାମ ନିଅନ୍ତି । ଆମେରିକାର ପୁରୁଣା ଜଗତରେ ଏଠି ସେମାନେ ମା'ର ନାଁ ପାଆନ୍ତି । ବାବା ଯଦି 'ହରିଣ' କୁଳର ଲୋକ ଏବଂ ମାଆ ଯଦି 'ଭାଲୁ' କୁଳର ଲୋକ, ତେବେ ପିଲାମାନେ 'ଭାଲୁ' କୁଳର ହୋଇଯାଆନ୍ତି । ପ୍ରତ୍ୟେକ କୁଳର ଥାଆନ୍ତି ଝିଅମାନେ, ସେମାନଙ୍କର ପିଲାପିଲି ସେମାନଙ୍କର ଝିଅର ଝିଅ ଏପରି ।

ଏହି ସବୁ ନୂତନ ଆଚାର ବୁଝି ନ ପାରି ଇଉରୋପୀୟମାନେ ଏ ସବୁକୁ ଅସଭ୍ୟ ଆଚାର ବୋଲି ଉଡ଼େଇ ଦିଅନ୍ତି । କିନ୍ତୁ ସେମାନେ ଭୁଲି ଯାଇଥିଲେ ଯେ ଧନୁଶର ଯୁଗରେ ସେମାନଙ୍କ ଭିତରେ ମଧ ଏହି ସବୁ ଆଚାର ବ୍ୟବହାର ହିଁ ପ୍ରଚଳିତ ଥିଲା । ନେତା ଶବ୍ଦଟିକୁ ସେମାନେ ରାଜାର ପର୍ଯ୍ୟାୟରେ ନେଇ ପହଞ୍ଚାଇ ଥିଲେ ଏବଂ ନେତାମାନଙ୍କର ବୈଠକକୁ କହୁଥିଲେ ରାଜ ଦରବାର । ଆମ୍ଭେମାନେ ଏକ୍ଷଣି କୌଣସି ସେନାପତିକୁ ରାଜା ବୋଲି କହିଥିଲେ; ଯେଉଁ ଭୁଲ କରନ୍ତୁ, ସେମାନେ ସେତେବେଳେ ନେତାଙ୍କୁ ରାଜା ବୋଲି କହି ସେହି ଭୁଲ ହିଁ କରିଥିଲେ ।

କେତେ ବର୍ଷ ଧରି ପ୍ରବାସୀ ଇଉରୋପୀୟମାନେ ଆମେରିକାର ହାଲଚାଲ ବୁଝିପାରି ନାହାନ୍ତି । ତା' ପରେ ଆମେରିକାର ଜଣେ ନୃତତ୍ତ୍ୱବିଦ୍ ମରଗାନ 'ପୁରାକାଳର ସମାଜ' ବୋଲି ଖଣ୍ଡିଏ ବହିରେ ଦେଖାନ୍ତି । ଇରୋକୁଇ ଓ ଆଜ୍‌ଟେକ୍ (ମେକ୍ସିଅ) ସମାଜ ବ୍ୟବସ୍ଥାର ଅନୁରୂପ ଯୁଗ ଇଉରୋପରେ ମଧ ଥିଲା । ଇଉରୋପ ଅନେକ କାଳୁ ସେହି ସ୍ତର ପାର ହୋଇଆସିଛି । ତେବେ ୧୮୭୭ ସାଲରେ ମରଗାନ ପ୍ରଥମକରି ତାଙ୍କର ବହି ଲେଖନ୍ତି ।

ଏମାନେ ଦୁଇପକ୍ଷ କେହି କାହାର ଆଚାର ବ୍ୟବହାର ବୁଝନ୍ତି ନାହିଁ । ଆମେରିକା ବାସୀମାନେ ଆଶ୍ଚର୍ଯ୍ୟ ହୋଇ ଦେଖନ୍ତି, ତୁଚ୍ଛ ସୁନା ଲାଗି ଇଉରୋପୀୟମାନଙ୍କର ପିଟା ପିଟି, ମାଡ଼ ଫୌଜଦାରୀ । ସେମାନେ ଦେଶ ଜୟ କାହାକୁ କହନ୍ତି ଜାଣନ୍ତି ନାହିଁ । ସେମାନଙ୍କର ଧାରଣା ଥିଲା ଜମି କ୍ଷେତ ସବୁ କୁଳର ସମ୍ପତ୍ତି ଏବଂ କୁଳ ଦେବତା ଭୂମିରକ୍ଷା କରନ୍ତି । କେହି ଜୋର କରି ଅନ୍ୟର ଜମି ଦଖଲ କଲେ ଭଗବାନଙ୍କର ହାତରୁ ତା'ର ନିସ୍ତାର ନାହିଁ ।

ଅବଶ୍ୟ ଏମାନଙ୍କର ମଧ୍ୟରେ ଯେ ଲଢ଼େଇ ହେଉ ନ ଥିଲା ସେ କଥା ନୁହେଁ । କିନ୍ତୁ ଯୁଦ୍ଧ ପରେ ପରାଜିତ କୁଳକୁ ଦାସତ୍ୱ ଶିକୁଳିରେ ଅଟକ ରଖିବା କଥା ସେମାନେ ଶିଖି ନଥିଲେ; କିମ୍ବା ସେମାନଙ୍କୁ ନିଜ ଆଇନ୍‌ରେ ବାନ୍ଧା ପକେଇବାକୁ ବସୁ ନ ଥିଲେ । ଏପରି କି ସେମାନେ ବିଜିତ ନେତାକୁ ଗାଦିରୁ କାଢ଼ି ଦେଉ ନ ଥିଲେ । ମୁକ୍ତିପଥ ନେଇ ତାକୁ ଛାଡ଼ି ଦେଉଥିଲେ । କେବଳ କୁଳର ଲୋକମାନେହିଁ ନେତାକୁ ପଦଚ୍ୟୁତ କରିପାରୁ ଥିଲେ । ଏଇ ଭାବରେ ଆରମ୍ଭ ହେଲା ଦୁଇଟା ଅଲଗା ଜଗତର ବିଭିନ୍ନ ଜୀବନ ଯାତ୍ରାର ସଂଘର୍ଷ । **ଆମେରିକା ବିଜୟର ଇତିହାସହିଁ ଏଇ ଦୁଇ ଜଗତର ସଂଘର୍ଷର ଇତିହାସ ।**

ଆଉ ଗୋଟିଏ ଉଦାହରଣ ହେଉଛି ମେକ୍ସିକୋ ବିଜୟ ।

## ଭୁଲର ବୋଝ

୧୫୧୯ ସାଲରେ ଏଗାର ଖଣ୍ଡ ତିନି ମାସ୍ତୁଲ ଲଗା ପୋତ ମାଳା ମେକ୍ସିକୋ ଉପକୂଳରେ ଦେଖା ଗଲା । ସବୁଗୁଡ଼ିକ ଜାହାଜର ପେଟ ମୋଟା ଏବଂ ଆଗରେ ଆଉ ପଛରେ ଦୁଇ ଦିଗ ହିଁ ଜଳର ଅନେକ ଉପରେ ଭାସୁଛି । ଡ଼େକ୍ ଉପରେ କମାଣ, ବର୍ଚ୍ଛା ଏବଂ ବନ୍ଧୁକଧାରୀ ଫଉଜ ରଣଝଣ ହେଉଚନ୍ତି । ପ୍ରଧାନ ଜାହାଜଟିର ସାମନାରେ ଦାଢ଼ିବାଲା ଚଉଡ଼ା କାନ୍ଧବାଲା ଜଣେ ଲୋକ । ତାଙ୍କର ଆଖି ପର୍ଯ୍ୟନ୍ତ ଘୋଡ଼େଇ ହୋଇ ରହିଛି ଟୋପି । ତୀରର ଆଦିମ ଅଧିବାସୀ ଜନତାକୁ ଏକଦୃଷ୍ଟିରେ ସେ ଚାହିଁ ରହିଚନ୍ତି । **ହାରଯନ୍ଦୋ କରଟେଜ୍** ହେଉଚି ଏ ବ୍ୟକ୍ତିଙ୍କର ନାଁ । ମେକ୍ସିକୋ ବିଜୟ ଅଭିଯାନରେ ସେହିଁ ଅଧିନାୟକ । ତାଙ୍କୁ ଅବଶ୍ୟ ସ୍ପେନ୍ ସରକାର ଚାକିରୀରୁ ବରଖାସ୍ତ କରିଥିଲେ । ସେହି ଚିଠି ମଧ୍ୟ ତାଙ୍କ ସଙ୍ଗରେ ଅଛି । କିନ୍ତୁ କରଟେଜ୍ କିପରି ଦୁର୍ବାର ଦୁଃସାହସିକ ଏଥିରେ କ'ଣ ଯାଏ ଆସେ – ସ୍ପେନ୍‌ଠାରୁ ସେ ଏକ୍ଷଣି ବହୁ ଦୂରରେ । ନିଜର ଜାହାଜରେ ସେ ସମ୍ରାଟ ପରି କ୍ଷମତା ରଖନ୍ତି ।

ଜାହାଜ ଗୁଡ଼ିକ ନଙ୍ଗର ପକାଇଲେ । ସେ ସବୁ ଆଦିମ ଅଧିବାସୀମାନଙ୍କୁ କର୍ଟେଜ ଆଗରୁ ଦାସ କରି ରଖିଛନ୍ତି, ସେମାନଙ୍କର ହାତରେ ସବୁ ଜିନିସ ପତ୍ର, କମାଣ, ବନ୍ଧୁକ ଇତ୍ୟାଦି ଛୋଟ ନୌକା ଗୁଡ଼ିକରେ ଭରା ହେଲା । ଡ଼େକର ଉପରେ ଦଳେ ଘୋଡ଼ା ଅଣା ହୋଇ ଛିଡ଼ା କରାଗଲା । ସେଗୁଡ଼ିକ ଘାବରା ହୋଇଥିଲେ ଏତେ ବେଶୀ ଯେ ସେମାନଙ୍କୁ ପାଣିକୁ କାଢ଼ିବା ଥିଲା ବଡ଼ କଠିଣ ।

ତୀରର ଆଦିମ ଅଧିବାସୀମାନେ ଅଶ୍ଚର୍ଯ୍ୟ ହୋଇ ଏହି ସବୁ ପୋଷାକପିନ୍ଧା ଧଳା ଚମଡ଼ାବାଲା ଲୋକଗୁଡ଼ିକର କାର୍ଯ୍ୟକଳାପ ଦେଖୁଥିଲେ । କିନ୍ତୁ ସବୁଠାରୁ ବେଶୀ ଆଶ୍ଚର୍ଯ୍ୟ ହେଉଥିଲେ ସେମାନଙ୍କର ଲମ୍ୱା କେଶ ଓ ଆଉ ଲାଞ୍ଜବାଲା ଜାନୋଆର ଦେଖି ।

ଗୋରା ଲୋକମାନଙ୍କର କାହାଣୀ ଦେଖୁ ଦେଖୁ ଦେଶରେ ବ୍ୟାପିଗଲା । ସେଇଠି ପାହାଡ଼ ଘେରା ଏକ ଉପତ୍ୟକାରେ ଗୋଷ୍ଠୀମାନଙ୍କର 'ବଡ଼ଘର' ଭିତରେ ଆଜଟେକମାନେ ବସବାସ କରୁଥିଲେ । ଏମାନଙ୍କର ସବୁଠୁଁ ବଡ଼ ଦଳ ହେଉଛି ଟେନ୍‌କଟିଟଲାନ । ଗୋଟିଏ ହ୍ରଦର ମଝିରେ ଏମାନେ ଥାଆନ୍ତି । ଏମାନଙ୍କର ଯିବାନିମିତ୍ତ ରୀତିମତ ପୋଲ ବନ୍ଧାଥିଲା । ଏମାନଙ୍କର ଚକଚକିଆ ବାଡ଼ ଏବଂ ସୁନାରେ ତିଆରି ଉଜ୍ୱଳ ମନ୍ଦିରର ଚୂଡ଼ା ବହୁ ଦୂରରୁ ନଜରରେ ପଡ଼େ । ଆଜ୍‌ଟେକମାନଙ୍କର ସାମରିକ ନେତା ମଣ୍ଟେଦୁମା ସମସ୍ତ ବଳ ନେଇ ସେଠି ସବୁଠୁଁ 'ବଡ଼ଘରେ' ରହୁଥିଲେ । ଗୋରାମାନେ ଆସିବାର ଖବର ପାଇ ମଣ୍ଟେଦୁମା ନେତୃପରିଷଦ ଆହ୍ୱାନ କଲେ । ସେମାନେ ଅନେକ ଗଭୀର ଆଲୋଚନା କରିବାକୁ ଲାଗିଲେ । ସବୁଠୁଁ ପ୍ରଧାନ କଥା ହେଲା ଏ ଧଳା ଲୋକ ଆସିଲେ ବା କାହିଁକି ଏବଂ ସେମାନେ ଚାହାନ୍ତି ବା କ'ଣ ?

ସେମାନେ ଗପ ଶୁଣିଥିଲେ ଏ ଧଳାଲୋକ ସୁନା ଭଲପା'ନ୍ତି । ତେଣୁ ନେତୃ ପରିଷଦ ଠିକ୍ କଲେ ଏମାନଙ୍କ ପାଖକୁ ସୁନା ଉପଢ଼ୌକନ ଦେଇ ଏମାନଙ୍କୁ ଫେରି ଯିବାକୁ କୁହାଯିବ ।

ଏଟା ହେଲା ସେମାନଙ୍କର ମାରାତ୍ମକ ଭୁଲ,କାରଣ ଏଥିରୁ ଗୋରାଦଳଙ୍କର ଲୋଭହିଁ ବଢ଼ିଯିବାର କଥା । ଆଦିମ ଅଧିବାସୀ ଏବଂ ଧଳାଚମଡ଼ା ମଣିଷ ଦୁଇ ପୃଥକ ଯୁଗର ମଣିଷ ଏବଂ ପୃଥକ୍ ଯୁଗରେ ବାସ କରୁଥିବାରୁ ଏ ଭୁଲ୍ ସେମାନଙ୍କର ନଜରରେ ପଡ଼ିଲା ନାହିଁ । ବିରାଟ ଚକ ପରି ଗୋଲ ଗୋଲ ସୁନାର ଢ଼ାଲ, ସୁନାର ଗହଣା, ସୁନାର ମୂର୍ତ୍ତି ଦେଇ ସେମାନେ ଦୂତ ପଠାଇଲେ କରଟେଜଙ୍କ ନିକଟକୁ । ସେଇ ସୁନା ଦେବା ସମୟଠାରୁ ଆଜଟେକ୍‌ମାନଙ୍କର ଭବିଷ୍ୟତ ଅନ୍ଧାର ଭିତରେ ବୁଡ଼ିଗଲା ।

ଧଳାଚମଡ଼ାବାଲାଙ୍କୁ ବୃଥା କୁହାଗଲା ତୁମେ ସମୁଦ୍ର ସେପାରିକୁ ଫେରିଯାଅ । ବୃଥା କୁହାଗଲା ପାହାଡ଼ ଦେଶର ଦୁଃଖ କଷ୍ଟ କଥା ।

ଏତେଦିନଯାଏ ସ୍ପେନୀୟମାନେ ମେକ୍ସିକୋର ସୁନାର ଗଳ୍ପ ଖାଲି ଉପକଥା ପରି ଶୁଣିଥିଲେ । ଏଥର ସେଗୁଡ଼ିକର ଚାକ୍ଷୁସ ପ୍ରମାଣ ମିଳିଲା । ଲୋଭରେ ସେମାନଙ୍କର ଆଖି ଜଳିବାକୁ ଲାଗିଲା । ଗଳ୍ପ ତାହାହେଲେ ସତ୍ୟ ।

ଫେରିଯିବା ଲାଗି ଏତେ ଅନୁନୟ ଏବଂ କାତରତାରେ ସେମାନଙ୍କୁ ହସ ମାଡ଼ିଲା । ଫେରିଯିବା ଅସମ୍ଭବ । ଲକ୍ଷ୍ୟ ହାତକୁ ଆସି ଯାଇଛି । ପାଗଳ ଛଡ଼ା ଏକ୍ଷଣି କେହି ଫେରିଯିବ ନାହିଁ ।

ଏଠାକୁ ଆସିବାକୁ କେତେ କଷ୍ଟ । କଦର୍ଯ୍ୟ ଖାଦ୍ୟ ଖାଇ ଦିନ ପରେ ଦିନ କଟିଛି । ଜାହାଜରେ କି ପ୍ରାଣାନ୍ତକ ପରିଶ୍ରମ । ମଝିରେ ମଝିରେ ସମୁଦ୍ରର ଝଡ଼ ଝଞ୍ଜା ଏ ସବୁ କଷ୍ଟ ସେମାନେ ସହିଚନ୍ତି ଖାଲି ବଡ଼ଲୋକ ହେବା ଆଶାରେ ।

ତମ୍ବୁ ଉଠାଇ କେରଟେଜ ତା ପରେ ରଓନା ହେବାର ଆଦେଶ ଦେଲେ । ଗୋଳା ବାରୁଦ, ଅସ୍ତ୍ର ଶସ୍ତ୍ର ସବୁ ଆଉଥରେ କ୍ରୀତଦାସ ପିଠିରେ ଲଦନ କରି ଲୋକମାନେ ଚାଲିଲେ । ଭାରବାହୀ ପଶୁ ପରି ସେହି ସବୁ ଦାସମାନେ ବୋଝ ଭାରରେ ଗଁ ଗଁ ଗର୍ଜନକରି ଚାଲିବାରେ ଲାଗିଲେ । ନ ଚାଲିବାକୁ ସେମାନଙ୍କର ଚାରା କାହିଁ। କାରଣ କେହି ପଛରେ ପଡ଼ିଲେ ତଲୋୟାରର ଡ଼ିହରେ ତାକୁ ଆଗକୁ ଠେଲି ନିଆ ଯାଉଥିଲା ।

ଏ ସମୟର ଆଜ୍‌ଟେକମାନଙ୍କର ଅଙ୍କା ଗୋଟିଏ ଛବି ଏପର୍ଯ୍ୟନ୍ତ ଯତ୍ନ ସହକାରେ ରଖାଯାଇଛି । ଏଥିରେ ଦେଖାଇ ଦିଆଯାଇଛି ଯେ, ଦଳେ ଦଳେ ଲୋକ ପିଠିରେ ବୋଝ ବୋହାଇ କରି ତିନିଟା ରାସ୍ତାଦେଇ ଚାଲିଛନ୍ତି । କାହା ପିଠିରେ କମାଣର ଚକ,କାହାର ପିଠିରେ ଗୁଡ଼େ ବନ୍ଧୁକ, କାହାର ପିଠିରେ ବା ଆହାରର ବୋଝ । ଜଣେ ସ୍ପେନ୍ ସେନାପତି ଗୋଟିଏ ଆଦିମ ଅଧିବାସୀର ବାଳ ଚୁଟି ଧରି ତାକୁ ଲାଠିରେ ମାରୁଛି । ଆଗର ପାହାଡ଼ ଦେହରେ କ୍ରୁସ ଚିହ୍ନ ଅଙ୍କା ହୋଇଛି । ବିଜେତାମାନେ ନିଜକୁ ସବୁଠୁଁ ସଚ୍ଚା ଖ୍ରୀଷ୍ଟାନ ମନେକରନ୍ତି ବୋଲି ଦେଶ ଜୟ ସମୟରେ ସାଙ୍ଗରେ କ୍ରୁସ ଚିହ୍ନ ନେବାକୁ କେବେ ଭୁଲୁ ନ ଥିଲେ । ଛବିଟିରେ ପଥର ଚାରିପାଖରେ କଟା ହାତ, ପାଦ, ମଥା, ସବୁ ବିଞ୍ଚିହୋଇ ପଡ଼ିଛି ।

ଧୀରେ ଧୀରେ ସ୍ପେନୀୟମାନେ ଆଗକୁ ଆସି ଏକ ସୁଦୃଷ୍ଟ ପର୍ବତ ବାଟର

ଆଜ୍ଟୁଆଲରୁ ସେଇ ହ୍ରଦ ଏବଂ ହ୍ରଦ ଭିତରେ ଥିବା ସହର ଦେଖିବାକୁ ପାଇଲେ । ଆଜ୍‌ଟେକ୍‌ମାନେ ସେମାନଙ୍କୁ କୌଣସି ବାଧା ଦେଲେ ନାହିଁ । ଅତିଥିମାନେ ସ୍ୱଚ୍ଛନ୍ଦରେ ସହର ଭିତରେ ଢୁକି ପଡ଼ିଲେ । ସେମାନେ କିନ୍ତୁ ମୂଳଠୁଁ ମୋଟେ ବିନୀତ ବ୍ୟବହାର କରି ନାହାନ୍ତି । ଯାହାକୁ ଆଜଟେକମାନଙ୍କର ନେତା ବୋଲି ମନେ ହେଉଥିଲା ସେହି ମଣ୍ଟେଜୁମାକୁ ସେମାନେ ପ୍ରଥମେ ବନ୍ଦୀ କଲେ । ମଣ୍ଟେଜୁମାକୁ ଶୃଙ୍ଖଳାବଦ୍ଧ କରି କରଟେଜ ତା ଠାରୁ ରାଜାଙ୍କର ବଶ୍ୟତା ସ୍ୱୀକାର ଦାବୀ କଲେ । ବନ୍ଦୀ ମଧ୍ୟ ବିନୟୀଭାବରେ କରଟେଜଙ୍କର ସମସ୍ତ ଆଦେଶ ପାଳନ କରିଗଲା । ଅଥଚ ସେ ଯେ କ'ଣ କହୁଛନ୍ତି ସେହି ସମ୍ପର୍କରେ ତା'ର ସାମାନ୍ୟ ଜ୍ଞାନ ମଧ୍ୟ ନାହିଁ ।

କରଟେଜ ଏଥିରୁ ମନେକଲେ ଯେ ବିଜୟଲକ୍ଷ୍ମୀ ତାଙ୍କର ଅଙ୍କଶାୟିନୀ । ତାଙ୍କର ଧାରଣା ଯେ ସେ ଆଜଟେକ୍‌ମାନଙ୍କର ରାଜାଙ୍କୁ ବନ୍ଦୀ କରିଛନ୍ତି; ଆଉ ସେହି ବନ୍ଦୀ ରାଜା ସମସ୍ତ କ୍ଷମତା ସ୍ପେନର ହାତରେ ସମର୍ପି ଦେଇଛନ୍ତି । କିନ୍ତୁ ଏ ଧାରଣା ଥିଲା ଏକ ବିରାଟ ଭୁଲ । ମଣ୍ଟେଜୁମା ଯେପରି ସ୍ପେନର କୌଣସି ଖବର ରଖି ନ ଥିଲେ, କରଟେଜ ମଧ୍ୟ ବାସ୍ତବରେ ମେକ୍‌ସିକୋକୁ ଜାଣନ୍ତି ନାଇଁ । ତାଙ୍କର ଧାରଣା ମଣ୍ଟେଜୁମା ରାଜା, ପ୍ରକୃତରେ ସେ ଯେ କେବଳ ଜଣେ ସେନାପତି । ଦେଶ ଦାନ କରିବାର କ୍ଷମତା ତା'ର ମୋଟେ ନାହିଁ ।

ଆଜ୍‌ଟେକ୍‌ମାନେ ବସି ରହିଲେ ନାଇଁ । ସେମାନେ ନୂତନ ସେନାପତି ନିର୍ବାଚନ କଲେ ମଣ୍ଟେଜୁମାର ଭାଇକୁ । ନୂତନ ନେତା ଆଜଟେକ୍‌ମାନଙ୍କର ସବୁ କୁଳକୁ ଡ଼ାକିଲେ ସ୍ପେନୀୟମାନଙ୍କର ଅଧିକୃତ ଘର ଦଖଲ ଲାଗି ଲଢ଼ାଇ ପାଇଁ। ଏକ ଦିଗରେ ସ୍ପେନୀୟମାନଙ୍କର କମାଣ ଏବଂ ବନ୍ଧୁକ ଗର୍ଜିଲା । ଅନ୍ୟ ଦିଗରୁ ଆସିଲା ପଥର ଆଉ ତୀରର ଜବାବ । କମାଣର ଗୋଳା ଆଉ ବନ୍ଧୁକର ଗୁଳି ତୀର ଅପେକ୍ଷା ଅନେକ ବେଶୀ ଶକ୍ତିଶାଳୀ ସନ୍ଦେହ ନାହିଁ । କିନ୍ତୁ ତା ଛଡ଼ା ଆଜ୍‌ଟେକମାନେ ଆପଣାର ମାତୃଭୂମିକୁ ରକ୍ଷା କରିବା ଲାଗି ସ୍ୱାଧିନତା ଲାଗି ଲଢୁଛି । ଶତ ବାଧା ବିପତ୍ତିକୁ ତୁଚ୍ଛ କରିବାର ଶକ୍ତି ସେମାନେ ପାଇଛନ୍ତି । ଡ଼ଜନେ ଡ଼ଜନେ ଲୋକ ମଲେ; ଶହେ ଶହେ ଲୋକ ସେମାନଙ୍କ ସ୍ଥାନରେ ଛିଡ଼ା ହେଉଛନ୍ତି । ନିଜର ଭାଇର ମୃତ୍ୟୁର ପ୍ରତିଶୋଧ ନେବାଲାଗି ସେମାନେ ଲଢୁଛନ୍ତି । ନିଜର ଗୋଷ୍ଠୀ ବିଚ୍ଛିନ୍ନ ହେଲେ ଆଜ୍‌ଟେକ୍ ପ୍ରାଣର ମାୟା ରଖେ ନାଇଁ ବୁଝି କରଟେଜ୍ ସେମାନଙ୍କ ସଙ୍ଗେ ମେଣ୍ଟାମେଣ୍ଟି କରି ନେବାର ଚେଷ୍ଟାରେ ଲାଗିଲେ । ମଣ୍ଟେଜୁମାକୁ ଏ କାମରେ ସବୁଠୁଁ ଉପଯୁକ୍ତ ମନେ କରାଗଲା । ମଣ୍ଟେଜୁମା ଯେତେବେଳେ ସେମାନଙ୍କର ରାଜା, ସେତେବେଳେ ସେ କହିଲେ ହିଁ ସେମାନେ ଯୁଦ୍ଧ ବନ୍ଦ କରିବେ । ସ୍ପେନୀୟମାନେ

ମଣ୍ଟେଜୁମାର ଶିକୁଳି ଛିଣ୍ଡାଇ ମୁକ୍ତ କରି ତାକୁ ଘରର ଛାତ ଉପରେ ରଖିଆସିଲେ । କିନ୍ତୁ ତାକୁ ଦେଖି ଆଜଟେକ୍‌ମାନେ ଉପହାସ କରିବାରେ ଲାଗିଲେ । କହିବାକୁ ଲାଗିଲେ "ଭୀରୁ, ବିଶ୍ୱାସଘାତକ, ତୁ ଜଣେ ଅପଦାର୍ଥ, କୌଣସି କାମର ଯୋଗ୍ୟ ନୁହଁ । ମାଇକିନା ଝିଅ ସାଜି ଘରେ ବସି ରହିବାହିଁ ତୋର ଉଚିତ।"

ସେହି ଲଢ଼େଇରେ ମଣ୍ଟେଜୁମା ଭୀଷଣଭାବରେ ଆହତ ହେଲା । କରଟେଜଙ୍କର ଅବସ୍ଥା ମଧ୍ୟ ସୁବିଧା ନୁହେଁ । ପ୍ରାୟ ଅଧା ସୈନା ମରିଛନ୍ତି । ସେତେବେଳେ ସେ ବହୁ କଷ୍ଟରେ ଆଜ୍‌ଟେକମାନଙ୍କ ହାତରୁ ଖସି ଆସିଲା । ତାଙ୍କ ସୌଭାଗ୍ୟକୁ ଆଜଟେକମାନେ ଆଉ ତାଙ୍କୁ ଅନୁସରଣ କରି ନାହାନ୍ତି । ତାହେଲେ କରଟେଜଙ୍କୁ ଆଉ ପୈତୃକ ପ୍ରାଣ ମିଳି ନ ଥାନ୍ତା ।

କରଟେଜଙ୍କୁ ଛାଡ଼ିଦେଇ ଆଦିମ ଅଧିବାସୀମାନେ ଆଉ ଗୋଟିଏ ଭୁଲ୍ କଲେ । କରଟେଜ ଆଉ ଏକଦଳ ସୈନ୍ୟ ସଂଗ୍ରହ କରି ଆଉ ଥରେ ଟେନ୍‌ବଟିଟ୍‌ଲାନ୍ ଅବରୋଧ କରନ୍ତି । ଏଥର ଆଜଟେକମାନେ କେତେ ମାସ ଆତ୍ମରକ୍ଷା ପରେ ହାରି ଆତ୍ମସମର୍ପଣ କରିବାକୁ ବାଧ ହେଲେ । ଗୋଲାଗୁଳି ବିରୁଦ୍ଧରେ ତୀର ଧନୁର ଲଢ଼ାଇ କେତେଦିନ ଆଉ ଚାଲନ୍ତା ।

ଲୌହଯୁଗର ମଣିଷ ବ୍ରହ୍ମଯୁଗର ମଣିଷକୁ ହରାଇଦେଲା । ଏକ ନୂତନ ସମାଜ ବ୍ୟବସ୍ଥାର ସଂଘର୍ଷରେ ପୁରାତନ ଗୋଷ୍ଠୀ ପ୍ରଥା ଭାଙ୍ଗି ପଡ଼ିଲା । ଇତିହାସ କରଟେଜ୍‌ଙ୍କର ପକ୍ଷରେ ଆସି ଛିଡ଼ା ହେଲା । ଆଜି ମଧ୍ୟ ହୁଏତ ଏହି ସବୁ ପାର୍ବତ୍ୟ ଅଧିବାସୀମାନଙ୍କର ବଂଶଧରମାନେ ବିରାଟ ଧନୀମାନଙ୍କର ସୁବିଶାଳ କ୍ଷେତଖମାରର ପିଅନ୍ କାମ କରି ଜୀବିକା ମେଣ୍ଟାଉଚନ୍ତି ।

## ଜୀବନ୍ତ ଯନ୍ତ୍ରପାତି

ଗତ ଶତାବ୍ଦୀରେ ଜଣେ ଲେଖକ ଏକ ଚମତ୍କାର ଗଳ୍ପ ଲେଖିଛନ୍ତି । ଗଳ୍ପରେ ଜଣେ ଲୋକ ବଜାର ଯାଇ ସାଧାରଣ ଜୋତା କିଣିବା ବଦଳରେ ଭୁଲ କରି ଯୋଡ଼ାଏ ହଜାର ମାଇଲର ଜୋତା କିଣି ଥିଲା । ଲୋକଟି ପୁଣି ବେଜାୟ ଅନ୍ୟମନସ୍କ । ଏତେବଡ଼ ଭୁଲଟି ତାର ନଜରରେ ପଡ଼ି ନାହିଁ । ବଜାର କରିବା ନିମିତ୍ତ ସେ ଆଉ ଥରେ ଘରୁ କି ଭାବି ଭାବି ବାହାରିଥିଲା । ହଠାତ୍ ତାକୁ ଭୀଷଣ ଶୀତ ହୋଇ ହାତ କନ୍ କନ୍ ହୋଇ ଉଠିଲା, ସବୁଆଡ଼କୁ ଚାହିଁ ଦେଖେତ ଖାଲି ବରଫ ଆଉ ବରଫ । ଦୂର ଦିଗନ୍ତରେ ମିଟି ମିଟି କରୁଛି ସୂର୍ଯ୍ୟ । ସେଠୁଁ ସେ ବୁଝିଲା ସେ ଭୁଲ କରି ହଜାର ମାଇଲ ଜୋତା କିଣିଛି । ଅନ୍ୟ କୌଣସି ଲୋକ ହେଲେ ଏହି ଅଦ୍ଭୁତ ସୌଭାଗ୍ୟର ସୁଯୋଗ ନେବାକୁ କାର୍ପଣ୍ୟ କରନ୍ତା

ନାଇଁ । କିନ୍ତୁ ଏ ଲୋକଟିର ଖିଆଲ ଥିଲା ଖାଲି ବିଜ୍ଞାନର ଚର୍ଚ୍ଚା କରିବା । ତେଣୁ ଏ ଜୋତା ପିନ୍ଧି ସେ ଗୋଟାକ ଯାକ ପୃଥିବୀ ଘୁରି ଜ୍ଞାନ ଆହରଣ କରିବାରେ ଲାଗିଲା ।

ପୁରୁଣା କଳା କୋଟ ଦେହରେ ଚାପି, କାଖରେ ବାକ୍ସ ଧରି ସେହି ଲୋକଟି ଅଷ୍ଟ୍ରେଲିଆରୁ ଏସିଆ, ସେଇଠୁ ଆମେରିକା ଭ୍ରମଣକରି ଘୁରି ବୁଲିବାରେ ଲାଗିଲା ।

ଆମ୍ଭମାନଙ୍କୁ ସେପରି ହଜାର ମାଇଲ ଚାଲିବା ଜୋତା ପିନ୍ଧି ମଣିଷର ଇତିହାସ ଖୋଜିବାକୁ ହେବ । ଏହି ବହିରେ ତୁମେ ଦେଖିବ ଆମେ କିପରି ଗୋଟିକ ପରେ ଗୋଟିଏ ମହାଦେଶ, ଗୋଟିକ ପରେ ଗୋଟିଏ ଯୁଗ ଡେଇଁ ଚାଲିଯାଉଛୁ । କେତେବେଳେ ହୁଏତ କାଳର ବିରାଟତ୍ୱରେ ଆମରି ମୁଣ୍ଡ ଘୁରିଯାଉଛି । କିନ୍ତୁ ତଥାପି ଆମେ ଥକା ହୋଇନାହୁଁ । ଆମ୍ଭେମାନେ ଜୋତା ପିନ୍ଧି ସେ ଯୁଗ ପରେ ଯୁଗ ଖାଲି ବୁଲିଛୁ ତାହା ନୁହେଁ, ଆମେ ବିଜ୍ଞାନ ଚର୍ଚ୍ଚା କରିଛୁ । ଗଛପତ୍ର ଏବଂ ଜୀବଜନ୍ତୁର ବିଷୟ, ଯନ୍ତ୍ରପାତିର ଜନ୍ମ, ଭାଷାତତ୍ତ୍ୱ, ଧର୍ମ ଏବଂ ଜାତିତତ୍ତ୍ୱର ଆଲୋଚନା କରିଛୁ ।

ଏ ସହଜ କଥା ନୁହେଁ । କିନ୍ତୁ ସେ କଥା ନକରି ଆଉ ଉପାୟ ନଥିଲା । ଆମ୍ଭେମାନେ ଏହିକ୍ଷଣି କରଟେଜର ସମୟରେ ଆମେରିକାରେ ଥିଲେ । ବର୍ତ୍ତମାନ ତୃତୀୟ ବା ଚତୁର୍ଥ ଶତାବ୍ଦିର ଇଉରୋପକୁ ଚାଲ ଫେରିବା । ସେଠିକି ଗଲେ ଆମ୍ଭେମାନେ ଠିକ୍ ଆମେରିକାର ଇରୋକୁଇସ ଓ ଆଜଟେକମାନଙ୍କ ପରି ଗୋଷ୍ଠୀ ପ୍ରଥାର ପ୍ରଚଳନ ଦେଖିବାକୁ ପାଇବା । ସେଠି ମଧ୍ୟ ଆମେ ସର୍ବସାଧାରଣ "ବଡ଼ଘର" ଦେଖିବାକୁ ପାଇବା, ଏବଂ ସେ ସ୍ଥାନର କର୍ତ୍ତା ସ୍ତ୍ରୀ ଲୋକଙ୍କର ଅଧିକାର ମଧ୍ୟ ଦେଖିବାକୁ ମିଳିବ । ସ୍ତ୍ରୀମାନେ ସଂସାରରେ କର୍ତ୍ତୀ ଆଉ ସମାଜର ମଥା । ଭଣ୍ଡାର ଆଉ ଖମାରର ତତ୍ତ୍ୱାବିଧାନ ସିଏ କରେ । ଚାରା ରୋପିବା ଲାଗି ସେ ମାଟି ଖୋଳେ; ଆଉ ଫସଲ କାଟିବାର ଦାୟିତ୍ୱ ମଧ୍ୟ ତାହାର । ପୁରୁଷ ଅପେକ୍ଷା ବେଶୀ କାମ କରିପାରେ ବୋଲି ସଂସାରରେ ତାର କର୍ତ୍ତୃତ୍ୱ ଥିଲା ବେଶୀ । ସେତେବେଳେ ପ୍ରତ୍ୟେକ ଘରବାଡ଼ିରେ, ଗ୍ରାମରେ ନାରୀମୂର୍ତ୍ତି ପ୍ରତିଷ୍ଠିତ ଥିଲା । ଏହି ମୂର୍ତ୍ତି ଗୋଷ୍ଠୀର ପ୍ରଥମ ଧାତ୍ରୀ । ତା'ର ଆତ୍ମା ଯେପରି ସମସ୍ତଙ୍କୁ ରକ୍ଷା କରେ । ଗୋଷ୍ଠୀର ସମସ୍ତେ ତାଠାରୁ ଖାଦ୍ୟ ଚାହାନ୍ତି । ଶତ୍ରୁ ହାତରୁ ସେମାନଙ୍କୁ ରକ୍ଷା କରିବାକୁ କହନ୍ତି ।

ଆମରି ହିନ୍ଦୁ ସମାଜରେ ଏହି ନାରୀ ଶକ୍ତିରୂପିଣୀ ଦୁର୍ଗା ଆଉ ଇଉରୋପରେ ପରେ ଏହି ନାରୀ ରକ୍ଷାକର୍ତ୍ତୀ ହେଲେ ଓ ଅନ୍ୟ ହାତରେ ତାଙ୍କର ବର୍ଚ୍ଛା । ସେ ନଗରର ରକ୍ଷାକାରିଣୀ ଦେବୀ ଏବଂ ଅନ୍ୟ ଏକ ବିରାଟ ମୂର୍ତ୍ତି ତିଆରି କରି ତାଙ୍କ ନାମରେ ସହରର ମୁଣ୍ଡରେ ଛିଡ଼ା କରାଇ ରଖାଯାଇଛି ।

- ୦ -

# ପୁରୁଣା ସମାଜ ଭାଙ୍ଗିବାକୁ ଆରମ୍ଭ କଲା

ଆମ୍ଭମାନଙ୍କ ନଜରରେ ସବୁ ସମୟରେ ନ ପଡ଼ିଲେ ମଧ୍ୟ ଏଟା ଠିକ୍ ଯେ ଆମ୍ଭମାନଙ୍କର ଭାଷାରେ ଏକ୍ଷଣି ଗୋଷ୍ଠୀପ୍ରଥାର ନାନା ଚିହ୍ନ ବିଦ୍ୟମାନ । ବୟସ୍କ ଲୋକମାନେ ଚିହ୍ନାଲୋକକୁ ପ୍ରାୟ ବନ୍ଧୁ ବୋଲି ନ ଡ଼ାକି ଭାଇ ବୋଲି ଡ଼ାକନ୍ତି । ଆଗ ଯୁଗରେ ଭଉଣୀର ପିଲାପିଲିମାନେ ଗୋଷ୍ଠୀଭୁକ୍ତ ଥିଲେ । ଭାଇମାନଙ୍କର ପୁଅ ଝିଅମାନେ ତା'ର ଶ୍ୱଶୁର ଘରେ ଅଲଗା ଗୋଷ୍ଠୀରେ ଥାଆନ୍ତି । ସେଥିପାଇଁ ବର୍ତ୍ତମାନ ଜର୍ମାନ୍ ଭାଷାରେ ଭାଇର ପୁଅ ଆଉ ଭଣଜାମାନଙ୍କୁ ଗୋଟିଏ ନାମରେ ଡ଼କାଯାଏ । ଇଂରାଜୀରେ ମଧ୍ୟ 'ନେଫିଉ' କହିଲେ ଭାଇର ପୁଅ ଆଉ ଭଣଜା ଦୁଇଟା ବୁଝାଏ । ଆମ୍ଭମାନଙ୍କ ଦେଶରେ ଦକ୍ଷିଣ ଭାରତରେ ଏବଂ ଏସିଆ ଅଞ୍ଚଳରେ ଏକ୍ଷଣି ସମ୍ପତ୍ତିର ଉତ୍ତରାଧିକାରୀତ୍ୱ ଅନେକ ସ୍ଥଳରେ ସ୍ତ୍ରୀଲୋକଙ୍କର ଦିଗରୁ ନିର୍ଦ୍ଧାରିତ ହୁଏ ।

ଆମ୍ଭେମାନେ ଯଦି ଏକ୍ଷଣି ମଧ୍ୟ ନିଜର ଅଜ୍ଞାତସାରରେ ସେହି ଗୋଷ୍ଠୀପ୍ରଥାର ଚାଲିଚଳଣ ମାନି ଚଳୁ, ତେବେ ଭାବି ଦେଖ ସେହି ପ୍ରଥାର ପ୍ରଭାବ କେତେ ବେଶୀ ଥିଲା । ସେହି ପ୍ରଭାବ ଧ୍ୱଂସ ହେଲା କିପରି !

ଆମେରିକାରେ ଇଉରୋପୀୟ ଆକ୍ରମଣକାରୀମାନେ ଆସି ଗୋଷ୍ଠୀପ୍ରଥାକୁ ଭାଙ୍ଗି ଦେଲେ । ଆମେରିକା ଆବିଷ୍କାରର ହଜାର ହଜାର ବର୍ଷ ଆଗେ ଆପଣାଛାଏଁ ଇଉରୋପର ଗୋଷ୍ଠୀପ୍ରଥା ପୁରୁଣା କଳଙ୍କିଲଗା ଜିନିଷ ପରି ଆପେ ଆପେ ଝଡ଼ିଯାଏ । ପୁରୁଷ ଯେତେ ଯେତେ ଘରର କାମଦାମ ବେଶୀ କରେ ତେତେ ମାତୃସତ୍ତା ସମାଜ ବ୍ୟବସ୍ଥା ଭାଙ୍ଗିବାକୁ ଲାଗେ ।

ବହୁ ଯୁଗ ଆଗରେ ସମାଜର ଚଳନ୍ତି ନିୟମ ଥିଲା ଯେ ସ୍ତ୍ରୀମାନେ ଚାଷବାସ ବୁଝିବେ ଆଉ ପୁରୁଷମାନେ ଗୋରୁ, ମେଣ୍ଢା ଚରାଇବେ । ଯେତେଦିନ ଯାଏ ଗୋରୁ, ମେଣ୍ଢାର ବଂଶ ସେତେ ବୃଦ୍ଧି ପାଇ ନ ଥିଲା, ସେତେଦିନ ସ୍ତ୍ରୀଲୋକଙ୍କର କୋମଳ ହାତରେ କୃଷିହିଁ ଥିଲା ସମସ୍ତ ଗୋଷ୍ଠୀର ଏକମାତ୍ର ବଞ୍ଚିବାର ଉପାୟ । କିନ୍ତୁ ସମତଳଭୂମିରେ ପ୍ରାୟ ଭଲ ଫସଲ ହେଲା ନାହିଁ । ଘାସ ଯୋଗୁଁ ଫସଲ ନଷ୍ଟ ହୋଇଯାଏ । ତେଣୁ ଲୋକେ ଫସଲ ଚଷିବାର ଆଶା ପରିତ୍ୟାଗକରି ସେଇ ସବୁ ଅଞ୍ଚଳରେ ଗୋରୁ, ମେଣ୍ଢା ଚରେଇବା ଆରମ୍ଭ କରି ଦିଅନ୍ତି । ଫଳରେ ଘରେ ଶସ୍ୟର ଭଣ୍ଡାର ନିଃଶେଷ ହୋଇଗଲେ ବି କିଛି

ଭାବିବାକୁ ପଡ଼େ ନାହିଁ । ମାଂସ, ପନୀର, ଦୁଧ ନେଇ ସମସ୍ତ ଗୋଷ୍ଠୀ ପ୍ରାଣଧାରଣ କରିପାରେ ।

ସମଭୂମିରେ ମଣିଷର ଗୋପାଳନ ପ୍ରଧାନ କାମ ହୋଇ ଛିଡ଼ା ହେଲା । ଏହା ପରେ ଲଙ୍ଗଳ ଦେଇ ଚାଷ ଆବାଦର ପତ୍ତନ ପଡ଼ିଲା । ସୁଇଜରଲାଣ୍ଡର ପର୍ବତ ଶିଖରରେ ଏକ ପ୍ରାଚୀନ ଚାଷୀର ଛବି ମିଳିଛି । ସେଥିରେ ଅଙ୍କା ଅଛି ଯେ, ଗୋଟିଏ କାଠ ଲଙ୍ଗଳର ସାହାଯ୍ୟରେ ଚାଷୀ ଚାଷବାସ କରୁଛି । ଲଙ୍ଗଳ ଆବିଷ୍କାରର ସଙ୍ଗେ ସଙ୍ଗେ ମଣିଷ ପ୍ରଥମେ ସ୍ୱୟଂଚାଳିତ ଯନ୍ତ୍ର ଆବିଷ୍କାର କଲା । ଗୋପାଳନ ଚାଷ କାର୍ଯ୍ୟରେ ସାହାଯ୍ୟ କଲା । ଗୋପାଳକ ମଣିଷ ଏଥରକ ଚାଷୀ ରୂପରେ ଦେଖା ଦେଲା । ତା ସାଙ୍ଗେ ସାଙ୍ଗେ ଘରେ ମଧ୍ୟ ତା'ର କର୍ତ୍ତୃତ୍ୱ ବଢ଼ିଗଲା ।

ସେତେବେଳେ ଅବଶ୍ୟ ସ୍ତ୍ରୀଲୋକଙ୍କୁ କାମରୁ ରିହା ନ ଥିଲା । ସେମାନେ ଲୁଗା ବୁଣୁଥିଲେ । ଫସଲ କାଟି ଘରକୁ ଆଣୁଥିଲେ ଏବଂ ପିଲା ଝିଲାଙ୍କୁ ପାଳୁଥିଲେ । କିନ୍ତୁ ଆଗପରି ସେମାନେ ଆଉ ସମାଜର ସର୍ବମୟକର୍ତ୍ତୀ ହୋଇ ରହିଲେ ନାହିଁ । ଗୋପାଳନ ଏବଂ ଚାଷ ବାସର ନୂତନ ପ୍ରକ୍ରିୟାରେ ମଣିଷ ଆଗୁସାର ହୋଇଗଲା ।

ଘରର କାମ ଧନ୍ଦା ଲାଗି ମଣିଷକୁ ଧମକାଇବା ଚଳିଲା ନାହିଁ; ବରଞ୍ଚ ସେମାନେ ସ୍ତ୍ରୀ ଲୋକଙ୍କୁ ଧମକାଇବାକୁ ଲାଗିଲେ । ଆଗ ଅମଳରେ ବୁଢ଼ିମା, ଶାଶୁ, ଖୁଡ଼ୀ,ପିଉସୀ ସମସ୍ତେ ପ୍ରୟୋଜନ ହେଲେ ଅକ୍ଳେଶରେ ପୁରୁଷମାନଙ୍କୁ ଗୋଷ୍ଠୀରୁ ବାହାର କରି ଦେଉଥିଲେ । ବର୍ତ୍ତମାନ ଆଉ ତାହା କରି ପାରିଲେ ନାହିଁ । ବରଂ ସେମାନେ ଆଦରକରି ପୁରୁଷକୁ ଗୋଷ୍ଠୀରେ ରଖିବାକୁ ଚାହିଁଲେ । ଏହିପରି ଭାବରେ ଧୀରେ ଧୀରେ ପୁରୁଣା ସମାଜର ବ୍ୟବସ୍ଥା ଭାଙ୍ଗି ପଡ଼ିବାରେ ଲାଗିଲା । ଆଗର ସଂସ୍କାର ମଧ୍ୟ ସମାଜକୁ ଭାଙ୍ଗିବାକୁ ଲାଗିଲା । ଆଗେ ସ୍ତ୍ରୀ ସ୍ୱାମୀକୁ ସଂସାର କ୍ଷେତ୍ରକୁ ଆଣେ, ଏଥରକ ସ୍ତ୍ରୀକୁ ସାଙ୍ଗରେ ନେଇ ପୁରୁଷ ନିଜର ପରିବାର ଗଢ଼ିବାକୁ ଆରମ୍ଭ କଲା ।

ସେହି କାଳର ସମାଜ ବ୍ୟବସ୍ଥାରେ ଏହି ବିପ୍ଳବ ପ୍ରଥମେ ଲୋକଙ୍କର ଆଖିରେ ଗଲା ନାହିଁ । ଯିଏ ବିଭାହୋଇ ସ୍ତ୍ରୀକୁ ନିଜ ଘରକୁ ନେଉଥିଲା, ଲୋକେ ତାକୁ ଦୋଷ ଦେଉଥିଲେ । ପ୍ରଥମେ ପ୍ରଥମେ କେହି ପ୍ରକାଶ୍ୟରେ କନ୍ୟା ନେଇ ଯାଇ ପାରୁ ନ ଥିଲା, ଚୋରି କରୁଥିଲା, ବା ଜୋର କରି ସେ ପ୍ରଥମ ଅବସ୍ଥାରେ ସ୍ତ୍ରୀ କୁ ଘରକୁ ନେଉଥିଲା ।

କୌଣସି ଅନ୍ଧାର ରାତିରେ ବରର ଆତ୍ମୀୟସ୍ୱଜନ ଅସ୍ତ୍ରଶସ୍ତ୍ର ନେଇ ଚୁପ୍‌ଚାପ କନ୍ୟାର ଘରେ ଚଢ଼ାଉ କରୁଥିଲେ । କୁକୁରର ଚିତ୍କାରରେ ସମସ୍ତଙ୍କର ନିଦ ଭାଙ୍ଗି

ଯାଉଥିଲା । କିନ୍ତୁ ସେମାନେ ତିଆରି ହେବା ପୂର୍ବରୁ ହୁଏତ କନ୍ୟାକୁ ଚୋରି କରି ନେଇ ବର ଘରକୁ ଧ୍ରୁ କରୁଥିଲା ।

ବର୍ଷ ପରେ ବର୍ଷ କଟିଯାଇଛି । ଏକ ସମୟରେ ଯାହା ଥିଲା ଚଳନ୍ତି ବିଧି ଆଖିରେ ଅପରାଧ ତାହା କ୍ରମେ ଆଇନ ହୋଇ ଛିଡ଼ା ହୋଇଛି । ବର ଓ କନ୍ୟା ପକ୍ଷର ଲଢ଼ାଇ ରୂପାନ୍ତରିତ ହୋଇ ଉତ୍ସବରେ ବା ଶୁଭ ପରିଣୟରେ ପରିଣତ ହୋଇଛି । ଯୌତୁକ ନେଇଛି ରକ୍ତାକ୍ତ ଯୁଦ୍ଧର ସ୍ଥାନ । କନ୍ୟାର ମା ଭଉଣୀଙ୍କର କାନ୍ଦଣା ଉତ୍ସବର ଗୋଟିଏ ଅଙ୍ଗ ହୋଇ ଠିଆ ହେଲା ଏବଂ ତା'ର ସମାପ୍ତି ହେଲା ନିମନ୍ତ୍ରଣରେ । ପୁରାକାଳରେ ଗୋଟିଏ ଗୋତ୍ର ଛାଡ଼ି ଆଉ ଗୋଟିଏ ଗୋତ୍ରକୁ ଯିବା ସମୟରେ ଝିଅ ଯେପରି କାନ୍ଦେ, ଆଜି ପର୍ଯ୍ୟନ୍ତ ସେ କାନ୍ଦର ପ୍ରତିଧ୍ୱନି ଲିଭିନାହିଁ ।

ସ୍ତ୍ରୀଲୋକର ଏହି ଭାଗ୍ୟ ପରିବର୍ତ୍ତନକୁ ଈର୍ଷା କରିବା ଭଳି କିଛି ନାହିଁ । ନୂତନ ସଂସାରକୁ ଆସି ସ୍ତ୍ରୀକୁ ସମ୍ପୂର୍ଣ୍ଣରୂପେ ସ୍ୱାମୀର ଅଧୀନରେ ରହିବାକୁ ହେଲା । ତାକୁ ସହାନୁଭୂତି ଦେଖାଇବାକୁ ଏଇଠି କେହି ନାହିଁ । ସମସ୍ତେ ସ୍ୱାମୀପକ୍ଷ । ସମସ୍ତେ ଚାହିଁଲେ ଦାସୀ, ଚାକରାଣୀ ପରି ବୋହୂ ଆସି ଖଟିକରି ଖାଉ । ସେ ଯେପରି ବସି ନ ରହୁ । ଏହିପରି ଭାବରେ କ୍ରମେ ମାତୃକର୍ତ୍ତୃତ୍ୱର ଅବସାନରେ ପିତୃକର୍ତ୍ତୃତ୍ୱ କାଏମ ହେଲା ।

ପିଲାପିଲିମାନେ ଆଉ ମାମୁଁ ଘରେ ରହିଲେ ନାହିଁ – ରହିଲେ ବାପ ସାଙ୍ଗରେ । ବଂଶ ପରିଚୟ ଏଣିକି ବାପ ଆଡୁ ଦିଆହେଲା । ବ୍ୟକ୍ତିଗତ ଓ ଗୋଷ୍ଠୀର ନାମ ସାଙ୍ଗରେ ସେମାନଙ୍କ ଆଉ ଗୋଟିଏ ନାମ ନେବାକୁ ହେଲା ''ଅମୁକର ପୁଅ'' ।

ଏକ୍ଷଣି ଏହାର ଅସ୍ତିତ୍ୱ ଦେଖାଯାଏ ଇଂରାଜୀ ପଦବୀରେ ଯେପରି ''ପିଟାର ରବାର୍ଟସନ'' ଅର୍ଥାତ୍ ରବର୍ଟର ପୁଅ ପିଟାର । କେହି ଏକ୍ଷଣି ସ୍ୱପ୍ନରେ ଭାବିପାରନ୍ତି ନାହିଁ ଯେ ପୁଅର ନାମ ମଧ୍ୟ ଦିଆଯାଇ ପାରେ ''ପିଟାର ହେଲେନସନ'' ମା'ର ନାମ ଅନୁସାରେ ।

## ପ୍ରଥମ ବାରବୁଲା

ଚାଷ ଆବାଦ କ୍ଷେତ୍ରରେ ମଣିଷର ଯେଉଁ ବିପୁଳ ପରିବର୍ତ୍ତନ ଘଟିଥିଲା ତା'ର ଫଳରେ ତାର ଆଉ ଆହାର ନେଇ ମୁଣ୍ଡ ଘୁରେଇବାକୁ ହୋଇ ନାହିଁ । ଏକ୍ଷଣି ପ୍ରଚୁର ଖାଦ୍ୟ, ସମଭୂମିରେ ହଜାର ହଜାର ଗୋରୁ, ଭେଡ଼ୀ ଚରନ୍ତି । କ୍ଷେତରେ ଚାଷୀମାନେ କ୍ଲାନ୍ତ ବଳଦକୁ ଉତ୍ସାହ ଦେବାପାଇଁ ଶଗଡ଼ିଆ ଗୀତ ଗାଆନ୍ତି, ଚିତ୍କାର କରନ୍ତି । ଉର୍ବର

ଉପତ୍ୟକାରେ ପ୍ରଥମେ ଅଙ୍ଗୁର ଫଳର ବଗିଚାରେ ଅଙ୍ଗୁର ଧଇଲା । ସନ୍ଧ୍ୟାବେଳେ ସମସ୍ତେ ଡ଼ିମିର ଗଛ ତଳରେ ଆସି ବସିଲେ । କଠୋର ପରିଶ୍ରମ ଫଳରେ ମଣିଷ ଅବଶ୍ୟ ଖୁବ୍ ଅଧିକରୁ ଅଧିକ ଖାଦ୍ୟ ପାଉଥିଲା ସବୁ ସମୟତକ, କିନ୍ତୁ ସେଥିପାଇଁ ଖଟିବାକୁ ହୁଏ ସେମିତି ବେଶୀ । ପ୍ରତ୍ୟେକ ଅଙ୍ଗୁରର ପେନ୍ଥା, ପ୍ରତ୍ୟେକ ଯବଧାନର ଶୀଷାରେ ମଣିଷର ଖଟଣୀ ଜଡ଼ି ରହିଚି ।

ପେନ୍ଥା ପେନ୍ଥା ଅଙ୍ଗୁର ପାରିଆଣି ତାକୁ ପଥରର ଯନ୍ତାରେ ପେଷି ସେହି ରକ୍ତପରି ଲାଲ ଅଙ୍ଗୁର ରସ ମଣିଷ ଚମଡ଼ା ବୋତଲରେ ରଖୁଥିଲା । ଦଳ ଦଳ ଲୋକ ବସି ଅଙ୍ଗୁର ରସର ସ୍ତୋତ୍ର ପଢୁଥିଲେ । ଚମଡ଼ାର ପୋଷାକ ପିନ୍ଧା ସୁନ୍ଦର ଦେବତାର ସ୍ତବ ପଢ଼ା ହେଉଥିଲା । ଦେବତାଙ୍କୁ ଯେତେ କଷ୍ଟ ଦିଆଯାଇଛି ସେଥିଲାଗି କ୍ଷମା ଭିକ୍ଷା କରାଯାଉଥିଲା । ସେ ନଦ ନଦୀର ନୀଚ ମାଟିରେ ଯେପରି ପ୍ରକୃତି ଦେବୀ ନିଜେ ନିଜେ ଫସଲର ଦାୟିତ୍ୱ ନେଉଥିଲେ; ଏକଥା ମଣିଷ ମନେ କରୁଥିଲା । କିନ୍ତୁ ଏଠି ମଧ ମଣିଷର ବିଶ୍ରାମ କମ୍ ନ ଥିଲା । ଖାଲ ଖୋଳି ମଣିଷକୁ ସବୁ ସମୟରେ କ୍ଷେତରେ ଜଳ ଧରି ରଖିବାକୁ ହୁଏ । ନଦୀ ହିଁ ଜମି ଉର୍ବରା କରେ ବୋଲି ଲୋକେ ନଦୀ ପାଖରେ ପାର୍ଥନା ଜଣାଉଥିଲେ । ସେମାନେ ଭୁଲି ଯାଇଥିଲେ ଯେ,ନଦୀ କୂଳ ଜମିରେ ସେମାନେ ନିଜେ ନ ଖଟିଲେ ଖାଲି ପ୍ରାର୍ଥନାରେ କିଛି ସମ୍ଭବ ହୁଅନ୍ତା ନାହିଁ ।

ଗୋଟେ ଆଡ଼େ ଚାଷବାସ, କାମଦାମ ତ କଠିଣ ହେଉଥିଲା; ଅନ୍ୟ ଆଡ଼େ ଗୋପାଳନ କାମ ମଧ କ୍ରମେ କ୍ରମେ କଠିଣ ହେଉଥିଲା । ଯେତେ ଗୋରୁ, ମେଣ୍ଢାର ଗୋଠ ବଢୁଥିଲା ସେତେ ସେମାନଙ୍କର କାମ ବଢ଼ିଯାଉଥିଲା । ଦୁଇ ଏକ ଡ଼ଜନ ଗୋରୁ ମେଣ୍ଢାକୁ ସମ୍ଭାଳିବା ଗୋଟେ କଥା; କିନ୍ତୁ ହଜାର ହଜାର ଗୋରୁ ମେଣ୍ଢାର ଗୋଠକଥା ସଂପୂର୍ଣ୍ଣ ଅଲଗା । ପୁଣି ଗୋଟାଏ ବଡ଼ ପଲ ଦୁଇ ଦିନରେ ଗୋଟିଏ ପଡ଼ିଆର ଘାସଚରି ସଫାକରିଦେଲେ ତେବେ ସେମାନଙ୍କୁ ଅନ୍ୟ ଦୂର ପଡ଼ିଆକୁ ନେଇ ଯିବାକୁ ହେଉଥିଲା । କ୍ରମେ ଏତେଦୂର ନେବାକୁ ପଡ଼ିଲା ଯେ ଗୋଟା ଗୋଟା ଗାଁ ସାରା ଲୋକ ଆପଣାର ଚୁଲିଚାଳ ଉଠାଇ ଗୋରୁ ମେଣ୍ଢା ପଛରେ ଚାଲିଲେ । ଆଗେ ଆଗେ ଚାଲେ ଗୋରୁ ମେଣ୍ଢାର ପଲ ଆଉ ପଛରେ ଥାଏ ଓଟ ପିଠିରେ ବୋଝାଇକରା ତମ୍ବୁ । ସେମାନଙ୍କ ପଛରେ ପଡ଼ିଥାଏ ବାଲୁଙ୍ଗାଭରା ପଡ଼ିଆ । ସେହି ଭୁଲଆଡ଼େ ସେମାନେ ମୋଟେ ନଜର ପକାନ୍ତି ନାହିଁ । ସେତେବେଳେ ସମଭୂମିରେ କ୍ୱଚିତ୍ ଭଲ ଫସଲ ହେଉଥିଲା ।

ମଣିଷର ଇତିହାସରେ ଏଠି ପ୍ରଥମେ ଶ୍ରମବିଭାଗ ଦେଖାଦେଲା । କେବଳ ମଣିଷ ଭିତରେ ନୁହେଁ, କୁଳ ଭିତରେ ମଧ୍ୟ । ସମଭୂମିରେ ରହିଲେ ଗୋପାଳକ ରଖୁଆଳ ଦଳ; ଯେଉଁମାନେ ଗୋରୁ ବଦଳରେ ଖାଦ୍ୟସଶ୍ୟ ସଂଗ୍ରହ କରୁଥିଲେ, ସେମାନେ କୌଣସି ଠାବରେ ସ୍ଥିର ରହନ୍ତି ନାହିଁ। ସବୁବେଳେ ବୁଲିବାରେ ଥାଆନ୍ତି । ଏ ସବୁ ବାରବୁଲାମାନେ ଥିଲେ ସ୍ୱାଧୀନ ଏବଂ ବଣୁଆ ସ୍ୱଭାବର ।

ଖୋଲା ଆକାଶ ତଳେ ଖୋଲା ଜାଗାରେ ସେମାନେ ତମ୍ବୁ ପକାଉଥିଲେ । ଗୋଟାକଯାକ ସମଭୂମି ଥିଲା ସେମାନଙ୍କର ଆବାସ । ସୁଦୀର୍ଘ ଯାତ୍ରା ପଥରେ ଓଟ ପିଠିର ଦୋଳାରେ ପିଲାମାନେ ଦୋଳି ଖେଳି ଖେଳି ଯାଆନ୍ତି ।

ଏମାନଙ୍କ ଜୀବନ କିନ୍ତୁ ଏତେ ଖୋଲା ନ ଥିଲା, ଏତେ ସୁଖ ଶାନ୍ତିର ନ ଥିଲା । ଯାତ୍ରା ପଥରେ କୌଣସି ଚାଷ ଜମି ପଡ଼ିଲେ ସେମାନେ ପ୍ରାୟ ଅନ୍ୟର ଫସଲ କାଟି ନିଅନ୍ତି । ପାହାଡ଼ରୁ ନଦୀର ଉପତ୍ୟକାକୁ ଓହ୍ଲାଇବା ବେଳେ ସେମାନେ ଗାଁ ପରେ ଗାଁ ଲୁଟି କରନ୍ତି । ଶସ୍ୟ ନଷ୍ଟ କରନ୍ତି ଏବଂ ସେମାନଙ୍କର ଗୋରୁ ମେଣ୍ଢା ଚୋରିକରି ନେଇଯାଆନ୍ତି ।

ଏମାନେ ମଧ୍ୟ ବେଶୀ ଲୋକ ଚାହୁଁଥିଲେ । ଯେତେବେଶୀ ଲୋକ ଥାଆନ୍ତି ସେତେ ବେଶୀ ଗୋରୁ, ମେଣ୍ଢାଙ୍କର ହେପାଜତ ସହଜ ହୁଏ । ସେଥିପାଇଁ ସେମାନଙ୍କ କୁଳରେ ଲୋକର ଅଭାବ ସବୁବେଳେ । କାହାର ହୁଏତ ଦଶଟି ପୁଅ । ସେଥିରେ ପୋଷାଏ ନାହିଁ । ମଣିଷ ତୁଳନାରେ ଗୋରୁ ମେଣ୍ଢା ଦଳର ବଂଶ ବୃଦ୍ଧି ହୁଏ ଢ଼େର ବେଶୀ । ତେଣୁ ସେମାନେ ଅନ୍ୟକୂଳର ଲୋକଙ୍କୁ ଜୋର କରି ଧରି ଆଣି ଦାସ ବନାଇ କାମ କରାଇ ନିଅନ୍ତି ।

ଏ ହେଉଛି ଯାଯାବର ଗୋପାଳକମାନଙ୍କର କାମ । ଆଗ ଯୁଗରେ ପରାଜିତମାନଙ୍କୁ ବନ୍ଦୀକରିବା ପ୍ରଥା ଥିଲା । କାରଣ ନୂତନ ଲୋକ ଆସିଲେ ଯେ ଆୟ ବଢୁଥିଲା ସେ କଥା ନୁହେଁ । ସେ ମଣିଷ ଯେମିତି କାମ କରୁଥିଲା, କିନ୍ତୁ ତାର ଖାଉତି ମଧ୍ୟ ଅଛି । ହୁଏତ ନିଜର ସମସ୍ତ ଘଟଣା ସେ ଖାଇବାରେ ଉଡ଼ାଇ ଦିଅନ୍ତି । କିନ୍ତୁ ବର୍ତ୍ତମାନ ଅବସ୍ଥା ଏକାବେଳକେ ଓଲଟା । ବର୍ତ୍ତମାନ ଜଣଙ୍କର ପରିଶ୍ରମ ଲବ୍ଧ ଜିନିଷକୁ ଅନେକ ଲୋକ ଭାଗ ବସାଇ ପାରନ୍ତି । ଜଣେ ବନ୍ଦୀ ଖଟିଲେ ନିଜକୁ ଏବଂ ତାର ପ୍ରଭୁକୁ ସ୍ୱଚ୍ଛନ୍ଦରେ ଖୁଆଇ ପାରୁଥିଲା। କର୍ତ୍ତା କେବଳ ନଜର ରଖିବାର କଥା, ‘ବନ୍ଦୀ ଯେପରି କମ୍ ଖାଏ, ଆଉ ବେଶୀ ପରିଶ୍ରମ କରେ ।’

ମଣିଷ ଏପରିଭାବରେ ନିଜ ପଡ଼ୋଶୀକୁ ଜୀବନ୍ତ ଯନ୍ତ୍ରରେ ପରିଣତ କଲା । ମଣିଷର ଅଧଃପତନ ଘଟାଇ ଗୋରୁ,ଘୋଡ଼ା ପରି ତା'ର ବେକରେ ଜୁଆଳି ଦେବାକୁ ମଣିଷ ଦ୍ୱିଧା କଲା ନାହିଁ । ପ୍ରକୃତି ବିଜୟର ଅଭିଯାନରେ କାଳକ୍ରମେ ମଣିଷ ଘଟଣାଚକ୍ରରେ ପଡ଼ୋଶୀର ଦାସ ହୋଇ ପଡ଼ିଲା । ଆଗେ ଜମିଥିଲା ସର୍ବସାଧାରଣଙ୍କର ସମ୍ପତ୍ତି; ଯେଉଁମାନେ କାମ କରୁଥିଲେ ସେହିମାନଙ୍କର । ଏକ୍ଷଣି ଦାସ ଯେଉଁ ଜମି ଚାଷ କରେ ସେଥିରେ ତା'ର ଅଧିକାର ନ ଥିଲା । ଯେଉଁ ବଳଦ ଦ୍ୱାରା ସେ ଚାଷ କରେ ସେ ବଳଦ ତା'ର ନୁହେଁ । ଯେଉଁ ଫସଲ ସେ ଫଳାଏ ସେ ଫସଲ ମଧ୍ୟ ତାର ନୁହେଁ ।

ଅତୀତରେ ମିଶରର ଦାସ ସେଥିପାଇଁ ଜମି ଚଷିଲାବେଳେ ଗୀତ ବୋଲେ ।

''ବିଲର ଚାରା ନଷ୍ଟ କରରେ,
ଫସଲ୍ ଯେପରି ଭଲ ନ ହେଉ,
ଏ ଫସଲ ଯେ ଆମର ନୁହେଁରେ ସବୁ ମାଲିକର''

- ୦ -

# ସ୍ମୃତି ଓ ସ୍ମୃତି ଚିହ୍ନ

ଅତୀତର ବିଷୟ ଅନୁଶୀଳନ କରି କରି ଆମେ ଏତେବେଳେ ଯାଏ ନାନା କଷ୍ଟ ଭିତରେ ଯାଇଥାଉଁ । କେବଳ ଗୁମ୍ଫାର ଗୋଲକଧନ୍ଦାରେ ଅଟକିଛି, କେତେବେଳେ ବା ଏପରି ଅନେକ ଜିନିସ ପାଇଛୁ ଯାକୁ ନେଇ ଜଳ୍ପନାକଳ୍ପନା ସାର ହୋଇଛି ।

କିନ୍ତୁ ଏଥରକ ଆମରି ଚଲାବାଟରେ ନାନା ଚିହ୍ନ ଦେଖିବାକୁ ମିଳିଲାଣି । ଏଥରକ ପ୍ରଥମ କରି କବର ଓ ମନ୍ଦିର ଦେହରେ ଖୋଳା ଶିଳାଲିପି ଦେଖିବାକୁ ମିଳିଲାଣି । ଏଗୁଡ଼ିକ ମୋଟେ ଆଗର ମ୍ୟାଜିକ୍ ଛବିପରି ଦେଖିବାକୁ ନୁହେଁ । ବର୍ତ୍ତମାନ ପରି ଅବଶ୍ୟ ସେତେବେଳର ଅକ୍ଷର ସେତେ ସ୍ପଷ୍ଟ ହୋଇ ନାହିଁ । ସେତେବେଳେ ପୃଥିବୀକୁ ପକ୍ଷୀ ପରି ଆଙ୍କି ଦେଖାଇବାକୁ ହୁଏ । ତାଳପତ୍ର ସମେତ ଗୋଟାଯାକ ଗଛର ଛବି ମିଳେ ।

ଲେଖକର ଜନ୍ମ ଇତିହାସ ଆରମ୍ଭ ହୁଏ ଏଇ ଚିତ୍ର ଲିପିରୁ । ଛବି ବଦଳରେ ଚଳନ୍ତି ଚିହ୍ନ ଦେଇ ମନର କଥା ବୁଝାଇବାକୁ ବହୁଦିନ ଲାଗିଥିଲା ।

ଇଂରାଜୀ ଅକ୍ଷରକୁ ଚାହିଁଲେ ଏକଥା କହିବା କଠିଣ ଯେ କେଉଁ ଅକ୍ଷର କେଉଁଠୁ ଆସିଛି । କିଏ କହି ପାରିବ – କଳ୍ପନା କରିପାରିବ ଯେ A ଅକ୍ଷରଟି ଆସିଛି ପକ୍ଷୀର ମୁଣ୍ଡର ଛବିରୁ । କିନ୍ତୁ A କୁ ଓଲଟାଇ ଦେଲେ ଗୋଟିଏ ମୁଣ୍ଡର ଆଭାସ ମିଳିବ । ଦୁଇଟା ଶିଂଘ । ଅତୀତରେ ସେମାଇଟ୍ ଜାତି ଏହି ଶିଂଘବାଲା ମୁଣ୍ଡକୁ A ବୋଲି କହନ୍ତି । ସେମାନେ ଷଣ୍ଢକୁ କହନ୍ତି ଆଲେଫ (Aleph) । ତାର ପ୍ରଥମ ଅକ୍ଷର ଥିଲା ଏହି A । ଠିକ୍ ଏହି ଭାବରେ ଇଂରାଜିର ପ୍ରତ୍ୟେକ ଅକ୍ଷରର ଇତିହାସ ଖୋଜା ଯାଇପାରେ । O ହେଉଛି ଆଖି, R ହେଉଛି ଲମ୍ବା ବେକ ଉପରେ ଗୋଟିଏ ମାଳା ।

ହଜାର ମାଇଲର ଜୋତା ପିନ୍ଧି ଆମ୍ଭେମାନେ ଏଥରକ ଅନେକ ଦୂର ଆସିଥାଉଁ । ପ୍ରଥମେ ଚିତ୍ରଲିପିର ଯୁଗରେ ଆମେ ଆସି ପହଞ୍ଚିଛୁ ।

ମଣିଷ ଧୀରେ ଧୀରେ ଲେଖା ଶିଖିଲା । ଯେତେ ଦିନ ଖୁବ୍ ବେଶୀ କିଛି ଶିଖିବାର ନଥିଲା, ସେତେଦିନ ଯାଏ ମଣିଷ ସବୁକଥା ମୁଖସ୍ଥ କରୁଥିଲା । ଗାଥା, ଉପକଥା ସବୁ କିଛି ବଂଶପରମ୍ପରା କ୍ରମେ ଚଳିଆସୁଥିଲା । ସେଇକାଳର ପ୍ରତ୍ୟେକ ବୁଢ଼ାଲୋକ ଥିଲେ ମୂର୍ତ୍ତିମାନ ଖଣ୍ଡେ ଖଣ୍ଡେ ଗ୍ରନ୍ଥ । ଏହି ସମୟରେ କୀର୍ତ୍ତି ସ୍ତମ୍ଭ ସ୍ମୃତି ଶକ୍ତିର ସହାୟତା କରିଥିଲା । ଲିଖିତ ଓ କଥିତ ଭାଷାର ସାହାଯ୍ୟରେ ମଣିଷ ଆଗତ ପୁରୁଷର ଭିତରେ

ଅଭିଜ୍ଞତା ଦାନ କରି ଯାଉଥିଲା । ନେତାର ସମାଧି ସ୍ତମ୍ଭ ଉପରେ ତା'ର କୀର୍ତ୍ତିକଳାପର ଲେଖାଥାଏ ଯେପରି ପୁରୁଷମାନେ ତାର କୀର୍ତ୍ତିକଳାପର କଥା ଜାଣି ପାରିବେ । ଅନ୍ୟସବୁ ପ୍ରତିବେଶୀମାନଙ୍କ ପାଖକୁ ଦୂତ ପଠାଇବା ସମୟରେ ସେମାନେ ଗଛର ବଲ୍‌କଳ ଉପରେ କିମ୍ବା ମାଟି ବାସନର ଚିତ୍ରଲିପିର ସାହାଯ୍ୟରେ ଦରକାରୀ କଥା ଲେଖି ଦିଅନ୍ତି । ପୃଥିବୀର ପ୍ରଥମ ବହି ହେଉଛି ଏହି ସମାଧି ସ୍ତମ୍ଭ ଏବଂ ପ୍ରଥମ ଅକ୍ଷର ଲେଖାହୁଏ ବଳକ୍‌ଲରେ ।

ଆଜି ଆମ୍ଭେମାନେ ରେଡ଼ିଓ, ଟେଲିଫୋନ୍‌ର ଗର୍ବ କରୁ । ହଜାର ହଜାର ମାଇଲ ଦୂରରେ ରେଡ଼ିଓ ମାରଫତ୍ ମଣିଷର କଥା ପହୁଞ୍ଚିଯାଏ । ରେକଡ଼ କରାଯାଇଥିବା ଆମରି କଣ୍ଠସ୍ୱର ଯୁଗ ଯୁଗାନ୍ତ ଧରି ରକ୍ଷିତ ହୋଇପାରିବ । ଏଗୁଡ଼ିକ ନିଃସନ୍ଦେହରେ ଆମରି ବିରାଟ ସାଫଲ୍ୟ । କିନ୍ତୁ ଏ ସାଫଲ୍ୟକୁ ବଡ଼ିମା କଲେ ଭଲ ହେବ ନାହିଁ ।

ବହୁ ଯୁଗ ଆଗେ ମଧ ଆମ୍ଭମାନଙ୍କର ପୂର୍ବପୁରୁଷମାନେ ଦେଶ ଓ କାଳର ବ୍ୟବଧାନ ଅସ୍ୱୀକାର କରିବାକୁ ଚାହିଁ, ଅଳ୍ପ ବିସ୍ତର ସାଫଲ୍ୟ ଲାଭ କରିଥିଲେ । ବଲ୍‌କଳରେ ଭାଷା ଲେଖି ଆଉ ସ୍ମୃତିସ୍ତମ୍ଭ କରି କାଳ ସଙ୍ଗରେ ଟକ୍‌କର ଦେଇ ଚାଲିଥିଲେ ।

ଆମ୍ଭମାନଙ୍କର ଯୁଗରେ ବହୁ ସ୍ମୃତିସ୍ତମ୍ଭର ଅସ୍ତିତ୍ୱ ଏବେ ଦେଖିବାକୁ ମିଳେ । ସେମାନଙ୍କ ଦେହରେ ସେ କାଳର ବୀରମାନଙ୍କର କାହାଣୀ, ଯୁଦ୍ଧ ଜୟର ଗାଥା, ସୈନ୍ୟ ସେନାପତିମାନଙ୍କର ଚିତ୍ର ଅଙ୍କା ରହିଛି । ବିଜେତାମାନେ ବୀର ଦର୍ପରେ ଯୁଦ୍ଧ ଜୟ ଶେଷ କରି ଫେରି ଆସୁଛନ୍ତି, ଆଉ ସେମାନଙ୍କ ପଛରେ ନତମସ୍ତକରେ ଆସୁଛନ୍ତି ହାତବନ୍ଧା ବନ୍ଦୀର ଦଳ ଧାଡ଼ି ଧାଡ଼ି ହୋଇ । ସେହି ସବୁ ଚିତ୍ରଲିପି ଭିତରୁ ଆମ୍ଭେମାନେ ପ୍ରଥମେ ବନ୍ଦୀର ଚିହ୍ନ ସେ କାଳର ହାତକଡ଼ା ଦେଖିବାକୁ ପାଉ । ମିଶରର ମନ୍ଦିରମାନଙ୍କ ଦେହରେ ଆମ୍ଭେମାନେ ଆହୁରି ଏହି ସବୁ ନାନା ଛବି ଅଙ୍କା ଦେଖିଚୁ । ଗୋଟିକରେ ଏକ ଲମ୍ବା ବନ୍ଦୀର ଧାଡ଼ି ଗୋଟିଏ କୋଠା ତୋଳିବାର ଇଟା ତିଆରି କରୁଛନ୍ତି । ଜଣକର ବେକରେ ଇଟା ବୋଝାଇ ବାକ୍‌ସ । ସେ ଦୁଇ ହାତରେ ତାକୁ ଧରିଅଛି । ଆଉ ଜଣେ ଗୋଟିଏ ଲମ୍ବା ଲାଠିରେ ଭାର କରି ଇଟା ଝୁଲି ବାନ୍ଧିଛି ପାଣି ଆଣିଲା ଭଳି । ରାଜମିସ୍ତ୍ରୀମାନେ କାନ୍ଥ ଗଢୁଛନ୍ତି; ଆଉ ପରିଦର୍ଶକ ଗୋଟିଏ ବଡ଼ ଇଟା ଉପରେ ବସି ସବୁ ତଦାରଖ କରୁଛନ୍ତି । ସେ ଦୁଇ ଆଣ୍ଠୁ ଉପରେ ଭରାଦେଇ ବସିଛନ୍ତି ଆଉ ହାତରେ ଧରିଛନ୍ତି ଖଣ୍ଡେ ବେତ । ସେ କାମ କରନ୍ତି ନାହିଁ – ଅନ୍ୟକୁ କାମ କରାଇବା ହେଲା ତାଙ୍କର କାମ । ଆଉ ଜଣେ ତଦାରଖ କଲାବାଲା ଟିକିଏ ଦୂରରେ ବୁଲୁଛନ୍ତି । ହାତର ଲାଠିରେ ସେ ଜଣେ ଦାସର ମୁଣ୍ଡରେ ମାରୁଛନ୍ତି ।

- ୦ -

# ସ୍ୱାଧୀନ ମନୁଷ୍ୟ ଓ ଦାସ

"ପିଆଜ ଗଛରେ ଯେମିତି ଗୋଲାପ ହୁଏ ନାହିଁ, ସେମିତି ଦାସୀ ଗର୍ଭରେ ସ୍ୱାଧୀନ ମଣିଷ ଜନ୍ମେ ନାହିଁ !"

ଗ୍ରୀକ୍ କବି ଥିଓଜସ ଯେତେବେଳେ ଏହି ପଦ୍ତିଟି ଲେଖନ୍ତି ସେତେବେଳେ ସମାଜରେ ଦାସ ବ୍ୟବସ୍ଥା ବେଶ୍ କାଏମ୍ ହୋଇ ଯାଇଛି । ତା ଆଗେ ଦାସମାନଙ୍କୁ କେବେ ନୀଚ ଜାତୀୟ ବୋଲି ଉପେକ୍ଷା କରାଯାଉ ନ ଥିଲା । ସ୍ୱାଧୀନ ଓ ଦାସ ସମସ୍ତେ ଏକ ବଡ଼ ପରିବାର ପରି ଏକ ସାଙ୍ଗରେ କାମ କରୁଥିଲେ, ରହୁଥିଲେ ଏବଂ ଖାଉଥିଲେ । ପିତା ଥିଲେ ବୃହତ୍ ପରିବାରର କର୍ତ୍ତା । ତାଙ୍କର ପୁଅ, ତାଙ୍କର ବୋହୂ, ନାତି ନାତୁଣୀ, ଦାସ ଦାସୀ ସମସ୍ତେ ଏକ ସଙ୍ଗରେ ବାସ କରୁଥିଲେ । କେବଳ ବାପାହିଁ ଏକମାତ୍ର ଦୁର୍ବିନୀତ ପୁଅ ବା ଦାସକୁ ବେତ ମାରି ପାରୁଥିଲେ; ଅନ୍ୟ କେହି ନୁହେଁ ।

ପୁରୁଣା ବୁଢ଼ା ଦାସ ତା'ର ପ୍ରଭୁକୁ 'ପୁଅ' ବୋଲି ସମ୍ବୋଧନ କରୁଥିଲା; ଆଉ ପ୍ରଭୁ ତାକୁ ବାପା ବୋଲି ସମ୍ବୋଧନ କରୁଥିଲେ । ଏଇଟା ଥିଲା ସେ କାଳର ରୀତି ଓ ପୁରୁଣା ଉପକଥା । ତାହା ବିରାଟ ଗ୍ରୀକ୍ କବି ହୋମରଙ୍କର ଲେଖା । ତୁମର ମନେ ଥିବ ଭୃତ୍ୟ ଇଉମିଉସ ପ୍ରଭୁ ସାଙ୍ଗରେ ଗୋଟିଏ ଟେବୁଲରେ ଖାଉଥିଲା । ସେହି ଘୁଷୁରିପାଳକ ଇଉମିଉସକୁ ସେ କାଳର ଗାୟକମାନେ ସମସ୍ତେ "ଦେବତା ପରି" ବୋଲି ବର୍ଣ୍ଣନା କରୁଥିଲେ । ଏ ସବୁ ସତ୍ୱେ କିନ୍ତୁ ଓଡ଼େସୀର ସବୁଟା ସତ ନୁହେଁ । ଘୁଷୁରୀ ଚରାଉଥିବା ଇଉମେଉସର କେବେ ଦେବତା କିମ୍ବା ପ୍ରଭୁର ସମ୍ମାନ ନ ଥିଲା । ତାକୁ ଅନେକ କାମ ବାଧ ହୋଇ ଇଚ୍ଛା ବିରୁଦ୍ଧରେ କରିବାକୁ ପଡୁଥିଲା । କିନ୍ତୁ ତାହାର ପ୍ରଭୁ ଇଚ୍ଛା କଲେ କାମ କରି ନ ପାରନ୍ତି । ପରିବାରର ଅନ୍ୟମାନଙ୍କ ଠାରୁ ଦାସକୁ ବେଶୀ ଖଟିବାକୁ ହେଉଥଲା । ତାକୁ ପାରିତୋଷିକ ଦିଆହେଉଥିଲା କମ୍ । ଦାସଥିଲା ସମ୍ପତ୍ତି ପରି । ପ୍ରଭୁ ସେହି ସମ୍ପତ୍ତିର ଅଧିକାରୀ । ପ୍ରଭୁ ମରିଗଲେ ଦାସ ମଧ ଅନ୍ୟସବୁ ଜୀବଜନ୍ତୁ ସାଙ୍ଗେ ତାର ପିଲାର ସମ୍ପତ୍ତି ବୋଲି ପରିଣତ ହେଉଥିଲା ।

ଆଗର ପାରିବାରିକ ସାମ୍ୟ ଏହା ପଛ ସାମାଜିକ ବ୍ୟବସ୍ଥାରେ ଅବଶିଷ୍ଟ ନା ଥିଲା ଏକଥା କହିବା ବାହୁଲ୍ୟ । ଏଠି ପିତା ସନ୍ତାନର ଶାସକ, ସ୍ତ୍ରୀ ସ୍ୱାମୀର ଅଧୀନ, ପୁତ୍ର

ବଧୂ ଶ୍ୱଶୁରର ଏବଂ ଛୋଟ ବୋହୂମାନେ ବଡ଼ ବୋହୂ ଅଧୀନରେ ଥାଆନ୍ତି । ସମସ୍ତଙ୍କର ତଳେ ଦାସ ଶ୍ରେଣୀ ।

ବିଭିନ୍ନ କୁଳ ଭିତରର ସାମ୍ୟ ମଧ୍ୟ ନଷ୍ଟ ହୋଇଥିଲା । ଅନେକଙ୍କର ବେଶୀ ଗୋରୁ, ମେଣ୍ଢା ଥିଲାବେଳେ ଅନେକଙ୍କର କମ୍ । ଗୋରୁ, ମେଣ୍ଢା ଦାମ ମଧ୍ୟ ବେଶି ଥିଲା । ତା'ର ବିନିମୟରେ ଲୁଗାପଟା ଓ ଅସ୍ତ୍ରଶସ୍ତ୍ର କିଣା ଯାଉଥିଲା । ଆଗ କାଳର ମୁଦ୍ରା ଯେ ଷଣ୍ଢର ଚମଡ଼ାରୁ ତିଆରି ହୋଉଥିଲା । ସେଟା ହଠାତ୍ ହୋଇନାହିଁ ।

କିନ୍ତୁ ଗୋରୁ ମେଣ୍ଢାଠାରୁ ଦାସର ମୂଲ୍ୟ ଆହୁରି ବେଶୀ । ଦାସ ରଖିଲେ ଯେ ସେ ଗୋରୁ, ମେଣ୍ଢା, ଘୁଷୁରୀ ଇତ୍ୟାଦି ସବୁ ଚରାଇ ପାରିବ । ସାରାଦିନ ଚରାଇ ସନ୍ଧ୍ୟାବେଳେ ସେ ସବୁ ଗୋରୁ ପଲ ଖୋଜି ଆଣି ସେମାନଙ୍କ ଗୁହାଳରେ ଢୁକେଇ ରଖିପାରିବ । ଫସଲ ଆଣିବା ବେଳେ ମଧ୍ୟ ସାହାଯ୍ୟ କରିବ । ଦାସ ସବୁବେଳେ ସ୍ୱାଧୀନ ଲୋକକୁ ସାହାଯ୍ୟ କରିବ – କିନ୍ତୁ ତାର ସାହା କେହି ନାହିଁ । ତା'ର କପାଳରେ ସବୁବେଳେ କଠିଣ କାମର ଭାର । ଏଠୁଁ ଯୁଦ୍ଧ କ୍ରମେ ଖୁବ୍ ଲାଭଜନକ ବ୍ୟବସାୟ ହୋଇଉଠିଲା । କାରଣ ଯୁଦ୍ଧ ଜିତିଲେ ଦାସ ମିଳେ । ଆଉ ଦାସ ମିଳିଲେ ସମ୍ପଦ ବଢ଼ିବ । ସୁତରାଂ ଦାସମାନଙ୍କର ଘରେ ଗୋରୁ, ଘୋଡ଼ା ତଦାରଖ କରିବାକୁ ଛାଡ଼ିଦେଇ ସ୍ୱାଧୀନ ମଣିଷମାନେ ଲଢ଼ାଇ କରିବାକୁ ଯାଉଥିଲେ ।

ଯୁଦ୍ଧ ସାଙ୍ଗେ ସାଙ୍ଗେ ଲୋକଙ୍କ କାମ ମଧ୍ୟ ବଢ଼ିଗଲା । ସେମାନଙ୍କର ଢ଼ାଲ, ତଲୁଆର, ବର୍ଚ୍ଛା, ରଥ ସବୁ ଦରକାର । ରଥ ସାଙ୍ଗରେ ଦୁଇଟା ଘୋଡ଼ା ଯୋଚି ଯୁଦ୍ଧ କ୍ଷେତ୍ର ଆଡ଼କୁ ଚାଳନା କରାହୁଏ । ସୈନ୍ୟମାନେ ବର୍ମ ପିନ୍ଧନ୍ତି, ଶିରସ୍ତ୍ରାଣରେ ମୁଣ୍ଡ ଢ଼ାକନ୍ତି; ବାଁ ହାତରେ ଢ଼ାଲ ନେଇ ଶତ୍ରୁ ଆକ୍ରମଣରୁ ଆତ୍ମରକ୍ଷା କରନ୍ତି । ବଡ଼ଲୋକ ଘରର ଚାରିଦିଗ ଘେରି ବିରାଟ ମଜବୁତ ପାଚେରୀ ଗଢ଼ା ହେଉଥିଲା । ଯେଉଁ ଗୋଷ୍ଠୀ ଯେତେ ଧନୀ ସେମାନଙ୍କର ଆତ୍ମରକ୍ଷା ବ୍ୟବସ୍ଥା ମଧ୍ୟ ସେତେ ସୁଦୃଢ଼ ହେଲା । କ୍ରମେ କ୍ରମେ ବିରାଟ ଦୁର୍ଗ ତିଆରି କରି ସେମାନେ ସେଇଠାରେ ବସବାସ କରିବାରେ ଲାଗିଲେ ।

ସେହି ଦୁର୍ଗର ପାଚେରୀରୁ ଦେଶର ବହୁଦୂର ପର୍ଯ୍ୟନ୍ତ ଦେଖା ଯାଉଥିଲା । ଯେତେବେଳେ ଆକାଶ ଘୋଡ଼ା ଖୁରାର ଧୂଳି ପଟଳରେ ଅନ୍ଧାର ହୋଇଯାଏ, କିମ୍ବା ବର୍ଚ୍ଛାର ଫଳକରେ ଝଲସି ଉଠେ; ସେତେବେଳେ ଦୁର୍ଗ ଭିତରେ ସମସ୍ତେ ଅସ୍ତ୍ରଶସ୍ତ୍ର ନେଇ ତିଆରି ହୋଇ ଯାଆନ୍ତି ସଂଗ୍ରାମ ଲାଗି । ଚାଷୀ ତରବରରେ ଗୋରୁମେଣ୍ଢା ଗୁହାଳକୁ ନେଇ ଯାଏ । ଏଇ ଭାବରେ ଗୋଟିଏ ପରେ ଗୋଟିଏ ଯେତେବେଳେ ସଭିଏଁ ଭିତରେ ରହିଯାଆନ୍ତି

ସେତେବେଳେ ଦୁର୍ଗର ବିରାଟ ଦରଜା ବନ୍ଦ କରି ଦିଆଯାଏ । ସେହି ପାଚେରୀ ଦେହରେ ମୁଣ୍ଡପାତି ଏବଂ ଅନ୍ୟାନ୍ୟ ନାନା ଜାଗାରେ ସୈନ୍ୟମାନେ ଶତ୍ରୁ ଆକ୍ରମଣର ଅପେକ୍ଷା କରନ୍ତି ।

ଆକ୍ରମଣକାରୀମାନେ ଆସି ଦୁର୍ଗର ବାହାରେ ତମ୍ବୁ ଟାଙ୍ଗନ୍ତି । ସେମାନେ ଭଲ କରି ଜାଣନ୍ତି ଏ ସମସ୍ତ ଦୁର୍ଗ ଜୟକରିବା ସେତେ ସହଜ ନୁହେଁ । ହୁଏ ତ ମାସ ପରେ ମାସ କଟିଯାଏ ଦୁର୍ଗ ଜୟ କରିବାରେ । ପ୍ରତ୍ୟେକ ଦିନ ଭୋରବେଳେ ଦୁର୍ଗର ଭିତରୁ ଦଳେ ସୈନ୍ୟ ବାହାରି ଆସି ଶତ୍ରୁର ମୁହାଁମୁହିଁ ଯୁଦ୍ଧ କରନ୍ତି । ଯୁଦ୍ଧ କରୁ କରୁ ଗଭୀର ରାତ୍ରିରେ ଅବସନ୍ନ ଦେହରେ ସମସ୍ତେ ସେ ଦିନ ପରି ଯୁଦ୍ଧ ବନ୍ଦକରି ଆଉଥରେ ଦୁର୍ଗରେ ଯାଇ ପହଞ୍ଚନ୍ତି । ଦଳେ ଯେପରି ଆତ୍ମରକ୍ଷାର ପ୍ରେରଣାରେ ଯୁଦ୍ଧ କରନ୍ତି, ଅନ୍ୟ ଦଳ ସେପରି ଯୁଦ୍ଧ କରନ୍ତି ସମ୍ପଦର ଲୋଭରେ ।

ଏହି ଭାବରେ ଦିନ ପରେ ଦିନ ଯାଏ । ଦୁର୍ଗରେ ଆବଦ୍ଧ ରହିଲେ ସଞ୍ଚିତ ଖାଦ୍ୟ ଦ୍ରବ୍ୟ କେତେଦିନ ଯିବ । ଖାଦ୍ୟ ସରିଲେ ଦୁର୍ଗ ସାରା ହାହାକାର ପଡ଼େ । ସେଥି ସଙ୍ଗେ ପ୍ରତିଥର ଲଢ଼େଇରେ ଲୋକକ୍ଷୟ ହୁଅନ୍ତି । ଅବଶେଷରେ ସେମାନଙ୍କର ପ୍ରତିରୋଧର କ୍ଷମତା କମିଗଲେ ଆକ୍ରମଣକାରୀମାନେ ପ୍ରବଳ ଉତ୍ସାହରେ ଦୁର୍ଗ ଭିତରେ ପ୍ରବେଶ କରନ୍ତି । ସେହି ଦୁର୍ଗର ସବୁତକ ଛିନ୍ନ ଭିନ୍ନ କରି ସେମାନେ ଗୋରୁ, ସ୍ତ୍ରୀ, ପୁରୁଷ ସମସ୍ତଙ୍କୁ ବନ୍ଦୀ କରି ନେଇ ଯାଆନ୍ତି ଦାସ କରିବା ପାଇଁ ।

## ମୃତଲୋକ ମୁହଁରେ ଜୀବନ୍ତର କଥା

ଅନେକ ଦେଶରେ ସମଭୂମି କିମ୍ବା ଖୋଲା ମାଠ ଭିତରେ ଧାଡ଼ି ଧାଡ଼ି ଉଞ୍ଚ ଢ଼ିଅ ଦେଖିବାକୁ ମିଳିବ । ଏଗୁଡ଼ାକ ଯେ କ'ଣ ସ୍ଥାନୀୟ ଅଧିବାସୀମାନେ ତାହା କହିପାରିବେ ନାହିଁ । ପୁରାତତ୍ତ୍ୱବିଦ୍‌ମାନେଏ ସବୁକୁ ସ୍ତୂପ କହନ୍ତି । ସାଧାରଣରେ ଖୁବ୍ ପୁରୁଣା ଜିନିଷ ନେଇ ଯେପରି ଗଳ୍ପ ଗଢ଼ାହୁଏ, ଏସବୁ ନେଇ ମଧ୍ୟ ସେପରି ନାନା ଉପାଖ୍ୟାନ ତିଆରି ହୋଇଛି ।

ପୁରାତତ୍ତ୍ୱବିଦ୍‌ମାନେ କହନ୍ତି ଏହି ସ୍ତୂପମାନଙ୍କରେ ବହୁ ପୂର୍ବକାଳରେ ଲୋକମାନଙ୍କୁ ସମାଧି ଦିଆ ଯାଉଥିଲା । ଏ ଗୁଡ଼ିକ ଖୋଳିଲେ ଏପର୍ଯ୍ୟନ୍ତ କଙ୍କାଳ ମିଳେ । ସେହି କଙ୍କାଳ ସଙ୍ଗେ ଯେ ଜିନିଷ ପତ୍ର ସମାଧିରେ ରଖାଯାଇଥାଏ । ସେମାନଙ୍କର ଧାରଣା ଥିଲା ଯେ ମରିଗଲେ ମଧ୍ୟ ଲୋକମାନଙ୍କର ଖାଇବା ଦରକାର ହୁଏ, ଖଟିବାକୁ ପଡ଼େ, ଏବଂ ସ୍ତ୍ରୀ

ଲୋକମାନଙ୍କର ବୁଣାବୁଣି କାମ କରିବାକୁ ହୁଏ । ସେ ପର୍ଯ୍ୟନ୍ତ ମଣିଷର ସମ୍ପତ୍ତି ଖୁବ୍ ବେଶୀ ନ ଥିବାରୁ ଅତି ପୁରାତନ ସମାଧିରେ ଖାଲି ବର୍ଚ୍ଛା, କବଚ ସବୁ ମିଳୁଥିଲା । ଧନୀ ଆଉ ଗରୀବର ସମାଧି ପର ଯୁଗର । ଦକ୍ଷିଣ ରୁଷିଆର ଡନ୍ ନଦୀକୂଳରେ ତିନି ରକମର ସମାଧି ମିଳିଛି । ପ୍ରଥମଟି ଧନୀର; ଦ୍ୱିତୀୟଟି ମଧ୍ୟବିତ୍ତର ଏବଂ ତୃତୀୟଟି ଗରୀବମାନଙ୍କର ।

ପ୍ରଥମ ଧାଡ଼ିରେ ଖୁବ୍ ଉଚ୍ଚ ସମାଧିରେ ଗ୍ରୀକ୍ ଫୁଲଦାନୀ, ସୁନାର ବର୍ମ ଓ ଚମତ୍କାର କାରୁକାର୍ଯ୍ୟ ଖଚିତ ଛୁରା ମିଳିଛି । ମଝି ଧାଡ଼ିରେ ସୁନାର କିଛି ନାହିଁ । ଏପରିକି ଫୁଲଦାନୀ ମଧ୍ୟ ନାହିଁ । ଗରୀବମାନଙ୍କର କଥା ନକହିଲେ ବି ଚଳେ । ସେଠି କୌଣସି ଧାତୁର ବର୍ମ୍ମ ମଧ୍ୟ ନାହିଁ । ପାଖ ପାଖର ବଡ଼ ବଡ଼ ସ୍ତୂପଠାରୁ ଗରୀବମାନଙ୍କର ଛୋଟ ଛୋଟ ସ୍ତୂପ ସଂଖ୍ୟା ବେଶୀ । ତା' ଭିତରେ ମଲା ଲୋକର ଗୋଟିଏ ପାଖରେ ଥାଏ ବର୍ଚ୍ଛା, ଆର ପାଖରେ ପାଣି ପିଇବା ଗିଲାସ । ସମାଜରେ ଯିଏ ଗରୀବ ସମାଧି ସ୍ତୂପରେ ମଧ୍ୟ ସେ ଗରୀବ । ଏହି ସବୁ ମୃତକଙ୍କ ସମାଧିରୁ ଆମେ ଜାଣି ପାରୁ ଯେ ସମାଜରେ ସେତେବେଳେ ଧନୀ ଗରିବ ସୃଷ୍ଟି ହୋଇଗଲାଣି ।

ସମାଧିରେ ଲଗାଲଗି ସେ ସମୟରେ ବସତିରେ ଦୁଇଟା ପାଚେରୀ ଥିଲା । ଗୋଟାଏ ବାହାରର, ଗୋଟିଏ ଭିତରର । ସେହି ଭିତର ପାଚେରୀ ପଛଆଡ଼େ ନାନା ନାନା ଦାମୀ ଜିନିଷ ରହୁଥିଲା । ସେଠି ସୁଦୂର ଗ୍ରୀସରୁ ଅଣା ହୋଇଥିବା ଫୁଲଦାନୀ ମଧ୍ୟ ମିଳିଛି । ସେହି ଭିତରର ପାଚେରୀ ଏବଂ ବାହାରର ପାଚେରୀ ମଝିରେ ଏ ସବୁ ଜିନିଷର ଅସ୍ତିତ୍ୱ ମିଳେ ନାହିଁ । ଅର୍ଥାତ୍ ସେହି ମଝିରେ ଥିବା ଲୋକମାନଙ୍କର ଏ ସବୁ ଜିନିଷର କୌଣସି ଦରକାର ନ ଥିଲା ।

କାର୍ଯ୍ୟତଃ, ଦେଶ ସମାଧିରୁ ଆମ୍ଭେମାନେ ମୃତ ଲୋକର କଥା ଜାଣିପାରି ଥାଉଁ । ଅନେକ ସମୟରେ ଅନେକ ଭୟାବହ ସତ୍ୟ ଏହି ସବୁ ସମାଧିମାନଙ୍କରୁ ଆବିଷ୍କୃତ ହୋଇଛି । କେବେ କେବେ ଜୋର କରି ଦାସକୁ ମାରି ପ୍ରଭୁ ସାଙ୍ଗରେ ସମାଧିରେ ପୋତି ଦିଆଯାଇଛି । କେବେ କେବେ ସ୍ତ୍ରୀକୁ ସ୍ୱାମୀ ସାଙ୍ଗରେ ସମାଧି ଦିଆହୁଏ । ଗୋଷ୍ଠୀର ବାପା ମରିଗଲେ ସେ ଦାସ ଓ ସ୍ତ୍ରୀ ସମସ୍ତଙ୍କ ସଙ୍ଗେ ବେଳେ ବେଳେ ସମାଧିସ୍ଥ ହେଉଥିଲେ ।

**ମଣିଷ ଏକ ନୂତନ ଧାତୁ ଆବିଷ୍କାର କଲା**

ହଜାର ହଜାର ବର୍ଷ ଧରି ଯେଉଁ ସବୁ ଅମୂଲ୍ୟ ସମ୍ପଦ ମାଟି ତଳେ ଅନ୍ଧକାରରେ ସମାଧିସ୍ଥ ଥିଲା – ଏବେ ତା'ର ଅନେକ ଜିନିଷହିଁ ପୃଥିବୀର ନାନା ଜାଗାରେ ମିଉଜିଅମ୍‌ରେ

ଯତ୍ନ ସହକାରେ ରକ୍ଷିତ ହୋଇଛି । ଦର୍ଶକମାନେ ନିର୍ବାକ ବିସ୍ମୟରେ ସୁନାବେଣ୍ଟର ତରବାରୀ ଏବଂ ତାର ସୂକ୍ଷ୍ମ କାରୁକାର୍ଯ୍ୟ ଭରା ଶିକୁଳିକୁ ସ୍ତମ୍ଭିତ ଆଖିରେ ଅନାଇ ଦେଖନ୍ତି ।

ଏହି ସବୁ କାମରେ କେତେ ନିପୁଣତା ଅଉ ପରିଶ୍ରମ ନ ଲାଗିଛି ? ଅତି ସାଧାରଣ ବ୍ରଞ୍ଜର ଛୁରା କରିବାକୁ ଅନେକ ଦିନ ଲାଗିଛି । ପ୍ରଥମେ ସେମାନେ ଖଣିଜ ଧାତୁ ସଂଗ୍ରହ କରିବାରେ ଲାଗୁଥିଲେ । ରାସ୍ତାରେ ଘାଟରେ ଖାଣ୍ଟି ତମ୍ବା ଖୋଜି ପାଇବାର ଦିନ ସେତେବେଳେ ସରିଗଲାଣି । ଆଗେ ଯେପରି ପଥର ଖୋଜିବାକୁ ସେମାନଙ୍କୁ ମାଟି ତଳକୁ ଯିବାକୁ ହୁଏ, ଏଥର ସେପରି ତମ୍ବା ଲାଗି ଖଣି ଖୋଳିବାକୁ ହେଲା ।

ସହଜରେ ମାଟି ଖୋଳିବାର ଉପାୟ ସେମାନେ ବାହାର କଲେ । ସେମାନେ ଆଗେ ଖଣିର ମଧ୍ୟରେ ନିଆଁ ଜାଳି ଚାରିଧାରରେ ପାଚେରୀଗୁଡ଼ିକ ଗରମ କରି ତୋଳନ୍ତି । ତା ପରେ ସେହି ଗରମ ଦେବାଲରେ ପାଣି ଢ଼ାଳି ଦିଅନ୍ତି । ତା' ପରେ ଗରମରେ ସେଇ ଜଳ ବାଷ୍ପୀଭୂତ ହୁଏ । ସେଇ ବାମ୍ପର ଚାପରେ ଚାରିପାଖର ପଥରର କାନ୍ଥ ଭାଙ୍ଗି ପଡ଼େ ।

ଆଗକାଳରେ ଖଣି ଥିଲା କେତେଗୁଡ଼ାଏ ଆଗ୍ନେୟଗିରିପରି ଦେଖିବାକୁ । ଆଗ୍ନେୟଗିରିପରି ଖଣି ମୁହଁରୁ ସବୁବେଳେ ଧୂଆଁ ଉଠେ । ଇଂରେଜିରେ ଆଗ୍ନେୟଗିରିକୁ ଭଲକାନୋ କହନ୍ତି । ଏହି ଶବ୍ଦଟିରୁ କର୍ମକାର ଦେବତା ଭଲକାନ ଶବ୍ଦଟି ଉଦ୍ଭୁତ । ସେତେବେଳେ ଖଣିଜ ଧାତୁ ତରଳାଇବାରେ ଖୁବ୍ ବିଚକ୍ଷଣତା ଦରକାର ପଡୁଥିଲା । ସେହି ଧାତୁ ତରଳାଇବା ସମୟରେ ମଣିଷ ଖଣିଜ ଟିଣ ତମ୍ବାର ସଙ୍ଗେ ମିଶାଇ ଦେଉଥିଲା । ଏହା ଫଳରେ ଯେଉଁ ତମ୍ବା ମିଳେ ତାହା ଖାଣ୍ଟି ତମ୍ବା ନୁହେଁ, ସେଥିରେ ମିଶା ଥାଏ ତମ୍ବା ଆଉ ଟିଣ । ଏହାକୁ କହନ୍ତି ବ୍ରଞ୍ଜ – ଏକ ସଂପୂର୍ଣ୍ଣ ନୂତନ ଧାତୁ ।

ଅନେକ ଆଗର ଦିନରେ ଯେ କୌଣସି ଲୋକହିଁ ଖୁବ୍ ସହଜରେ ଅନ୍ୟର କାମ କରିପାରନ୍ତି । କୌଣସି କାମ ଶିଖିବା ସେପରି କଠିନ ନ ଥିଲା । କିନ୍ତୁ ଏକ୍ଷଣି ଅନେକ ସମୟ ଲାଗେ ଧାତୁ ତରଳାଇବା ଶିଖିବା ଲାଗି । ଏପରି ଭାବରେ କୌଣସି ବିଷୟରେ ନୈପୁଣ୍ୟ ଗୋଷ୍ଠୀଗତ ହୋଇ ଠିଆହେଲା, ଗୋଟିଏ ଗୋଟିଏ ସଂପ୍ରଦାୟର କେହି କୁମ୍ଭାର, କେହି କମାର, କେହି ତମ୍ବାକାର ହୋଇ ପଡ଼ିଲେ । ଚାରିଦିଗରେ ସେମାନଙ୍କର ନାମ କାମ ମଧ୍ୟ ବିସ୍ତାର ହୋଇ ପଡ଼ିଲା ।

## ମୋର ତୁମର

ପ୍ରଥମେ ପ୍ରଥମେ ସବୁ କାରିଗରକୁ ନିଜ ସଂପ୍ରଦାୟ ପାଇଁ ଖଟିବାକୁ ପଡୁଥିଲା । କିନ୍ତୁ ଯେତେଦିନ ଯିବାକୁ ଲାଗିଲା ତେତେ କମାର, କୁମ୍ଭାରମାନେ ନିଜ ନିଜର ତିଆରି ଜିନିସର ବିନିମୟରେ ଖାଦ୍ୟ ଶସ୍ୟ ଇତ୍ୟାଦି ନେବାରେ ଲାଗିଲେ । ଏହି ବଦଳି ପ୍ରଥା ଚାଲୁ ହେବା ଫଳରେ ଆଗର ଗୋଷ୍ଠୀ ପ୍ରଥା ଭାଙ୍ଗିବାକୁ ଲାଗିଲା ।

ଆଗେ ଗ୍ରାମର ପ୍ରତ୍ୟେକେ ସବୁ ବିଷୟରେ ପ୍ରତ୍ୟେକଙ୍କର ସମାନ ଥିଲେ । ଏଥରକ ଧନୀ ଗୋଷ୍ଠୀ ଓ ଦରିଦ୍ର ଗୋଷ୍ଠୀ ଭିତରେ ପାର୍ଥକ୍ୟ ଦେଖାଦେଲା । ଆଉ ବି କାରିଗର ଓ ଚାଷୀଙ୍କ ଭିତରେ ବିଭେଦ ବଢ଼ିଗଲା ।

ଯେତେଦିନ ଯାଏ କାରିଗରମାନେ ଗୋଟାଏ ସମ୍ପ୍ରଦାୟ ପାଇଁ ଖଟୁଥିଲେ ସେତେଦିନ ଯାଏ ସମସ୍ତ ସଂପ୍ରଦାୟ ସେମାନଙ୍କର ଭରଣ ପୋଷଣର ଦାୟିତ୍ୱ ନେଉଥିଲା । ଲୋକେ ସମସ୍ତେ ମିଳିମିଶି ଏକସଙ୍ଗରେ କାମ କରୁଥିଲେ । କିନ୍ତୁ ଯେତେବେଳେ କୌଣସି କାରିଗର ଇଚ୍ଛାରେ ତାର ଅସ୍ତ୍ରଶସ୍ତ୍ର ଅନ୍ୟ କାହା ସାଙ୍ଗରେ ବିନିମୟ କରୁଥିଲା, ସେତେବେଳେ ତାର ବଦଳରେ ପାଇବା ଜିନିସ ଆଉ ସେ ଗୋଷ୍ଠୀର ଅନ୍ୟାନ୍ୟମାନଙ୍କ ସଙ୍ଗେ ଭାଗ ଭାଗ କରିବାକୁ ଚାହୁ ନଥିଲା । ତାର ମନେହେଉଥିଲା ସେ ଅନ୍ୟ ସାହାଯ୍ୟ ବ୍ୟତିରେକେହିଁ ଏ ସବୁ ଜିନିଷ ଉପାର୍ଜନ କରୁଛି । ତେଣୁ ସେଥିରେ ଅନ୍ୟମାନଙ୍କୁ ଭାଗ ଦେବ କାହିଁକି ।

ଲୋକମାନେ ଅଲଗା ଅଲଗା ରହିବା ଆରମ୍ଭ କଲେ । ଗ୍ରୀସ୍, ମିସିନୀ, ଟିରିନ୍‌ର ଧ୍ୱଂସ ସ୍ତୂପ ଏହି ଘଟଣାର ସାକ୍ଷୀ । ସବୁଠାରୁ ଧନୀ ପରିବାର ପାହାଡ଼ ଉପରେ ସୁଦୃଢ଼ କାନ୍ଥର ପାଚେରୀକରି ତା ଭିତରେ ରହୁଥିଲେ । ସେଇଠି ସମ୍ପ୍ରଦାୟର ସାମରିକ ନେତା, ତାର ପୁଅ, ବୋହୂ ସମସ୍ତଙ୍କୁ ନେଇ ବାସ କରନ୍ତି । ନୀଚ ସମଭୂମିର ଓ ଉପତ୍ୟକାରେ ଛୋଟ ଛୋଟ କୁଡ଼ିଆ ଘରେ ଥାଆନ୍ତି ଗରୀବ ଚାଷୀର ଦଳ । ଧନୀମାନଙ୍କର ଇଲାକାର ଉପକଣ୍ଠରେ ବସବାସ କରନ୍ତି କମାର, କୁମ୍ଭାର ଏବଂ ଅନ୍ୟ କାରିଗରମାନେ । ଏ ପ୍ରକାର ସହରରେ ମଣିଷ ସମାନ ରହିନପାରେ । ଦରିଦ୍ର ଜନସାଧାରଣ ସାମରିକ ନେତାର ଐଶ୍ୱର୍ଯ୍ୟ ଦେଖି ମନେ ମନେ ହିଂସା କରନ୍ତି, ଆଉ ବାହାରେ ତାକୁ ସବୁଠାରୁ ସମ୍ମାନ ଦେଖାନ୍ତି । ସେମାନଙ୍କର ଧାରଣା ଥିଲା ସ୍ୱୟଂ ଭଗବାନ ଏମାନଙ୍କ ପକ୍ଷରେ । ଅତ୍ୟନ୍ତ ଶୈଶବ କାଳରୁ ପୁରୋହିତମାନେ ସେମାନଙ୍କ ମୁଣ୍ଡରେ ଏ ସବୁ ଧାରଣା ପୁରାଇ ଦେଇଥାନ୍ତି ।

ଚାଷୀମାନେ ମଧ୍ୟ କାରିଗରମାନଙ୍କୁ କିମ୍ବା ଖଣି ମଜୁରିଆଙ୍କୁ 'ଭାଇ' ଆଖିରେ ଦେଖନ୍ତି ନାହିଁ । ସମସ୍ତ ଦେହରେ କାଳି ଅଳନ୍ଧୁ ମାଖି ସେମାନେ ଖଣିରୁ କି ପ୍ରକାରରେ ଯେ ତମ୍ବା ବାହାର କରନ୍ତି ସେଇଟା ଚାଷୀମାନେ ବୁଝିପାରନ୍ତି ନାହିଁ । ଏମାନେ ଦେଖନ୍ତି ଖାଲି ଗାତ ଭିତରୁ ଧୂଆଁ ଉଠୁଛି; ଆଉ ତାପରେ ଖଣିର ମଜୁରିଆମାନେ ବାହାରି ଆସୁଛନ୍ତି ଖାଣ୍ଟି ତମ୍ବା ଆଉ ବ୍ରଞ୍ଜ ନେଇ । ଯା' ଭିତରେ କ'ଣ ହେଉଚି କିଏ ଜାଣେ ? ଏତେ ଧାତୁ ସେମାନେ ଆଣନ୍ତି ବା କୁଆଡୁ ? ନିଶ୍ଚୟ କେହି ତାକୁ କହି ଦିଆଯାଏ କୋଉଁଠାରୁ ଧାତୁ ମିଳିପାରେ ଆଉ କିପରି ବା ତାହା ମିଳିପାରିବ । ନିଶ୍ଚୟ ଭୂତ କିମ୍ବା ଏପରି କୌଣସି ଏକ ଅଦୃଶ୍ୟ ଅଭିଭାବକ ସେମାନଙ୍କୁ ଯଥାସ୍ଥାନକୁ ନେଇଯାଏ । ସୁତରାଂ ଯେଉଁମାନେ ଖଣିରେ କାମ କରନ୍ତି ସେମାନଙ୍କର ସାଙ୍ଗ ଛାଡ଼ିବାହିଁ ବୁଦ୍ଧିମାନର କାମ ।

ଖାଲି ଗ୍ରୀସ ନୁହେଁ ପୃଥିବୀର ସବୁଠି ଲୋକେ ଏହି ପ୍ରକାର ଭାବନ୍ତି ଏବଂ ପ୍ରାୟ ସବୁ ଦେଶରେ ଏପରି ଯାଦୁକର କମାରର ଗପ ରହିଚି ।

ଜନସାଧାରଣ ସେତେବେଳେ ଜାଣୁ ନ ଥିଲେ କି ପ୍ରକାରେ ଧନୀ ଦରିଦ୍ରର ପାର୍ଥକ୍ୟ ହୋଇଛି । ତେଣୁ ସେମାନେ ମନେ କରନ୍ତି ଭଗବାନହିଁ ମଣିଷର ଅଦୃଷ୍ଟ ନିର୍ଦ୍ଦିଷ୍ଟ କରି ପଠାଇଛନ୍ତି । ଭଗବାନ ସବୁ ସମୟରେ ଧନୀର ପକ୍ଷରେ ଥାଆନ୍ତି, ଦରିଦ୍ରମାନେ ତାଙ୍କର କୃପା କଣିକା ପାଇବାର ହକଦାର ନୁହନ୍ତି ।

- ୦ -

# ବିଜ୍ଞାନର୍ ଆରମ୍ଭ

ମଣିଷର ଧାରଣା ଥିଲା ସମସ୍ତ ପୃଥିବୀଟା ଏକ ବିରାଟ ଭୋଜବାଜୀ । ସେ ଏଥିରୁ କିଛି ବୁଝେ ନାହିଁ । ବ୍ୟାଖ୍ୟା ମଧ କରିପାରେ ନାଇଁ । ସେତେବେଳେ ତାର ଅଭିଜ୍ଞତାର ପରିଧି ଏତେ କମ୍ ଥିଲା ଯେ ରାତିର ଅନ୍ଧାର ପରେ ଯେ ଆଉ ଥରେ ଦିନ ହେବ, ସେ କଥା ମଧ ସେମାନେ ଜାଣନ୍ତି ନାହିଁ । ତେଣୁ ଭୋରବେଳେ ଯେପରି ଆଉ ଥରେ ଆଲୁଅ ଆସିବ ସେଥିପାଇଁ ସେମାନେ ସୂର୍ଯ୍ୟର ସ୍ତବ ସ୍ତୁତି କରନ୍ତି ।

ମିଶର ଦେଶର ଲୋକେ ମନେକରନ୍ତି, ଫାରାଓ ହେଉଛନ୍ତି ସୂର୍ଯ୍ୟ ଦେବତା । ପ୍ରତ୍ୟେକ ଦିନ ଭୋରରେ ସେ ମନ୍ଦିରର ଚାରିପାଖରେ ବୁଲି ଠିକ୍ କରିଦିଅନ୍ତି, ଯେପରି ସେ ଦିନ ସୂର୍ଯ୍ୟ ଠିକ୍ ଭାବରେ ପୃଥିବୀ ପର୍ଯ୍ୟଟନ କରିପାରନ୍ତି ।

କିନ୍ତୁ ମଣିଷ ପରିଶ୍ରମ କରି ନାନା ଅଭିଜ୍ଞତା ଲାଭ କରିବାରେ ଲାଗିଲା । ସେମାନେ ପ୍ରକୃତିର ନାନା ରହସ୍ୟ ଜାଣିପାରିଲେ । ଆଦିମ କାରିଗର ପଥରର ଶାଣ ଦେଉଁ ଦେଉଁ କ୍ରମେ ସେହି ପଥରର ଗୁଣାଗୁଣ ସମ୍ବନ୍ଧରେ ଜ୍ଞାନ ଲାଭ କଲା । ସେ ଶିଖିନେଲା ଜୋରରେ ଆଘାତ କଲେ ପଥର ଭାଙ୍ଗି ଖଣ୍ଡ ଖଣ୍ଡ ହୋଇଯାଏ । ଆଉ ଭାଙ୍ଗିବା ବେଳେ ପଥର ଚିତ୍କାରକରି କନ୍ଦାକଟା କରେ ନାଇଁ । କିନ୍ତୁ ପୃଥିବୀରେ ତ ହରେକ ରକମର ପଥର ଅଛି । ଏ ପଥର କଥା ନ କହିଲା ବୋଲି ସେସବୁ ପଥର ମୌନୀ ହେବେ ଯାର କ'ଣ ମାନେ ଅଛି ?

ଆମ୍ଭମାନଙ୍କୁ ଏ କଥା ହାସ୍ୟକର ମନେହେଉଛି । କିନ୍ତୁ ସେକାଳରେ ସମସ୍ତେ ସତକୁ ସତ ଏ ସବୁ ବିଶ୍ୱାସ କରନ୍ତି । ସେତେବେଳେ ଭୋଜବାଦ ହିଁ ଥିଲା କଠିଣ ସତ୍ୟ । ସେମାନେ ସେ ପର୍ଯ୍ୟନ୍ତ ପ୍ରକୃତିର ଚାଲିଚଳନର କୌଣସି ସୂତ୍ର ବା ନିୟମ ଆବିଷ୍କାର କରିବାକୁ ଶିଖିନାହାନ୍ତି ବୋଲି ହିଁ ଜୀବନଟାକୁ ବୈଷମ୍ୟ ଭରା ଏକ ଅନିୟମର ଇନ୍ଦ୍ରଜାଲ ମନେ କରନ୍ତି । ସେ ଦେଖେ କୌଣସି ଦୁଇଟା ପଥର ଏକ ପ୍ରକାର ନୁହେଁ, ସେଥିରୁ ତା'ର ଧାରଣା ହୁଏ ଯେ, ସେଇ ସବୁ ପଥରର ମିଜାଜଟା ମଧ ଅଲଗା ଅଲଗା ।

ହଜାର ହଜାର ବର୍ଷ କଟିଯାଇଛି । ଧୀରେ ଧୀରେ ନାନା ରକମର ପଥରରେ କାମ କରି ମଣିଷ ସାଧାରଣ ପଥରର ପ୍ରକୃତି ଜାଣିପାରିଲା । ସବୁ ପଥର ହିଁ ଶକ୍ତ ଅର୍ଥାତ୍

ପଥର ଶକ୍ତ ଜିନିସ । କୌଣସି ପଥର କଥା କୁହେ ନାହିଁ ଅର୍ଥାତ୍ ପଥରର ବାକ୍ ଶକ୍ତି ନାହିଁ ।

ଏହି ଭାବରେ ବିଜ୍ଞାନର ପ୍ରଥମ ବୀଜ ସୃଷ୍ଟି ହେଲା ମଣିଷ ମନରେ । ଶୀତ ପରେ ବସନ୍ତ ଆସିବ; ଏ ଚିନ୍ତାରେ ଆଜି ଆମ୍ଭେମାନେ ମୋଟେ ଅବାକ୍ ହେଉ ନାହିଁ । କାରଣ ଆମ୍ଭେମାନେ ଜାଣୁ ଯେ ଶୀତ ପରେ କୌଣସି ଦିନ ବସନ୍ତ ନ ଆସି ହେମନ୍ତ ବା ଅନ୍ୟ କୌଣସି ଋତୁ ଆସିପାରେ ନା । କିନ୍ତୁ ଆମ୍ଭମାନଙ୍କର ପୂର୍ବ ପୁରୁଷମାନଙ୍କ ପାଖରେ ଏହି ଋତୁ ପରିବର୍ତ୍ତନର ଜ୍ଞାନ ହେଉଛି ବହୁ ହଜାର ବର୍ଷର ଅଭିଜ୍ଞତା ଫଳରେ ମିଳିଥିବା ଏକ ବିରାଟ ବୈଜ୍ଞାନିକ ଆବିଷ୍କାର ।

ମିଶରର ଲୋକମାନେ ନୀଳ ନଦୀର ବନ୍ୟାରୁ ପ୍ରଥମେ ଏହି ସତ୍ୟ ଆବିଷ୍କାର କରନ୍ତି । ଗୋଟିଏ ବନ୍ୟାରୁ ଆଉ ଗୋଟିଏ ବନ୍ୟା ପର୍ଯ୍ୟନ୍ତ ସମୟକୁ ସେମାନେ ବର୍ଷେ ବୋଲି ଗଣୁଥିଲେ । ନଦୀକୁ ଦେବତା ବୋଲି ମନେ କରୁଥିବାରୁ କେବଳ ପୁରୋହିତମାନେହିଁ ନଦୀର ପରିବର୍ତ୍ତନ ଲକ୍ଷ୍ୟ କରନ୍ତି । ଏକ୍ଷଣି ମିଶରର ନୀଳ ନଦୀ ତୀରର ବହୁ ମନ୍ଦିର ଦେହରେ ପ୍ଲାବନ ସ୍ଥିତି ମାପିବାର ଦାଗ ରହିଚି ।

ଜୁଲାଇ ମାସର ଦାରୁଣ ଗ୍ରୀଷ୍ମରେ ଯେତେବେଳେ ଚାରିଆଡ଼ ଖାଇ ଗୋଡ଼ାଉଛି, ଖେତ ଖମାର ପୋଡ଼ି ଯାଉଛି, ସେତେବେଳେ ଚାଷୀମାନେ ଅଧିକ ଆଗ୍ରହରେ ନୀଳ ନଦୀର ପ୍ଲାବନ ଲାଭକରିବାକୁ ଅପେକ୍ଷା କରନ୍ତି । ଏଥର ପ୍ଲାବନ ହେବ ତ ? ଯଦି ଦେବତା ରାଗ କରେ ଏଥରକ ବନ୍ୟା ନ ହେବାକୁ ଦିଏ ?

ସେଥିପାଇଁ ନଦୀକୁ ସନ୍ତୁଷ୍ଟ କରିବା ଲାଗି ସମସ୍ତେ ନାନା ଉପଚାର ନେଇ ମନ୍ଦିରମାନଙ୍କରେ ପୂଜା ଦିଅନ୍ତି । ପୂଜା ଦେବା ପରେ ପ୍ରତ୍ୟେକ ଦିନ ଭୋରରେ ପୁରୋହିତମାନେ ନଦୀ ତୀରରେ ଦେଖନ୍ତି ବନ୍ୟା ଆସୁଛି କି ନାହିଁ । ପ୍ରତ୍ୟେକ ସନ୍ଧ୍ୟାରେ ସେମାନେ ଛାତରେ ଉଠି ଚାହାନ୍ତି ଆକାଶର ଦିଗକୁ – ନକ୍ଷତ୍ର ଖଚିତ ଆକାଶ ସେତେବେଳେ ଲୋକଙ୍କର ଦିନ ପଞ୍ଜିକା । ଶେଷରେ ଦିନେ ସେମାନେ ଆସି ପୁଝାରୀର ପାଖରେ କହନ୍ତି, ସେମାନଙ୍କର ଆରାଧନାରେ ଦେବତା ସନ୍ତୁଷ୍ଟ ହୋଇଛନ୍ତି । ଆଉ ତିନି ଦିନ ମଧ୍ୟରେ ଜଳର ଧାରା ଆସି ବିଲବାଡ଼ି ତିନ୍ତାଇ ଦେଇ ଯିବ ।

ଖୁବ୍ ଧୀରେ ଧୀରେ ମଣିଷ ତା'ର ଚାରିପାଖର ନୂତନ ଜଗତକୁ ବୁଝିବାକୁ ଶିଖିଲା । ପ୍ରଥମ ନକ୍ଷତ୍ର ବିଦ୍ୟା ଆଲୋଚନାର କ୍ଷେତ୍ର ଥିଲା ମନ୍ଦିରର ଛାତ । କମାର,

କୁମ୍ଭାର କାମର ଘର ହେଲା ପ୍ରଥମ ଲାବରେଟରୀ । ମଣିଷ ପର୍ଯ୍ୟବେକ୍ଷଣ ଶିଖିଲା, ଗଣିବାକୁ ଶିଖିଲା ଏବଂ ସେଥିରୁ ସ୍ଥିର ସିଦ୍ଧାନ୍ତ ଆସିଲା । ସେତେବେଳର ବିଜ୍ଞାନ ଉପରେ ଯାଦୁବିଦ୍ୟାର ପ୍ରଭାବ ଥିଲା ପୁରାପୁରି । ପର୍ଯ୍ୟବେକ୍ଷଣ କରି ଶିକ୍ଷା ଲାଭ କଲେ ବି ସେପର୍ଯ୍ୟନ୍ତ ମଣିଷ ତା'ରି ସଙ୍ଗେ ଦେବତାର ଆରାଧନା ବାଦ ଦେଇ ନାହିଁ । ଅଜ୍ଞାନତାର ଆରାଧନା ଗୁହାରେ କ୍ରମେ କ୍ରମେ ଆଲୋକ ଆସି ପଡ଼ିଥିଲା ।

## ଦେବତା କୁଳର ସ୍ୱର୍ଗଯାତ୍ରା

ଏପରି ଦିନ ଥିଲା ଯେତେବେଳେ ଆଦିମ ଅଧିବାସୀମାନେ ପ୍ରତ୍ୟେକ ପଥର, ଗଛ, ଜୀବଜନ୍ତୁରେ ଭୂତପ୍ରେତର ଅସ୍ତିତ୍ୱ ଆରୋପ କରୁଥିଲେ । କିନ୍ତୁ କ୍ରମେ କ୍ରମେ ଏହି ଧାରଣା ବଦଳିବାକୁ ଲାଗିଲା । ପ୍ରତ୍ୟେକ ଜନ୍ତୁ ଭିତରେ ଭୂତ ରହିଛି; ପରେ ମଣିଷ ଏ ଭାବନା ଛାଡ଼ିଦେଲା । ଆଗର ବିଭିନ୍ନ ଭୂତ ଜାଗାରେ ଦେଖାଦେଲା ଜଣେ ଅରଣ୍ୟ ରକ୍ଷକ ଦେବତା । ଚାଷୀମାନେ ଆଉ ବିଶ୍ୱାସ କରନ୍ତି ନାହିଁ ଯେ ବିଭିନ୍ନ ଶସ୍ୟ ଭିତରେ ଭିନ୍ନ ଭିନ୍ନ ଦେବତା ଅଛନ୍ତି । ବହୁ ଦେବତା ବଦଳରେ ଜଣେ କୃଷକ ହୋଇଗଲେ। ସେହି ସବୁ ପ୍ରକାର ଉତ୍‌ଥାନରେ ସାହାଯ୍ୟ କଲେ । ଆଗର ଭୌତିକ ଆତ୍ମାର ସ୍ଥାନ ଯେଉଁ ସବୁ ଦେବ, ଦେବୀ ଗ୍ରହଣ କଲେ। ସେମାନେ ଆଉ ମଣିଷ ମଝିରେ କେବେ ବସବାସ କରି ପାରିଲେ ନାଇଁ । ଜ୍ଞାନର ଆଲୁଅ ଯୋଗୁଁ ସେମାନେ ମଣିଷର ଆବାସ ଠାରୁ କ୍ରମେ ଦୂରକୁ ଘୁଞ୍ଚି ଯାଇ ଭିଡ଼ କରି ରହିଲେ । ସେମାନେ ଏପରି ସବୁ ଜାଗାରେ ରହିଲେ ଯେଉଁଠିକି ମଣିଷ ଆଗେ କେବେ ଯାଇନଥିଲା ।

କିନ୍ତୁ ଦିନେ ମଣିଷ ସେଠିକି ମଧ ଗଲା । ଜ୍ଞାନର ଶିଖାରେ ଗହନ ବନ ମଧ ଆଲୋକିତ ହୋଇଗଲା । ପାହାଡ଼ର ଦେହରୁ ମେଘର ପଟଳ ଦୂରକୁ ଘୁଞ୍ଚିଗଲା । ସେଠୁଁ ଦେବଦେବୀମାନେ ଏ ଆସ୍ଥାନ ଛାଡ଼ି ପଳାଇଲେ । ସେମାନେ ଆକାଶର ଉପରେ ସ୍ୱର୍ଗରେ କିମ୍ବା ପାତାଳର ନୀଚରେ ନରକରେ ଜାଗା ଖୋଜି ନେଲେ ।

ଭକ୍ତମାନଙ୍କ ଲାଗି କିପରି ପୃଥିବୀକୁ ଓହ୍ଲାଇ ଆସି ଦେବତାମାନେ ସଂଗ୍ରାମ କରିଛନ୍ତି ତା'ର ବହୁ ଉପାଖ୍ୟାନ ରଚିତ ହୋଇଛି । ଯେତେବେଳେ ଭକ୍ତ କୌଣସି ରକମର ଲଢ଼ାଇ ଜିତି ନପାରୁଛି ସେତେବେଳେ ସେମାନେ ମେଘର ଆଢୁଆଳରେ ତାକୁ ଲୁଚାଇ ରଖି ଶତ୍ରୁ ନିପାତ କରିଚନ୍ତି ।

ଏହି ଭାବରେ ମଣିଷର ଜ୍ଞାନର ପରିଧି ବଢ଼ିବା ସଙ୍ଗେ ସଙ୍ଗେ ଦେବତାମାନେ ମଧ ମଣିଷର ନିକଟତର ଜଗତ୍ ଛାଡ଼ି ବହୁଦୂର କାଳ୍ପନିକ ଜଗତକୁ ଚାଲିଗଲେ। ନତୁବା ବହୁ ଯୁଗ ଆଗର ଘଟଣାର ଉପକଥାରେ ରୂପାନ୍ତରିତ ହେଲେ ।

ଆଉ ଦେବଦେବୀମାନଙ୍କ ସାଙ୍ଗରେ କାମ ଚଳାଇବା ମଧ କଠିନ ହୋଇ ଉଠିଲା । ପ୍ରଥମେ ମଣିଷ ପ୍ରତ୍ୟେକକୁ ପୂଜା, ପାର୍ବଣ, ଉତ୍ସବାଦି ବା ଯାଦୁର କାମ କରିବାକୁ ଭରସାକରି ପାରୁଥିଲା । ସେଗୁଡ଼ିକ ଥିଲା ସହଜ । ବୃଷ୍ଟି କରିବାକୁ ହେଲେ ମୁଖରେ ପାଣି ନେଇ ନାଚି ନାଚି କୁଲୁକୁଚା କରି ଉପରକୁ ଜଳ ଫୋପାଡ଼ିଲେ ହେଲା । ଏଥରକ ମଣିଷ ଦେଖିଲା ଏପରି ସହଜ ଉପାୟରେ ବୃଷ୍ଟି ହେବା ସହଜ ନୁହେଁ । କାର୍ଯ୍ୟତଃ ସେମାନେ ମନେକଲେ ଦେବତା ଖୁବ୍ ସହଜରେ ମଣିଷର ମନକାମନା ପୂରଣ କରନ୍ତି ନାଇଁ । କ୍ରମେ ପୁରୋହିତମାନେ ଦେବତା ଆଉ ମଣିଷ ଭିତରେ ମଧସ୍ଥ ହୋଇ ଛିଡ଼ା ହେଲେ । ପୁରୋହିତ ସବୁପ୍ରକାର ଭୋଜବିଦ୍ୟା ଓ ପ୍ରତିକ୍ରିୟାରେ ଦେବତାର ତୁଷ୍ଟି ବିଧାନର ଫନ୍ଦିଫିକର ଜାଣିବାର ଆଳ କରନ୍ତି । ଆଗେ ଡ଼ାହାଣୀମାନେ କେବଳ ଶିକାର ସମୟରେ ଉତ୍ସବର ନେତା ଥିଲେ । ପ୍ରକୃତରେ ସେମାନଙ୍କର ସ୍ଥାନ ଥିଲା ଗୋଷ୍ଠୀର ଅନ୍ୟାନ୍ୟମାନଙ୍କ ସଙ୍ଗେ ଗୋଟିଏ ପର୍ଯ୍ୟାୟରେ । ଡ଼ାହାଣୀ ବୋଲି କହିଲେ ଦେବତା ମାନଙ୍କର ବିଶେଷ ପ୍ରିୟ ବା ଉନ୍ନତ ଶ୍ରେଣୀର ମଣିଷ ନୁହେଁ । କିନ୍ତୁ ପୁରୋହିତର ମର୍ଯ୍ୟାଦା ସଂପୂର୍ଣ୍ଣ ଅଲଗା । ସେ ପବିତ୍ରଭାବରେ ଥାଆନ୍ତି । ତାଙ୍କର ରହିବା ଜାଗା ପରେ ହିଁ ଦେବତାଙ୍କର କାମରା; ସେଠି ଖାଲି ନକ୍ଷତ୍ର ଦେଖିପାରନ୍ତି । ତାଙ୍କର ମନ୍ଦିର ଉପରେ ଉଠି ନକ୍ଷତ୍ର ଦେଖିବାର ଅଧିକାର ଥିଲା । ଯୁଦ୍ଧ ଆଗରୁ ସେହି ନାନା ଲକ୍ଷଣ ଦେଖି ଭବିଷ୍ୟତବାଣୀ କରନ୍ତି ଯୁଦ୍ଧରେ ଜୟ ହେବ କି ପରାଜୟ ହେବ ।

ଦେବତାମାନେ ମଣିଷର ପାଖରୁ କ୍ରମେ କ୍ରମେ ଦୂରକୁ ଘୁଞ୍ଚିବାରେ ଲାଗିଲେ । ଦେବତାମାନଙ୍କ ଆଖିରେ ସବୁ ମଣିଷ ସମାନ ଏବଂ ସମସ୍ତଙ୍କୁ ସେମାନେ ସମାନଭାବରେ ଭଲ ପାଆନ୍ତି । ଏ କଥା ସବୁ ଅତୀତର କଥା ହୋଇଗଲାଣି ସେତେବେଳକୁ । ଜନସାଧାରଣ ନିଜ ଜୀବନ ଦେଇ ଅନୁଭବ କଲେଣି ଯେ ସାମ୍ୟଭାବ ଲୁପ୍ତ ହୋଇ ଯାଇଛି, ପୁରୋହିତମାନେ ବୁଝେଇବାରେ ଲାଗିଲେଣି ଯେ ଏପରି ହେବା ଉଚିତ । ଦେବତାମାନଙ୍କ ହାତରେ ସବୁ ଛାଡ଼ି ଦେଇ ନିଶ୍ଚିତ ହୋଇ ରହିବା ଉଚିତ । ସେନାପତିମାନେ ଯେପରି ମଣିଷ ଶାସନ କରନ୍ତି, ଦେବତାମାନେ ସେପରି ସମସ୍ତ ଜଗତ ଶାସନ କରନ୍ତି ।

କିନ୍ତୁ ପୁରୋହିତମାନଙ୍କର ଉପଦେଶ ସମସ୍ତେ ନତମସ୍ତକରେ ମାନି ନେଇ ନାହାନ୍ତି । ତେବେ ସୁଦ୍ଧା ଅନେକ ଲୋକ ଥିଲେ ଯେଉଁମାନେ ଦେବଦେବୀଙ୍କର ଅଦୃଶ୍ୟଶକ୍ତିର ବଶ୍ୟତା ସ୍ୱୀକାରକରି ନାହାନ୍ତି ।

ଏହାର କିଛିଦିନ ପରେ ଏପରି ଦିନ ଆସିଲା ଯେତେବେଳେ ଗ୍ରୀକ୍ କବି ପଚାରିଲେ: –

ଯେଉଁଠି ଜିୟୁସଙ୍କର ବିଚାର (Zeus ଗ୍ରୀକ୍‌ମାନଙ୍କର ଦେବରାଜ) "ସତ୍ ଲୋକମାନେହିଁ କଷ୍ଟ ପାଆନ୍ତି, ମନ୍ଦ ଲୋକ ଉନ୍ନତି କରନ୍ତି । ପିତାର ପାପରେ ସନ୍ତାନ ଶାସ୍ତି ପାଏ । ମଣିଷ ମଝିରେ ଯିଏ ଏକମାତ୍ର ଦେବୀ ଅଛନ୍ତି ସେହି ଆଶାଦେବୀଙ୍କ ପାଖରେ ପ୍ରାର୍ଥନା ଛଡ଼ା ଅନ୍ୟ କୌଣସି ଉପାୟ ନାହିଁ । ଆଉ ସବୁ ଦେବଦେବୀ ଅଲିମ୍ପସ୍ ପାହାଡ଼କୁ ପଳାୟନ କରିଛନ୍ତି ।"

## ଜଗତ ବଢ଼ୁଚି

ଆଦିମ ମଣିଷ ଠିଁ ସତ, ଉପକଥା, ଜ୍ଞାନ ଏବଂ କୁସଂସ୍କାର ଏ ସବୁର କୌଣସି ପାର୍ଥକ୍ୟ ନ ଥିଲା । କୁସଂସ୍କାରର ହାତରୁ ଜ୍ଞାନର ଉଦ୍ଧାର ଲାଗି ହଜାର ହଜାର ବର୍ଷ ଲାଗିଛି । ଯେଉଁ ସମସ୍ତ ଗାଥା ବା କାହାଣୀ ଆମ୍ଭମାନଙ୍କ ହାତରେ ଆସିପଡ଼ିଛି ତାହାରି ଭିତରେ କୁଳର ବା କୁଳନେତାର ଇତିହାସକୁ ଉପକଥାର ଅପ୍ରାକୃତ ଦେବତା ଏବଂ ପ୍ରକୃତ ବୀରମାନଙ୍କୁ ବାଛି କାଢ଼ିବା କଠିଣ । ସେପରି ମଧ୍ୟ ଉପକଥାର ଭୂଗୋଳରୁ ଆଦିମ କାଳର ପ୍ରକୃତ ଗ୍ରହନକ୍ଷତ୍ର ସମ୍ବନ୍ଧରେ ଧାରଣା କରିବା ମଧ୍ୟ ମୁସ୍କିଲ ।

ଇଲିୟାଡ୍ ଓ ଓଡ଼େସୀ ଆମ୍ଭମାନଙ୍କର ରାମାୟଣ, ମହାଭାରତ ପରି ଇଉରୋପର ଦୁଇ ଅମର ମହାକାବ୍ୟ । ଏହି ଦୁଇ ଗ୍ରନ୍ଥରୁ ଆମ୍ଭେମାନେ ପ୍ରାଚୀନ ଗ୍ରୀସ୍‌ର ଉପକଥାର ନମୁନା ପାଉ । ସେଥିରେ ଆମେ ଦେଖୁ କିପରି ଗ୍ରୀକ୍‌ମାନେ ଟ୍ରୟ ନଗରୀ ଅବରୋଧ କରି ଧ୍ୱଂସ କଲେ ଏବଂ କିପରି ଜଣେ ଗ୍ରୀକ୍ କୁଳର ନେତା ଉଇଲିସିସ୍ (ଓଡ଼େସିଉମ୍) ବହୁ ଦିନ ଧରି ନାନା ସମୁଦ୍ରର ବୁକୁରେ ଭାସି ଭାସି ଅବଶେଷରେ ନିଜ ଦେଶ ଇଥାକାକୁ ଫେରିଗଲେ । ଟ୍ରୟ ନଗରୀର ଯୁଦ୍ଧରେ ଦେବତାମାନେ ମଧ୍ୟ ମଣିଷର ପକ୍ଷ ନେଇ ଲଢ଼ାଇ କରିଥିଲେ । ଦଳେ ଦେବତା ଟ୍ରୟବାସୀଙ୍କ ପକ୍ଷରେ ଲଢ଼ିଥିଲେ । ତେଣେ ଅନ୍ୟଦଳେ ଗ୍ରୀକ୍‌ମାନଙ୍କୁ ସାହାଯ୍ୟ ମଧ୍ୟ କରୁଥିଲେ । କୌଣସି ଦେବତାର ଆଶ୍ରିତ କୌଣସି ବୀରର ମୃତ୍ୟୁ ସମ୍ଭାବନା ଦେଖା ଦେଲେ; ଦେବତାମାନେ ତାକୁ ରଣଭୂମିରୁ ଘେନି ଯାଉଥିଲେ । ଅଲିମ୍ପସ୍ ପର୍ବତ ଶିଖରେ ଆନନ୍ଦ ଉତ୍ସବ ଭିତରେ ବୁଡ଼ି ଦେବତାମାନେ ଆଲୋଚନା କରୁଥିଲେ ଆଉ ବେଶୀ ଦିନ ଲଢ଼େଇ ଚାଲୁ ରଖିବା ଠିକ୍ ହେବ କି ନାହିଁ ।

ଏହି ସବୁ ଅତୀତର କାହାଣୀ ସଙ୍ଗେ ବାସ୍ତବ ଆଉ ରୂପ କଥା ଅଦ୍ଭୁତ ସମ୍ମିଶ୍ରଣ ହୋଇଛି । ଏଥିରେ କେଉଁ ପର୍ଯ୍ୟନ୍ତ ଇତିହାସ ଆଉ କେଉଁ ପର୍ଯ୍ୟନ୍ତ ରୂପକଥା ? ଗ୍ରୀକ୍‌ମାନେ କୌଣସି ଦିନ ଟ୍ରୟର ପ୍ରାଚୀର ଭିତରରୁ ସଂଗ୍ରାମ କରିଛନ୍ତି ? ଆଉ ଟ୍ରୟ ! ସତେ କ'ଣ ଏହି ନାମରେ କୌଣସି ସହରର ଅସ୍ତିତ୍ୱଥିଲା ।

ବହୁଦିନ ଧରି ଏ ବିଷୟରେ ପଣ୍ଡିତମାନଙ୍କ ଭିତରେ ତର୍କ ଚାଲିଲା । ଅନେକେ କହିଲେ ଭାରତରେ ଯେପରି ରାବଣ ରାମଙ୍କର ସ୍ତ୍ରୀକୁ ନେଇଗଲା ସେହିପରି ହେଲେନ୍‌କୁ ଟ୍ରୟ ଯୁବରାଜ ପ୍ୟାରିସ ନେଇଗଲେ ବୋଲି ଗୋଟାଏ ଗଳ୍ପ ରାମାୟଣ ଅନୁକରଣରେ ଲେଖା ଯାଇଛି । ଭାରତବର୍ଷ ଏବଂ ଗ୍ରୀସ୍ ଉପକୂଳରେ ବାଣିଜ୍ୟ କରୁଥିବା ଲୋକମାନେ ଏହି ଗପକୁ ଗ୍ରୀସ୍‌ରୁ ଆଣିଛନ୍ତି ଇତ୍ୟାଦି । ଅବଶେଷରେ ଜଣେ ପୁରାତାତ୍ତ୍ୱିକ ଏହାର ମିମାଂସା କରି ଦେଲେ । ଇଲିୟାଡ୍‌ର ନିର୍ଦ୍ଦେଶ ଅନୁସରଣକରି ସେ ଏସିଆ ମାଇନର ଯାଇ ଟ୍ରୟର ଧ୍ୱଂସ ସ୍ତୂପ ଖୋଲି ପର୍ଯ୍ୟବେକ୍ଷଣ କରିଆସିଲେ ।

ଓଡ଼େସୀର ସବୁଟା ଯେ ରୂପକଥା ନୁହେଁ, ତାହା ଏହି ଭାବରେ ପ୍ରମାଣିତ ହେଲା । ପଣ୍ଡିତ ମହଲ ଏହି ସତ୍ୟ ଆବିଷ୍କାର କରନ୍ତି । ସେମାନେ କାବ୍ୟରେ ବର୍ଣ୍ଣିତ ଇଉଲିସିଅସ ଫେରିବାର ପଥ ଅନୁସରଣ କରି ଆବିଷ୍କାର କରନ୍ତି ଯେ ପଦ୍ମମଧୂ ଖାଇ ବଞ୍ଚୁଥିବା ଦେଶ ହେଉଛି ବର୍ତ୍ତମାନ ଆଫ୍ରିକାର ତ୍ରିପଲ୍ଲି ଉପକୂଳ ଇୟୋଲାସ; ଆଧୁନିକ ଲିପାସକି ଦ୍ୱୀପ । ସଲା ଓ ଚେରିବ୍ ଡ୍ରିସର ମଝିରେ ଯେ ଇଉଲିସିସର ଜାହାଜ ଭାଙ୍ଗିବାର ଉପକ୍ରମ ହୋଇଥିଲା ସେହି ଦୁଇଟିର ଅବସ୍ଥାନ ମଧ ଏମାନେ ଖୋଜି ବାହାର କରିଚନ୍ତି ।

ଓଡ଼େସୀ ଯେପରି ସବୁଟା ଯାକ ରୂପକଥା ନୁହେଁ, ସେମିତି ସବୁଟା ସତ ବୋଲି ମନେ କଲେ ମଧ ଭଲ ହେବ । ଭ୍ରମଣବୃତ୍ତାନ୍ତ ସଙ୍ଗରେ ଜଡ଼ିତ ଅଛି ରୂପକଥା । ପାହାଡ଼ ହୋଇଛି ଦୈତ୍ୟ ଅଟଲାସ । ଦ୍ୱୀପବାସୀ ଅସଭ୍ୟମାନେ ଏକ ଚକ୍ଷୁ ରାକ୍ଷସ ସାଇକ୍ଲୋପ୍ ଭାବରେ ଦେଖା ଦେଇଚନ୍ତି ।

ସେ ଯୁଗର ମଣିଷ କେବଳ ସେମାନଙ୍କର ଜନ୍ମସ୍ଥାନର ପାଖାପାଖି ଜାଗାର ଖବର ରଖୁଥିଲେ । ସେମାନଙ୍କ ମଧ୍ୟରୁ ଯେଉଁମାନେ ବିଦେଶ ଯାଇ ବ୍ୟବସାୟ ବାଣିଜ୍ୟ କରୁଥିଲେ ସେମାନେ ଉପକୂଳ ଛାଡ଼ି ବେଶୀ ଦୂର ଯାଆନ୍ତି ନାହିଁ । କୌଣସି ଦିଗନିର୍ଣ୍ଣୟ ଯନ୍ତ୍ର ବା ମାନଚିତ୍ର ନ ଥିବାରୁ ଖୋଲା ସମୁଦ୍ର ଉପରେ ଦୂର ଦୂର ଦେଶକୁ ଯିବା ଖୁବ୍ ବିପଦଜନକ । ସୂର୍ଯ୍ୟ ଓ ନକ୍ଷତ୍ରମାନଙ୍କର ଅବସ୍ଥାନରୁ ସେମାନେ କୌଣସି ମତେ ସମୁଦ୍ରକୁ ପାର ହୁଅନ୍ତି । ସମୁଦ୍ର ଗର୍ଭରେ ଛପି ରହିଛି ହଜାର ହଜାର ଆପଦବିପଦ । ସାମାନ୍ୟ ତରଙ୍ଗର ଆଘାତରେ ପେଟ ମୋଟା ଜାହାଜଗୁଡ଼ିକ ଦୋହଲି ଯାଉଥିଲେ ଅଥଳ ଅକୂଳ ପାଣି ଉପରେ । ବଡ଼ ବଡ଼ ପାଲଗୁଡ଼ିକ ସମ୍ଭାଳିବା କାଠିକର ପାଠ । ଝଡ଼ର ଧକ୍‌କାରେ ଆସି କୂଳରେ ଲାଗିଲେ ନାବିକମାନେ । ସମସ୍ତେ ମିଳି ସେହି ଜାହାଜକୁ ଟାଣି ମାଟିରେ ବାନ୍ଧି ରଖୁଥିଲେ; ସେତେବେଳେ ଯାଇ ତ୍ରାହି ନୋହିଲେ ନାହିଁ ।

ସମୁଦ୍ରଠାରୁ ବିଦେଶ ଥିଲା ଆହୁରି ଭୟାବହ । ସବୁ ବେଳେ ସେମାନେ ଭୟ

କରନ୍ତି । ବୋଧହୁଏ ରୂପକଥାର ରାକ୍ଷସମାନେ ସେମାନଙ୍କୁ ଗିଳି ପକାଇବେ! ଯେକୌଣସି ନୂତନ ଜୀବକୁ ସେମାନେ ଦୈତ୍ୟ ଦାନବ ମନେକରି ଭୟ ପାଆନ୍ତି ।

ତଥାପି ମଣିଷ ସମୁଦ୍ରକୁ ଯାଇଛି । ପ୍ରତ୍ୟେକ ସମୁଦ୍ର ଯାତ୍ରାରେ ତା'ର ଆଖିରେ ପୃଥିବୀର ସୀମା ବଢ଼ି ଯାଇଛି । ରୂପକଥାର ଦେଶର ସୀମା ଏହି ଭାବରେ ଘୁଞ୍ଚି ଅପସରି ଯାଇଛି । ସମୁଦ୍ର ଛାଡ଼ି ମହାସାଗରରେ ପହଞ୍ଚିଲେ ସେ ବିଭ୍ରାନ୍ତ ହୋଇଯାଏ । ଅପାର ଜଳରାଶିର ଶେଷ ଅଛି ବୋଲି ତା'ର କଳ୍ପନା ପାଏ ନାହିଁ । ସେମାନେ ପ୍ରତ୍ୟେକ ଥର ବିଦେଶ ଭ୍ରମଣ କରି ଫେରିଆସି କହନ୍ତି ଯେ ପୃଥିବୀର ଶେଷ ପ୍ରାନ୍ତକୁ ଯାଇଥିଲେ। ଆଉ ଗୋଟାକ ଯାକ ପୃଥିବୀ ବିରାଟ ଜଳରାଶିରେ ବେଢ଼ି ହୋଇ ରହିଚି । ଆହୁରି ହଜାର ହଜାର ବର୍ଷ ପରେ ଲୋକେ ଇଉରୋପରୁ ଭାରତ, ଚୀନ୍‌ରୁ ଇଉରୋପକୁ ଯାତାୟତ ଆରମ୍ଭ କଲେ । ନାବିକମାନେ ମହାସାଗର ପାର ହୋଇ ଦେଖିଲେ ଯେ ତାର ଏ ପାରିରେ ମଧ ଠିକ୍ ସେପାରି ପରି ଲୋକବସତି ବହୁଳ ଦେଶ ଅଛି; କିନ୍ତୁ ବୈଜ୍ଞାନିକ ସତ୍ୟ ସହିତ ରୂପକଥାର ଅପୂର୍ବ ସମ୍ମିଶ୍ରଣରେ ଆହୁରି ବହୁକାଳ ଚାଲିଥିଲା ।

ଆବିଷ୍କାରକ କଲମ୍ବସଙ୍କର ଧାରଣା ଥିଲା ଯେ ଆମେରିକାର ଏକ ପାହାଡ଼ର ଚୂଡ଼ାରେ ସ୍ୱର୍ଗ ଅଛି । ସେ ସ୍ପେନର ସମ୍ରାଜ୍ଞୀଙ୍କୁ ଚିଠି ଲେଖି ଜଣାଇଲେ ସେହି ସ୍ୱର୍ଗ ଆଖପାଖ ଯାଗା ଏବଂ ଅଉ କେତେକ ବିଷୟ ଆବିଷ୍କାର କରିବାକୁ ତାଙ୍କର ଇଚ୍ଛା ଅଛି । ପଞ୍ଚଦଶ ଶତାବ୍ଦୀର ରୁଷିଆର ଲୋକଙ୍କର ଧାରଣା ଥିଲା ଯେ ଇଉରାଲ ପର୍ବତର ଉପରେ ଲୋକମାନେ ସାରା ଶୀତକାଳ ଭାଲୁ ପରି ଖାଲି ଦେହରେ ଶୋଇ ଥାଆନ୍ତି । ଅନେକ ପୁରୁଣା ହସ୍ତଲିପି ମିଳିଛି, ଏହାର ନାମ "ପୂର୍ବାଞ୍ଚଳର ଅଦ୍ଭୁତ ଲୋକ"! ତା ମଧରେ ମସ୍ତକହୀନ, ମୁଖହୀନ ଏବଂ ବୁକୁ ଭିତରେ ଆଖି ଥିବା ନାନା ରକମର ମଣିଷର ବର୍ଣ୍ଣନ ଅଛି । ଏ ସମସ୍ତ ଆମ୍ଭମାନଙ୍କୁ ହାସ୍ୟକର ମନେ ହୁଏ, କିନ୍ତୁ ଆମ୍ଭେମାନେ ଯେପରି ଭୁଲି ନ ଯାଉଁ, ଆମ୍ଭେମାନେ ମଧ ବର୍ତ୍ତମାନ ଅଳ୍ପ ବହୁତ ଏ ପ୍ରକାର ଭୁଲ କରିଥାଉଁ । ଏକ୍ଷଣି ମଧ ଆମ୍ଭମାନଙ୍କ ଭିତରେ ଅନେକଙ୍କର ଧାରଣା ଅଛି ଯେ, ଚନ୍ଦ୍ରାଲୋକରେ ଏବଂ ବୁଧ ଗ୍ରହରେ ନାନା କାଳ୍ପନିକ ଅଦ୍ଭୁତ ଜୀବର ବସବାସ ଅଛି । ଗୋଟିଏ କାଳର ଅଦ୍ଭୁତ ଜୀବଜନ୍ତୁର ଅସ୍ତିତ୍ୱ ପୃଥିବୀରେ ଅଛି ବୋଲି ଆମ୍ଭେମାନେ ମନେକରୁଥିଲୁ । ଆଜି ଜ୍ଞାନର ଦୁର୍ବାର ଆଲୋକ ଶିଖାରେ ସେହି ଅନ୍ଧକାର ଦୂରକୁ ଅପସରି ଯାଇଛି; କିନ୍ତୁ ମଣିଷ ଯେପରି ମୁସ୍କିଲରେ ପଡ଼ିଯାଇଛି । ସେଥିପାଇଁ ଅନେକେ ସେ କାଳର କାଳ୍ପନିକ କିମ୍ଭୁତକିମାକାର ଜୀବ ଏବେ ମଧ ଗ୍ରହ ଉପଗ୍ରହରେ ରହିଚନ୍ତି ଭାବି ଆମେ ଯେପରି ସାନ୍ତ୍ୱନା ପାଇବାକୁ ଚାହୁଁ ।

- ୦ -

# ପ୍ରଥମ କବି

ପ୍ରତ୍ୟେକ ଯୁଗହିଁ ମନୁଷ୍ୟର ରହସ୍ୟ ହାତରୁ କିଛି ନା କିଛି ମୁକ୍ତି ପାଇଛି । କାରିଗର କ୍ରମେ ନିଜର ଶକ୍ତିରେ ବିଶ୍ୱାସକରି ଶିଖିଚି । କାମର ସମୟରେ ସେ ଆଉ ବଡ଼ ଗୋଟାଏ ମନ୍ତ୍ର ପଢ଼େ ନାହିଁ । ସୂର୍ଯ୍ୟୋଦୟ ସାଙ୍ଗେ ସାଙ୍ଗେ ଯେପରି ଅନ୍ଧକାର କଟିଯାଏ, ସେପରି ଧୀରେ ଧୀରେ ମଣିଷର ଜୀବନରୁ ଯାଦୁବିଦ୍ୟାର ପ୍ରଭାବ ମଧ୍ୟ କଟି ଯାଇଛି ।

ଗ୍ରୀସ୍‌ର ଚାଷୀମାନେ ଆଗେ ଫଳଦେବତା ଡିୟୋନିସାସଙ୍କ ଆରାଧନା ଲାଗି ନାନା ଖେଳ କସରତର ଆୟୋଜନ କରୁଥିଲେ । ସେମାନେ ଦଳବଳ ନେଇ ନାଚ ଗାନ କରନ୍ତି । ନାଚ ଗୀତରେ ଡିୟୋନିସାସର ମୃତ୍ୟୁ ଦେଖାନ୍ତି, ତାଙ୍କର ପୁନର୍ଜୀବନ ଦେଖାନ୍ତି; ଦେଖାନ୍ତି କିପରି ଶୀତକାଳ ଚାଲିଗଲେ ସେ କିପରି ଆଉ ଥରେ ପୃଥିବୀକୁ ଫଳ ଫୁଲରେ ସଜ୍ଜିତକରି ଦିଅନ୍ତି । ଜୀବଜନ୍ତୁର ମୁଖା ପିନ୍ଧି ଲୋକେ ମନ୍ଦିର ଇତ୍ୟାଦିର ସାମନାରେ ନାଚନ୍ତି । ଜଣେ ଡିୟୋନିସାସର କାହାଣୀ ଆଗେ କହିଯାଏ, ଅନ୍ୟମାନେ ତା ସାଙ୍ଗରେ ଦୋହା ଦିଅନ୍ତି ।

ପୁରାକାଳର ସେହି ସମ୍ମୋହନର କ୍ରୀଡ଼ା ଅନେକାଂଶରେ ସାଧାରଣ ଖେଳକୌତୁକ ପରି । ଖେଳର ନେତା ଯେ ଖାଲି ଦେବଦେବୀର ସୁଖ ଦୁଃଖର ଗାନହିଁ କରନ୍ତି ସେତିକି ନୁହେଁ, ଅଙ୍ଗଭଙ୍ଗୀ ଦେଇ ସେଗୁଡ଼ିକୁ ବୁଝାଇବାର ଚେଷ୍ଟା କରନ୍ତି । ବୁକୁରେ ହାତ ମାରି, କାନ୍ଦି, ଆକାଶ ଆଡ଼କୁ ହାତ ବଢ଼ାଇ ସେମାନେ ମନର ନାନା ଭାବ ପ୍ରକାଶ କରନ୍ତି । ଏମାନେ ହିଁ ଥିଲେ ଭବିଷ୍ୟତର ନଟନଟୀର ପୂର୍ବପୁରୁଷ ।

କେତେ ଶତାବ୍ଦୀ କଟିଗଲେ ଏହି ଯାଦୁବିଦ୍ୟାର କ୍ରିୟା ପ୍ରକ୍ରିୟା ହାତରୁ ଯାଦୁର ଅଂଶ ଲୋପ ପାଇଯାଏ । ରହିଗଲା ଖାଲି ଖେଳଟା । ଆଗପରି ଲୋକେ ନାଚନ୍ତି, ଗାଆନ୍ତି, କିନ୍ତୁ ଚାରଣମାନେ ଆଉ ଦେବତାମାନଙ୍କ କଥା କହନ୍ତି ନାହିଁ । ଏଥରକ ସେମାନେ ନିଜ ନିଜର ସୁଖ ଦୁଃଖର ଗାଥା ଗାଇ ବୁଲନ୍ତି । ସେମାନଙ୍କ ସଙ୍ଗେ ଦର୍ଶକମାନେ ମଧ୍ୟ ହସ ଏବଂ କାନ୍ଦରେ ଯୋଗଦେଇ ଆମୋଦ କରନ୍ତି ।

ନାୟକ ଯେ ଖାଲି ପ୍ରଧାନ ଅଭିନେତା ସେତିକି ନୁହେଁ । ସେ ବାସ୍ତବିକ ପ୍ରଥମ କବି । ମୂଳତଃ ଦେଖିଲେ ସେ ଖାଲି ଦଳବଦ୍ଧ ଭାବରେ ଗାଉଥିଲା, କିନ୍ତୁ ପରେ ସେ ଏକା ଏକା ଗାନକରେ ।

ତା'ର ଗାନର ବିଷୟ ବସ୍ତୁ ଥିଲା ଦେବଦେବୀ ମହଲାର ଏବଂ ବୀର ପୁରୁଷଙ୍କର ବୀରତ୍ୱର କାହାଣୀ । ଏ ସବୁ ଗାନ ଠିକ୍ ସ୍ତବସ୍ତୁତି ପର୍ଯ୍ୟାୟରେ ପଡ଼େ ନାହିଁ । ମଣିଷର ବୀରତ୍ୱର କାହାଣୀ ଗାଇ ଅନ୍ୟକୁ ଅନୁପ୍ରାଣିତ କରିବା ଥିଲା ଏହି ଗାଥାର ଉଦ୍ଦେଶ୍ୟ ।

ତା' ହେଲେ ପ୍ରେମର ଗାନ କେଉଁଠୁ ଆସିଲା ? ପ୍ରେମର ଗାନ ଜନ୍ମ ହେଲା ବିବାହ କିମ୍ବା ଫସଲ ଭୋଗ ନବାନ୍ନ ଉତ୍ସବ ଇତ୍ୟାଦିରୁ । ସ୍ତ୍ରୀଲୋକମାନେ ଚରଖା ଧରି ବସି କିମ୍ବା ସାନ ସାନ ପୁଅ ଝିଅଙ୍କୁ କାଖରେ ଧରି ସେହି ଗାନର ଦୋହା ଧରନ୍ତି ।

କିଏ ପ୍ରଥମେ ପ୍ରେମର ଗୀତ ବା ବୀରତ୍ୱର ଗୀତ ରଚନା କରିଛନ୍ତି, ତାହା ଆମର ଅଜ୍ଞାତ ! ଜଣେ ନୁହେଁ ଏ କଥା ଠିକ୍ ଶତ ଶତ ଯୁଗର ଶତ ସହସ୍ର କବି ଓ ଶ୍ରୋତା ଭିତରେ ଖାଲି ସମସ୍ତ ଗାନ ଓ ଗାଥା ରୂପ ପରିଗ୍ରହ କରିଅଛି । ଗାୟକଠାରୁ ଗାୟକ ପାଖକୁ ଯାଇ ଯାଇ ବହୁ ଗାଥାର ରୂପାନ୍ତର ହୋଇଛି । ନଦୀ ଯେପରି ନାନା ଛୋଟ ଛୋଟ ଜଳ ସ୍ରୋତର ସମଷ୍ଟିରୁ ଉଦ୍ଭୁତ ହୁଏ ସେପରି ଆଧୁନିକ କବିତା ମଧ୍ୟ ଏ ସବୁ ଗାନ ଭିତରୁ ଜନ୍ମ ନେଇଛି ।

ଆମ୍ଭେମାନେ ସଚରାଚର କହିଥାଉଁ 'ହୋମର ଇଲିୟାଡ୍ ଲେଖିଚନ୍ତି' କିନ୍ତୁ ସେ କ'ଣ ସବୁ ଏକା ଲେଖିଚନ୍ତି ?

ବୀରତ୍ୱର ଗାଥା ଯେତେବେଳେ ରଚନା କଲା ସେହି ପ୍ରଥମ ଅବସ୍ଥାର ମଣିଷ ଗୋଷ୍ଠୀଗତ ଭାବରେ କାମ କରୁଥିଲା । ତେଣୁ ଗାନ ଭିତରେ ଗୋଷ୍ଠୀର ସମସ୍ତେ କିଛି ନା କିଛି ଅବଦାନ ଦେଇଥିଲେ । ଗାୟକ ସଂପୂର୍ଣ୍ଣ ଗାନର ବଦଳା ବଦଳି କଲେ ମଧ୍ୟ ସେତେବେଳେ ମନେ କରେ ନାହିଁ ଯେ, ସେ ହିଁ ଗାନ ତିଆରି କରିଛି ।

କିନ୍ତୁ ଆଉ ମଧ୍ୟ ପରେ ମଣିଷ ଭଲକରି ଆତ୍ମପର ଭେଦାଭେଦ ଶିଖିଲା । ଗୋଷ୍ଠୀପ୍ରଥା ସେତେବେଳେ ଭାଙ୍ଗି ଯାଇଥିଲା । ଆଗର ଐକ୍ୟ ଏବଂ ସାମ୍ୟ ଆଉ ନ ଥିଲା । କାରିଗର ନିଜ ଖୁସି ଅନୁସାରେ କାମ କରୁଥିଲା । ଗୋଷ୍ଠୀର ଅନୁଗତ ଦାସ ବୋଲି ସେ ଆଉ ନିଜକୁ ମନେ କରେ ନାହିଁ ।

କେତେ ଶତାବ୍ଦୀର ପରେ ଗ୍ରୀକ୍ କବି ଥିୟୋରିସ୍ କହିଚନ୍ତି ''ମୋର ହାତର ଅକ୍ଷର ଛାପା ଆଙ୍କିଛି ମୁଁ ଏହି କବିତାରେ । ଏ ସୃଷ୍ଟି ମୋର । ମୋର ଏହି ଶିଳ୍ପର କେହି ଯେପରି ଚୋରି କରି ତାର ବୋଲି ଦାବୀ କରି ନ ପାରେ । ସମସ୍ତେ କହିବେ ଏଗୁଡ଼ିକ ମେଗାରାର କବି ଥିୟୋସିସଙ୍କର ଆପଣା ମନର ଗୋପନ ଗାଥା । ଗୋଷ୍ଠୀପ୍ରଥା ସମୟରେ କେହି ଏ

ଭାବରେ ଲେଖି ପାରନ୍ତା ନାହିଁ । ମଣିଷ କ୍ରମେ ବେଶୀ କରି 'ମୁଁ' ଶବ୍ଦଟିର ବ୍ୟବହାର କରିବାରେ ଲାଗେ । ମଣିଷ ଯେ ନିଜେ କିଛି କରୁନାହିଁ, ଦେବତା ତାରି ହାତରେ ସବୁ କରାଇ ନେଉଛନ୍ତି, ସେ ଯୁଗ ଅତୀତର ମଧ୍ୟରେ ଚାଲି ଯାଇଛି । ଏ ସମୟର କବି ଯଦିଓ କହନ୍ତି ଯେ କାବ୍ୟଦେବୀ ତାକୁ ଉଦ୍ଦୀପିତ କରିଛନ୍ତି, ତଥାପି ନିଜକୁ ସେ କାବ୍ୟସୃଷ୍ଟିରୁ କେବେ ବାଦ ଦେଲେ କିମ୍ୱା କେବେ ସଂପୂର୍ଣ୍ଣ ବାଦ ଦେଲେ ଚଳିବ ନାହିଁ ।

''କାବ୍ୟ ଦେବୀ ମୋତେ ଜଗେଇଛନ୍ତି; ମୁଁ ଅମର ହେବି'' । ଗ୍ରୀମର ମହିଳା କବି ଶ୍ୟାଫୋରଙ୍କ ଏକ କବିତାରେ ଅତୀତ ଏବଂ ବର୍ତ୍ତମାନ ମନୋଭାବର ସଂମିଶ୍ରଣ ହୋଇଛି । ସେ ବିଶ୍ୱାସ କରନ୍ତି ଯେ ଭାଗ୍ୟଦେବୀ ହିଁ ତାଙ୍କର ହାତରେ ଲେଖେଇ ନେବେ କ'ଣ ଲେଖିବା ଉଚିତ । ସେଇ ଲେଖା ଭିତରେ ଆଉ ଥରେ ଦେଖୁଁ ତାଙ୍କର ମଧ୍ୟ ଅମର ହେବାର ଆକାଙ୍କ୍ଷା, ଆଧୁନିକ ଯୁଗର ମିଲଟନ ଓ ମଧୁସୂଦନଙ୍କ କାବ୍ୟ ମଧ୍ୟରେ ଆମ୍ଭେମାନେ 'ଆମେ' ଏବଂ 'ସେ' ର ମିଶାମିଶି ଦେଖିବାକୁ ପାଉ ।

ଏହି ଭାବରେ ମଣିଷ ବଡ଼ ହୋଇଛି । ଆଉ ମଧ ସେ ଯେତେ ବଢ଼ିଚି ତା'ର ଚାରିପାଖର ଜଗତର ପରିସର ମଧ୍ୟ ସେତିକି ବଢ଼ି ଚାଲିଛି ।

(ସମାପ୍ତ)

- ୦ -

# ଏସିଆର୍ ନିଦ୍ରିତା ରାଜକନ୍ୟା

## (୧୯୫୭ ରେ ଏହା ରଚନା ହୋଇଥିଲା)

ଉଡ଼ାଜାହାଜ ଛୁଟିଥାଏ, ଘଣ୍ଟାକେ ଶହେଅଶୀ ମାଇଲ । କେତେ ପଛରେ ଭାରତର ସୀମାନ୍ତ ଆମେ ଛାଡ଼ି ଆସିଥାଉଁ । ଅମୃତସର ବିମାନଘାଟିରେ ଆମର ଛାଡ଼ପତ୍ର ଶେଷଥର ପାଇଁ ଚେକ୍ ହୋଇସାରିଥାଏ । ଲାହୋର ଉପରେ ଉଡ଼ାଜାହାଜ ପହଞ୍ଚିବାଯାଏ ମୋର ସଙ୍ଗୀମାନେ ଅପେକ୍ଷା କରିଥାନ୍ତି । ତାଙ୍କ ଭିତରୁ ଅନେକେ ଲାହୋରର ବାସିନ୍ଦା ଥିଲେ । ଆଜିକୁ ଦଶଟା ବର୍ଷ ତଳେ ଏହି ଲାହୋର ଥିଲା ଭାରତର ଲଲାଟଭୂଷଣ । ଏହି ଲାହୋରରେ ମୋର ସଙ୍ଗୀଙ୍କ ଭିତରୁ ଦୁଇ ଜଣ ଜନ୍ମ ହୋଇଥିଲେ । ଆପଣାର ଜନ୍ମଭୂମିକୁ ଚାହିଁ ସେମାନେ ଆଖିରୁ ଅଶ୍ରୁ ଢ଼ାଳିଲେ ।

ଲାହୋର ଅତି ସୁନ୍ଦର ସହର । ଆକାଶରୁ ଦେଖାଯାଉଥାଏ ତାହା ଗୋଟିଏ ବର୍ଗକ୍ଷେତ୍ର ପରି । ପଞ୍ଜାବର ପଞ୍ଚନଦୀର ଧାର ଭିତରେ ଏହି ଶୁକ୍ଳ ଐରାବତକୁ ସେଦିନ ଆକାଶରୁ ଅନାଇ ଦେଲି ।

ଉପରେ ଆମରି ଉଡ଼ାଜାହାଜର ବିଘୋଷିତ ଗର୍ଜନ, ତଳେ ଚାହିଁଲି ଶୁଷ୍କ ଟାଙ୍ଗରଭୂମି । ଗେରୁଆ ପାହାଡ଼ ଏବଂ ଗେରୁଆ ପାହାଡ଼ତଳେ ଗୋଟାଏ ଗଭୀର ଉପତ୍ୟକା ଏବଂ ତା'ପରେ ପାହାଡ଼ ।

ଉଡ଼ାଜାହାଜର ପରିଚର୍ଯ୍ୟାକାରୀ ଟିକିଏ କଫି ଏବଂ କେତେ ଖଣ୍ଡ ବିସ୍କୁଟ ଆଣି ମୋ ପାଖରେ ଛିଡ଼ା ହେଲେ । ଜଣେ ସଙ୍ଗୀ ଛଡ଼ା ଅନ୍ୟ ସମସ୍ତେ ଶୋଇ ପଡ଼ିଛନ୍ତି । ମୋତେ କଫିର ଶ୍ୱେତ ପ୍ଲାଷ୍ଟିକ୍ କପ୍ ବଢ଼ାଇଦେଇସାରି ଖଣ୍ଡିଏ କାଗଜ ଦେଲେ ।

କାଗଜଟି ହେଉଛି ଉଡ଼ାଜାହାଜର ବୁଲେଟିନ୍ । ସେଥିରେ ଲେଖା ହୋଇଥିଲା, "ଏହି ମୁହୂର୍ତ୍ତରେ ଆମ୍ଭେମାନେ ତେର ହଜାର ଆଠଶହ ଫୁଟ ତଖ୍ତି ସୁଲେମାନ ପାହାଡ଼କୁ ପାରି ହେଉଛୁଁ । ଆମର ଉଡ଼ାଜାହାଜ ଘଣ୍ଟାରେ ଏକଶତ ଅଶୀ ମାଇଲ ଗତିରେ ଛୁଟିଛି । ବାଁ ପଟେ ଆମର ତଖ୍ତି ସୁଲେମାନ । ପାଗ ଅତି ଚମତ୍କାର ରହିଛି ।"

ଉଡ଼ାଜାହାଜର କାଚବାଡଦିଆ ଝରକାତଳକୁ ଚାହିଁଲି । ତଳେ ଖାଲି ଗେରୁଆ ପାହାଡ଼ । ପାହାଡ଼ ଉପରେ ପାହାଡ଼ର ପାହାଚ– ଯେପରି କୌଣସି ବିରାଟ ରାକ୍ଷସ

ସ୍ୱର୍ଗକୁ ଯିବାକୁ ବାଟ ତିଆରି କରିଛି । ଗୋଟାଏ ପାହାଚ ଉପରେ ଉଡ଼ାଜାହାଜ ଚଢ଼ି ଉପରକୁ ଉଠିଲେ ଆଉ ଗୋଟାଏ ପାହାଚ ପଡ଼େ । କିଛି କାଳପରେ ଗୋଟାଏ ପାହାଡ଼ର ବନ୍ଦୀଶାଳା ଭିତରେ ଏକ କ୍ଲାନ୍ତ ପକ୍ଷିଣୀ ପରି ଆମରି ଉଡ଼ାଜହାଜ ଘୁମେରିବାକୁ ଲାଗିଲା । ତଳେ ଯେଉଁଠି ପାହାଡ଼ର ପାହାଚକୁ ଆଉ ପାହାଡ଼ ଛାଡ଼ିଛି ସେଇଠି ବହିଯାଇଛି ଗୋଟିଏ ନଦୀ, କିନ୍ତୁ ତାହା ପାଣିର ନଦୀ ନୁହେଁ, ଗେରୁଆ ଗେଙ୍ଗୁଟିର ନଦୀ । କେଉଁ ଶୀତଦିନପରେ ହୁଏତ ଏଇଠି କେତେବେଳେ ଜଳର ପ୍ରଖର କ୍ଷୁରଧାର ବହିଥିବ । କିନ୍ତୁ ଆଜି ସବୁ ଶୁଖିଯାଇଛି ।

କେଉଁଠି ହେଲେ ଟିକିଏ ଶ୍ୟାମଳିମା ଥାଆନ୍ତା, ଥାଆନ୍ତା ଟିକିଏ ହେଲେ ଶୁଭ୍ରତା । କେଉଁଠି ହେଲେ ଖଣ୍ଡିଏ ମନୁଷ୍ୟର ଆବାସ ଥାଆନ୍ତା । ପକ୍ଷୀର କାକଳି କେଉଁଠି ଶୁଭୁଥାଆନ୍ତା । ସବୁ ନିଶ୍ଚଳ, ଗମ୍ଭୀର ।

କିନ୍ତୁ ଉଡାଜାହାଜରୁ ହୁଏତ ଦିଶୁ ନଥିବ । ଏଇଠି ହୁଏତ କେଉଁଠି କାଠରେ ଶିଉଳି ଲାଗିଲା ପରି ଶ୍ୟାମଳ ବୃକ୍ଷଲତା ଲାଗି ଯାଇଥିବେ । କେଉଁଠି ହୁଏତ ମରୁ ପ୍ରାନ୍ତରର ଉଏସିସ୍‌ରେ ଓଟର କାରାଭାନ ଖଜୁରି ଗଛ ତଳେ ବିଶ୍ରାମ ନେଉଥିବେ ।

ତଥାପି ଯେତେ ଦୂରରେ ଥିଲେ ବି ମାଟି ଆଉ ଆକାଶ ଭିତରେ ଏତେ ସମ୍ପର୍କ ଯେ ତୁମକୁ ନିଶ୍ଚୟ ଜଣାପଡ଼ିବ, ତୁମେ ମନୁଷ୍ୟର ବସତିରେ ଆସି ପହଞ୍ଚିଛ । ଉଡ଼ାଜାହାଜର ପ୍ରବଳ ଗୁଞ୍ଜନ ଅପେକ୍ଷା ଜନବସତିର ବିପୁଳ ଭାଷା ଯେତେ ଅସ୍ପଷ୍ଟ ହେଲେ ବି କାନରେ ବାଜିବ । ତଳେ ମଧୁର ଜଳରାଶି ଥିଲେ ତୁମର ଆଖି ନିଶ୍ଚୟ ସେଠାରେ ପଡ଼ିବ । ଯେପରି ଜୀବନ ସହିତ ଜୀଅନ୍ତା ଦେହର ରକ୍ତସ୍ରୋତ ଏବଂ ଧମନୀ ସହିତ ଜୀବନର ଗୋଟାଏ ଅକୁହା, ଭାଷାହୀନ ସମ୍ପର୍କ ରହିଛି ।

ମୁଁ ନିଦରେ ଶୋଇପଡ଼ିଥିଲି, ହଠାତ୍ ଉଠି ବସିଲି । କେହି ମୋତେ ଉଠାଇ ନାହିଁ, ଏଇଟା ନିଶ୍ଚିତ । ମନେ ହେଲା, ଗୋଟାଏ ପରିବର୍ତ୍ତନ କିଛି ହୋଇଛି । ଗ୍ୱହିଁଲି, ତଳେ ଗୋଟାଏ ପ୍ରକାଣ୍ଡ ଗହ୍ୱର ଯେପରି ପାତାଳ ପର୍ଯ୍ୟନ୍ତ ବାହାରିଯାଇଛି ଏବଂ ଗ୍ୱରିପଟେ ତା'ର ଅତଟ ପର୍ବତ । ସବୁ ଗେରୁଆ, ସବୁ ବାଦାମୀ । ଅତଟ ଏପରି ଭୟଙ୍କର ଯେ ପାତାଳରୁ ମର୍ତ୍ତ୍ୟକୁ ଆସିବା ଭଳି ସେହି ଗହ୍ୱରରୁ ସେହି ପାହାଡ଼କୁ ଉଠିବା ଏକ୍ୱାବେଳକେ ଅସମ୍ଭବ । ମନୁଷ୍ୟର ପାଦ ଏଇଠି ସୃଷ୍ଟିକାଳୁ ପଡ଼ିଥିବା ସନ୍ଦେହ । ସେହି ଅତଟ ପାହାଡ଼ର ସେପାଖେ ଉଚ୍ଚରେ ଧଳା ଧଳା ଏକମହଲା ଘର ପରି ଦେଖାଯାଉଛି । ଦଶଟା ବେଳର ଶୁଭ୍ର ଖରା ତେଜରେ ଝଟକି ଉଠୁଛି ସେହି ଧଳା ଧଳା କୋଠା । ମୁଁ ଘଣ୍ଟାକୁ ଗ୍ୱହିଁଲି ।

କାବୁଲ ପାଖ ହୋଇ ଆସୁଥିବ ନିଶ୍ଚୟ । ଏହି ଧଳା ଧଳା ଏକମହଲା ଘର ନିଶ୍ଚୟ ଆଫଗାନିସ୍ଥାନର ରାଜଧାନୀ କାବୁଲ ।

ଆଖିରୁ ନିଦ ଛାଡ଼ି ନଥାଏ । ତେଣୁ ବୋଧହୁଏ ସ୍ୱପ୍ନ ଦେଖୁଥିଲି । ଫେର ସ୍ୱପ୍ନ ଦେଖୁଥିଲି ପକ୍ଷୀରାଜ ଘୋଡ଼ାରେ ଚଢ଼ି ମୁଁ ଯାଉଛି । ତଳେ ପାତାଳ । ଘୋଡ଼ାର ଖୁରା ଚକ୍ରବାଳରେ ଉଡୁଛି । ଆଉ ସେଇଠି ଦୂରରେ ସେଇ ରାକ୍ଷସୀର ଦୁର୍ଗଘରେ ବନ୍ଦୀଶାଳାରେ ଅଛି ଗୋଟିଏ ପଞ୍ଜୁରୀ । ତାହାରି ଭିତରେ ଶୋଇଛି ଏସିଆର ନିଦ୍ରିତା ରାଜକନ୍ୟା !

ଯଦି ସ୍ୱପ୍ନ ନ ଦେଖୁଥାଆନ୍ତି, ତେବେ ହିନ୍ଦୁକୁଶ ପାହାଡ଼ର ତୁଷାରକିରୀଟିକୁ ଦେଖି ମୁଁ ସୌଧମାଳାର ସ୍ୱପ୍ନ ଦେଖି ନ ଥାନ୍ତି । କାରଣ ଯେଉଁ ସୌଧମାଳାର ସ୍ୱପ୍ନ ମୁଁ ଦେଖୁଥିଲି, ସେଠାକୁ ଯିବାକୁ ଚାଲିବାର ବାଟ ନାହିଁ । କେବଳ ଅଛି ଉଡ଼ାଜାହାଜରେ ତା'ର ଉପରକୁ ଅନୁଭବ କରିଯିବାର ଅଧିକାର । ଆଉ ଅଛି ଗୋଟିଏ ଯାନ– ସିଏ ଆପଣାର ମନପବନ ଯାନ । କଳ୍ପନାରେ ତା'ର ରାସ୍ତା ତିଆରି ହୁଏ । ସ୍ୱପ୍ନର ଚଷମା ଆଖିରେ ପିନ୍ଧିବାକୁ ପଡ଼େ; ତେବେ ଏଇଟା ତ କାବୁଲ ନୁହେଁ । କାବୁଲ କାହିଁ ?

ପ୍ରାୟ ପନ୍ଦର କୋଡ଼ିଏ ମିନିଟ୍ ମୁଁ ଅପଲକନେତ୍ରରେ ଦୂର ଚକ୍ରବାଳକୁ ଚାହିଁଥାଏ । ଆମରି ଧାନ ଗହୀରରେ ଠିଆ ହୋଇ ବା ପୁରୀ ସମୁଦ୍ର କୂଳରେ ଅନାଇ ଚକ୍ରବାଳକୁ ଦେଖିଲା ପରି ଏ ଚକ୍ରବାଳ ନୁହେଁ । ଏହା ବର୍ତ୍ତମାନ ଗେରୁଆ ମୁଣ୍ଡରେ ଧଳା ପଗଡ଼ିପିନ୍ଧା ପାହାଡ଼ର ପାଚିରୀ । ବହୁ ଦୂରରେ ସେହି ପାହାଡ଼; କିନ୍ତୁ ଯେପରି ଦେଖାଯାଉଥାଏ ହାତ ବଢ଼ାଇଲେ ପାଇବ ।

ଉଡ଼ାଜାହାଜ ତଳକୁ ଓହ୍ଲାଇ ଆସିଲା । ତଳେ ଶାଗୁଆ ଗଛଲତା ଦେଖାଗଲାଣି । ବଗିଚା ଆଉ ତା' ଭିତରେ ପାଣିର ନାଳ, ବଡ଼ ବଡ଼ ଦ୍ରୁମସବୁ ଲଙ୍କାମରିଚ ଗଛପରି ଦିଶୁଥାଆନ୍ତି । ପାଣି ଭିତରେ ବୁଡ଼ିରହି ବାହାରର କଥା ଶୁଣିଲେ ଯେପରି ଶୁଭେ ସେପରି ଶୁଭିଥାଏ ନିଦରୁ ଉଠିଥିବା ସଙ୍ଗୀମାନଙ୍କର କଥାଭାଷା । ଉଡ଼ାଜାହାଜର ଚକ ଭୂମିରେ ଲାଗିଲା ।

ପ୍ରଥମ ଉଡ଼ାଜାହାଜ ଚଢ଼ାଳିପାଇଁ ଏହି ଉଡାଜାହାଜ ଚକ ଭୂମିରେ ଲାଗିବା ଏକ ଅବିସ୍ମରଣୀୟ ଘଟଣା । ଥରେ ଏହା ମୁଁ ଆଗରୁ ଅମୃତସରଠାରେ ଅନୁଭବ କରିଥିଲି, ଆଉ ଥରେ କଲି ଏଇଠି । ଏହାପରେ ଉଡ଼ାଜାହାଜ ମୋର ଦେହଘଷା ହୋଇଯାଇଛି । ତେଣୁ ଅନୁଭବ କରି ନାହିଁ । ଆଉ ମଧ ଗୋଟିଏ କଥା । କାବୁଲଠାରୁ ସୋଭିଏଟ୍ ଦେଶର ଉଡ଼ାଜାହାଜରେ ବାକିତକ ଯାତାୟତ ହୋଇଥିଲା । କେବଳ

ଭାରତକୁ ଫେରିଲାବେଳେ ଚେକୋସ୍ଲୋଭାକିଆ ରାଜଧାନୀ ପ୍ରେଗ୍ ସହରଠାରୁ ଦିଲ୍ଲୀ ପର୍ଯ୍ୟନ୍ତ ଭାରତର ବିମାନ ଆମକୁ ବୋହିଆଣିଥିଲା । ସୋଭିଏଟ୍ ଉଡ଼ାଜାହାଜ ଚାଳକ ଚାଳିକାମାନେ ଆପଣା ଆପଣା ଉଡ଼ାଜାହଜଟିକୁ ଆପଣାର ନିଜ ହାତଘଡ଼ି ଭଳି ବା ନିଜର ସନ୍ତାନଭଳି ଚଳାନ୍ତି । ତେଣୁ ମାଟି ଛୁଇଁଲାବେଳେ ଉଡ଼ାଜାହାଜକୁ କିଛି କଷ୍ଟ ହୁଏ ନାହିଁ ।

କିନ୍ତୁ ଏହି ମାଟି ଛୁଇଁବାର ତୀବ୍ର ବେଦନା ଥରେ ଅନୁଭବ କରିବାର କଥା । ଉଡ଼ାଜାହାଜ ତଳକୁ ଓହ୍ଲାଇଲାବେଳେ ଯେପରି ମନେ ହୁଏ ବୁକୁର କଲିଜାରେ କେହି ପିନ୍ କଣ୍ଟା ଫୋଡ଼ି ଦେଉଛି । ସମସ୍ତ ମସ୍ତିଷ୍କ ଅବଶ ହୋଇଆସେ । ଆଖିରେ ଜୁଳୁଜୁଳିଆ ପୋକ ଦେଖାଯାଏ । ଆଉ ସ୍ଥିର ନିଶ୍ଚଳ ଭାବ ଆସିଯାଏ । ତା'ପରେ ଯେତେବେଳେ ଚକ ତଳେ ଲାଗେ, ସେତେବେଳେ ମନେ ହୁଏ ଗୋଟାଏ ବିଦ୍ୟୁତ୍ ଶଳାକା ଦେହର କୌଣସି ସୂକ୍ଷ୍ମତନ୍ତ୍ରୀରେ ଝଙ୍କାର ତୋଳୁଛି । ସେ ବେଦନା ଅସହ୍ୟ; କିନ୍ତୁ ତଥାପି ଆଉ ଥରେ ସେଭଳି ବେଦନା ଅନୁଭବ କରିବାକୁ ଏବେ ବି ପ୍ରାଣ ଘାରୁଛି । ମାଟିରେ ପହଞ୍ଚିବାକୁ ମନୁଷ୍ୟ ଶିଶୁକୁ ବୋଧହୁଏ ଏଭଳି ବେଦନା ସହିବାକୁ ପଡ଼େ । ଭୂମିଷ୍ଠ ହେଲାବେଳର ପିଲାର ବେଦନା ତ ମନେ ନାହିଁ । ତେଣୁ ଏହି ବେଦନାଟା ଅନୁଭବ କରିବା ଉଚିତ ।

## ଦୁଇ

ଉଞ୍ଚା ପିଣ୍ଡାରେ ଗୁଡ଼ିଏ ଚଉକି ପଡ଼ିଥାଏ । ଲମ୍ବ ଏକ ସାହାଲା ଏକମହଲା ଘର । କାବୁଲ ବିମାନଘାଟି । ତିନି ପାଖରେ ଧଳା ବରଫର ଶିରସ୍ତ୍ରାଣ ପିନ୍ଧି ଛିଡ଼ା ହୋଇଛି ହିନ୍ଦୁକୁଶ ପର୍ବତ ମାଳା; ତଳେ ଅପ୍ରଶସ୍ତ କାବୁଲ ଉପତ୍ୟକା । ଏଇଠି କାବୁଲ ନଦୀ ବହିଯାଇଛି । ହିନ୍ଦୁକୁଶର ଗଳିତ ତୁଷାର ଯୋଗୁଁ ଏହି ନଦୀରେ ଖରାଦିନେ ପାଣି ଥାଏ । ଶୀତଦିନେ ବରଫ ଶେଯରେ ନଦୀ ଶୋଇଥାଏ, ପୁଣି ଉଠେ ବସନ୍ତ ଆସିଲେ ।

ଭାରତଠାରୁ କାବୁଲର ବେଳ ଗୋଟିଏ ଘଣ୍ଟା ପଛରେ । ଆମ୍ଭମାନଙ୍କ ଘଣ୍ଟାରେ ଏଗାରଟା ବାଜିଲାବେଳକୁ କାବୁଲରେ ଦଶଟା ବାଜିଥାଏ । ଆମ୍ଭେମାନେ ଉଡ଼ାଜାହାଜର ସିଡ଼ିରୁ ଓହ୍ଲାଇ କାବୁଲ ବିମାନଘାଟିର ବୈଠକଖାନାରେ ପଶିଲୁଁ । ଗୋଟିଏ ବେଶ୍ ପ୍ରଶସ୍ତ ଘର । କାନ୍ଥକୁ ଲାଗି ସୋଫା ଓ କାଠର କୁସନଦିଆ ଚଉକି । ଟେବୁଲ ଉପରେ ଅନେକଗୁଡ଼ିଏ ଖବରକାଗଜ ଇଂରାଜୀ, ଫରାସୀ, ରୁଷୀୟ ଆଉ କେତେଗୁଡ଼ିଏ ବୋଧ ହୁଏ ପାର୍ସୀ ଭାଷାରେ ଲେଖା । କାନ୍ଥରେ ଆଫଗାନିସ୍ଥାନର ଶାହାଙ୍କର ଗୋଟିଏ ବଡ଼ ତୈଳଚିତ୍ର ବା ଫଟୋ (କେଉଁଟା ଠିକ୍ ମନେ ନାହିଁ) ।

ଆଫଗାନିସ୍ଥାନର ବିମାନଘାଟିର କର୍ତ୍ତୃପକ୍ଷଙ୍କୁ ଦେଖି ବଡ଼ ବିଚିତ୍ର ବିଚିତ୍ର ଲାଗିଲା । ତାଙ୍କ କଥା ତ ଆମେ ଭଲ ବୁଝୁ ନ ଥାଉଁ । ସେମାନେ ଖଣ୍ଡି ଖଣ୍ଡି ଇଂରାଜୀ କହୁଥାନ୍ତି । ସମସ୍ତଙ୍କର ମୁହଁ କପାଳଠାରୁ ଚିବୁକ ପର୍ଯ୍ୟନ୍ତ ଲମ୍ବାଳିଆ । ଏ କାନଠାରୁ ସେ କାନ ପର୍ଯ୍ୟନ୍ତ ଓସାର କମ୍, ଗୋଟାଏ ବହୁକାଳର ମୁଖା ରହିଲା ପରି ମୁହଁଗୁଡ଼ିକ । ଆଖିଗୁଡ଼ିକ କାବୁଲ ନଦୀ ନୀଳପାଣିର ଧାରଭଳି ନୀଳ । ମୁଣ୍ଡରେ ଗୋଟିଏ ଗୋଟିଏ ଟୋପି । ଖପୁରି ଘୋଡ଼ାଇବାଭଳି ଟୋପି ନୁହେଁ – ସେପରି ଟୋପି ଆମେ ପରେ ସମରକନ୍ଦ ବା ଷ୍ଟାଲିନାବାଦରେ ଦେଖିଥିଲୁଁ । ଏ ଟୋପିଗୁଡ଼ିକ ଅନେକାଂଶରେ ଭାରତର ମରହଟ୍ଟାଙ୍କ ଟୋପିପରି । ଅବଶ୍ୟ ସେମାନଙ୍କର ଟୋପି ଅପେକ୍ଷା ଆହୁରି ଗୋଜିଆ, ଆହୁରି ଟାଇଟ୍ । ଦେହରେ ୟୁରୋପୀୟ ପୋଷାକ । କେତେକଙ୍କ ବେକରେ ଟାଇ ଅଛି, ଆଉ କେତେକଙ୍କର ନାହିଁ ।

ଏମାନେ କେବେ ହସିବାର ମୁଁ କଳ୍ପନା କରିପାରୁ ନାହିଁ । ଆନନ୍ଦ ପ୍ରକାଶ କଲାବେଳେ ମଧ୍ୟ ଏମାନେ ଖାଲି ଖେଙ୍କି ଦିଅନ୍ତି । ଭଦ୍ରତା, ନମ୍ରତା ଏବଂ ଅତିଥି ପ୍ରତି ସମ୍ମାନର ଅଭାବ ନାହିଁ; କିନ୍ତୁ କିପରି ଏକ ହୀନତା ବ୍ୟାଧି ଯେପରି ଏମାନଙ୍କୁ ଘୋଟି ରହିଛି । ଯେପରି ଏକ ହତଭାଗ୍ୟ ଦେଶରେ ସେମାନେ ଅଭାବନୀୟ ସୁଯୋଗ ପାଇଛନ୍ତି; କିନ୍ତୁ ତାର ଉପଯୋଗ କରିପାରୁ ନାହାନ୍ତି । ଯେପରି ସେମାନଙ୍କର ବୁକୁତଳେ କେଉଁ ପୁରୁଣା ଯୁଗର ଅଭୁଲା ଇତିହାସ ସେମାନେ ସଙ୍ଗାଳି କରି ରଖିଛନ୍ତି– କହି ପାରୁ ନାହାନ୍ତି, ଜିଭ ଅଗରେ ରହିଯାଉଛି, କିନ୍ତୁ ଭୁଲି ପାରୁ ନାହାନ୍ତି । ଯେପରି ସଙ୍କୋଚ ଏବଂ ସମ୍ଭ୍ରମ ସାରା ଦେଶଟାଯାକ ଘୋଟିଯାଇଛି ।

ଆଫଗାନିସ୍ଥାନ ବିଷୟରେ ସେତେବେଳେ ମୋର ଧାରଣା କେବଳ ଭୂଗୋଳ ବହିରୁ; ଆଉ ମୋଗଲ ଅଭିଯାତ୍ରୀଙ୍କର ଇତିହାସରୁ । ଇଉରୋପୀୟମାନେ ଆସିବା ପର୍ଯ୍ୟନ୍ତ ଆଫଗାନିସ୍ଥାନ ଭାରତର ମୁଖ୍ୟ ପ୍ରବେଶଦ୍ୱାରା ଥିଲା । ଏହାରି ଭିତର ଦେଇ ରଣଧାରା ବାହି, ଜୟଗାନ ଗାଇ, ଉନ୍ମାଦ କଳରବ କରି ବହୁ ଅଭିଯାନର ଲହରୀ ଭାରତର ପ୍ରଶାନ୍ତ ସମଭୂମିରେ କମ୍ପନ ସୃଷ୍ଟି କରିଥିଲା ଏବଂ ବହୁକାଳ ପରେ ସେଇଠି ମିଶିଯାଇଥିଲା ।

କଟକ-ପୁରୀ ରେଳରାସ୍ତାରେ ଜଟଣୀ ଷ୍ଟେସନଠାରେ ଦେଖିଥିଲି, ଲେଖା ଓଡ଼ିଆରେ "କାବୁଲି ଭାରତ ଛାଡ" । ଏବେ ମଧ୍ୟ କେହି ରେଳଯାତ୍ରୀ ବଡ଼ ବଡ଼ ଅକ୍ଷରରେ କଳା ଅଙ୍ଗାରରେ ବା ଆଲକାତରାରେ ଲେଖା ସେହି ରଣଧ୍ୱନି ସିଗନାଲର ଉଞ୍ଚା ଘରର ଦେବାଲରେ ଅଥବା ମୁସାଫିରଖାନାର କାନ୍ଥବାଡ଼ରେ ଦେଖିବାକୁ ପାଇବେ ।

ଢଟଣାରେ କାବୁଲିଙ୍କର କି ଦୌରାତ୍ମ୍ୟ, ତାହାର ଇତିହାସ ମୁଁ ଅନୁସନ୍ଧାନ କରିନାହିଁ । ଏଥିପାଇଁ ଓଡ଼ିଶାରେ କୌଣସି ଆନ୍ଦୋଳନ ବା ଚହଳ ପଡ଼ିଥିବା କଥା ମଧ୍ୟ ମନେ ପଡ଼ିଲା "Quit Kabuli" – "କାବୁଲି ଭାରତ ଛାଡ଼" ।

ଜୁନ୍ ଚାରି ତାରିଖରେ ମୁଁ କଟକ ଛାଡ଼ିଥିଲି । ତା'ର ତିନିଦିନ ପୂର୍ବରୁ ମୁଁ ଯାଇଥିଲି କେନ୍ଦ୍ରପଡ଼ା–ଗୋଟାଏ ଶାନ୍ତିସଭାରେ କହିବାକୁ । ସେ ଦିନ କଟକର ଗରମ ବୋଧହୁଏ ସବୁଠାରୁ ବେଶି; ଉତ୍ତାପ ୧୦୪ ଡିଗ୍ରୀ ହୋଇଥାଏ । ବାଟରେ ବସ୍‌ରେ ଫେରିଲାବେଳେ ଜଣେ କାବୁଲି ମୋର ପାଖ ସିଟ୍‌ରେ ବସିଥିଲେ । ମୋଟର ବସ୍‌ରେ କୌଣସି ମୁହଁଚିହ୍ନା ବନ୍ଧୁଙ୍କ ସାଙ୍ଗରେ ମୋର ଆସନ୍ନ ବିଦେଶଯାତ୍ରା କଥା ପଡ଼ିଥାଏ । ମୁଁ ସେତେବେଳେ କହିଥିଲି ମୁଁ କାବୁଲ ବାଟରେ ଯାଉଛି ।

ଚନ୍ଦୋଳ ପାରହୋଇ ସାଳେପୁର ଆଡ଼କୁ ଆମର ବସ୍ ଝିମେଇ ଝିମେଇ ଚାଲିଥାଏ କମ୍ପ-ରୋଗୀପରି । କେଉଁଠି ଟିକିଏ ଭଲ ରାସ୍ତା ପଡ଼ିଗଲେ ଖଣ୍ଡେଦୂର ଖୁବ୍ ଦ୍ରୁତଗତିରେ ଚାଲିଯାଏ । ତା'ପରେ ପୁଣି ସେହି ସମୁଦ୍ର ଲହଡି ଭାଙ୍ଗିଲାଭଳି ଏପଟ ସେପଟ ଝୁଲା । ଏଥିରେ ମୋତେ ନିଦ ଲାଗିଗଲା । ଅଜାଣତରେ ମୁଁ ଉକ୍ତ ବିରାଟକାୟ କାବୁଲିଙ୍କର ଦେହରେ ପିଟି ହୋଇଗଲି ।

କାବୁଲି ଜଣକ ଯେପରି ଏହି ଓର ଉଣ୍ଡୁଥିଲେ । ମୁଁ ଅତି ସନ୍ତର୍ପଣରେ ତାଙ୍କୁ "ମାଫ୍ କିଜିୟେ" କହି ଗୋଟେଇ ପୋଟେଇ ହୋଇ ବସିଲି, କିନ୍ତୁ ସେ ନଛୋଡ଼ବନ୍ଧା । ମୋତେ ଖଣ୍ଡିଏ ପାନ ଆପଣା ଡବାରୁ କାଢ଼ିକରି ଦେଲେ । ସେଥିରେ କି ମସଲା ପକାଇଥିଲେ, ତାହା ମୋର ଗୋଚର ନାହିଁ । ପାନ ଖଣ୍ଡିକରେ ମୋର ମୁଣ୍ଡ ଏବଂ ଆଖି କାନରେ ତୀବ୍ର ଉଷ୍ଣତା ଖେଳିଗଲା । ମୁଁ ଚେଙ୍ଗା ହୋଇଗଲି ।

ସେ ବୁଝିସାରିଥିଲେ ମୁଁ କାବୁଲ ବାଟରେ ଯାଉଛି । ପକେଟରୁ ଖଣ୍ଡିଏ ପାସ୍‌ପୋର୍ଟ (ଛାଡ଼ପତ୍ର) ବାହାର କଲେ । କାବୁଲର ସରକାରୀ ଦପ୍ତରର ମୋହର ମରିଛି । ମୋତେ କହିଲେ, ଯଦି ମୁଁ କାବୁଲବାଟେ ଯାଏଁ, ତେବେ ତାଙ୍କ ଘରକୁ ଯିବି । ତାଙ୍କ ଘର ଇତାଲୀୟ ଦୂତାବାସ ପାଖରେ । ସେଠାରେ ତାଙ୍କ ବିବି ଏବଂ ଦୁଇଟି ପୁତ୍ର ସନ୍ତାନ ଅଛନ୍ତି । ଗୋଟିଏ ପୁଅ ବିଭା ହୋଇଛି, ତାର ବିବି ମଧ୍ୟ ତାଙ୍କରି ଘରେ ଅଛି । ଏତିକି କହି ସେ ତାଙ୍କର ପାସପୋର୍ଟରେ ଆଉ କେତେ ଦିନ ଭାରତରେ ରହିବାପାଇଁ ତାଙ୍କର ଅଧିକାର ଅଛି, ସେ କଥା ଜାଣିବାକୁ ଚାହିଁଲେ । ଆଠମାସ ଆଉ କେତେ ଦିନ ଅଛି ବୋଲି ମୁଁ ପାସ୍‌ପୋର୍ଟ ଦେଖି କହିଲି ।

ପାସ୍‌ପୋର୍ଟରୁ ତାଙ୍କର ଠିକଣା ମନେ ମନେ ଦେଖିନେଲି । ସେ ମୋତେ ତାଙ୍କର ଠିକଣା ଦେବାକୁ ଯାଉଥିଲେ । ମୁଁ ତାଙ୍କୁ କହିଲି ପାସପୋର୍ଟରୁ ମୁଁ ତାହା ଦେଖି ନେଇଛି । ସେଥିରେ ତାଙ୍କର ପ୍ରତ୍ୟୟ ହେଲା ଯେ ମୁଁ ନିଷ୍ଠାର ସହିତ ତାଙ୍କର କଥାରେ ହୁଁ ଭରିଛି । ମୁଁ ତାଙ୍କ ଘରକୁ ନିଶ୍ଚୟ ଯିବି ଏବଂ ଆଠ ମାସପରେ ତାଙ୍କର ସବୁ କାମ ସରିଲେ ସେ ଫେରିବେ ବୋଲି ଘରେ କହିବି ।

ସେଦିନ ସେହି ପ୍ରଚଣ୍ଡ ଗ୍ରୀଷ୍ମରେ ଭାଜି ହେଲାବେଳେ ସେହି କାବୁଲି ଦୋସ୍ତ ମହମ୍ମଦଙ୍କର ନୀଳ ଆଖିରେଖା ତଳେ ଯେଉଁ ହଜିଲା ସଂସାରର ସୁଖସ୍ମୃତି ମୁଁ ଦେଖିବାକୁ ପାଇଲି, ତାହା ଏବେ ମଧ୍ୟ ମୋର ମନେ ପଡୁଛି; ତାଙ୍କର ମୁହଁ ମନେ ନାହିଁ । ଅସ୍ପଷ୍ଟ ଫଟୋରେ ତାଙ୍କୁ ଯେପରି ଦେଖିଥିଲି ତାହା ଝାପ୍‌ସାଭାବରେ ମୋର ଟିକିଏ ଟିକିଏ ମନର ଗହନ ଭିତରେ କେତେ କେତେ ବେଳେ ଭାସି ପୁଣି ବୁଡ଼ିଯାଉଛି । କିନ୍ତୁ ଆପଣା ଦେଶର ଆପଣାର ଆତ୍ମୀୟଙ୍କ ପ୍ରତି ମନୁଷ୍ୟର କରୁଣ ବ୍ୟାକୁଳତା ସେଦିନ ସେହି କାବୁଲିଙ୍କର ସ୍ତିମିତ ବାଦାମ ଆକୃତି ଚକ୍ଷୁରେ ଉଦ୍ଭାସିତ ହୋଇଥିଲା । ସେହି ବିହ୍ୱଳିତ ଭାବ କେବେ ମନୁଷ୍ୟ ଭୁଲିପାରେ ? ମୋତେ ମଧ୍ୟ ସେହି କେତେ ମୁହୂର୍ତ୍ତଯାଏ ସେ ଯେପରି ଚାହିଁଲେ, ସେଥିରେ ମୋର ମନେ ହେଲା, ମୋରି ମାଧ୍ୟମରେ ସେ ଆପଣାର କଳ୍ପନାକୁ ପ୍ରସାରିତ କରି କାବୁଲ ସହିତ ସଂଯୁକ୍ତ ହୋଇଯାଇଛନ୍ତି । ସେହି ବସ୍‌ର ଘର୍ଘର, ପ୍ରଚଣ୍ଡ ଗ୍ରୀଷ୍ମ ଆଉ ଅସୁସ୍ଥ ଯାତ୍ରୀଦଳର ଖର-ନିଶ୍ୱାସ ଭିତରେ ସେ ଏକ ମହାନୁଭବ ମୂର୍ତ୍ତିପରି ମନେ ହେଲେ ।

ହଠାତ୍ ଅତର୍କିତଭାବରେ ମୋର ମନେ ପଡ଼ିଥିଲା, "କାବୁଲି ଭାରତ ଛାଡ଼" । ଏହିମାନଙ୍କ ଉଦ୍ଦେଶ୍ୟରେ ଜଟଣୀର କୌଣସି କୌଣସି ଦୁଃସ୍ଥ ଖାତକ ନିଶ୍ଚୟ ପ୍ରାଣର ବେଦନା ପ୍ରକାଶ କରି ସେହି ସ୍ଲୋଗାନ୍ କାନ୍ଥରେ ଲେଖିଥିବେ । ବିଶ୍ୱନାଥ ମୁଣ୍ଡିଆତଳେ ଜଗଦଳପୁରରେ ହୁଏତ କାହାର ଘରେ ତା'ର ସ୍ତ୍ରୀ ବାଳକ ଚାହିଁ ବସିଥିବେ ମାସର ଦରମା ପାଇଁ । ଏହି କାବୁଲିଙ୍କର କୌଣସି ସମାନଧର୍ମୀ ନିଶ୍ଚୟ ସେ ଦିନ ସେହି ଦୁଃସ୍ଥ ରେଳଶ୍ରମିକ ଖାତକକୁ ବାଟରେ ଧରି କହିଥିବ, "ଅସଲ ନେହିଁ ମାଙ୍ଗତା, ସୁଧ ମାଙ୍ଗତା" । ଏପରି ସୁଧ ଶୁଝି ଶୁଝି ସବୁତକ ଦରମା ଶୋଷି ହୋଇଯାଇଥିବ ଏବଂ ହାହାକାର କରିଥିବେ ଘରେ ରୁଗ୍‌ଣା ସ୍ତ୍ରୀ ଆଉ ଭୋକିଲା ବାଳୁତ ।

ମୁଁ ଆଉ ଥରେ ସେହି କାବୁଲିଙ୍କୁ ଚାହିଁଲି । ସେତେବେଳକୁ ତାଙ୍କର ଆଖି ନିଷ୍ପ୍ରଭ । ଗୋଟାଏ ପେନ୍‌ସିଲ୍ ଧରି ଆପଣା ନୋଟ ବହିରେ କୌଣସି ହିସାବରେ

ଲାଗିବାକୁ ଯାଉଥିଲେ । ମୋ ଆଖିରେ ତାଙ୍କର ମୁହୂର୍ତ୍ତକର ମହାନୁଭବତା କେଉଁ ଆଡ଼େ ଉଭେଇ ଯାଇଛି । ସେ ଏକାବେଳକେ ଖର୍ବ ଏବଂ ବିକଳ ହୋଇଯାଇଛନ୍ତି । ତାହା ସେ ଅନୁଭବ କଲାପରି ଶଙ୍କିଗଲେ । କେତେ କାଳପରେ ସେ ବିଦାୟ ନେଇଗଲେ, ତାହା ଆଉ ମନେ ନାହିଁ ।

କାବୁଲ ବିମାନବନ୍ଦରର ବୈଠକଘରେ ମୋର ମନରେ ସେହି ସମସ୍ତ କଥା ଗୋଟି ଗୋଟି ହୋଇ ଭାସିଲା । ମୁଁ ମନେ ମନେ ଅନୁଭବ କରିନେଲି ସେହି କେତେ ସମୟର ସାଥୀ ଆପଣାର ଆଖିର କ୍ୟାମେରାରେ କେଉଁ ଦୃଶ୍ୟ ଦେଖିଥିବେ । ଏହି ତେବେ ସେହି କାବୁଲ । ଏହାକୁ ଛାଡ଼ି ସେ ଭାରତର ଶସ୍ୟଶ୍ୟାମଳ ଜୀବନରେ ପ୍ରବେଶ କରିଛନ୍ତି ଏବଂ ଖଣ୍ଡିଏ ନୋଟଖାତା ପେନ୍‌ସିଲ ଧରି ଆପଣାର ସୁଧ ଆଦାୟ କରିବାରେ ଲାଗିଛନ୍ତି । ହିନ୍ଦୁକୁଶର ବରଫପରି ଅସଲ ଚିରନ୍ତନ ରହିଛି – "ଖାଲି ସୁଧ ମାଙ୍ଗତା, ଅସଲ ନେହିଁ ମାଙ୍ଗତା ।"

## ତିନି

ବିମାନଘାଟିର ବୈଠକଖାନାରେ ସୋଭିଏଟ ଦୂତାବାସର ପ୍ରଥମ ସେକ୍ରେଟେରୀ ଆସି ପହଞ୍ଚିଲେ । ତାଙ୍କ ପୂର୍ବରୁ ବିମାନରୁ ପାଛୋଟି ଆଣିବାପାଇଁ ଭାରତୀୟ ଦୂତାବାସର ଜଣେ କର୍ମଚାରୀ ଏବଂ ସୋଭିଏଟ୍ ଦୂତାବାସର ଆଉ ଜଣେ କର୍ମଚାରୀ ଆସିଥିଲେ । ଭାରତୀୟ ଦୂତାବାସର କର୍ମଚାରୀ ଜଣକ ଭାରତୀୟ ନୁହନ୍ତି, ତେଣୁ ସେ ସାଧାରଣ ଆଫଗାନିସ୍ଥାନ ବ୍ୟକ୍ତି ଭଳି ମନେହେଲେ । କିନ୍ତୁ ସୋଭିଏଟ୍ ଦୂତାବାସର ପ୍ରାୟ ୨୧ ବର୍ଷର ନମ୍ର ଏବଂ ଲାଜକୁଳା ଯୁବକ ଜଣକ ଆମ ସାଙ୍ଗରେ ବିମାନବନ୍ଦରର ବୈଠକଖାନା ଯାଏ ଆସିଥିଲେ ।

ଆମ ଭିତରେ ଶ୍ରୀମତୀ ଲିଟୋ ଘୋଷ ରୁଷୀୟ ଭାଷାରେ ପ୍ରବୀଣା । ତେଣୁ ଆମ୍ଭମାନଙ୍କର ଦୋ' ଭାଷୀର ପ୍ରୟୋଜନ ହେଲା ନାହିଁ । ସୋଭିଏଟ୍ ଦୂତାବାସର ପ୍ରଥମ ସେକ୍ରେଟେରୀ ଇଂରାଜୀ କହିପାରୁ ନଥିଲେ; କିନ୍ତୁ ବୁଝିପାରୁଥିଲେ । ତାଙ୍କଠାରୁ ଆମର ଯାତ୍ରାର ପରବର୍ତ୍ତୀ ଅଧ୍ୟାୟ ବିଷୟରେ ଶୁଣିବାକୁ ପାଇ ଆଶ୍ୱସ୍ତ ହେଲୁ । ଦିଲ୍ଲୀ ଛାଡ଼ିବାବେଳେ ଆମ୍ଭେମାନେ ଏକ ଅନିଶ୍ଚିତ ଅବସ୍ଥାରେ ଥିଲୁ । ଏଥିପୂର୍ବରୁ ସମସ୍ତ ଭାରତୀୟ ଶାନ୍ତି ପ୍ରତିନିଧି ଦଳ କାବୁଲ ବାଟରେ ଯିବାର ନିଷ୍ପତ୍ତି ହୋଇଥିଲା । ଆମର ମୋଟ ପ୍ରାୟ ଶହେଜଣ ଭିତରୁ ୭୨ ରୁ ୮୦ ଜଣ ଯାଏ କାବୁଲ ବାଟରେ ଯାଇ ସେଠାରୁ ସୋଭିଏଟ୍ ଉଡ଼ାଜାହାଜ ଯୋଗେ ହେଲିସିଙ୍କି ଯିବାପାଇଁ ଆଗରୁ ପ୍ରସ୍ତାବ

ହୋଇଥିଲା । ବାକି ସମସ୍ତେ ମାମୁଲି ଭଡ଼ା ଉଡ଼ାଜାହାଜରେ ୟୁରୋପ ବାଟରେ ଯିବାର ଠିକ୍ କରିଥିଲେ ।

କାବୁଲ ବାଟରେ ଯିବାର ବନ୍ଦୋବସ୍ତ ପକ୍କା ହୋଇ ସାରିଥିଲା । ଭାରତୀୟ ଏୟାରଲାଇନ୍ କରପୋରେସନ୍‌ର ଗୋଟିଏ ଡାକୋଟା ବିମାନ ଆମକୁ ନେଇ କାବୁଲକୁ ଯିବ । କାରଣ ଅପ୍ରଶସ୍ତ କାବୁଲର ଉଡ଼ାଜାହାଜ ଘାଟିରେ ବଡ଼ ଉଡ଼ାଜାହାଜ ଓହ୍ଲାଇ ପାରିବ ନାହିଁ । ତେଣୁ ଗୋଟିଏଥରରେ ଆମ୍ଭେମାନେ ଯିବାର ବନ୍ଦୋବସ୍ତ ହେଲା ଏବଂ ସେହି ଅନୁସାରେ ସୋଭିଏଟ ଭୂମିର ଉଡ଼ାଜାହାଜ କାବୁଲଠାରୁ ଆମ୍ଭମାନଙ୍କୁ ଘେନି ସୋଭିଏଟ ଦେଶ ଉପରେ ହେଲିସିଙ୍କି ଯିବା ଲାଗି ଆମ୍ଭମାନଙ୍କ ତରଫରୁ ସୋଭିଏଟ ଶାନ୍ତି କମିଟିକୁ ଅନୁରୋଧ କରାଗଲା । ସେମାନେ ସେହି ଅନୁରୋଧ ରକ୍ଷା କରିଥିଲେ । ଏହି ପ୍ରୋଗ୍ରାମ ଅନୁସାରେ ମଧ ଆମ୍ଭମାନଙ୍କର ପାସ୍‌ପୋର୍ଟରେ ଆଫଗାନିସ୍ଥାନ ଏବଂ ସୋଭିଏଟ୍ ଦେଶରେ ପ୍ରବେଶାଧିକାର ଅନୁମତି ଚିହ୍ନିତ କରାଇଥିଲୁ ।

ସାତ ତାରିଖରେ ଆମର ପ୍ରଥମ ଦଳରେ ପ୍ରାୟ ପଚିଶ ଜଣ ଯାତ୍ରୀ ଯିବାର ଥାଏ । ସେମାନଙ୍କର ନାମ-ଧାମ ମଧ ସ୍ଥିର ହୋଇଥାଏ । ତା'ପରେ ଆଠ, ନଅ ଏବଂ ଦଶ ଛାଡ଼ି ଏଗାର ତାରିଖ । ଆମ୍ଭେମାନେ ପ୍ରଥମ ଦଳ ନିର୍ଦ୍ଦିଷ୍ଟ ୬ ତାରିଖରେ ଯାଇ ଦିଲ୍ଲୀରେ ପହଞ୍ଚିଥିଲୁ । କିନ୍ତୁ ସେହି ଛଅ ତାରିଖ ସକାଳେ ସମ୍ବାଦ ମିଳିଲା ଯେ ଆଫଗାନିସ୍ଥାନର ପ୍ରଧାନ ସେନାପତିଙ୍କର ଆଦେଶ ଆଫଗାନି ସ୍ଥାନରୁ କୌଣସି ପେଟ୍ରୋଲ ବାହାରକୁ ଯାଇପାରିବ ନାହିଁ । ଏହାର ଅର୍ଥ ଆମ୍ଭମାନଙ୍କର ଡାକୋଟା ବିମାନଗୁଡ଼ିକ ଫେରନ୍ତି ପେଟ୍ରୋଲ ଆଫଗାନିସ୍ଥାନରୁ କିଣିପାରିବେ ନାହିଁ । ଆଉ ଡାକୋଟା ବିମାନ ମଧ ଆପଣାର ଯିବାଆସିବା ପେଟ୍ରୋଲ ଭାରତରୁ ନେବା ଲାଗି ତା'ର ଟ୍ୟାଙ୍କିରେ ଯଥେଷ୍ଟ ସ୍ଥାନ ନାହିଁ । ଏକଥା ମଧ ଜଣାଶୁଣା ଯେ ବିମାନର ଟ୍ୟାଙ୍କି ଛଡ଼ା ଅନ୍ୟ ସ୍ଥାନରେ ପେଟ୍ରୋଲ ଟିଣ ବା ପିମ୍ପାଦ୍ୱାରା ନେବାର ନିୟମ ନାହିଁ – ନେବାରେ ଗୁରୁତର ବିପଦ ଘଟିପାରେ ।

ତେଣୁ ଅନିଶ୍ଚିତତା ଭିତରେ ଆଉ ୬ ଦିନ କାଳ କଟିଲା ପରେ ଆମ୍ଭେମାନେ ନିଷ୍ପତ୍ତି କଲୁ ଯେ କାବୁଲ ପଥ ତ୍ୟାଗ କରିବାକୁ ହେବ ଏବଂ ୟୁରୋପ ବାଟରେ ଗୋଟିଏ ବଡ଼ ସ୍କାଇମାଷ୍ଟର ଉଡ଼ାଜାହାଜରେ ଷାଠିଏ ଜଣ ପ୍ରତିନିଧି ପ୍ରେସ୍ ଏବଂ ଆମଷ୍ଟାରଡ଼ାମ ହୋଇ ହେଲିସିଙ୍କି ଯିବେ ଏବଂ ଆମେ ଯେଉଁମାନଙ୍କର ଏତେ ପଇସା ଖର୍ଚ୍ଚ କରି ଯାଇପାରିବାର ବଳ ନାହିଁ, ସେମାନେ ଦିଲ୍ଲୀରୁ ସାପ୍ତାହିକ ଥରେ ଯାଉଥିବା ମାମୁଲି ଉଡ଼ାଜାହାଜ ସର୍ଭିସରେ କାବୁଲ ଯାଇ ସେଠାରେ ଆମର ପରବର୍ତ୍ତୀ ଅଧାୟର ଚେଷ୍ଟା

କରିବୁଁ । ଏଣୁ ଆମର କାବୁଲବାଟରେ ଯିବା ବିଷୟରେ ସନ୍ଦେହ ଥିବାରୁ ସୋଭିଏଟ୍ ଭୂମିରୁ ଉଡ଼ାଜାହାଜ ଆସିବା ତ ବନ୍ଦ ହୋଇଥିବ, ତେଣୁ ଆମକୁ କେତେଦିନ କାବୁଲରେ ଅପେକ୍ଷା କରିବାକୁ ପଡ଼ିବ କିଏ ଜାଣେ ?

ଏଣେ ଦିଲ୍ଲୀ ଉଡ଼ାଜାହାଜ ବନ୍ଦରରେ ଆମେମାନେ ଲେଖିଦେଇ ଆସିଥାଉଁ ଯେ ଆମ୍ଭେମାନେ ଆଫଗାନିସ୍ଥାନରେ ବେଶି ଦିନ ରହିବୁ ନାହିଁ । ଖାଲି ଗଳାବାଟରେ ଚଟିଘର ଭଳି ଆମେ କାବୁଲରେ ରହୁଛୁଁ । କାରଣ ତାହା ନ ଲେଖିଥିଲେ ସେମାନେ ଆମ୍ଭମାନଙ୍କ ସାଙ୍ଗରେ ୫୦ ଟଙ୍କାରୁ ବେଶି ଭାରତୀୟ ମୁଦ୍ରା ଛାଡ଼ି ନଥାନ୍ତେ । ଅଥଚ ଆମ୍ଭେମାନେ ସାଙ୍ଗରେ ପ୍ରାୟ ସମସ୍ତେ ଭାରତୀୟ ମୁଦ୍ରା ଯେତିକି ନେଇପାରିବାର କଥା – ଦୁଇଶହ ସତୁରି ଟଙ୍କା ହେବ, ସେତକ ନେଇଥିଲୁ । ଭାରତରୁ ଏତେ ମୁଦ୍ରାଧରି ଖୋଦ୍ ଆଫଗାନିସ୍ଥାନକୁ ଯିବାର ବିଧି ନୁହେଁ । ଏଭଳି ବିଧି କାହିଁକି ନୁହେଁ; ତାହା ମୋର ପରବର୍ତ୍ତୀ ଅଭିଜ୍ଞତାବେଳେ କହିବି ।

ଦିଲ୍ଲୀ ଛାଡ଼ିବା ପୂର୍ବରୁ ଆମ୍ଭେମାନେ କାବୁଲରେ ଥିବା ସୋଭିଏଟ୍ ଦୂତାବାସକୁ ଗୋଟିଏ ଟେଲିଗ୍ରାମ୍ କରିଥିଲୁ ଯେ ଆମେ ବାରଜଣ କାବୁଲ ବାଟରେ ଯାଉଛୁଁ । ତେଣୁ ସୋଭିଏଟ୍‌ର ଉଡ଼ାଜାହାଜ ଆମକୁ ହେଲିସିଙ୍କି ଯେପରି ନେଇଯାଆନ୍ତି । କିନ୍ତୁ ଏହି ଟେଲିଗ୍ରାମ କାର୍ଯ୍ୟକାରୀ ହେବା ପୂର୍ବରୁ ତ ଆମ୍ଭେମାନେ କାବୁଲ ଅଭିମୁଖରେ ବାହାରିଛୁ । ତେଣୁ ଆମ୍ଭମାନଙ୍କ ମନରେ ତିଳେମାତ୍ର ଆଶା ନଥିଲା ଯେ ଏତେ ଶୀଘ୍ର ଆମକୁ କାବୁଲ ଛାଡ଼ିଯିବାର ସୁଯୋଗ ମିଳିବ । କାରଣ ଆମର କାବୁଲ ବାଟରେ ଯିବାର ପ୍ରସ୍ତାବ ଆଗରୁ କଟିଯାଇଛି ବୋଲି ସୋଭିଏଟ ଶାନ୍ତି କମିଟି ଖବର ପାଇସାରିଥିଲେ । ସେ ଅନୁସାରେ ତାଙ୍କର ପୂର୍ବର ସମସ୍ତ ବନ୍ଦୋବସ୍ତ ବନ୍ଦ କରିଦେଇଥିଲେ ।

ସୋଭିଏଟ୍ ଦୂତାବାସର ପ୍ରଥମ ସେକ୍ରେଟେରୀ କହିଲେ; ଆମ୍ଭମାନଙ୍କର ଟେଲିଗ୍ରାମ ପାଇ ସେ ତାସକନ୍ଦକୁ ଜଣାଇଥିଲେ ଏବଂ ତାସକନ୍ଦରୁ ଖବର ପାଇଛନ୍ତି ଯେ ଗୋଟିଏ ଉଡ଼ାଜାହାଜ ସେଠାରୁ କାବୁଲ ଅଭିମୁଖରେ ବାହାରି ସାରିଛି ଏବଂ ଦୁଇ ଘଣ୍ଟା ଭିତରେ କାବୁଲରେ ପହଞ୍ଚିବ । ତେଣୁ ଆମ୍ଭେମାନେ ତାହା ପରଦିନ ଅର୍ଥାତ୍ ଜୁନ ୧୫ ତାରିଖରେ ସକାଳ ଆଠଟାବେଳେ କାବୁଲ ଛାଡ଼ି ବାହାରିଯିବୁ । ଆମ୍ଭେମାନେ ଏତକ ଶୁଣି ରଙ୍କ ନିଧି ପାଇଲା ପରି ମନେକଲୁଁ । କାରଣ କାବୁଲଠାରେ ଅନିଶ୍ଚିତ ଅବସ୍ଥାରେ ପଡ଼ିରହିବା ଆମକୁ ନିଶ୍ଚୟ ବାଧିଥାଆନ୍ତା ।

ତା'ପରେ ଶାହାଙ୍କର ଫଟୋ ଆଡ଼େ ଦେଖାଇ ସେ କହିଲେ, "ଏଠାରେ ଏହି ଶାହା ହେଉଛନ୍ତି ବର୍ତ୍ତମାନ ରାଜା" । ଏଠାରେ କୌଣସି ରାଜନୈତିକ ଦଳ ନାହାନ୍ତି । ବିଭିନ୍ନ ପାହାଡ଼ିଆ ଜିର୍ଗା ବା ଗୋଷ୍ଠୀମାନଙ୍କର ମୁଖ୍ୟଙ୍କର ସଭା ବୋଲି ଗୋଟିଏ ପରାମର୍ଶଦାତା କମିଟି ଅଛି । ଆଉ ଏହି ଜିର୍ଗାର ଲୋକେ ନିର୍ବାଚନ କରି ଏହି ପରାମର୍ଶଦାତା କମିଟିକୁ ଆପଣାର ପ୍ରତିନିଧି ପଠାନ୍ତି । ମନ୍ତ୍ରୀମାନେ ମହାମହିମ ରାଜାଙ୍କ ପାଖରେ ରାଜ୍ୟଶାସନ ପାଇଁ ଦାୟୀ । ଆଗେ ତିନୋଟି ମନ୍ତ୍ରୀ ସବୁ କାମ ଚଳାଉଥିଲେ । ଏବେ ଶାସନ ଆହୁରି ଗଣତାନ୍ତ୍ରିକ ହୋଇଛି । ପାଞ୍ଚ ଜଣ ମନ୍ତ୍ରୀ କାମ ଚଳାଉଛନ୍ତି ।

ସୋଭିଏଟ୍ ଦେଶର କୂଟନୈତିକ ପ୍ରତିନିଧି; ରାଜଦୂତଙ୍କ ତଳେ ଏହାଙ୍କ ଆସନ । ପୃଥିବୀର ଯେକୌଣସି ଦେଶରେ ଜଣେ ସହକାରୀ ମନ୍ତ୍ରୀଙ୍କର ଆସନ ସଙ୍ଗେ ଏହି ଆସନ ସମାନ । ଅଥଚ ତାଙ୍କର ଅମାୟିକ ନମ୍ରତା, ସରଳ ସରସ କଥାଭାଷା ଆମକୁ କିଣି ନେଲା । ବେଶ୍ ହୃଷ୍ଟପୁଷ୍ଟ ଚେହେରା । ବିଶାଳ ଉନ୍ନତ ବକ୍ଷରେ କେତୋଟି ସୋଭିଏଟ ପଦକ ଝୁଲୁଥାଏ । ମୁଖରେ ହସ ହସ ଭାବ; ଉନ୍ନତ ନାସା । ସେ ଆଫଗାନିସ୍ଥାନ ବିଷୟ କହୁଥିଲାବେଳେ କାହାରି ଆଡ଼କୁ କଟାକ୍ଷ ନଥିଲା; ଅଥଚ୍ ଆଫଗାନିସ୍ଥାନ ପ୍ରତି ତାଙ୍କର ମମତା ଏବଂ ସୌହାର୍ଦ୍ଦ୍ୟ ଝରି ପଡୁଥାଏ । ସତ୍ୟନିଷ୍ଠଭାବରେ ଏଭଳି ମଧୁର ପ୍ରିୟ କଥା କ୍ୱଚିତ ଶୁଣିବାକୁ ମିଳେ !

ପୃଥିବୀରେ କୂଟନୀତି ପାଇଁ ବିଲାତର ବେଶ୍ ପ୍ରଶଂସା ଅଛି । ବିଲାତ କୂଟନୀତିର ପରାକାଷ୍ଠା ହେଉଛି ମଧ୍ୟପ୍ରାଚ୍ୟ, ଯେଉଁଠି ଲରେନସ୍ ସାହେବ ଆରବ ଦେଶମାନଙ୍କ ଭିତରେ ନିଜେ ସେଠା ଲୋକ ହିସାବରେ ମିଶିଯାଇଥିଲେ । ଇତିହାସରେ ତାହାର ପ୍ରମାଣ ରହିଛି । କିନ୍ତୁ ଏହି ସୋଭିଏଟ କୂଟନୀତିଜ୍ଞ କୂଟନୀତି ଶିଖିବାକୁ କୌଣସି ତାଲିମ ନେଲାପରି ଜଣାପଡୁ ନାହିଁ । ମନେ ହେଉଥାଏ ଏହା କୂଟନୀତି ନୁହେଁ, ଏହାହିଁ ସୋଭିଏଟ ସଂସ୍କୃତି । ପରେ ସୋଭିଏଟ ଦେଶର ନରନାରୀଙ୍କୁ ଦେଖିଲାପରେ ଏହି ଧାରଣା ଦୃଢ଼ ହେଲା ଯେ ବିଦେଶୀ ଜାତିପ୍ରତି ସମ୍ମାନ, ପ୍ରେମ ଏବଂ ସହୃଦୟତା ସୋଭିଏଟ ଜାତିମାନଙ୍କର ଅସ୍ଥିମଜ୍ଜାଗତ । ବିଦେଶୀ ଜାତି ପ୍ରତି ଆକ୍ଷେପ ନାହିଁ, କଟାକ୍ଷ ନାହିଁ, ତା'ର ଜୀବନ ବିଷୟରେ କୌଣସି ହସ୍ତକ୍ଷେପର ଚିନ୍ତା ନାହିଁ; ଅଥଚ ସେମାନଙ୍କର ପ୍ରଗତି ପ୍ରତି ଗଭୀର ସହାନୁଭୂତି ଏବଂ ଐକାନ୍ତିକ ଆଗ୍ରହ ।

କିନ୍ତୁ ସରଳ କଥାରେ କହିଲେ ଆଫଗାନିସ୍ଥାନ କ'ଣ ? ତାହା ଆଫଗାନ ଯୁବକ ଇନ୍‌ଜିନିଅର ଓ୍ୟାଲି ମହମ୍ମଦଙ୍କଠାରୁ ଶୁଣିଥିଲି । ସେହି ସୁଦର୍ଶନ, ସଜଳ ନୀଳ ଆଖି

ଏବଂ ତେଜୀୟାନ ଯୁବକ ଆଧୁନିକ ଆଫଗାନିସ୍ଥାନର–ଆଧୁନିକ ନୁହେଁ ଆଗାମୀର ପ୍ରତିମୂର୍ତ୍ତି । ସେହି ଯୁବକ ମୋତେ କହିଥିଲେ, "ଆଫଗାନିସ୍ଥାନ ଏସିଆର ହତଭାଗିନୀ କନ୍ୟା" । ଏତକ କହିଲାବେଳେ ସେ ମୁଣ୍ଡକୁ ତଳକୁ ପୋତି ଦେଇଥିଲେ । ବ୍ୟଥାର କରୁଣତା ତାଙ୍କର ଚକ୍ଷୁତଟରେ ଭାସି ଉଠିଥିଲା ।

## ଘରି

ଭାରତୀୟ ଦୂତାବାସର ତିନିଗୋଟି ଗାଡ଼ିରେ ଆମେ କାବୁଲ ହୋଟେଲ ଆଡ଼େ ଗ୍ଭଲିଲୁଁ । ବାଟରେ ଦୁଇପଟେ ଛୋଟ ଛୋଟ ଶସ୍ୟକ୍ଷେତ୍ର ଆଉ ମାଟିର ଘର । ମାଟି କାନ୍ଥ, ମାଟି ଛାତ, ମାଟିର ମେଜିଆ । କେତେ ଘର ଭାଜି ପଡ଼ିଛି । କେଉଁଠି ଇଟାର ପାଚେରିବେଢ଼ା ବଡ଼ ବଡ଼ ବଗିଗ୍ଭ । ରାସ୍ତା କଡ଼ରେ ଦୁଇପଟେ ପାଣିର ଯୋଡ଼ିଏ ଧାରା ବହିଯାଉଛି । ପାଣି ବେଶି ଅସଫା ନୁହେଁ । ସମରକନ୍ଦ, ତାସକନ୍ଦ ଏବଂ ଷ୍ଟାଲିନାବାଦରେ ଏପରି ପାଣିର ଧାରା ଆମ୍ଭେମାନେ ପରେ ଦେଖିଥିଲୁ । ମଧ୍ୟଏସିଆର ଶୁଷ୍କ ମାଟିରେ ଜଳସେଚନଦ୍ୱାରା ଫସଲ କରିବା କହୁକାଳରୁ ଚଳି ଆସିଛି । ଏହି ଦୁଇଟି ଜଳଧାର ସେହି ଜଳସେଚନ ଉଦ୍ଦେଶ୍ୟରେ ତିଆରି । ସମସ୍ତ କାବୁଲରେ ରାସ୍ତାର ଦୁଇକଡ଼ରେ ଏପରି ଜଳଧାରା ଆମ୍ଭେମାନେ ଦେଖିବାକୁ ପାଇଥିଲୁଁ । ଏଥିରୁ ଲୋକେ ଦରକାରବେଳେ ପାଣି ପିଅନ୍ତି ଏବଂ ଏଥିରୁ ପାଣି ନେଇ ନମାଜ ପଢ଼ନ୍ତି ଆଉ ନମାଜ ପଢ଼ିବା ପୂର୍ବରୁ ଗୋଡ଼ ହାତ ଧୋଇ ଶୌଚ ହୁଅନ୍ତି । ଏହି ପାଣିର ଧାରା କାବୁଲ ନଦୀରୁ କଟା ହୋଇ ନିଶ୍ଚୟ ଆସିଛି ଏବଂ ତା'ପରେ ସହରକୁ ବେଢ଼ି ଶସ୍ୟଶ୍ୟାମଳ କରିଛି ।

କାବୁଲର ରାସ୍ତାଗୁଡ଼ିକ ଆମ୍ଭମାନଙ୍କର କଟକ ସହରର ରାସ୍ତାଭଳି, ଏତିକି ଓସାର । ରାସ୍ତାକୁ ଦୁଇଭାଗ କରି ଇଲେକ୍‌ଟ୍ରିକ ଏବଂ ଟେଲିଫୋନ୍ ଖୁଣ୍ଟି । ୟୁରୋପ ପରି ଏଠାରେ ଡାହାଣ ପାଖକୁ ମାଡ଼ି ଗାଡ଼ିଗୁଡ଼ିକ ଯାଏ; ଭାରତ ବା ବିଲାତ ପରି ବାଁ ପାଖକୁ ନୁହେଁ । ଅଥଚ ରାସ୍ତାର ସଙ୍କେତଗୁଡ଼ିକ ଇଂରାଜି ଭାଷାରେ ଲେଖା । ଆମେରିକା ଚଳଣିର ଛାପ ଏଠାରେ ଅନେକ କଥାରେ ସୁସ୍ପଷ୍ଟ । ସମସ୍ତ ଆଫଗାନିସ୍ଥାନରେ ରେଳଲାଇନ ନାହିଁ; କେବଳ ମଟର ରାସ୍ତା କାବୁଲରୁ କାନ୍ଦାହାର ଏବଂ ଆଉ କେତୋଟି ମରୁଦ୍ୱୀପ ଭଳି ସହରକୁ ପଡ଼ିଛି । ସହର ଭିତରେ ଗୋଟିଏ ବସ୍ ସର୍ଭିସ ଅଛି । ପନ୍ଦର ଖଣ୍ଡ ଯାଏ ଟ୍ୟାକ୍‌ସି ରହିଛି । ଆଉ ପ୍ରାୟ ଗ୍ଭଳିଶ ପଗ୍ଭଶ ଖଣ୍ଡ ଏକଘୋଡ଼ିଆ ଗାଡ଼ି – ଦିଲ୍ଲୀ ସହରର ଟାଙ୍ଗାଭଳି । ଏହି ଟାଙ୍ଗା ହିଁ ମଧ୍ୟବିତ୍ତ କାବୁଲିର ଯିବା ଆସିବାର ପ୍ରଧାନ ଯାନ । ସହରର ଲୋକସଂଖ୍ୟା ଏକ ଲକ୍ଷରୁ ବେଶି ନୁହେଁ । ଅନେକ କାଳ ହେଲା ଜନ

ସୁମାରି ହୋଇ ନାହିଁ; ତେଣୁ ଠିକ୍‌ଭାବରେ ଜାଣିବାର ଉପାୟ ନାହିଁ ଆଫଗାନିସ୍ଥାନର ଲୋକସଂଖ୍ୟା ପ୍ରକୃତରେ କେତେ ହେବ ।

କାବୁଲ ହୋଟେଲ ନିକଟରେ ଘରଗୁଡ଼ିକ କୋଠାଘର । କୋଠା ଛାତ ସମତଳ ନୁହେଁ । ବରଫ ଗଡ଼ିଯିବାପାଇଁ ଉପରଟା ନୁଆଣିଆ ଏବଂ ଅଧିକାଂଶ ଦୁଇମହଲା ବା ତିନିମହଲା କୋଠା ଉପରେ ମଧ ଟିଣ ବା କରୋଗେଟେଡ଼ ସିଟ୍‌ର ଆଚ୍ଛାଦନ । ହୋଟେଲ ନିକଟରେ ଗୋଟିଏ ସିନେମା ଘର ଦେଖିବାକୁ ପାଇଲୁଁ । ଏଥିରେ ଅଧିକାଂଶ ଭାରତୀୟ ଆଉ ପାକିସ୍ଥାନର ହିନ୍ଦି ବା ଉର୍ଦ୍ଦୁ ଚଳଚିତ୍ର ପ୍ରଦର୍ଶିତ ହୁଏ । କାବୁଲରେ କୌଣସି ଚଳଚିତ୍ର ଶିଳ୍ପ ନାହିଁ । ଏପର୍ଯ୍ୟନ୍ତ ଆଫଗାନିସ୍ଥାନର ନିଜସ୍ୱ ଗୋଟିଏ ଫିଲ୍ମ ବାହାରି ନାହିଁ । ପାକିସ୍ଥାନ ସହିତ ଝଗଡ଼ା ହେବାଦିନୁ ପାକିସ୍ଥାନର ଚଳଚିତ୍ର ଆସିବା ବନ୍ଦ ଅଛି । ଆମେ କାବୁଲରେ ଥିଲାବେଳେ ପାକିସ୍ଥାନ ସହିତ ଆଫଗାନିସ୍ଥାନର ଝଗଡ଼ା ଚରମକୁ ଉଠିଥିଲା । ଏବେ ଖବର କାଗଜରୁ ପଢୁଥାଇଁ ଯେ ଉଭୟଙ୍କ ଭିତରେ ଗୋଟିଏ ମିଳାମିଶା ରାଜିନାମା ହୋଇଯାଇଛି । ପେଶାବାରରେ ଆଫଗାନିସ୍ଥାନର ପତାକା ଆଫଗାନ ଦୂତାବାସ ଉପରେ ଡକ୍ଟର ଖାଁ ସାହେବ ଉଡ଼ାଉଛନ୍ତି ଏବଂ କାବୁଲରେ ପାକିସ୍ଥାନ ଦୂତାବାସ ଉପରେ ପୁଣି ପାକିସ୍ଥାନ ପତାକା ଉଡ଼ିଛି ।

ବାଟରେ ଆଫଗାନିସ୍ଥାନର ଅମିରଙ୍କ ଉଆସ ପଡ଼ିଲା । ଗୋଟିଏ ବିସ୍ତୃତ ହତା ଭିତରେ ଉଆସଟି । ଆୟତାକାର ହତାରେ ବଡ଼ ବଡ଼ ଗଛ ବା ଦୁଇ ପାଖରେ ତରୁଶ୍ରେଣୀ ନାହାନ୍ତି । ଜଳସେଚନ କରି ଗୁଡ଼ିଏ ଫୁଲଗଛ ଲଗାଯାଇଛି । ହତାଟି ଏତେ ବଡ଼ ଯେ ତାହା ଭିତରେ ରାଜାଙ୍କର ଉଆସ ଗୋଟିଏ ବଗିଚ୍ଚଘର ଭଳି ଦିଶୁଥାଏ । ଏକମହଲା ଘର । ଗୋଟିଏ ବିରାଟ ଲମ୍ବା ସାହାଳା । ଗୋଟାଏ ବଡ଼ ପୋଲିସ ଷ୍ଟେସନ ଭଳିଆ ଦେଖାଯାଏ । କାବୁଲର ସମ୍ଭ୍ରାନ୍ତ ଘର ଭଳି ତାହା ଉପରେ ଟିଣଛାତ ରହିଛି । କୋଠାର ପଛପଟେ ହୁଏତ ଦୁଇମହଲା ଘର ଥିବ; କିନ୍ତୁ ଦୂରକୁ ତାହା ଦୁଇ ମହଲା ପରି ଦିଶେ ନାହିଁ । ଏତେ ଅଳ୍ପ ଉଚ୍ଚା ।

ବିମାନବନ୍ଦରଠାରୁ ଦିନ ଦଶଟାବେଳେ ରାଜାଙ୍କର ଉଆସ ପର୍ଯ୍ୟନ୍ତ ଗଲାବେଳେ ରାସ୍ତାରେ ସେପରି ଜନମାନବର ଗହଳି ଦେଖିବାକୁ ପାଇଲୁଁ ନାହିଁ । କେବଳ ଶସ୍ୟକ୍ଷେତ୍ର ଭିତରେ କାମ କରୁଥିବା କେତେକ ଚ୍ଚଷୀଙ୍କୁ ଦେଖିଥିଲୁ । ଗୋଡ଼ର ପାଇଜାମାକୁ ଉପରକୁ ଖୋସି ଦେଇ, ଦେହରେ ଖଣ୍ଡେ ଖଣ୍ଡେ ଫତେଇ ଗଳେଇ ଏମାନେ କାମ କରନ୍ତି । ଆମର ଗାଡ଼ିଗୁଡ଼ିକ ଦେଖି ସେମାନଙ୍କ ଭିତରୁ କେତେକ ନିର୍ବିକାରଭାବରେ ରାସ୍ତାକଡ଼ରେ

ଛିଡ଼ା ହୋଇ ରହିଁଲେ । ଭାରତୀୟ ବା ପାକିସ୍ଥାନୀ ଲୋକ ଏ ଅଞ୍ଚଳରେ ଅପରିଚିତ ନୁହନ୍ତି ।

ରାଜାଙ୍କର ଉଆସ ପାରହେଲାପରେ କାବୁଲର ରାସ୍ତା ଟିକିଏ ଜନଗହଳି ପରି ଜଣାପଡ଼ିଲା । ବିଶେଷତଃ କାବୁଲ ହୋଟେଲଠାରୁ ଆଗକୁ ବଜାର ଥିବାରୁ ସେଠାରେ ଲୋକଗହଳି ସବୁଠୁଁ ବେଶି । ସାଧାରଣ କାବୁଲି ଗାଁଗହଳର ଚାଷୀଙ୍କର ପହରଣ ଗୋଟାଏ ଗୋଟାଏ ସଲୱାର–ମୋଟା କାବୁଲି ଜୋତା–ସାଧାରଣତଃ ଟ୍ୟାନ ନ ହୋଇଥିବା ଚମଡ଼ାରେ ତିଆରି– ଆଉ ଦେହରେ ଗୋଟାଏ ଗୋଟାଏ ଜାକେଟ୍ । ଜ୍ୟାକେଟ୍ ହାତ କଟା । ଜ୍ୟାକେଟର କନା ଆଉ ଜରୀ ଇତ୍ୟାଦି ଅଳଙ୍କାର ଅନୁସାରେ ଲୋକର ସଂଗତି ଚିହ୍ନାଯାଏ । ମଧ୍ୟବିତ୍ତ କାବୁଲି ଦେହରେ ବିଲାତି ଡ୍ରେସ୍ ପିନ୍ଧନ୍ତି, ଗୋଡ଼ରେ ଥାଏ ବିଲାତି ଅକ୍ସଫୋର୍ଡ଼ ଜୋତା ଅଥବା ଆମେରିକାନ୍ ବୁଟ୍‌ଜୋତା । କେବଳ ମୁଣ୍ଡରେ ଗୋଟିଏ ଗୋଟିଏ ପାଗ । ବିଶେଷତଃ ପଞ୍ଜାବି ମୁସଲମାନ ବା ସୀମାନ୍ତ ପ୍ରଦେଶର ପଠାଣଙ୍କ ପରି ସେ ପାଗ । ଏହି ପାଗଟି ହେଉଛି ସେମାନଙ୍କର ଜାତୀୟ ବିଶେଷତ୍ୱ । ବିମାନ ବନ୍ଦରରେ ଯେଉଁ ଟୋପିପିନ୍ଧା ଲୋକଙ୍କୁ ଦେଖିଥିଲି, ସେମାନେ ହେଉଛନ୍ତି କାବୁଲି ରାଜକର୍ମଚାରୀ । ରାଜକର୍ମଚାରୀମାନେ ମୁଣ୍ଡରେ ଟୋପି ପିନ୍ଧନ୍ତି, ଆଉ ପୁଲିସ କନଷ୍ଟେବଲ ଓ ଚପରାଶି ପ୍ରଭୃତି ପଗଡ଼ି ପିନ୍ଧନ୍ତି ।

ରାସ୍ତାରେ କଳା ବୁରଖା ପିନ୍ଧି ଚାଲିଥିବା କଦବା କ୍ୱଚିତ୍ ଜଣେ ଜଣେ ସ୍ତ୍ରୀଲୋକ ଦେଖିବାକୁ ମିଳନ୍ତି । ଏମାନଙ୍କର ସର୍ବାଙ୍ଗ ଏହି କଳା ପରଦାରେ ଏପରି ଆଚ୍ଛନ୍ନ ଯେ ଏମାନଙ୍କର ବୟସ ଜାଣିବାର ବା ମୁଖର ସୌଷ୍ଠବ ଦେଖିବାର ଉପାୟ ନାହିଁ । ଶୁଣିଲି, ଆଫଗାନିସ୍ଥାନରେ ଗୋଟାଏ ମୁଲ୍ଲା ଆଇନ ଏପର୍ଯ୍ୟନ୍ତ ବଳବତ୍ତର ଅଛି । ଏହି ଆଇନ ଅନୁସାରେ କୌଣସି ସ୍ତ୍ରୀଲୋକ ବିନା ବୁରଖାରେ ବାହାରକୁ ବାହାରି ପାରିବ ନାହିଁ । ବାହାରିଲେ ତାଙ୍କୁ ଆଫଗାନ୍ ମୁଦ୍ରାରେ ପାଞ୍ଚ ଶତ ଟଙ୍କା ପର୍ଯ୍ୟନ୍ତ ଜୋରିମାନା ଦେବାକୁ ହେବ । ଏହି ମୁଲ୍ଲା ଆଇନକୁ ଅସ୍ୱୀକାର କରି ଆଫଗାନିସ୍ଥାନରେ ନୂତନ ସଂସ୍କାର ପ୍ରବର୍ତ୍ତନ କରିବାକୁ ଆଫଗାନିସ୍ଥାନର ଜଣେ ପୂର୍ବତନ ଅମିର ଆମାନୁଲ୍ଲା ଚେଷ୍ଟା କରିଥିଲେ । ଏହାଫଳରେ ତାଙ୍କୁ ରକ୍ଷଣଶୀଳ ମୁଲ୍ଲାଙ୍କର କଠୋର ପ୍ରତିରୋଧ ସହିବାକୁ ପଡ଼ିଥିଲା । ଅମାନୁଲ୍ଲାଙ୍କର ପ୍ରଗତିଶୀଳ ଏବଂ ସଂସ୍କାରମୂଳକ ଚିନ୍ତାଧାରା ଦେଖି ବିଲାତି ସାମ୍ରାଜ୍ୟବାଦୀମାନେ ମଧ୍ୟ ଭାରତବର୍ଷରେ ଚମକି ପଡ଼ିଥିଲେ । ତେଣୁ ବାଧ୍ୟହୋଇ ଅମାନୁଲ୍ଲା ଆଫଗାନିସ୍ଥାନର ଗାଦି ଛାଡ଼ିଲେ । ଇଟାଲୀର କୌଣସି ନିଭୃତ ଭିଲାରେ

ସେ ଆପଣାର ଶେଷ ଜୀବନ କଟାଉଛନ୍ତି । ସେ ବଞ୍ଚିଛନ୍ତି କି ମଲେଣି, ତା'ର ଖବର ଆଉ କେହି ରଖୁନାହିଁ ।

ଅମାନୁଲ୍ଲା ଯାଇଛନ୍ତି; କିନ୍ତୁ ଆଫଗାନ୍ ରମଣୀ ଏପର୍ଯ୍ୟନ୍ତ ଏପ୍ରକାର ବର୍ବରତା ବିରୁଦ୍ଧରେ ନୀରବ ସଂଗ୍ରାମ ଚଳାଇ ଆସିଛି ଏବଂ ସେହି ସଂଗ୍ରାମ ଯଦିଓ ରାଜନୈତିକ ଚେତନା ଅଭାବରେ ଉଚ୍ଚସ୍ତରକୁ ଯାଇପାରି ନାହିଁ, ତଥାପି ଏହା ଅନ୍ତଃସଳିଳା ଫଲ୍‌ଗୁ ଧାରାଭଳି ଭିତରେ ସନ୍ତତ ଜାଗ୍ରତ । ଏହାର ପ୍ରତିକ୍ରିୟା ମଧ୍ୟ ଅନ୍ୟ ଆକାରରେ ଦେଖା ଦେଇଛି । କାବୁଲରେ ଥିବା ଭାରତୀୟଙ୍କ ଭିତରେ ଜଣେ ବଙ୍ଗାଳି ଭଦ୍ରଲୋକ ଗୋଟିଏ ଉଡ଼ାଜାହାଜ କମ୍ପାନିରେ କାମ କରନ୍ତି । ତାଙ୍କଠାରୁ ଶୁଣିଲୁଁ, ଆଫଗାନ ରମଣୀ ଟିକିଏ ସୁଯୋଗ ପାଇଲେ ଆପଣାର ଦାସତ୍ୱର ବନ୍ଦୀଶାଳା ସେହି ପରଦାକୁ ଫୋପାଡ଼ିଦିଏ । ଉଡ଼ାଜାହାଜରେ ଚଢ଼ିଲାପରେ ଓଭରକୋଟ ରଖିଲାପରି ବୁରଖାକୁ ଅଲଗୁଣିରେ ଟାଙ୍ଗିଦିଏ କିମ୍ବା ସିନେମାଘରେ ଦୁଆରମୁହଁର ପୋଟର ହାତରେ ଅଥବା ଆପଣା ସିଟ୍ ପାଖରେ ଥୋଇଦିଏ । ବେଳେବେଳେ ମଧ୍ୟ ଅବଜ୍ଞାଭରେ ମୁଲ୍ଲାମାନଙ୍କ ସାମନାରେ ଆଫଗାନ ଯୁବତୀ ଆପଣାର ଶୁଭ୍ର ମୁଖମଣ୍ଡଳ ଏବଂ ସୁଗୋଲ କଣ୍ଠକୁ ମୁକୁଳା କରି ଯାଉ ଏବଂ କୋର୍ଟଘରେ ବି ଜୋରିମାନା ଦଣ୍ଡ ଦେଲାବେଳେ ବୁରଖା ପିନ୍ଧେ ନାହିଁ । ଆହୁରି ପ୍ରତିକ୍ରିୟାସ୍ୱରୂପ କେତେକ ଆଫଗାନ୍‌ରମଣୀ ସ୍ଲାକ ପିନ୍ଧନ୍ତି, ୟୁରୋପୀୟ ରମଣୀଙ୍କ ପରି ଗାଉନ୍, ପେଟି କୋଟ ପିନ୍ଧନ୍ତି ଏବଂ ହାଇହିଲ୍ ଜୋତା ମାଡ଼ନ୍ତି । ଲିପ୍‌ଷ୍ଟିକ୍, ରୁଜ୍ ବା ପାଉଡ଼ର କେଉଁଟା ବାଦ୍ ଯାଏ ନାହିଁ ।

## ପାଞ୍ଚ

ଆଗରୁ ମୁଁ କେବେ ବିଦେଶ ଯାଇନଥିଲି । ବିଦେଶକୁ ଗଲାମାତ୍ରେ ବିମାନ ବନ୍ଦରମାନଙ୍କରେ କଷ୍ଟମ୍‌ର କଟକଣା ଭୋଗିବାକୁ ପଡ଼େ, ଏକଥା ମୋର ଗୋଚରରେ ଥିଲେ ବି ଅଭିଜ୍ଞତାରେ ନଥିଲା । ଦିଲ୍ଲୀ ବିମାନ ବନ୍ଦରରେ ଟଙ୍କା ପଇସା ବିଷୟରେ କଟକଣା କଥା କହିଛି – କିପରି ସେମାନେ ଆମକୁ କାବୁଲ ଯିବାର ଶୁଣି ଟ ୫୦୧ ଭାରତୀୟ ମୁଦ୍ରାରୁ ବେଶି ଛାଡ଼ିବାକୁ ବାରଣ କରୁଥିଲେ । କିନ୍ତୁ କାବୁଲରେ ଆସି ଦେଖିଲି, ସେଠା ବିମାନ ବନ୍ଦରରେ କଷ୍ଟମ୍ କଟକଣା ସେପରି କିଛି ନାହିଁ । ପରେ ଜାଣିପାରିଲି, ସେମାନେ ଆମପ୍ରତି ସମ୍ମାନ ସ୍ୱରୂପ ବିଶେଷ କିଛି ଦେଖିବାକୁ ଯାହୁଁ ନଥିଲେ । କାରଣ ସେମାନେ ଜାଣିଥିଲେ, ଆମେ ଶାନ୍ତି ଡେଲିଗେସନ ଦଳ କୌଣସି ବ୍ୟବସାୟ ଉଦ୍ଦେଶ୍ୟରେ ସେଠାକୁ ଆସିନାହୁଁ । ତେଣୁ କଷ୍ଟମ୍‌କୁ ସୋଭିଏଟ ଦେଶରେ,

ଫିନ୍‌ଲାଣ୍ଡରେ ବା ଚେକୋସ୍ଲୋଭିଆରେ କଷ୍ଟମ୍‌ର ଚିରାଚରିତ କଠୋର କଟକଣା ଆମ୍ଭମାନଙ୍କ ପାଇଁ ମୋଟେ ଲାଗୁ ହୋଇନାହିଁ । ଏପରିକି ଭାରତକୁ ଆସିଲାପରେ ଦିଲ୍ଲୀଠାରେ ମଧ ଯେତିକି ସମୟରେ କଷ୍ଟମ୍ ଆମର ଜିନିଷପତ୍ର ପରୀକ୍ଷା କଲେ, ତାହା ନଗଣ୍ୟ । କେବଳ ଆମ୍ଭମାନଙ୍କୁ ଆମ୍ଭ ସାଥିରେ ଥିବା ଜିନିସପତ୍ର ତାଲିକା ମାଗି, ତାହାକୁ ଚାହିଁ ଦେଇ ଅଥବା ଗୋଟାଏ ଯୋଡ଼ାଏ ଦେଖି ଦେଇ ସେମାନେ ଆମକୁ ବିମାନ ବନ୍ଦରରୁ ବାହାରକୁ ଛାଡ଼ି ଦେଇଥିଲେ ।

କିନ୍ତୁ କାବୁଲରେ ମୋର ଗୋଟିଏ ଭୁଲ ହୋଇଥିଲା । କଷ୍ଟମ୍ ଆପଣା ଜିନିଷ ଚେକ୍ କଲାବେଳେ ଜିନିଷର ମାଲିକ ସେଠାରେ ଛିଡ଼ା ହୋଇଥିବାର ବିଧି । ସେମାନେ ତୁମକୁ ପଚାରିଦେବେ, ଅନ୍ତତଃ ଏ ଜିନିଷ ତୁମର କି ନୁହେଁ । ଯେପରି ତୁମର ଜିନିଷ ବୋଲି ଭୁଲରେ ଅନ୍ୟ ଜିନିଷ କଷ୍ଟମ୍ ଛାଡ଼ି ବାହାରି ନଯାଏ । ତା'ପରେ କାବୁଲଠାରେ ବି ଜିନିଷକୁ ଦେଖିସାରି ସେମାନେ ସେଥିରେ ଗୋଟାଏ ଚକ୍‌ଖଡ଼ି ଚିହ୍ନ ଦେଇଦିଅନ୍ତି । ସେହି ଚିହ୍ନ ଦେଖିଲେ ପୋର୍ଟର୍ ତୁମର ଜିନିଷ ବାହାରକୁ ନେଇ ତୁମର ଗାଡ଼ି ବା ଟ୍ରକ ବା ଅନ୍ୟ କୌଣସି ସ୍ଥାନରେ ରଖିଦିଏ । କାବୁଲକୁ ଆସିଲାପରେ ମୁଁ ମୋର ପାସ୍‌ପୋର୍ଟ ଚେକ୍ କରାଇଆଣିଲି; କିନ୍ତୁ କଷ୍ଟମରେ ମୋର ଜିନିଷ ତନଖିବେଳେ ରହିଲି ନାହିଁ; ତେଣୁ ମୋର ଜିନିଷ କାଉଣ୍ଟର ପାଖରେ ସେଇପରି ପଡ଼ିରହିଲା ।

କାବୁଲ ହୋଟେଲକୁ ଆସି ମୁଁ ଦେଖିଲି ଅନ୍ୟମାନଙ୍କ ଜିନିଷ ସାଙ୍ଗରେ ମୋର ଜିନିଷ ଆସି ନାହିଁ । ସେଠୁ ମୋର ଭୁଲ ମୁଁ ବୁଝିପାରିଲି । ସେତେବେଳକୁ ଦିନ ଗୋଟାଏ ବେଳ । କାବୁଲ ଏରୋଡ୍ରୋମ୍‌ରୁ ଆମର ହୋଟେଲ ପ୍ରାୟ ଛଅ ସାତ ମାଇଲ ବାଟ । ଟ୍ୟାକ୍‌ସିରେ ଯିବା ଆସିବାକୁ ଛଅ ଟଙ୍କାରୁ କମ୍ ଲାଗିବ ନାହିଁ । କିନ୍ତୁ ସେହି ଜିନିଷପତ୍ର ଭିତରେ ମୋର ସମସ୍ତ ରାତି ପିନ୍ଧା ଆଉ ବ୍ୟବହାର ଜିନିଷ ରହିଲା । କେବଳ ହାତବ୍ୟାଗଟି ମୁଁ ଧରି ଆସିଛି । ବିମାନ ବନ୍ଦରକୁ ଫୋନ କରି ବୁଝିଲି, ସେଠାରେ ମୋର ସୁଟକେଶଟି ଅଛି । କିନ୍ତୁ ସେଠାରୁ ଆଣିବାର କୌଣସି ସୁବିଧା ନ କଲେ ଆସିବାର ଉପାୟ ନାହିଁ । ସମସ୍ତେ ପରାମର୍ଶ ଦେଲେ– କାଲି ସକାଳୁ ତ ସେଇ ବାଟରେ ସୋଭିଏଟ ଯିବାକୁ ହେବ । ତେବେ ଗୋଟାଏ ରାତି ପାଇଁ ମୁଁ ୬।୭ ଟଙ୍କାର ଟ୍ୟାକ୍‌ସି ଖର୍ଚ୍ଚ କରିବି କାହିଁକି ?

କାବୁଲ ହୋଟେଲ ହେଉଛି କାବୁଲର ଏକମାତ୍ର ସମ୍ଭ୍ରାନ୍ତ ହୋଟେଲ । ଆଫଗାନ ସରକାରଙ୍କର ଖାସ ତତ୍ତ୍ୱାବଧାନରେ ଚଳେ । ଶୁଣିଲି, ଏଇଟା କିନ୍ତୁ ଷ୍ଟେଟ୍‌ର ସମ୍ପତ୍ତି

ନୁହେଁ, ରାଜାଙ୍କ ସମ୍ପତ୍ତି । ଠିକ୍ ଆମର ଗଡ଼ଜାତ ରାଜାମାନେ ପୂର୍ବେ ଯେପରି ଗୁଡ଼ାଏ ଘରୋଇ ପ୍ରତିଷ୍ଠାନ କରିଥିଲେ, ସେହିପରି କାବୁଲର ଅମୀରମାନଙ୍କର କେତେଗୁଡ଼ିଏ ଘରୋଇ ପ୍ରତିଷ୍ଠାନ ଅଛି। ଗୋଟାଏ ଚମଡ଼ା ଟ୍ୟାନିଙ୍ଗ୍ କାରଖାନା ବି ଏଭଳି ଘରୋଇ ପ୍ରତିଷ୍ଠାନ । କାବୁଲ ହୋଟେଲର ଦୁଇମହଲାରେ ଜଣିକିଆ, ଦୁଇଜଣିଆ ଏବଂ ତିନିଜଣିଆ ବଖରାମାନ ଥାଏ । କେତେ ଜଣ ଆମେରିକାର ପର୍ଯ୍ୟଟକ ମଧ ସେଠାରେ ରହୁଥାନ୍ତି । ସମସ୍ତ କାବୁଲରେ ଆମେରିକାର ଗନ୍ଧଟା ବେଶି ନାକରେ ବାଜେ । ବିଲାତି ସିଗାରେଟ ମିଳେ; କିନ୍ତୁ ଆମେରିକାର 'ଲକିଷ୍ଟାର', 'ବୋଷ୍ଟନ' ଇତ୍ୟାଦି ସିଗାରେଟ୍ ମଧ ବହୁତ ମିଳେ । ଆମେରିକାର ଗୋଟିଏ ସାମରିକ ଯୋଗସୂତ୍ରକାରୀ ମଧ ଏଠାରେ ରହିଛନ୍ତି । ବିମାନଘାଟିରେ ଗୋଟିଏ ବେଶ୍ ବିଶାଳକାୟ ଆମେରିକା ଆକାଶବାହିନୀର ଉଡ଼ାଜାହାଜ ଦେଖିଥିଲୁଁ । ଉଚ୍ଚଶିକ୍ଷାର ବିଦ୍ୟାଳୟ ଯାହା ଅଛି, ତାହା ପୂର୍ବେ ଥିଲା ଫରାସି –ଫରାସୀ ସ୍କୁଲ, ଏବେ ହୋଇଛି ଇଂରେଜି-ଆମେରିକାନ୍ ସ୍କୁଲ । ଏହି ଦୁଇପ୍ରକାର ସ୍କୁଲରେ ପାଠ ପଢ଼ିବା ପୂର୍ବରୁ ଫରାସୀ ବା ଆମେରିକା (ଇଂରେଜି) ଭାଷା ଶିଖିବାକୁ ପଡ଼େ । ଏଥିରୁ ଗୋଟିଏ ଭାଷା ନ ଶିଖିଲେ ଆଫ୍‌ଗାନ ଛାତ୍ରର ଉଚ୍ଚଶିକ୍ଷାର ଦ୍ୱାର ରୁଦ୍ଧ ରହେ ।

କାବୁଲ ହୋଟେଲରେ ମଧ ଦେଖିଲୁଁ ଯେ ସେଠାରେ କାବୁଲ ବା ଆଫ୍‌ଗାନିସ୍ଥାନର ଗନ୍ଧ ନାହିଁ । କେବଳ ଆଫଗାନ୍ ମାଟି ଉପରେ ହୋଟେଲଟା ହୋଇଛି । ଏହିମାତ୍ର ତାକୁ କାବୁଲ ହୋଟେଲ ବୋଲି କୁହାଯିବାର ସାର୍ଥକତା । ନତୁବା ତାହାର ଘରଦ୍ୱାର, ଖାଇବା-ପିଇବା, ଆଗ୍ରର ଏବଂ କାଇଦା ସବୁ ୟୁରୋପୀୟ । ମ୍ୟାନେଜର ଇଂରାଜୀ ଭଲ ଜାଣନ୍ତି ନାହିଁ; କିନ୍ତୁ ପ୍ରାଞ୍ଜଳଭାବରେ ଫରାସି ଭାଷା କହନ୍ତି । ହୋଟେଲର ବଏମାନେ ଫରାସି କାଇଦାରେ କୁର୍ଣ୍ଣୀସ କରନ୍ତି । ଘରର ଖଟ, ଗଦି, ମ୍ୟାଟ୍ରେସ୍ ଦେଖିଲୁଁ ବିଦେଶୀ । ସୋଫାଗୁଡ଼ିକ ସୁଇଡ଼େନରେ ତିଆରି । ଲୁହାର ଖଟ ଆସିଛି ବାରମିଙ୍ଗହାମ୍‌ରୁ, କାନ୍ଥର ଦର୍ପଣ ଆସିଛି ବେଲ୍‌ଜିଅମ୍‌ରୁ । ଗାଧୁଆ ଘରର କୁଣ୍ଡ ଏବଂ ଅନ୍ୟାନ୍ୟ ଫିଟିଂ ସବୁ ଆମେରିକାର । ଦୁଆର ଶିକୁଳି ପେଚଠାରୁ କାନ୍ଥର କାମିଜ ରଖିବା ର୍‍ୟାକ୍ ପର୍ଯ୍ୟନ୍ତ ସବୁ ବିଦେଶ-ତିଆରି ।

ଖାଇବାଟେବୁଲ ଉପରେ ଆଫଗାନିସ୍ଥାନର ରୁଟି ଓ (ବୋଧ ହୁଏ) ଆଫଗାନିସ୍ଥାନର ଭାତ ଛଡ଼ା ଆଉ କିଛି ଦେଶୀ ଜିନିସ ଦେଖିଲୁଁ ନାହିଁ । ଆମ୍ଭେମାନେ ମନେ କରିଥିଲୁଁ, ରନ୍ଧାବଢ଼ା ମୁସଲମାନ କାଇଦାରେ ହୋଇଥିବ । କିନ୍ତୁ ପୂରା ବିଲାତି

ଢଙ୍ଗରେ। ଖଣ୍ଡେ ଖଣ୍ଡେ ପାଉଁରୁଟିର ସାଇଡଡିସ୍, ଅଣ୍ଡାର ଗୋଟାଏ ଆମ୍‌ଲେଟ୍, ସେଇ ସୁପ୍ ଆଉ ଗୋଟାଏ କୋର୍ସରେ ବିଲାତିଆଳୁ; ଆଉ କ'ଣ ମାଂସ, ତାହା ସାଙ୍ଗରେ ଫଳ ହେଉିକା କ'ଣ ଥିଲା ବା ପୁଡ଼ିଙ୍ଗ୍ ବା ଅନ୍ୟ କିଛି ମିଠା ଥିଲା ବୋଧହୁଏ, ଆଉ ବେଶି ମନେ ରଖିନାହିଁ । ସେତିକିବେଳେ ଆମ ଭିତରୁ ଅଧିକାଂଶ ଆଫ୍‌ଗାନ୍‌ଙ୍କର ଜାତୀୟ ଖାଦ୍ୟ ତିଆରି କରିବାକୁ ଏବଂ ରାତି ଦିନରକୁ ତାହା ଯୋଗାଇବାକୁ କହିଥିଲେ । ହୋଟେଲର ମେନେଜର କହିଲେ, ତାହା ଯୋଗାଇଲେ ବେଶି ଖର୍ଚ୍ଚ ପଡ଼ିବ । ଆମେ ଖର୍ଚ୍ଚକୁ ନ ଡରି ତାହା ତିଆରି କରିବାକୁ ଅର୍ଡ଼ର ଦେଇ ଆସିଲୁ । କାରଣ ଆଫଗାନ୍‌ମାନଙ୍କର ନିଜସ୍ୱ ଖାଦ୍ୟପଦାର୍ଥ ଏବଂ ଜୀବନକୁ ଜାଣିବାକୁ ଆମର ଇଚ୍ଛା ଥିଲା ।

ଆଫଗାନିସ୍ଥାନ ଡେଇଁ ଯେତେବେଳେ ସୋଭିଏଟ୍ ଦେଶରେ ପ୍ରବେଶ କଲୁଁ, ସେତେବେଳେ ଦେଖିଲୁଁ ସେଠାରେ କୌଣସି ଜିନିଷ ନାହିଁ ଯେଉଁଥିରେ କି ସୋଭିଏଟ ଦେଶର ଛାପ ଗର୍ବ ଭରେ ମରିନାହିଁ; ଅଥଚ ଓଲଟା ଦିଗରେ ଆଫଗାନିସ୍ଥାନରେ ଗୋଟାଏ ଜିନିଷ ଦେଖିବାକୁ ପାଇଲୁ ନାହିଁ, ଯାହା ଆଫଗାନର ନିଜସ୍ୱ ଜିନିଷ ବୋଲି କୁହାଯାଇ ପାରିବ । ବିଲାତୀମାନେ ପ୍ରଥମେ ଆସିବାପରେ ଯେପରି ଭାରତର ତୁଳା ପାହାଡ଼ ପାହାଡ଼ ବୋହି ନେଇ ତା' ବଦଳରେ କେତେ ଖଣ୍ଡ ମାଞ୍ଚେଷ୍ଟରୀ ଲୁଗା ଏଠାକୁ ପଠାଇ ଦେଉଥିଲେ, ଠିକ୍ ସେହିପରି ଆଫଗାନିସ୍ଥାନର କଞ୍ଚାମାଲ ତୁଳା, ଚମଡ଼ା, ପଶମ ଇତ୍ୟାଦି ଯାଇ ବିଦେଶୀମାନଙ୍କ ଦେଶରୁ ଲୁଗାପଟା ଇତ୍ୟାଦି ଏହି ଦେଶକୁ ଆସିବାରେ ଲାଗିଛି । କେବଳ ଅଙ୍ଗୁର କୋଳି ଆଉ କାର୍ପେଟ୍ (ଗାଲିଚ୍ଚା) ଏଇ ଦୁଇଟା ଆଫଗାନିସ୍ଥାନର ନିଜସ୍ୱ ଦାନ ।

ପ୍ରକୃତରେ ଆଫଗାନିସ୍ଥାନର ରାସ୍ତାଘାଟ, ଚ୍ଚଲିଚଳଣ, ନାରୀ, ପୁରୁଷ ଏବଂ ତା'ର ବିପଣୀ ବଜାର ଦେଖିଲେ ନିଶ୍ଚୟ ମନେହେବ ଯେ ଏହି ଶୁଷ୍କ ମରୁମୟ ରାଜ୍ୟ "ଏସିଆର ନିଦ୍ରିତା ରାଜକନ୍ୟା ।"

## ଛଅ

ଯେଉଁ ଆଫଗାନ୍ ଯୁବକ ଏହି ହତଭାଗିନୀ ଦେଶର ଭାଗ୍ୟ ସହିତ ମୋତେ ପରିଚୟ କରାଇଥିଲେ, ତାଙ୍କର ନାମ ୱାଲି ମହମ୍ମଦ । ଖାଇସାରି ବିଶ୍ରାମ ନେଉଛୁଁ, ହୋଟେଲର ଦରଓ୍ୱାନ ଆସି ଦୁଆରେ ଠକ୍ ଠକ୍ କଲା । ଗୋଟିଏ ରୁମ୍‌ରେ ଆମେ ଥାଉଁ ଦୁଇ ଜଣ । "ମିଷ୍ଟର ମିଶ୍ର ଏଠାରେ ଅଛନ୍ତି ?" ମୋର ଆଖିରେ ନିଦ ଲାଗିଆସୁଥିଲା । ଧଡ଼ପଡ଼ ହୋଇ ଉଠିବସିଲି । ଲଙ୍କାରେ ହରି ଶବ୍ଦ ! କାବୁଲରେ

ମୋତେ ଖୋଜୁଛି କିଏ ? ପ୍ରଥମେ ମନେ କଲି କାବୁଲ ବିମାନଘାଟିରୁ ବୋଧ ହୁଏ ମୋର ଛାଡ଼ିଆସିଥିବା ସୁଟ୍‌କେଶ ନେଇ କୌଣସି ଆଫଗାନ୍ ତରୁଣ ଆସଛନ୍ତି; କିନ୍ତୁ ତାହା ବି ନୁହେଁ । ତରୁଣ ହେଉଛନ୍ତି ଓ୍ୱାଲି ମହମ୍ମଦ । ପୁଣି ମନେ କଲି, ସାଲେପୁରବାଟେ ଯେଉଁ ଦୋସ୍ତ ମହମ୍ମଦ କାବୁଲିଙ୍କୁ ଦେଖିଥିଲି ଇଏ ତାଙ୍କର ପୁଅ ନୁହନ୍ତି ତ ? ଦୋସ୍ତ ମହମ୍ମଦ କ'ଣ ତାଙ୍କ ଘରକୁ ଚିଠି ଲେଖିଥିଲେ ! ଲେଖିଥିଲେ ମଧ୍ୟ ମୁଁ ଆଜି ଆସି ପହଞ୍ଚିବି ଏକଥା ତାଙ୍କର ପରିବାରର ଲୋକେ ଜାଣନ୍ତେ ବା କିପରି ?

ଓ୍ୱାଲି ମୋତେ ଖଣ୍ଡି ଖଣ୍ଡି ଇଂରେଜିରେ ପିଲାଙ୍କ ଦରୋଟିଭଳି କଣ୍ଠରେ କହିଲେ, "ମୋତେ ମିଷ୍ଟର ମହାପାତ୍ର ପଠାଇଛନ୍ତି । ସେ ତ ବାହାରି ପାରିବେ ନାହିଁ, ତେଣୁ ଆପଣ ଯଦି କଷ୍ଟ କରି ଟିକିଏ ଆସିପାରନ୍ତେ ।"

ମନେ ପଡ଼ିଲା–ମିଷ୍ଟର ମହାପାତ୍ର–ପି.ସି. ମହାପାତ୍ର କଟକର, ଉତ୍ତର–ଓଡ଼ିଶା ସର୍କଲର ସ୍କୁଲ ଇନ୍‌ସପେକ୍ଟର ଶ୍ରୀରାମ ମହାପାତ୍ରଙ୍କର ପୁଅ, ଏଇଠି ଏରିୟାନା ଉଡ଼ାଜାହାଜ କମ୍ପାନିରେ ବେତାରବିଭାଗରେ ଅପରେଟର । ତାଙ୍କୁ କେବେ ଦେଖିଛି ବୋଲି ମନେ ନାହିଁ । କେବଳ କଟକରୁ ଆସିଲାବେଳେ ଶୁଣିଥିଲି, କାବୁଲରେ ଜଣେ ଓଡ଼ିଆ ଅଛନ୍ତି । ତାଙ୍କର ଠିକଣା ମଧ୍ୟ ମନେ ନଥିଲା । କୌଣସି ପୋଷ୍ଟ ବକ୍‌ସର କେତେ ନମ୍ବର ହେବ ପରା । କାବୁଲ ହୋଟେଲକୁ ଆସିଲାପରେ ଖାଇବାଘରେ ଗୋଟିଏ ବଏକୁ ପଚାରିଲି, "ଭାରତର ମିଷ୍ଟର ମହାପାତ୍ର ଖାଇବାକୁ ଆସନ୍ତି କି ?" ଧର୍ମକୁ ଆଖିଠାର ମାରିଲାଭଳି ପଚାରିଦେଲି; କାରଣ କାବୁଲ ହୋଟେଲ ଯଦି ଏକମାତ୍ର ସମ୍ଭ୍ରାନ୍ତ ହୋଟେଲ, ତେବେ କେବେ ହେଲେ ତ ପୂର୍ଣ୍ଣଚନ୍ଦ୍ର ଏଠାକୁ ଖାଇବାକୁ ଆସୁଥିବେ ? ବଏ କହିପାରିଲା ନାହିଁ । ମୁଁ ନିରସ୍ତ ହୋଇ ଫେରୁଥିଲି । ଏତିକିବେଳେ ଦୂରରେ ଆଉ ଗୋଟିଏ ଟେବୁଲରେ ଦେଖିଲି ତିନି ଜଣ ଭାରତୀୟ ଭୋଜନରେ ବ୍ୟସ୍ତ ଅଛନ୍ତି । ସେମାନେ ଖାଇସାରି ତଳେ ଯେତେବେଳେ ମୋର ସୁଟ୍‌କେଶ ଖୋଜିବାରେ ମୁଁ ବ୍ୟସ୍ତ ଥାଏ, ସେତେବେଳେ ମୋତେ ଭେଟିଲେ । ସେହି ଦିନ ତ ଭାରତ ଛାଡ଼ିଥାଉଁ ସକାଳ ୬ଟାବେଳେ । ତେଣୁ ଭାରତୀୟ ଲୋକ ଦେଖିବାରେ ଆମର ସେପରି କିଛି ଆଗ୍ରହ ନଥାଏ। କିନ୍ତୁ ଯେଉଁ ଭାରତୀୟମାନେ ଅନେକକାଳରୁ ଜନ୍ମଭୂମି ଛାଡ଼ିଲେଣି, ସେମାନେ ଜଣେ ଭାରତୀୟକୁ ଭେଟିଲେ ରଙ୍କପରି ହେଉଥାନ୍ତି । ଆମପାଇଁ କୌଣସି କାମଟିଏ କରିଦେଇ ପାରିଲେ ଗୋଟାଏ ବଡ଼ କାମ କରିପାରିଲେ ବୋଲି ଭାବୁଥାନ୍ତି । ବିଦେଶରେ କିଛିଦିନ ରହିଲା ପରେ ଆପଣାର ଦେଶ ବା ଦେଶବାସୀଙ୍କ ପ୍ରତି କିପରି ଗଭୀର ମମତା ଜାଗେ, ତାହା କିଛି କାଳପରେ ମୁଁ ଜାଣିପାରିଲି । କିନ୍ତୁ ସେତେବେଳେ ତ

ଭାରତ କେବଳ ପାଞ୍ଚ ଛଅ ଘଣ୍ଟା ହେଲା ଛାଡ଼ିଥାଉଁ; ଏଭଳି ମନୋଭାବ ଆସନ୍ତା କେଉଁଠୁ ?

ଭାରତୀୟ ତିନି ଜଣ ମୋ ସାଙ୍ଗରେ ସେକ୍‌ହ୍ୟାଣ୍ଡ କଲେ କି ନମସ୍ତେ ବୋଲି କହିଲେ, ମନେ ନାହିଁ । ଇଂରେଜିରେ ନିଶ୍ଚୟ କହିଥିବେ; କାରଣ ବିଦେଶରେ ଆପଣା ଦେଶର ଭାଷା ବୋଲି ଆମେ କୌଣସି ଭାଷାଟିକୁ ଗ୍ରହଣ କରିପାରି ନାହୁଁ । ଭାରତ ଛାଡ଼ିଲାପରେ ପ୍ରକୃତରେ ମନେ ହେଲା ହିନ୍ଦୀଟା ହେଲେ ଆମେ ସମସ୍ତେ ଜାଣିଥାନ୍ତୁ । ହେଲା ପଛେ ହିନ୍ଦୀ ଅଣଓଡ଼ିଆ ବା ଅଣବଙ୍ଗାଳି, ତଥାପି ହିନ୍ଦୀ ତ ଇଂରାଜୀଠାରୁ ଆହୁରି ଭାରତୀୟ । ତେଣୁ ବିଦେଶରେ ଆମର ନିଜସ୍ୱ ଭାଷାରେ କଥା ନ କହି ଇଂରାଜୀରେ କଥା କହିବାର ହୀନତା ବ୍ୟାଧି ଆମେ କେବେ ଛାଡ଼ିବୁଁ ?

ଭାରତୀୟ ତିନି ଜଣ ମୋତେ କହିଲେ ଯେ ସେମାନେ ମିଷ୍ଟର ମହାପାତ୍ରଙ୍କୁ ଚିହ୍ନନ୍ତି । ସେ ହାଡ଼ଫୁଟିରେ ପଡ଼ିଛନ୍ତି । ଅବଶ୍ୟ ବର୍ତ୍ତମାନ ଭଲ ହୋଇଗଲେଣି । କିନ୍ତୁ କମ୍ପାନିର ନିୟମ ଅନୁସାରେ ପନ୍ଦର ଦିନ ଗଲେ ତାଙ୍କର କ୍ୱାରାଣ୍ଟାଇନ୍ ବା ଅସ୍ପୃଶ୍ୟ ସମୟ ଯିବ । ତେଣୁ ସେ ଆସିପାରିବେ ନାହିଁ । ତଥାପି ଉକ୍ତ ଭାରତୀୟମାନେ ପ୍ରତିଶ୍ରୁତି ଦେଲେ ଯେ ସେମାନେ ମୋର ଆସିବା ଖବର ମହାପାତ୍ରଙ୍କୁ ଜଣାଇଦେବେ । ମୁଁ ସେମାନଙ୍କୁ ତାଙ୍କୁ ଜଣାଇବାକୁ କହିଲି ଯେ ମୁଁ କଟକରୁ ଆସିଛି ଏବଂ ମିଷ୍ଟର ମହାପାତ୍ରଙ୍କର ପରିବାରର ସମସ୍ତ କୁଶଳ ।

ଭାରତୀୟ ତିନି ଜଣ ଯେ କଷ୍ଟସ୍ୱୀକାର କରି ପୂର୍ଣ୍ଣଚନ୍ଦ୍ରଙ୍କୁ ମୋର ଆସିବା ଖବର କହିଥିବେ ଏବଂ ସେ ମୋତେ ଖୋଜିବା ପାଇଁ ଲୋକ ପଠାଇବେ, ଏକଥା ମୁଁ ଏକାବେଳକେ ଭୁଲି ଯାଇଥିଲି । ଓ୍ୱାଲି ମହମ୍ମଦ ମୋତେ କହିଲାପରେ ମୋର ଚେତନା ହେଲା । କାବୁଲକୁ ଭଲ କରି ଦେଖିବାକୁ, ଏଠାର ଜୀବନଯାତ୍ରା କଥା ଜାଣିବାକୁ କ'ଣ କରାଯାଇପାରେ – ଏହାହିଁ ଆମରି ଭାରତୀୟମାନଙ୍କର ଚିନ୍ତାର ବିଷୟ ଥିଲା । ଆଗରୁ ଭାରତୀୟ ଦୂତାବାସରୁ ନିମନ୍ତ୍ରଣ ଥିଲା । ସେଠାରେ ମିଷ୍ଟର ଦୟାଲ ହେଉଛନ୍ତି ଭାରତର ରାଜଦୂତ । ଆମେ ଭାରତୀୟମାନେ ସେହିଠାରେ ହିଁ ଆଫଗାନିସ୍ଥାନକୁ ଚିହ୍ନିବୁଁ ବୋଲି ଧରି ନେଇଥିଲୁଁ । କିନ୍ତୁ ଓ୍ୱାଲି ମହମ୍ମଦଙ୍କୁ ଦେଖିବାପରେ ମୋର ମନରେ ଆଫଗାନିସ୍ଥାନର ପରିଚୟର ଆଶା ଜାଗିଉଠିଲା ।

ଖଣ୍ଡିଏ ଟାଙ୍ଗାଧରି ଓ୍ୱାଲି ଆଉ ମୁଁ ଦୁହେଁ ବାହାରିଲୁ । ଯେଉଁ ବାଟରେ ବିମାନ ବନ୍ଦରରୁ କାବୁଲ ହୋଟେଲକୁ ଆସିଥିଲି, ସେହି ବାଟ । ବାଁ ପାଖରେ ଇତାଲୀୟ

ଦୂତାବାସ ଆଉ ଫରାସୀ ଦୂତାବାସ । ତା'ପରେ ଗୋଟାଏ ପଡ଼ିଆ ଆଉ ଇଟା-ପାଚେରୀଘେରା ବଗିଚ୍ଚ । ଏହି ବଗିଚ୍ଚ ହେଉଛି ଆଫଗାନିସ୍ଥାନ ପ୍ରଧାନମନ୍ତ୍ରୀଙ୍କର । ଓ୍ୱାଲିଙ୍କୁ କହିଲି, କାବୁଲର ଦର୍ଶନୀୟ ଜିନିଷ କେତୋଟି ମୋତେ ଦେଖାଇଦେବାକୁ । ସେ ବଡ଼ ମ୍ଳାନ ହସଟିଏ ହସିଦେଲେ ।

କାବୁଲ ରାସ୍ତାରେ ଭାରତର ଟାଙ୍ଗାଭଳି ଖଣ୍ଡିଏ ଟାଙ୍ଗାରେ ଶୁଭ୍ର ଆକାଶତଳେ ଆମେ ଯାଉଥିଲୁ । ଦିଲ୍ଲୀ ସହରର ଅସହ୍ୟ ଗ୍ରୀଷ୍ମପରେ କାବୁଲର ଶୀତଳତାରେ ଆମର ପ୍ରାଣ ପ୍ରକୃତରେ ଶୀତଳ ହୋଇଉଠିଥିଲା । ସେଥିପାଇଁ କାବୁଲ ଆମ ସମସ୍ତଙ୍କୁ ଭଲ ଲାଗିଥିଲା । କିନ୍ତୁ ସେଇ ସୁସ୍ଥ ଶୀତଳ ଖରାବେଳେ ଓ୍ୱାଲିଙ୍କର ମ୍ଳାନହସ ମୋ ମନରେ ଚମକ ଆଣିଲା । ସେଇଠି ସେ ମୋତେ କହିଲେ, "ଏଠାରେ କ'ଣ ଦେଖିବାର ଅଛି ? ଏଇ ତ ଆଫଗାନିସ୍ଥାନ, ଏସିଆର ହତଭାଗିନୀ କନ୍ୟା ।"

୨୪। ୨୫ ବର୍ଷର ଏହି ନମ୍ର, ସଂଯମ ଏବଂ ମଧୁର ରୂପର ଯୁବକଙ୍କ ଆଖିରେ ମୁଁ ଆଫଗାନିସ୍ଥାନର ଆଗାମୀ ରୂପ ଦେଖିପାରିଲି । ଓ୍ୱାଲି ଆପଣାର କୃତିତ୍ୱ କଥା କିଛି କହିଲେ ନାହିଁ । ପରେ ପୂର୍ଣ୍ଣଚନ୍ଦ୍ରଙ୍କଠାରୁ ଶୁଣିଲି, ଓ୍ୱାଲି ହେଉଛନ୍ତି ଆଫଗାନିସ୍ଥାନର ତିନୋଟି ଇଞ୍ଜିନିଅରଙ୍କ ଭିତରେ ସର୍ବକନିଷ୍ଠ । କାବୁଲର ଫରାସୀ ସ୍କୁଲରେ ପାଠ ପଢ଼ି ସେ ପାସ୍ କରିଥିଲେ । ତା'ପରେ ଫ୍ରାନ୍‌ସରେ ଏବଂ ବିଲାତରେ ଉଡ଼ାଜାହାଜର ଗ୍ରାଉଣ୍ଡ ଇଞ୍ଜିନିଅରିଂରେ ଟ୍ରେନିଂ ପାଇଲେ । ସୋଭିଏଟ୍ ରୁଷିଆରେ ଗୋଟିଏ ବର୍ଷ ଟ୍ରେନିଂ ପାଇ ବର୍ତ୍ତମାନ ଆଫଗାନିସ୍ଥାନ ଫେରି ଏରିୟାନା ଉଡ଼ାଜାହାଜ କମ୍ପାନିରେ ଚାକିରି କରୁଛନ୍ତି ।

ଓ୍ୱାଲି ମୋତେ କହିଲେ, "ଏଇ ତ ଦେଖୁଛନ୍ତି ରାସ୍ତା; ଆଫଗାନିସ୍ଥାନର ରାଜଧାନୀର ପଥ ଇଏ । ଦୁଇ ପାଖରେ ନର୍ଦ୍ଦମାପରି ନାଳ ବହିଯାଉଛି । ଘୁଷୁରିପରି ଆମରି ଦେଶର ଲୋକେ ଏଥିରୁ ପାଣି ପିଉଛନ୍ତି, ବାସନ ମାଜୁଛନ୍ତି, ନମାଜପାଇଁ ଶୌଚ ହେଉଛନ୍ତି । ଶୀତଦିନେ ଏତକ ମଧ ମିଳେ ନାହିଁ ।"

ମୁଁ କହିଲି, "ଆମରି ଭାରତରେ ମଧ ସେପରି ଅନେକ ଜାଗା ଅଛି । ତୁମେ ଦୁଃଖ କର ନାହିଁ । ଏହା କ'ଣ ଚିରକାଳ ରହିବ ?"

ଓ୍ୱାଲି କହିଲେ, "ମୁଁ ଜାଣେ ଏହା ଚିରକାଳ ରହିବ ନାହିଁ । ଭାରତରେ କିନ୍ତୁ ଲକ୍ଷ ଲକ୍ଷ ଲୋକ ଶିକ୍ଷିତ ହୋଇଛନ୍ତି । ଭାରତ ବିଲାତକୁ ହଟାଇ ଦେଇଛି । ଭାରତ ବିରାଟ ଦେଶ । ତାହା ସାଙ୍ଗରେ ଆମର ତୁଳନା କାହିଁ ?"

କାହିଁ ସତେ ତା'ର ତୁଳନା ? ଆଫଗାନିସ୍ଥାନର ଦୁର୍ଦ୍ଦଶା ଦେଖି ସାମ୍ରାଜ୍ୟବାଦୀ ଉପନିବେଶିକ ଦଳ ଏହି ଦେଶର ସମସ୍ତ ଅକ୍ତିଆର କରି ରଖିଛନ୍ତି । ଓ୍ୱାଲି କହିଲେ, "ଶୁଣୁଛନ୍ତି ରାସ୍ତାରେ ଉର୍ଦ୍ଦୂ ବା ହିନ୍ଦୁସ୍ଥାନୀ ସଙ୍ଗୀତ । ରେଡ଼ିଓ ଷ୍ଟେସନରେ ମଧ୍ୟ ପାରସୀ ଭାଷା ହିଁ ଶୁଣିବେ । ପାକିସ୍ଥାନ ସହିତ ଆମର ଝଗଡ଼ା ପାଖତୁନିମାନଙ୍କର ଆତ୍ମନିୟନ୍ତ୍ରଣ ଅଧିକାରପାଇଁ; କାରଣ ସେମାନେ ଆମର ସଂପର୍କ, ସମଭାଷାଭାଷୀ– ସେମାନେ ପସ୍ତୁ ଭାଷା କହନ୍ତି । କିନ୍ତୁ ସେହି ଭାଷା କ'ଣ କାବୁଲର ଦୋକାନ ବଜାରରେ ଚଳେ ? ଦୋକାନ ବଜାରରେ ଚଳେ ପାରସୀ ଭାଷା । ପସ୍ତୁ ଭାଷା ଆମେ କେବଳ ଘର ଭିତରେ କହୁଁ । ଆମର ମାତୃଭୂମିର ଭାଷାରେ ବାହାରେ କଥା କହିବାକୁ ମଧ୍ୟ ଆଫଗାନି ଲୋକଙ୍କୁ ସଙ୍କୋଚ ଲାଗେ ।"

"କେତୋଟି ଦୂତାବାସ, ଆଉ କେତୋଟି ଉଡ଼ାଜାହାଜ କମ୍ପାନି – ଏଇତକ କାବୁଲର ସଭ୍ୟତା; ଆଉ କିଛି ନାହିଁ । ମଟରଗାଡ଼ିସବୁ ଦେଖୁଛନ୍ତି, ଏଇତକ ବିରାଟ ମଟରଗାଡ଼ି ଆମେରିକାର ଅଥବା ବିଲାତର ଅଥବା ସୋଭିଏଟର । ଏଗୁଡ଼ିକୁ ଚାହିଁ ମନେ ହେବ, କାବୁଲ ଆମର ଖୁବ୍ ସଭ୍ୟ ହୋଇଛି । ହାଜ୍ ଯାତ୍ରୀଙ୍କୁ ନେବା ଆଣିବା କରିବାପାଇଁ ଯୋଡ଼ିଏ ଉଡ଼ାଜାହାଜ କମ୍ପାନି ରହିଛନ୍ତି ଏବଂ କେ.ଏଲ୍.ଏମ୍.ର ଗୋଟିଏ ସର୍ଭିସ ଭାରତରୁ ଏଠାକୁ ସପ୍ତାହକେ ଥରେ ଆସୁଛି । ଏଇତକ ହେଲା ବାହାର ସଂସାର ସଙ୍ଗରେ ପରିଚୟ ଆଉ ସଂପର୍କ ।

"ଅଙ୍ଗୁର କୋଳି ଶସ୍ତା ବୋଲି ଶୁଣିଥିବେ । କିନ୍ତୁ ଏଭଳି ଶସ୍ତା କୋଳି କ'ଣ ଏଠାରେ ଗରିବ ଲୋକେ ଖାଇବାକୁ ପାଆନ୍ତି ? ଆଫଗାନିସ୍ଥାନରେ ଗୋଟାଏ କଥା ଅଛି, 'ଚାଷୀ କରେ ଅଙ୍ଗୁର, ଆଉ ଖାଏ କାଠବାଦାମ' । ଏଠାରେ ଆଉ ଗୋଟାଏ ଉପାର୍ଜ୍ଜନ ହୁଏ କାର୍ପେଟରୁ । କିନ୍ତୁ ଆପଣ ଦେଖିବେ, ଆମପରି ମଧ୍ୟବିତ୍ତ ଘରେ ମଧ୍ୟ ତଳେ କତାର ଗାଲିଚ୍ଚ ବିଛାଇଛୁଁ । କତା, ଯାହା ଭାରତର ନଡ଼ିଆରୁ ତିଆରି ହୁଏ । ସେତିକି ବାହାରୁ ଆସେ କାରଣ ଏଇଠାରେ ସିମେଣ୍ଟର ଚଟାଣ ନାହିଁ କହିଲେ ଚଳେ । ତଳୁ ସବୁବେଳେ ଧୂଳିର ପଟଳ ଉଠେ । ସବୁଆଡ଼େ ଧୂଳିମୟ ହୋଇଯାଏ । ତେଣୁ ମେଜିଆରେ ଗୋଟାଏ କିଛି ବିଛାଇବା ଦରକାର ପଡ଼େ । କିନ୍ତୁ ଆମରି ତୁଳାରେ ବା ମେଣ୍ଢା ରୋମରେ ତିଆରି ଗାଲିଚ୍ଚ ବି ଆମ ମେଜିଆରେ ପଡ଼ିପାରେ ନାହିଁ ।"

କାବୁଲର ପ୍ରଧାନ ରାସ୍ତା ଛାଡ଼ି ଆମର ଟାଙ୍ଗା ଗୋଟାଏ ବାଙ୍କ ବୁଲିଗଲା । ଗୋଟିଏ ପାଖରେ ପ୍ରକାଣ୍ଡ ବଗିଚ୍ଚ । ଗଛଗୁଡ଼ିକ ବିଲାତି ଚାକୁଣ୍ଡା ଆଉ ପପଳାର ।

ଡାହାଣ ପାଖରେ ରାସ୍ତାଠାରୁ ଉଚ୍ଚାରେ ବଡ଼ ବଡ଼ ବାଡ଼ ବେଢ଼ାହୋଇ ପାନବରଜପରି ହୋଇଛି । ଏଇଠି ଅଙ୍ଗୁର ଲତା ଲାଗିଛି । ଅଙ୍ଗୁରର ବେଳ ହୋଇ ନଥାଏ । କିଛି ବାଟପରେ ଆରିୟାନା ଉଡ଼ାଜାହାଜ କମ୍ପାନିର କର୍ମଚାରୀମାନଙ୍କର କୋଠି ଏବଂ କମ୍ପାନିର ଅଫିସ ପଡ଼ିଲା । ସେପରି ସୁଦୃଶ୍ୟ ଘର ନୁହେଁ; ଗୋଟାଏ ବଡ଼ ଖଳାବାଡ଼ିଭଳି ଦିଶୁଛି । ଦୁଇଟା ଟିଣଦ୍ୱାର ଲାଗିଥିବା ଗେଟ୍ । ଏସବୁ ଭଡ଼ାଘର । ଆଉ କେଉଁଠାରେ କମ୍ପାନି ଆପଣାର କୋଠା ତିଆରି କରୁଛି ।

ମିଷ୍ଟର ମହାପାତ୍ର ବା ଶ୍ରୀମାନ୍ ପୂର୍ଣ୍ଣଚନ୍ଦ୍ରଙ୍କ ଘରେ ପହଞ୍ଚିଲୁ । ଓ୍ୱାଲି ଆପଣା ଘରେ ଥାଆନ୍ତି । ତାଙ୍କର ଘର କାବୁଲ ସହରରେ । ପୂର୍ଣ୍ଣଚନ୍ଦ୍ର ଏହି ଘରେ ଏକୁଟିଆ ଥିଲେ । ତାଙ୍କର ଆଉ ଦୁଇଜଣ ସାଥୀ କର୍ମଚାରୀ ଯାଇଥାଆନ୍ତି ଉଡ଼ାଜାହାଜରେ । ଆଗରୁ ଯାହା ଶୁଣିଥିଲି ଯେ ଆଫଗାନିସ୍ଥାନରେ ପେଟ୍ରୋଲର ଅଭାବ ପଡ଼ିଛି, ସେକଥା ସତ ବୋଲି ଜଣାପଡ଼ିଲା । ଅନେକ ହଜ୍-ଯାତ୍ରୀ ସେବେ ମଧ ଅପେକ୍ଷା କରିଛନ୍ତି । ଓ୍ୱାଲି ଏବଂ ପୂର୍ଣ୍ଣଚନ୍ଦ୍ର ମୋତେ କହିଲେ, "ଆପଣ ଯଦି ଦୁଇ ତିନି ଦିନ ରହନ୍ତେ ଏବଂ ମଧ୍ୟପ୍ରାଚ୍ୟକୁ ଯଦି ଆପଣଙ୍କର ପାସପୋର୍ଟ ଥାଆନ୍ତା, ତେବେ ଆମେ ଆମରି ଉଡ଼ାଜାହାଜରେ ଆପଣଙ୍କୁ ବସୋରା, ବାଗଦାଦ ଏବଂ ଲୋହିତସାଗର ପର୍ଯ୍ୟନ୍ତ ବୁଲାଇ ନେଇ ଫେରିଆସନ୍ତୁ ।" ଏଇ ଦୁଇଟାରୁ ଯଦି କୌଣସିଟି ଅତିକ୍ରମ କରିବା ଆମର ସାଧ୍ୟାତୀତ ଥିଲା – ପ୍ରଥମ କଥା ଆମେ ତା'ଆରଦିନ ସକାଳୁ କାବୁଲ ଛାଡ଼ିବା ନିଶ୍ଚିତ ଏବଂ ଦ୍ୱିତୀୟ କଥା ମୋର ମଧ୍ୟପ୍ରାଚ୍ୟପାଇଁ ପାସ୍‌ପୋର୍ଟର ମଧ ବ୍ୟବସ୍ଥା ନାହିଁ । କେବଳ ତୁର୍କୀ ଆଉ ସାଉଦି ଆରବ ଦେଶକୁ ଯିବାର ପାସପୋର୍ଟରେ ଅଛି ।

ପୂର୍ଣ୍ଣଚନ୍ଦ୍ର ମୋତେ କେତେ ପ୍ରକାରର ବିଭିନ୍ନ କୋକି ଓ ଫଳରସ ପିଇବାକୁ ଦେଲେ । ଖାଇବାପାଇଁ ନାନା ଜିନିଷ ଆଣିଲେ । ମୁଁ ଠିକ୍ ସେତିକିବେଳେ ଖାଇଥିଲି । ମୋତେ ଦୁଇ ତିନିଟା ପ୍ୟାକେଟ୍ ଆମେରିକା ସିଗାରେଟ ଦେଲେ ଏବଂ କହିଲେ, "ସୋଭିଏଟ୍‌ରୁ ଫେରିଲାବେଳକୁ ତ ଏହି ବାଟରେ ଆସିବେ, ସେତେବେଳେ ଏଇଠୁ ଗୋଟାଏ ସୁନ୍ଦର ଗାଲିଚ୍ଚ ନେଇଯିବେ ।" ସେମାନଙ୍କୁ ମୁଁ କହିଥିଲି, "କେଉଁ ବାଟରେ ଫେରିବି ଠିକଣା ନାହିଁ ।" ସେ ବାଟରେ ଫେରିପାରିଲି ନାହିଁ । ତେଣୁ ପୂର୍ଣ୍ଣଚନ୍ଦ୍ର ଏବଂ ଓ୍ୱାଲିଙ୍କୁ ଦେଇଥିବା ପ୍ରତିଶ୍ରୁତି ରଖିପାରିଲି ନାହିଁ ।

ପୂର୍ଣ୍ଣଚନ୍ଦ୍ରଙ୍କଠାରୁ ବିଦାୟ ନେଇ ଫେରିଲି । ଓ୍ୱାଲି ମୋ ସାଙ୍ଗରେ କାବୁଲ ହୋଟେଲ ପର୍ଯ୍ୟନ୍ତ ଛାଡ଼ିଦେବାକୁ ଆସିଲେ । ଫେରିଲାବେଳକୁ ଖରାତେଜ ମଧ କମି

ଆସିଥାଏ । ପାଖରେ ଟାଙ୍ଗା ନଥିଲା । ଦୁହେଁ ରାସ୍ତାରେ ଚ୍ଚାଲି ଚାଲି କଥାଭାଷା ହୋଇ ଫେରିଲୁ ।

## ସାତ

ପାକିସ୍ଥାନ ସହିତ ଆଫଗାନିସ୍ଥାନର ଝଗଡ଼ା ବିଷୟରେ ଓ୍ୱାଲିଙ୍କୁ ପଚ୍ଚାରିଲି । ସେ ଟିକିଏ ଆଗକୁ ପଛକୁ ଚ୍ଚାହିଁଲେ । ପଛରୁ ଗୋଟାଏ ବିରାଟ ଆମେରିକାନ୍ ଗାଡ଼ି ତୀରବେଗରେ ଆମକୁ ଟପି ଚାଲିଗଲା । ମୋର ଅଭ୍ୟାସ ଅନୁସାରେ ମୁଁ ବାମ ପଟରେ ରହିବାକୁ ଯାଉଥିଲି; କିନ୍ତୁ ଓ୍ୱାଲି ମୋତେ ଡାହାଣ ପଟରେ ରଖିନେଲେ । ଅଭ୍ୟାସ ନ ଥିବାରୁ ଡାହାଣକୁ ମାଡ଼ି ବାଟ ଚ୍ଚାଲିବାପରେ ହି ଅଭ୍ୟାସ ପଡ଼ିଯାଇଥିଲା ।

ଓ୍ୱାଲି ଆଗକୁ ପଛକୁ ଚ୍ଚାହିଁବାର କାରଣ ଆଫଗାନ ସରକାରର ଭୟ ନୁହେଁ; ଭୟ ଆମେରିକା, ବିଲାତ ଏବଂ ଅନ୍ୟାନ୍ୟ ସରକାରମାନଙ୍କର । ସାମରିକ କାରଣରୁ ଆଫଗାନିସ୍ଥାନ ଆଜି ପୃଥିବୀର କୂଟନୀତିର ଚରାଭୂଇଁ ହୋଇଯାଇଛି; ତେଣୁ ଏଠାରେ ବିରାଟ ଦୂତାବାସ ସବୁ ଜାକଜମକରେ ଗଢ଼ିଉଠିଛି । ସୋଭିଏଟ ଦେଶ, ଚୀନ, ପାକିସ୍ଥାନ, ଭାରତ (କାଶ୍ମୀର), ଇରାନ୍ ପ୍ରଭୃତି ସହିତ ସୀମାର ନିକଟବର୍ତ୍ତୀ ଏହି ଦେଶ; ତେଣୁ ଆଜି ଏକ ପ୍ରଧାନ ଘାଟିଜାଗାରେ ପରିଣତ ହୋଇଛି । ପାକିସ୍ଥାନ ଏବଂ ଆଫଗାନିସ୍ଥାନର ଝଗଡ଼ା ଏହି ଘାଟିଜାଗାକୁ ଗୋଟାଏ ନିର୍ଦ୍ଦିଷ୍ଟ ଶିବିର ଆଡ଼କୁ ଢଳାଇବା ପାଇଁ ଚେଷ୍ଟା କରି କରାଯାଇଥିଲା ।

ପାଖତୁନ୍ ଅଞ୍ଚଳ ଚିରକାଳ ଏକ ଅରାଜକ ଅଞ୍ଚଳ ହୋଇ ରହିଥିଲା; ଅର୍ଥାତ୍ ଏହା ଥିଲା Noman's Land । ଏବେ ଏହାକୁ ପାକିସ୍ଥାନ ଆୟତ୍ତରେ ରଖିବାକୁ ଚ୍ଚାହୁଛି । ଆଫଗାନିସ୍ଥାନ ଭିତରେ ପାଖତୁନ୍‌ଙ୍କପାଇଁ ମଧ ଗୋଟାଏ ମମତା ଅଛି । ଆଫ୍‌ଗାନ୍‌ମାନେ ପାଖତୁନ୍‌ଙ୍କ ଭଳି ପସ୍ତୁ ଭାଷା କହନ୍ତି; କିନ୍ତୁ ପାଖତୁନ୍‌ମାନଙ୍କର ଆତ୍ମନିୟନ୍ତ୍ରଣ ଆନ୍ଦୋଳନ ଚଳିଲେ ତହିଁରୁ ଆନ୍ତର୍ଜାତିକ ସାମ୍ରାଜ୍ୟବାଦୀମାନେ ଲାଭ ଉଠାଇବାକୁ ଚ୍ଚାହାନ୍ତି । କାରଣ ପାକିସ୍ଥାନ ଆଉ ଆଫଗାନିସ୍ଥାନର କଳହରେ ଶାନ୍ତିରକ୍ଷା କରିବାକୁ ସେମାନେ ମିଳିତ ଜାତି ସଂଘ ତରଫରୁ ଆସିବେ । ପାଖତୁନ୍ ଅଞ୍ଚଳକୁ ବାହାର ଦୁନିଆରୁ ବିଚ୍ଛିନ୍ନ କରି ତାକୁ ଏକ ସ୍ୱତନ୍ତ୍ର ସୁରକ୍ଷିତ ଅଞ୍ଚଳ ତିଆରି କରିଦେଲେ ମଧ୍ୟପ୍ରାଚ୍ୟର ଇସ୍ରାଏଲ ପରି ଭାରତ ଏବଂ ଚୀନ ସୀମାନ୍ତବର୍ତ୍ତୀ ଏକ ସାମରିକ ଘାଟିଜାଗାରେ ସାମ୍ରାଜ୍ୟବାଦୀଙ୍କର ଆସ୍ଥାନ ସବଳ ହେବ । କାବୁଲରେ ପାକିସ୍ଥାନର ପତାକା ଯିଏ ପୋଡ଼ିଥିଲେ, ସେ ପ୍ରକୃତରେ ଜଣେ ଦେଶପ୍ରେମୀ ଆଫଗାନ୍ ନୁହନ୍ତି । ପାକିସ୍ଥାନ ପତାକା ପୋଡ଼ି ଗୋଟାଏ

କାଣ୍ଡ ଭିଆଇବା ଉଦ୍ଦେଶ୍ୟରେ ସେ ଏକ ସଙ୍କଟମୁହୂର୍ତ୍ତରେ ଏଭଳି କରିଥିଲେ । କିନ୍ତୁ ଏକଥା କହିବାକୁ ମଧ୍ୟ ଆଫଗାନ୍ ଲୋକ ନିଜର ତଥାକଥିତ ସ୍ୱାଧୀନ ରାଜଧାନୀରେ ଆଗକୁ ପଛକୁ ଚାହେଁ ।

ଆଫଗାନିସ୍ଥାନର ଉନ୍ନତିପାଇଁ କ'ଣ କୋଣସି ବାଟ ନାହିଁ ? ଓ୍ୱାଲି କହିଲେ, "ମୁଁ ରାଜନୀତିଜ୍ଞ ନୁହେଁ । ରାଜନୀତି ଯେଉଁମାନେ କରୁଛନ୍ତି, ସେମାନେ ଆମ ଦେଶରେ ନାହାନ୍ତି କହିଲେ ଚଳେ । ହିନ୍ଦୁକୁଶର ଗଳିତ ତୁଷାରକୁ ବାନ୍ଧି ଏଠାରେ ଜଳଭଣ୍ଡାର କରାଯାଇପାରନ୍ତା । ପାହାଡ଼ ଭିତରେ ସୁଡ଼ଙ୍ଗ ଖୋଳି ବହୁଦୂରକୁ ଏହି ପାଣି ନିଆଯାଇ ଫସଲ କରାଯାଇପାରନ୍ତା । ବହୁତ କଥା ମୁଁ ମନରେ ଆଲୋଚନା କରିଛି । ବିଦେଶରେ ପାହାଡ଼ ସେପଟେ ତାଜିକ୍ସ୍ଥାନର ଜଳବାୟୁ ବା ପାଣି ଆମଠାରୁ ଅଲଗା ନୁହେଁ । ସେମାନେ ଯାହା କରିପାରିଛନ୍ତି, ତାହା ଆମେ ବି କରିପାରନ୍ତୁ । ତା ଛଡ଼ା ଆମର ମାଟିତଳେ ପେଟ୍ରୋଲ ରହିଛି ବୋଲି ନିର୍ଦ୍ଦିଷ୍ଟ ପ୍ରମାଣ ମିଳୁଛି । ଆମର ତ ଏଠାରେ ସର୍ଭେ ହୋଇ ନାହିଁ । କିନ୍ତୁ ଆମର ମାଟିତଳେ ଯେଉଁ ଶିଳାର ଆସ୍ତରଣ ଅଛି, ସେଥିରେ ଯେ ପେଟ୍ରୋଲ ରହିଛି, ଏକଥା ସୋଭିଏଟର ଭୂତତ୍ତ୍ୱବିତ୍‌ମାନେ ଜାଣିଛନ୍ତି ।"

ମୁଁ ପଚାରିଲି, "ତେବେ ନ ହେଉଛି କାହିଁକି ?" ଓ୍ୱାଲିଙ୍କ ଠାରୁ ଶୁଣିଲି, ଏଥିପାଇଁ ଆଫଗାନିସ୍ଥାନର ସମ୍ବଳ ନାହିଁ । ପେଟ୍ରୋଲ ଖଣିର କାମପାଇଁ ଯନ୍ତ୍ରପାତି କିଣିବାକୁ ଏବଂ ଆବଶ୍ୟକୀୟ ବ୍ୟବସ୍ଥା କରିବାକୁ । ସୋଭିଏଟ୍ ଦେଶ ଏଥିରେ ସାହାଯ୍ୟ କରିବାକୁ ପ୍ରସ୍ତୁତ; କିନ୍ତୁ ଆଫଗାନିସ୍ଥାନ ସରକାର ଆମେରିକା ଭୟରେ ତାହା ଗ୍ରହଣ କରିବାକୁ ସାହସ କରୁ ନାହାନ୍ତି । ଏଣେ ଆମେରିକା ବା ବିଲାତ ଭୟରେ ମଧ୍ୟ ପରସ୍ପର ଛକାପଞ୍ଝା ହୋଇ ରହିଛନ୍ତି । ସାଉଦି ଆରବ ଦେଶରେ ଆମେରିକା ପେଟ୍ରୋଲ ଖଣି ଦଖଲ କଲାଦିନୁ ବିଲାତ ଉସ୍‌ମାନ ଏବଂ ମସକାଟ ଦୁଇଟି ଅଞ୍ଚଳକୁ ଖୁବ୍ ଜୋରରେ ଧରିଛି । ଏଥିପାଇଁ ଆନ୍ତର୍ଜାତିକ କୋର୍ଟ ପର୍ଯ୍ୟନ୍ତ ମାମଲା ଗଲାଣି । ତେଣୁ ଆଫଗାନିସ୍ଥାନରେ କେହି କାହାକୁ ବାଟଛାଡୁ ନାହାନ୍ତି । ଆଫଗାନ୍ ସରକାର ଜାଣନ୍ତି ପାରସ୍ୟର ଦଶା ଯାହା ହେଲା । ତେଣୁ ବିଲାତ ବା ଆମେରିକା କମ୍ପାନି ଆଫଗାନିସ୍ଥାନରେ ପହଞ୍ଚିଲେ ସରକାରଙ୍କ ଅବସ୍ଥା କାହିଲ ହେବ; ତେଣୁ କିଛି ହୋଇପାରୁ ନାହିଁ ।

କାବୁଲ ହୋଟେଲରେ ଆସି ଦେଖିଲୁ, ସବୁତକ ଭାରତୀୟ ପ୍ରତିନିଧି ଭାରତୀୟ ଦୂତାବାସକୁ ବାହାରି ଯାଇଛନ୍ତି । ତେଣୁ ମୁଁ ଏକୁଟିଆ । ଓ୍ୱାଲି ମୋତେ ଛାଡ଼ି ବାହାରିଯିବାକୁ ବସିଥିଲେ । ତାଙ୍କ ମନରେ ଗଭୀର କ୍ଷୋଭ ଏବଂ ଦୁଃଖର ଭାରା ।

ଯେପରି ଜଣେ ଆତ୍ମୀୟ ଲୋକଙ୍କୁ ସେ ଆପଣାର ଘରକୁ ଡାକିଆଣି କୌଣସି ପରିଚର୍ଯ୍ୟା କରିପାରୁ ନାହାନ୍ତି । ଆଫଗାନିସ୍ଥାନର ଏହି କୂଳଦୀପଙ୍କୁ ଦେଖି ସେଦିନ ମୋର ପୂର୍ଣ୍ଣ ହୃଦ୍‌ବୋଧ ହେଲା ଯେ ଯେଉଁ ଦେଶ ଓ୍ୱାଲି ମହମ୍ମଦଙ୍କ ଭଳି ପୁତ୍ରକୁ ଜନ୍ମ ଦେଇପାରେ, ତାହାର ଭବିଷ୍ୟତ ବିଷୟରେ ସନ୍ଦିହାନ ହେବାର କିଛି ନାହିଁ ।

ଭାରତ ପରି ଏହି ଆଫଗାନିସ୍ଥାନରେ କୌଣସି ବଡ଼ କୀର୍ତ୍ତି ବା ସୌଧ ନଥିଲା । ଗାଲିଚ୍ଚ ବୁଣୁଥିବା ଲୋକଙ୍କର ଘରକୁ ଯିବାର ସୁବିଧା ନାହିଁ । ତେଣୁ ତାହା ବି ହେଲା ନାହିଁ । କାବୁଲରେ ଗୋଟିଏ ବହୁ ପୁରାତନ ଐତିହାସିକ ସ୍ମୃତିସମ୍ବଳିତ ମିଉଜିୟମ୍ ଅଛି ବୋଲି ଶୁଣିଥିଲି । ଏହି ମିଉଜିୟମ୍‌ରେ ଆଲେକ୍‌ଜାଣ୍ଡାରଙ୍କର ବହୁ ପୂର୍ବର ଅନେକ ଐତିହାସିକ ତଥ୍ୟ, ବହୁତ ଖୋଦିତ ଲିପି ଏବଂ ଆର୍ଯ୍ୟମାନଙ୍କର ପ୍ରାଚୀନ ପ୍ରାଚୀର ଚିତ୍ର ସନ୍ନିବିଷ୍ଟ ହୋଇଛି । କିନ୍ତୁ ସେତେବେଳକୁ ମିଉଜିୟମ୍ ବନ୍ଦ ହୋଇଯାଇଥିଲା । ତେଣୁ ସେଆଡ଼କୁ ମଧ ଯାଇପାରିଲି ନାହିଁ ।

କିନ୍ତୁ ସଦାଶୟ ଯୁବକ ସହଜରେ ହାର ମାନିବା ଲୋକ ନଥିଲେ । ଗୋଟାଏ ଟାଙ୍ଗାରେ ପୁଣି ଚଢ଼ି ଆମ୍ଭେମାନେ ଚ୍ଚଲିଲୁ । ଏରିୟାନା ଉଡ଼ାଜାହାଜ କମ୍ପାନି ଅଫିସ ପାଖରେ କୁହାପୋଛା କରି ଖଣ୍ଡିଏ ପୁରୁଣା ମୋଟରଗାଡ଼ି ସେ ଯୋଗାଡ଼ କଲେ; ଆଉ ତା'ପରେ କହିଲେ "ଚ୍ଚଲନ୍ତୁ । ଏଠାରୁ ପ୍ରାୟ ୪୫ ମାଇଲ ବାଟ ଯିବାକୁ ହେବ । ସେଇଠି ପାହାଡ଼ ଉପରେ ବାବରଙ୍କର ସମାଧି । ଭାରତରୁ ଆସି ଏତକ ଦେଖିଯାଆନ୍ତୁ । ଯଦିବା ଏହି ସମାଧି ତାଜମହଲ ନୁହେଁ କିମ୍ବା କୌଣସି ଭାରତୀୟ ପ୍ରାଚୀନ କୀର୍ତ୍ତିଠାରୁ କୌଣସି ଗୁଣେ ଭଲ ନୁହେଁ, ବରଂ ଅତି ସାଧାରଣ, ତଥାପି ଏହାରି ତଳେ ଭାରତର ପ୍ରଥମ ମୋଗଲ ବାଦଶାହ ଶେଷ ବିଶ୍ରାମ କରିଛନ୍ତି । ତାହାହିଁ ଦେଖାଯାଉ ।" ବନ୍ଧୁର ପଥ ବାହି ଆମ୍ଭେମାନେ ତୁଷାର କିରୀଟ ହିନ୍ଦକୁଶ ଅଭିମୁଖରେ ମୋଟର ଛୁଟାଇଲୁ । ଦିନ ରତ ରତ ହୋଇଆସିଥାଏ ।

ଭାରତର ପ୍ରଥମ ମୋଗଲ ସମ୍ରାଟ ବାବର ଭାରତ ଜୟ କରି ବେଶି ଦିନ ସମ୍ରାଟ ହୋଇ ରହିପାରିଲେ ନାହିଁ । ଚ୍ଚରି-ପାଞ୍ଚ ବର୍ଷ ଶାସନପରେ ତାଙ୍କର ଜ୍ୟେଷ୍ଠପୁତ୍ର ହୁମାୟୁନଙ୍କର ସାଂଘାତିକ ବେମାର ହେଲା । ସବୁପ୍ରକାର ଚିକିତ୍ସା ବ୍ୟର୍ଥ ହେଲା । ଆପଣାର ପୁତ୍ରର ଜୀବନରକ୍ଷାପାଇଁ ଧର୍ମନିଷ୍ଠ ଏବଂ ଅଟଳ ବିଶ୍ୱାସୀ ବାବର ହୁମାୟୁନଙ୍କର ଶେଯ ଚ୍ଚରିପାଖରେ ସାତ ଥର ବେଢ଼ା ବୁଲି ତାଙ୍କର ଜୀବନ ବିନିମୟରେ ପୁତ୍ରର ଜୀବନ ରକ୍ଷା କରିବାକୁ ଖୋଦାଙ୍କୁ ପ୍ରାର୍ଥନା କରିଥିଲେ । ତାହାପରେ ହୁମାୟନ

ଆରୋଗ୍ୟ ଲାଭ କରିବାକୁ ଲାଗିଲେ ଏବଂ ବାବର ଗୋଟାଏ ମୁସଲମାନ ମୁଲ୍ଲାବେଶରେ ରାଜଧାନୀ ଦିଲ୍ଲୀ ଛାଡ଼ି ଆପଣାର ଜନ୍ମଭୂମି ଫରଗାନା ଆଡ଼କୁ ବାହାରିଗଲେ । ବାଟଯାକ ଆପଣା କୋରାନ ବିକି ସେହି ପଇସାରୁ ବାବର ଆପଣାର ପଥଖର୍ଚ୍ଚ କରିପାରିଥିଲେ । ବାଟରେ ଯାଉଁ ଯାଉଁ କାବୁଲଠାରେ ବାବର ଦେହତ୍ୟାଗ କଲେ । ଏଇଠି ତାଙ୍କର ସମାଧି ।

ପାହାଡ଼ର କଟିଦେଶରେ ନାନା ବୃକ୍ଷଲତାର ଉଦ୍ୟାନ ଭିତରେ ଖଣ୍ଡିଏ ଛୋଟ ସମାଧି, ଦୂରରେ ହିନ୍ଦୁକୁଶ ପର୍ବତମାଳା । ତାହାର ବରଫଖଚିତ ଶୃଙ୍ଗରୁ ଓହ୍ଲାଇ ଆସିଛି ପାଦତଳର ପାହାଡ଼ଗୁଡ଼ିକ । କେତୋଟି ଝରଣାର ଜଳ ବାନ୍ଧି ଏଇଠି ବୃକ୍ଷଲତାର ଶ୍ୟାମଳିମା ଛିଡ଼ା କରାଯାଇଛି । ଗୋଟିଏ ସାଧାରଣ ମୁସଲମାନର ସମାଧି ପରି ଅଳ୍ପ ଉଚ୍ଚର ଗୋଟିଏ କପ୍ପୁଲା ବା ଗମ୍ବୁଜଭଳି ଖିଲାଣତଳେ ଗୋଟିଏ ଉଚ୍ଚ ବେଦିକାରେ ବାବରଙ୍କର କଫିନ୍ ରହିଛି । ସମାଧି ଉପରେ ପାରସୀ ଭାଷାରେ ବାବରଙ୍କର ଜନ୍ମମୃତ୍ୟୁର ବିବରଣୀ ଲେଖାଯାଇଛି । ଲେଖାଗୁଡ଼ିକ ଅସ୍ପଷ୍ଟ ହୋଇଯାଇଛି । ସମାଧି ନିକଟରେ ସେହି ମୁହଁସଞ୍ଜ ଅନ୍ଧାରରେ ଆମେ ଦୁଇଜଣ ଥିଲୁ, ୱାଲି ମହମ୍ମଦ ଏବଂ ମୁଁ । ବୋଧ ହୁଏ ଭାରତବିଜୟୀ ବାବର ଏବଂ ବହୁଗୁଣସମନ୍ୱିତ ଏହି ଇତିହାସର ମହିମ୍ନା ପୁରୁଷ ଓ ତାଙ୍କର ଅତି ସାଧାରଣ ଶେଷ ଶଯ୍ୟାର ପ୍ରଭେଦ କଥା ଆମେ ଦୁହେଁ ଭାବୁଥିଲୁଁ । ବରଫର ଧାରେ ଧାରେ ଆମ୍ଭେମାନେ ସେହି ଗମ୍ଭୀର ଅଞ୍ଚଳରୁ ବିଦାୟ ନେଇଆସିଲୁ ।

## ଆଠ

ୱାଲି ଫେରିଯାଇଛନ୍ତି । କିନ୍ତୁ ଆଫଗାନିସ୍ଥାନର ଆଗାମୀ ମନୁଷ୍ୟର ଗୋଟାଏ ଚିତ୍ର ସେ ମୋ ମନରେ ଛାଡ଼ିଦେଇ ଯାଇଛନ୍ତି । ୱାଲିଙ୍କୁ ଦେଖି ମୁଁ ବୁଝିଛି, ଆଫଗାନିସ୍ତାନର ଭବିଷ୍ୟତ ଏଭଳି ଯୁବକ ସନ୍ତାନ ଥିଲେ ଅନ୍ଧକାରରେ ପଡ଼ିବ ନାହିଁ । ତାଙ୍କରି ପରି ବ୍ୟକ୍ତି ଯେପରି ତାକ୍ତି ସୁଲେମାନ ପାହାଡ଼ର ସେପଟେ ସାରା ସଂସାରକୁ ଜାଗ୍ରତ କରି ଛିଡ଼ାହୋଇଛନ୍ତି । ଗୋଟିଏ ଦିନ କାବୁଲ ରହଣିରେ ଏସିଆର ନିଦ୍ରିତା ରାଜକନ୍ୟାର ସୁଯୋଗ୍ୟ ଏବଂ ସଚେତନ ଏହି ଯୁବକ ସନ୍ତାନ ପ୍ରକୃତରେ ଆଫଗାନିସ୍ଥାନର ଅନନ୍ତ ରହସ୍ୟ ମୋ ଆଗରେ ଉଦ୍‌ଘାଟନ କରିଦେଇଛନ୍ତି ।

ତେଣୁ ଆସିବା ବାଟରେ ଗୋଟାଏ ଚଟିଘରଭଳି ଏହି କାବୁଲ ମୋ ଆଖିରେ କେବଳ ଏକ କୌତୂହଳଦ୍ୟୋତକ ସଂସାର ହୋଇ ରହିଲା ନାହିଁ । ମୁଁ ଭାବିଲି, ଏଥିରେ ୱାଲିଙ୍କର ଦେଖାମିଳିଥିଲା । ଆଉ କିଛି ହୁଏତ ଆବିଷ୍କୃତ ହୋଇପାରନ୍ତା । ଗୋଟିଏ

ଦିନ; ରାତି ପାହିଲେ ଆମେ ତ ଚାଲିଲୁ । ତେଣୁ ଏହି କେତେ ଘଣ୍ଟା କିପରି ଆବିଷ୍କାରରେ କଟାଯାଇପାରେ ।

ଆମ ଭିତରୁ ଅନେକ ଭାବିଥିଲେ, ଆଫଗାନିସ୍ତାନରେ ଭଲ କାବୁଲି ଜୋତା ଶସ୍ତାରେ ମିଳିବ । କିନ୍ତୁ ଦେଖିଲୁ, ତାହା ଠିକ୍ ନୁହେଁ । ଜୋତାର ନାଁ କାବୁଲି ଜୋତା; କିନ୍ତୁ ତାହାର ଚମଡ଼ା, ତଳା, କଣ୍ଟା ଏବଂ ଯାବତୀୟ ଉପକରଣ ବିଦେଶୀ । ଜାଣିବାକୁ ପାଇଲୁ, ଆଫଗାନିସ୍ତାନର କୃଷି ଉତ୍ପାଦନ ଖୁବ୍ ଅଳ୍ପ । ଅଙ୍ଗୁର ଏବଂ କାର୍ପେଟ ବିଦେଶକୁ ପଠାଯାଏ । ଆଉ ଯାବତୀୟ ଜିନିଷ ବିଦେଶରୁ ଅଣାଯାଏ । ଲୁଗାପଟା ଏବଂ ସାଜସରଞ୍ଜାମ କିଛି ଛାଡ଼ିଦେଲେ ସିଗାରେଟ ଛଡ଼ା ଆଉ କୌଣସି ବଡ଼ ମନୋହାରୀ ଜିନିଷର ବିପଣୀ ଦେଖିବାକୁ ପାଇଲୁ ନାହିଁ ।

ରାତିର ଡିନରଟା କାବୁଲିଙ୍କର ଜାତୀୟ ଖାଦ୍ୟଭଳି ତିଆରି କରିବାକୁ ଆମେ ଆଗରୁ କହିଥିଲୁ । କିନ୍ତୁ ସେହି ଡିନର ଏକାବେଳକେ ଖରାପ ହେଲା । ମନେ ହେଲା, ହୋଟେଲର ବବୁର୍ଚ୍ଚି କାବୁଲି ଖାନା ତିଆରି କରି ଜାଣେ ନାହିଁ । ପଲାଉ ଭଲ ସିଝି ନଥିଲା । ଯେଉଁ ମାଂସ ରାନ୍ଧିବାରେ ମୁସଲମାନ ପାଚକ ବିଖ୍ୟାତ, ସେଭଳି ମାଂସ ରନ୍ଧା ନଥିଲା । ବିରିଆନି ଇତ୍ୟାଦି ମଧ୍ୟ ନଥିଲା । ଖାଲି ଇଉରୋପ, ଫରାସୀ ଏବଂ ସାହେବ ଖାନାର ଗନ୍ଧ; କେବଳ ନାଁକୁ ମାତ୍ର କାବୁଲି । ତାହା ଛଡ଼ା ସେଦିନ ପାଣି ପାଇପ୍ ଖରାପ ହୋଇ ସାରା ହୋଟେଲ ଏବଂ ସହରରେ ପିଇବା ପାଣି ନଥିଲା । ଆମେ ହୁଏତ ସୋଡ଼ା ବା ଲେମୋନେଡ୍ ପିଇବୁ କିମ୍ବା ଯେଉଁ ଦୁଇ ଧାର ପାଣି ରାସ୍ତା କଡ଼ ନଇନ୍‌ଯୋଡ଼ିରେ ଅଛି, ସେଇ ପାଣି ପିଇବୁ । ତେଣୁ ସେଦିନ ରାତିର ସହିତ ପାନୀୟର ଅବ୍ୟବସ୍ଥା ଆମ ମନକୁ ସନ୍ତୁଷ୍ଟ କରିପାରିଲା ନାହିଁ ।

ରାତ୍ରି ଭୋଜନପରେ କାବୁଲର ବହୁ ଦୂରଯାଏ ପ୍ରଧାନ ରାସ୍ତାରେ ଦଳବାନ୍ଧି ବୁଲିବାକୁ ଯାଇଥିଲୁ । ରାସ୍ତାକଡ଼ରେ ଗୋଟିଏ ଗୋଟିଏ ସରାଇ ଘର ବା ଛୋଟ ଚା'ଦୋକାନରେ ସାନ ସାନ ଟେବୁଲ ଆଉ ବେଞ୍ଚରେ ବସି କାବୁଲି ଲୋକେ ଚାହା ଏବଂ ଅନ୍ୟାନ୍ୟ ଖାଦ୍ୟପଦାର୍ଥ ଖାଉଥାନ୍ତି । ଆମମାନଙ୍କୁ ସର୍ବଦା ଏକଥା କୁହାଯାଇଥାଏ ଯେ କାବୁଲର ଜୀବିକା ଭିତରେ ଯୋଡ଼ିଏ ହେଉଛି ପ୍ରଧାନ–ବାଣିଜ୍ୟ ଏବଂ ଡକାୟତି । ଯେଉଁମାନେ ଡକାୟତି କରନ୍ତି, ସେମାନେ ବାଣିଜ୍ୟ କରନ୍ତି; ଯେଉଁମାନେ ବାଣିଜ୍ୟ କରନ୍ତି ସେମାନେ ବି ଡକାୟତି କରନ୍ତି । ପାହାଡ଼-ପର୍ବତର ଗିରିସଂକଟ ଉପରେ ଜୀବନକୁ ପାଣିଛଡ଼େଇ ବାଣିଜ୍ୟ କରିବାକୁ ବିଦେଶକୁ ଗଲାବେଳେ ନାନା ଦୁଃସାହସିକ

କାର୍ଯ୍ୟ କରିବାକୁ ପଡ଼େ । ଆମ୍ଭମାନଙ୍କୁ ତେଣୁ ସତର୍କ କରାଯାଇଥାଏ ଯେ କାବୁଲି ସାଧାରଣ ଅପରିଚିତ ଲୋକଙ୍କ ସଙ୍ଗରେ ଭୋଜନପାନରେ ବା ଆଳାପବନ୍ଧୁତାରେ ବିପଦର ସମ୍ଭାବନା ରହିଛି ।

ରାତିରେ ସହରଟା ପରିକ୍ରମା କରିଦେଇ ଆମ୍ଭେମାନେ ହୋଟେଲକୁ ଫେରିଆସିଲୁ । କିନ୍ତୁ କେଉଁଠି ଯେପରି ଏହି ସହରଟାର କିଛି ଗୋପନୀୟ ଏବଂ ରହସ୍ୟାବୃତ ହୋଇ ରହିଗଲା ପରି ମନେ ହେଲା । ଆଉ ଥରେ କାବୁଲ ଆସିପାରିବି ନାହିଁ, ଏ କଥା ଭବିଷ୍ୟତବାଣୀପରି ମୋ ମନରେ ନାଚୁଥାଏ । ତେଣୁ ଏହାକୁ ପୂର୍ଣ୍ଣଭାବରେ ଦେଖିଯିବାକୁ ହେବ । ମନର ଏତକ ଭାବ ମୁଁ ମୋର ହୋଟେଲର ରୁମ-ସଙ୍ଗୀକୁ କହିଲି । ସଙ୍ଗୀ ଜଣକ ଆସାମର ଲୋକ; ଗୌହାଟି ବିଶ୍ୱବିଦ୍ୟାଳୟରେ ପ୍ରଫେସର । ଆମେରିକାରୁ ଶିକ୍ଷକତାରେ (Education) ଡକ୍ଟର ଉପାଧି ପାଇ ଆସିଛନ୍ତି । ଭଲ ଗୀତ ଗାଆନ୍ତି । ତାଙ୍କୁ କହିବାରେ ସେ ମୋତେ କହିଲେ ଯେ ସେ ଦିନକଯାକ ବୁଲି କାବୁଲର ଅନେକ ରହସ୍ୟପୂର୍ଣ୍ଣ ଜନସମାଗମର ସ୍ଥାନ ଦେଖିଛନ୍ତି । ଏପରି ସ୍ଥାନରେ ରାତିରେ ଲୋକ ଜମା ହୋଇ ସାରାରାତି ଗାନବାଜଣା କରନ୍ତି– ପ୍ୟାରିସ ବା ବିଲାତର ନାଇଟ୍ କ୍ଲବଭଳି । ମୋର ଯଦି ଆପତ୍ତି ନଥାଏ ଆମେ ଦୁହେଁ ସେଠାକୁ ଗଲେ କିପରି ହୁଅନ୍ତା ? ଅଭିଜ୍ଞତାପାଇଁ ଇଚ୍ଛା ଥିଲେ ମଧ୍ୟ ନାଇଟ୍ କ୍ଲବ୍‌ର ନାମ ଏବଂ ଧାରଣାଯୋଗୁଁ ମୁଁ ଏଥିରେ ମଙ୍ଗିଲି ନାହିଁ ।

କିନ୍ତୁ ରାତି ପ୍ରାୟ ଗୋଟାଏ ହେବ । ଆମେ ଦୁହେଁ ଭଲ କରି ଶୋଇ ନାହୁଁ । ଡକ୍ଟର (ମୋ ବନ୍ଧୁ) ବୋଧ ହୁଏ ଏକାକୀ ସେଠାକୁ ଯିବାକୁ ବିଗ୍ଭର କରୁଛନ୍ତି, ଏପରି ଅବସ୍ଥାରେ ତାଙ୍କୁ ନିଦ ଆସିଯାଇଛି; ଏତିକିବେଳେ ବେଶି ଦୂର ନୁହେଁ ଅଥବା ବେଶି ନିକଟ ନୁହେଁ ଏପରି ଗୋଟିଏ ସ୍ଥାନରୁ ମଧୁର ଏବଂ ପ୍ରାଣମତାଣିଆ ବାଦ୍ୟର ଝଙ୍କାର ବାଜିଉଠିଲା । ଆମ ଦୁହିଁଙ୍କର ଅଲକ୍ଷ୍ୟରେ ଆମେ ଦୁହେଁ ଉଠିବସିଲୁ । ସେ ସେତେବେଳକୁ ତାଙ୍କର ଲୁଗାପଟା ପିନ୍ଧି ସାରିଲେଣି । ମୁଁ ମଧ୍ୟ କାଳବିଳମ୍ବ ନ କରି ବାହାରିପଡ଼ିଲି । ଦୁଆର ମୁହଁରେ ଦୁଇଜଣଯାକ ପରସ୍ପର ସମ୍ମତି ବୁଝିନେଇ ସାରିଥାଉଁ । ନିଃଶବ୍ଦରେ ଆମ୍ଭେମାନେ ସେହି ବାଦ୍ୟନିନାଦିତ ରାତିରେ ବାହାରିପଡ଼ିଲୁ । ଆସିଲାବେଳେ ହୋଟେଲର ପୋର୍ଟର ଆମକୁ ଯିବାକୁ ବାରଣ କଲା । କ'ଣ ସେ କହିଲା, ତାହା ସେ ବୁଝୁଥିଲା । ଇଂରାଜୀ ତ ବେଶି ଜାଣି ନଥିଲା । ପାରସିଆନ ଭାଷାରେ ଆମକୁ ଯିବାକୁ ବାରଣ କରୁଥିଲା; କିନ୍ତୁ ଆମେ ମାନିଲୁ ନାହିଁ । ଆମ୍ଭେମାନେ

ଆସିଲାବେଳେ ଗୋଟିଏ କଥା ବିଷୟରେ ଜୋରଦେଇ ଆସିଥାଉଁ । ସଙ୍ଗରେ କେବଳ ଗୋଟିଏ ଲେଖା ଦୁଇଟଙ୍କିଆ ନୋଟ ଛଡ଼ା ଆଉ କିଛି ନେବା ନାହିଁ, ବେଶ୍ ସେତିକି ।

କାବୁଲ ରାସ୍ତାରେ ଗ୍ଭଲିଥାଉଁ । ଗୋଟିଏ ନୁହେଁ, ବହୁତ ଗ୍ଭହାଖଟିରେ ବାଜା ବାଜୁଥାଏ । ରାସ୍ତାର ମଝିରେ ବିଦ୍ୟୁତ୍ ଆଲୋକର ମାଳା । ଦୁଇପଟରେ ରାସ୍ତା । ରାସ୍ତାପରେ ନର୍ଦ୍ଦମା କିଛି ଦୂରରେ । କେନାଲ ହୁଡ଼ା ଘରଭଳି ନର୍ଦ୍ଦମାଗୁଡ଼ିକର ଉପରେ କାଠପଟା କିମ୍ବା ପଥର ପକାଇ ପାହାଚ ହୋଇଛି । ସେହି ପାହାଚ ଉପରେ ଗଲେ ଗ୍ଭହା ଦୋକାନଗୁଡ଼ିକ ପଡ଼େ ।

ଦୁଆରମୁହଁର ଡାହାଣପଟେ ଗୋଟିଏ ଉଞ୍ଚା ବେଦିଭଳି ଜାଗା–ଖୁବ୍ ଉଞ୍ଚା । ମାଟିର ବେଦି ଉପରେ ଖୁବ୍ ଘନଭାବରେ ଗାଲିଗ୍ଭ ବିଛାହୋଇଛି । ଏହି ମାଟିର ବେଦିରେ କାନ୍ଥକୁ ଲାଗି ଦୋକାନର ଖାମିଦର କ୍ୟାସ୍‌ବାକ୍‌ସ ଏବଂ ବସିବାର ଜାଗା । ବାକିତକ ବେଦି ଉପରେ ହାରମୋନିଅମ୍, ବ୍ୟାଣ୍ଡ, ପାଇପ୍ ଏବଂ କେତେଗୁଡ଼ିଏ ବିଚିତ୍ର ଆକାରର ତାରଯନ୍ତ୍ର । ତାରଯନ୍ତ୍ରର ବାଦ୍ୟ ହିସାବରେ ବିଶେଷ ବିଚିତ୍ରତା ବୋଧ ହୁଏ କିଛି ନଥିଲା; କିନ୍ତୁ ଆକାରଗୁଡ଼ିକ ନାନାପ୍ରକାରର । ଏହିପରି ବେଦି ଉପରେ ପାଞ୍ଚ ଜଣ ବାଦ୍ୟବଜାଳି ବସି ଗୀତ ସହିତ ବାଦ୍ୟ ବଜାଉଥିଲେ ।

ବାମ ପଟରେ କାନ୍ଥକୁ ଲାଗି ବେଞ୍ଚ ଏବଂ ଛୋଟ ଛୋଟ ଦୁଇଜଣିଆ ଟେବୁଲ । ଏହି ବେଞ୍ଚ ଉପରେ ନାନା ବୟସର ଏବଂ ବେଶଭୂଷାର ଆଫଗାନ ନାଗରିକ ଗ୍ଭହା ପିଉଥାଆନ୍ତି ଏବଂ ଗୀତ ଶୁଣୁଥାନ୍ତି । କେତେକଙ୍କର ଗ୍ଭହା ଶେଷ ହୋଇଛି । ଆଫଗାନି ଚିଲମ୍‌ରୁ ଧୂଆଁ ଟାଣି ଗୋଟିଏ ବା ଯୋଡ଼ିକଯାକ ଆଖି ବୁଜିଦେଇ ସେମାନେ ଧ୍ୟାନନିଷ୍ଠଳ ହୋଇ ରହିଛନ୍ତି । ବାଦ୍ୟର ତାଳରେ କେତେ ଜଣ ମୁଣ୍ଡ ହଲାଉଛନ୍ତି ଏବଂ କେତେ ଜଣ ହାତରେ ତାଳ ଦେଉଛନ୍ତି । କିନ୍ତୁ ସେଇଠି କୌଣସି କୋଳାହଳ ଅଥବା ଅତି ଉତ୍ତରଳ ଉନ୍ମାଦନାର ଭାବ ଦେଖାଯାଉ ନଥାଏ ।

ଏଭଳି ଶାନ୍ତି ସମାହିତ ବାୟୁମଣ୍ଡଳ ଆମେ ଆଶା କରି ନଥିଲୁ । ମୋର ସାଥୀଜଣକ ପ୍ୟାରିସ, ନିଉୟର୍କ ଏବଂ ଲଣ୍ଡନର ମଦିରାସିକ୍ତ ଉଦ୍‌ଭ୍ରାନ୍ତ ନୈଶ କ୍ଲବମାନ ଦେଖିଛନ୍ତି । ତାହାର ଭାରତୀୟ ରୂପ ମଧ୍ୟ ଭାରତର କେତେକ ସହରରେ ଦେଖିବାକୁ ମିଳୁଛି । କିନ୍ତୁ ରାତି ଗୋଟାକପରେ କାବୁଲଭଳି ପ୍ରାଚ୍ୟର ଏକ ରହସ୍ୟାବୃତ ଅଞ୍ଚଳରେ ଏପରି ଶାନ୍ତି, ଏପରି ଶୃଙ୍ଖଳା ଆମେ ଲକ୍ଷ୍ୟ କରି ଆଶ୍ଚର୍ଯ୍ୟ ହେଲୁଁ ।

ଆମ୍ଭେମାନେ ଘର ଭିତରେ ପ୍ରବେଶ କରିବାମାତ୍ରେ ବାତାବରଣ ଟିକିଏ ଚଞ୍ଚଳ ଏବଂ କୌତୂହଳମୟ ହୋଇଉଠିଲା । ଯେଉଁମାନେ ଧ୍ୟାନମଗ୍ନ ଥିଲେ, ସେମାନେ ଆହୁରି ସଚେତ ହେଲେ । ଦୁଆର ନିକଟରେ ଯେଉଁମାନେ ବସିଥିଲେ, ସେମାନେ ଦୁଆର ପାଖ ଟେବୁଲ ଛାଡ଼ି ଆମକୁ ଜାଗା କରିଦେଲେ । ଯେପରି ମନେ ହେଲା ସେମାନେ ଆମକୁ ଦେଖି ଯେତିକି ବିସ୍ମିତ ହେଲେ, ସେତିକି କୁଣ୍ଠିତ ମଧ୍ୟ ହେଲେ, ଯେପରି ସେମାନଙ୍କର ଏକ ପାରିବାରିକ ମିଳନ ଭିତରେ ଆମ୍ଭେମାନେ ବିଦେଶୀ ଆଗନ୍ତୁକ ପ୍ରବେଶ କରିଯାଇଛୁ ଏବଂ ସେମାନଙ୍କର ଗୋଟାଏ ବିଶ୍ରାମ ନିଭୃତତାରେ ଆମ୍ଭମାନଙ୍କର କୌତୁହଳୀ ଆଖି ଆଘାତ କରିଦେଇଛି ।

ଆମ୍ଭେମାନେ ମଧ୍ୟ ଟିକିଏ ଅସୁସ୍ଥ ବୋଧ କଲୁଁ; କିନ୍ତୁ ପ୍ରାୟ ମିନିଟକ ମଧ୍ୟରେ ସେମାନେ ଆମ୍ଭମାନଙ୍କର ଆଗମନର କାରଣ ଠଉରାଇନେଲେ । ସେମାନେ ନିଶ୍ଚିତ ହୋଇଗଲେ ଯେ ଆମ୍ଭେମାନେ ସେମାନଙ୍କର ସାମାଜିକ ଜୀବନରେ ଯୋଗ ଦେବାକୁ ଗ୍ଛହୁଁ । ଆମ୍ଭେମାନେ ଶାନ୍ତିର ପ୍ରତିନିଧିଦଳ । ବିଭିନ୍ନ ଦେଶର ସଂସ୍କୃତି ଏବଂ ସାମାଜିକ ଜୀବନପ୍ରତି ଶ୍ରଦ୍ଧା ଏବଂ ଆନ୍ତରିକତା ଆମର ଗୋଟିଏ ପ୍ରଧାନ ବିଶେଷତ୍ୱ । ଏକଥା ସେମାନଙ୍କୁ ଆମ୍ଭେମାନେ ବୁଝାଇ ନାହୁଁ; କିନ୍ତୁ ଗୋଟିଏ ଦୁଇଟି ମିନିଟ ଭିତରେ ସେମାନେ ଆମକୁ ଆପଣାର କରିନେଲେ ।

ଛୋଟ ଛୋଟ ଗ୍ଛହାର ପିଆଲାରେ ଧଳା ଧଳା ଖଇ ଆସି ଥୁଆହେଲା । ଖଇଗୁଡ଼ିକ ବାଜରା ବା ମକା ଭଜା ଖଇ । ତାହା ଚିନିରେ ପାଗ ହୋଇଛି । ବେଶ୍ ମିଠା । ସେହି ଖଇ ଖାଇ, ନାଲି ନୀଳ ଫୁଲ ପଡ଼ିଥିବା ସାନ ସାନ କପରୁ ଗ୍ଛହା ପିଇଲୁଁ । ଏ ଗ୍ଛହା ଆମର ଭାରତୀୟ ଗ୍ଛହା ନୁହେଁ । ଏହା ଗୋଟାଏ ପ୍ରକାର ଗ୍ଛହା, ଯାହାକୁ ଇଂରାଜିରେ ଶାଗୁଆ ଗ୍ଛହା କହନ୍ତି । ଚୀନ ଦେଶରୁ ଏହି ଗ୍ଛହା ଆମଦାନୀ ହୁଏ । ଆଫଗାନମାନେ ଏହି ଗ୍ଛହାର କଷାୟରେ ଚିନି ବା ଦୁଧ କିଛି ନ ମିଶାଇ ଖାଲି ସେଭଳି ଖାଆନ୍ତି । ପରେ ତାଜିକ୍‌ସ୍ଥାନ ଏବଂ ଉଜ୍‌ବେକିସ୍ଥାନରେ ମଧ୍ୟ ଏହି ଗ୍ଛହା ଖାଇବାକୁ ମିଳିଥିଲା । ଏହାକୁ ରୁଷ ଭାଷାରେ 'ଲିଗେନେ' (ଶାଗୁଆ) ବୋଲି କହନ୍ତି ଏବଂ ଆମର ଚିରାଚରିତ ଗ୍ଛହାକୁ 'ଚୁର୍ଣ୍ଣେ' (କଳା) ବୋଲି କହନ୍ତି ।

ଆମ୍ଭମାନଙ୍କୁ ସେମାନେ ଅନ୍ୟାନ୍ୟ ହୋଟେଲ ଗ୍ରାହକ ଭଳି ଦେଖି ନଥିଲେ । ସମୁଦାୟ ନାଗରିକ ମେଳାରେ ଆମ୍ଭେମାନେ ଅତିଥି ହୋଇଗଲୁଁ । କିଏ ଜଣେ ଆଣି ସିଗାରେଟ ଗୋଟାଏ ପ୍ୟାକେଟ ଥୋଇଲେ, କିଏ ଗୋଟାଏ ଦିଆସିଲି । ବେଶ୍ ରୁଚିକର

ଖଇ ଥୋଇଲେ ଏବଂ ତା'ପରେ ତୁହାକୁ ତୁହା ଆସିଲା ଅଛ ଆମିଷ ଗନ୍ଧ ବହଳିଆ, ନୀଳ ଏବଂ ହଳଦୀ ବର୍ଣ୍ଣର ଘହା । ଗୋଟିଏ ମାତ୍ର ବିଜୁଳି ଆଲୁଅର ବଲ୍‌ବ ବଦଳରେ ସମସ୍ତ ଦୋକାନ ଆଲୋକିତ କରି ଜଳିଉଠିଲା ଅନେକଗୁଡ଼ିଏ ବଲ୍‌ବ ।

ସେ ପର୍ଯ୍ୟନ୍ତ ବାଦ୍ୟଯନ୍ତ୍ର ହିଁ ଚାଲିଥାଏ । ଆମ ଆସିବା ଭିତରେ ଗାନ ବନ୍ଦ ହୋଇଯାଇଥାଏ । କିପରି ସେହି ଗାନ ଆରମ୍ଭ କରାଇବୁ ଏବଂ ଆଫଗାନିସ୍ଥାନର ବନ୍ଧୁମାନଙ୍କର ଅଯାଚିତ ଆତିଥ୍ୟର ଋଣ ବେଶି ନ ବଢ଼ାଇବୁ, ଏ ଚିନ୍ତାରେ ଆମ୍ଭେମାନେ ପକେଟରୁ ଦୁଇଟିଯାକ ଦୁଇଟଙ୍କିଆ ନୋଟ ବାହାର କରି ହୋଟେଲର ମାଲିକଙ୍କର ବେଦି ନିକଟକୁ ବାହାରିଗଲୁ । ସେଠାରେ ମୋର ସାଥୀ ତାଙ୍କର ଅଭିଜ୍ଞତାପୂର୍ଣ୍ଣ ଇସାରା ଏବଂ ଭାଷାରେ ବୁଝାଇଲେ ଯେ ଆମ୍ଭେମାନେ ଗୀତ ଶୁଣିବାକୁ ଆସିଛୁଁ । ସେଠାରେ ସମବେତ ନାଗରିକମାନଙ୍କ ଅଭ୍ୟର୍ଥନାରେ ସେମାନଙ୍କୁ ଧନ୍ୟବାଦ ଦେଉଛୁଁ । ଆମ୍ଭମାନଙ୍କୁ ସେମାନଙ୍କର ଭାଷା ଜଣା ନଥିଲେ ମଧ୍ୟ ଆମେ ତାଙ୍କ ଭିତରୁ ଜଣେ ଜଣେ; ଆଫଗାନ୍ ଆଉ ଭାରତୀୟ ଭାଇ ଭାଇ ।

ଏସବୁ କଥାବାର୍ତ୍ତାରେ ବେଶି କିଛି ଫଳ ଫଳିଲା ନାହିଁ । କିନ୍ତୁ ଯେତେବେଳେ ମୋର ସୁମିଷ୍ଟ କଣ୍ଠ-ସଙ୍ଗୀତଜ୍ଞ ସାଥୀ ଗୋଟିଏ ଗୀତ ଆରମ୍ଭ କଲେ ଏବଂ ନିଜେ ହାରମୋନିୟମ୍ ଧରି ବଜାଇବାକୁ ଲାଗିଲେ, ଉପସ୍ଥିତ୍ ଆଫ୍‌ଗାନ୍ ନାଗରିକଙ୍କ ଭିତରେ ତୁମୂଳ ଉଲ୍ଲାସ ଏବଂ ସାଧୁବାଦ ଶୁଣାଗଲା ଏବଂ ତା'ପରେ ସମସ୍ତ ସମ୍ଭ୍ରମ ଆଉ ଅପରିଚୟର ବନ୍ଧ ଭାଙ୍ଗିଗଲା । ଗୋଟିକ ପରେ ଗୋଟିଏ ଆଫଗାନ୍ ଚଉକିରୁ ଉଠି ଗୀତ ଗାଇବାକୁ ଲାଗିଲେ । ବାଦ୍ୟଯନ୍ତ୍ରର ଛନ୍ଦ ବା ବେଛନ୍ଦର ବିଚାର ରହିଲା ନାହିଁ । ସମସ୍ତେ ଯେପରି ଏହି ଅଦ୍ଭୁତ ମୁହୂର୍ତ୍ତକୁ ଅପେକ୍ଷା କରୁଥିଲେ । ଯେପରି ସାରା ଗନ୍ଧର୍ବପୁରୀରେ ରାତ୍ରି ପାହିଗଲା, ସେଭଳି ଅସଂସ୍କୃତ, ଅବିନ୍ୟସ୍ତ ପଦ୍ୟାବଳୀର ସ୍ରୋତ ଜଣେ ଜଣେ କିମ୍ବା ଦଳେ ଦଳେ ଗାଇବାକୁ ଲାଗିଲେ । ଗୀତ ବା କଳାର ମାତ୍ରା ସେଥିରେ ଯେତେ ନଥିଲା, ସେତେ ଥିଲା ଆନନ୍ଦ ଏବଂ ଉତ୍ସାହ ।

ବୋଧ ହୁଏ ସେଇଠି ଆମର ରାତି ପାହିଥାନ୍ତା; କାରଣ ଆମେ ଉଲଙ୍ଗ ଆଫଗାନ୍‌ର ଜୀବନର ଏକ ଘୂର୍ଣ୍ଣୀ ଭିତରେ ପ୍ରବେଶ କରିଯାଇଥିଲୁଁ । ଏ ଜୀବନ ଖୁବ୍ ସମ୍ଭ୍ରାନ୍ତ, ଧନାଢ୍ୟ ଜୀବନର ପରିପାଟୀରେ ଭରି ନଥିଲା । ଆଫଗାନ୍ ଶ୍ରମିକ ବା ସାଧାରଣ ସମ୍ଭ୍ରାନ୍ତତାର ନାଗରିକ ପାଖ ପଶିବାଭଳି ସୁଯୋଗ ପାଇ ନାହିଁ । ତେଣୁ ତାର ସଂସ୍କୃତି ଭିତରେ ମଧ୍ୟ ସେସବୁ ନାହିଁ, ତେଣୁ ଏହା ଆମପ୍ରତି ହାନିକର ଏବଂ ରୁଚିବିରୋଧୀ ନଥିଲା ।

କହିବାକୁ ଭୁଲିଯାଉଛି, ଏ ଭିତରେ ଆମ୍ଭେମାନେ ଆମର ଦୁଇଟି ଦୁଇଟଙ୍କିଆ ନୋଟ ଘ୍ହାଦୋକାନର ମାଲିକଙ୍କ ହାତକୁ ବଢ଼ାଇଦେଇଥିଲୁ । ଏହା ଦେବୁ କି ନାହିଁ, ତାହାପାଇଁ ଆମକୁ କମ୍ ଆଲୋଚନା କରିବାକୁ ପଡ଼ି ନାହିଁ । ତଥାପି ଆମେ କହିଲୁ, ଏ ଦୁଇଟି ନୋଟ ଆମର ଆଫଗାନିସ୍ଥାନ ଆସିଥିବାର ସ୍ମାରକରୂପେ ସେ ରଖନ୍ତୁ । ସେମାନଙ୍କ ଭିତରେ ତୁମୁଳ ହର୍ଷରୋଳ ଉଠିଲା; କାରଣ ଭାରତୀୟ ମୁଦ୍ରାର ଖାତିର ଆଫଗାନିସ୍ଥାନରେ ଅତ୍ୟନ୍ତ ଅଧିକ । ଏକ୍‌ସ୍‌ଚେଞ୍ଜ ରେଟ୍‌ଠାରୁ ଆହୁରି ଅଧିକ ଆଫଗାନ୍ ମୁଦ୍ରା ଦେଇ ମଧ ସେମାନେ ଭାରତୀୟ ମୁଦ୍ରା ନେବାକୁ ଘ୍ହାନ୍ତି । ବିଶେଷତଃ ପାକିସ୍ଥାନ ସହିତ କଳହ ହେଲାପରେ ଭାରତ ହିଁ ଆଫଗାନିସ୍ଥାନର ବାଣିଜ୍ୟର ଏକମାତ୍ର ଅବଲମ୍ବନ କହିଲେ ଚଳେ । ତେଣୁ ସେମାନଙ୍କର ଆମଠାରୁ କିଛି ନ ନେବାର ଇଚ୍ଛା ଥିଲେ ମଧ ଭାରତୀୟ ଦୁଇ ଦୁଇଟା ନୋଟର ଲୋଭ ସେମାନେ ସମ୍ବରଣ କରିପାରିଲେ ନାହିଁ । ଆଫଗାନିସ୍ଥାନ ଗଲାବେଳେ ଭାରତୀୟ ପଚ୍ଚଶ ଟଙ୍କାରୁ ଅଧିକ ନେବାର ଯେଉଁ କଟକଣା ଅଛି, ତାହାର କାରଣ ଏଇଠି ଆମେ ଜାଣିପାରିଲୁ ।

ସେଇଠି ଆମର ରାତି ପାହିଥାଆନ୍ତା; କିନ୍ତୁ ଆମକୁ ଖୋଜି ଖୋଜି ହୋଟେଲର ମ୍ୟାନେଜର ସେଠାରେ ହଜାର ହେଲେ । ଆମ୍ଭେମାନେ ସ୍କୁଲ ବୋଡ଼ିଂରୁ ବିନା ଅନୁମତିରେ ରାତିରେ ବାହାରକୁ ଯାଇଥିବା ଅପରାଧୀ ଛାତ୍ରଭଳି ନିଜକୁ ଅପରାଧୀ ମନେ କଲୁ । ତେଣେ ତାଙ୍କର ସେତେବେଳକୁ ପିଣ୍ଡରେ ଆଉ ପ୍ରାଣ ନାହିଁ । "ଆଫଗାନିସ୍ଥାନ ସରକାରୀ ହୋଟେଲରୁ ଦୁଇଜଣ ଭାରତୀୟ ରାତିରେ ନିଦରେ ଶୋଇ ସାରିବାପରେ ସେମାନଙ୍କ ବିଛଣାରୁ କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ ଏବଂ ତା'ପରେ ସେମାନଙ୍କର ମୃତଦେହ ଉସ୍‌ମାନ ବଜାରର ନଇନ୍‌ଯୋଡ଼ିରେ ପଡ଼ିଥିବାର ଦେଖାଗଲା" – ଏଭଳି ଯଦି ଗୋଟାଏ ଖବର ଦୁଇ ଦିନ ପରେ ପୃଥବୀର ଖବରକାଗଜମାନଙ୍କରେ ବାହାରେ, ତେବେ ମେନେଜର ବିଘ୍ରାଙ୍କର ଦଫା ରଫା ହୋଇଯାଇଥାଆନ୍ତା ।

ଆମେରିକାର ସିନେମା ଏବଂ ଗୋଏନ୍ଦା ପୋଥି ପଢ଼ି ପଢ଼ି ତାଙ୍କର ମୁଣ୍ଡରେ ଏପରି ସବୁ ପାପ ଛୁଇଁଛି ଯେ ଯେତେବେଳେ ସେ ଦରଓ୍ୱାନଠାରୁ ଶୁଣିଲେ ଆମ୍ଭେମାନେ ତା'ର ବାରଣ ନ ମାନି ବାହାରିଯାଇଛୁଁ, ସେତେବେଳେ ଧାରଣା କରିନେଲେ ଯେ ଆମ୍ଭେମାନେ ଗୋଟାଏ କୌଣସି ଭୀଷଣ ଦଙ୍ଗାହାଙ୍ଗାମାରେ ପଡ଼ିଯାଇଛୁଁ ଏବଂ ତାହା ଫଳରେ ଭୟଙ୍କର ଆନ୍ତର୍ଜାତିକ ପ୍ରତିକ୍ରିୟା ଘଟିଯାଇପାରେ । ଏହିପ୍ରକାର ତାଙ୍କର କଳ୍ପନାକୁ ଖୋରାକ୍ ଯୋଗାଇଲା ଆମ ଦୁହିଁଙ୍କର ବେଶଭୂଷା ଏବଂ ରୂପ। କହିବାକୁ ଭୁଲିଯାଇଥିଲି ଯେ ଦିଲ୍ଲୀର ଅସହ୍ୟ ଗରମରେ ଆମ ଦୁହିଁଙ୍କ ମୁହଁରେ ଗୁଡ଼ାଏ ବ୍ରଣ ବାହାରିଥିଲା ତାଙ୍କର କପାଳରେ ଆଉ ମୋର ନାକ ଉପରେ । ତେଣୁ ଆମେ ଦୁହେଁ

କାବୁଲରେ ମଧ୍ୟ ଔଷଧ ଲଗାଇ ଯୋଡ଼ାଏ ପଟି ବାନ୍ଧିଥିଲୁ । ସେହି ପଟିଯୋଡ଼ିକ କୌଣସି ମାର୍‌ପିଟ୍‌ରେ ଯୋଗ ଦେଇ ଫେରିଥିବା ଦୁଇଜଣ ଲୋକଙ୍କର କ୍ଷତସ୍ଥାନର ପଟିପରି ଦିଶୁଥିଲା । ମେନେଜର ଆମ୍ଭମାନଙ୍କୁ ସେହି ଘ୍ରହା ଦୋକାନରେ ଠାବ କରି ଆମ୍ଭମାନଙ୍କର ମୁଣ୍ଡରେ ଭିଡ଼ାହୋଇଥିବା ପଟିର ହେତୁ ପଗ୍ଭରିଲେ । ଆମ୍ଭେମାନେ ତାଙ୍କର ତଟସ୍ଥଭାବ ଦେଖି ହସି ହସି ବେଦମ୍ ହେଲୁ ।

ତା'ପର ଦିନ ଶୁଖିଲା ଏବଂ ପିପାସିତ କାବୁଲର ଯତ୍ନରକ୍ଷିତ ଶ୍ୟାମଳ ଅପ୍ରଶସ୍ତ ଉପତ୍ୟକା ଛାଡ଼ି ଆମ୍ଭେମାନେ ସୋଭିଏଟ୍ ଦେଶର ଉଡ଼ାଜାହାଜରେ ପଶ୍ଚିମ ଅଭିମୁଖରେ ବାହାରିଲୁଁ । ଆଗରେ ହିନ୍ଦୁକୁଶର ପଚିଶ ହଜାର ଫୁଟ ଶୃଙ୍ଗମାଳା । ଏହାକୁ ପାର ହେଲେ ହିନ୍ଦୁକୁଶର ସେପାରିରେ ଆମୁଦରିଆ ନଦୀକୁ ଆମ୍ଭେମାନେ ଭେଟିବୁଁ । ଆମୁଦରିଆ ହିଁ ଆଫଗାନିସ୍ଥାନ ଏବଂ ତାଜିକ୍‌ସ୍ଥାନର ସୀମା ।

କେବଳ ଦୁଇଟା ଭୂଗୋଳର ସୀମା ନୁହେଁ – ଇତିହାସର ଏବଂ ଯୁଗର ଦୁଇଟା ସୀମା । ସେହି ନୂତନ ଇତିହାସ ଗଢୁଥିବା ଦେଶର ପ୍ରତୀକ୍ଷାରେ ଆମ୍ଭେମାନେ ବାହାରିଛୁଁ । କିଛି କାଳ ପରେ ହିନ୍ଦୁକୁଶ ଆମକୁ ବାଟ ଜଗିଲା । ଏହାକୁ ଡେଇଁ ଯିବାକୁ ପଡ଼େ । ଏହାର ଉଚ୍ଚ ଶୃଙ୍ଗ ଉପରେ ଯେଉଁ ପବନ ଆମ ନାକରେ ବାଜିବ ସେଥିରେ ଆମର ଜୀବନ ରଖିବା କଷ୍ଟ । ସେ ପବନ ଏଡ଼େ ପାତଳା ! ଉଡ଼ାଜାହାଜର ପରିଚର୍ଯ୍ୟାକାରିଣୀ ଆମ୍ଭମାନଙ୍କର ପ୍ରତ୍ୟେକଙ୍କର ନାକରେ ଅକ୍‌ସିଜେନ୍ ଟିଉବ୍ ଲଗାଇଦେଲେ । ପ୍ରାୟ ଦେଢ଼ ଘଣ୍ଟା କାଳ ବରଫର ଶେଯ ଏବଂ ତାହାର ବହୁତ ତଳେ ଘନପୁଞ୍ଜ ମେଘକୁ ରଖି ଖାଲି ଶ୍ୱେତ ବରଫର ସାଗର ଉପରେ ଭାସମାନ ପୋତପରି ଆମରି ଉଡ଼ାଜାହାଜ ଗତି କରିବାରେ ଲାଗିଲା ।

ଏହି ମହାଶୂନ୍ୟ ପଥରେ ନାକରେ ଅଦ୍ଭୁତ ମୁଖା ପିନ୍ଧି ଆମେ ଯାତ୍ରୀ ଏବଂ ବିମାନ-ରକ୍ଷକ-ରକ୍ଷିକା ଇତ୍ୟାଦି ମିଶି ପ୍ରାୟ ୧୫ ଜଣ ନୀରବଭାବରେ ପୁନର୍ବାର ମନୁଷ୍ୟର ଲୋକାଳୟକୁ ପ୍ରତୀକ୍ଷା କଲୁଁ । ଉଡ଼ାଜାହାଜର ଅଲଟୋମିଟର ଯେତେବେଳେ ସତେଇଶ ହଜାର ଫୁଟକୁ ଛୁଇଁଲା, ସେତେବେଳେ ମୋର ଆଖି ପହଁରିଲାପରି ହୋଇ ବନ୍ଦ ହୋଇଗଲା ।

ଯେତେବେଳେ ନିଦ ଭାଙ୍ଗିଲା, ଗ୍ଭହିଁ ଦେଖିଲି ଅଲଟୋମିଟର ପନ୍ଦର ହଜାର ଫୁଟକୁ ଗ୍ଭଲିଆସିଛି ଏବଂ ଆଗରେ ଶତ ଶତ ବାଦାମୀ ବର୍ଣ୍ଣର ବେଗବାନ ଅଶ୍ୱର ପୁଚ୍ଛପରି ଫେନିଳ ଜଳରାଶି ଧରି ଅନୁଚ୍ଚ କୂଳ ଉପରେ ରେଳଗାଡ଼ି ପଡ଼ିଗଲାପରି ଆମୁଦରିଆ ମାଡ଼ିଗ୍ଭଲିଛି । ଆମ୍ଭେମାନେ ସୋଭିଏଟ୍ ସୀମାର ନିକଟବର୍ତ୍ତୀ ହୋଇଛୁ । ପଛରେ ପଡ଼ିରହିଛି ଏସିଆର 'ହତଭାଗିନୀ କନ୍ୟା' ।

- ୦ -

# ନବଯୌବନର୍ ଦେଶ

ହିନ୍ଦୁକୁଶ ପାହାଡ଼ର ପଚିଶ ହଜାର ଫୁଟ୍ ସେପଟେ। ଏ ଜାଗାକୁ ଆସିବାକୁ ହେଲେ ପୃଥିବୀର ଛାତ ପାରହେବାକୁ ପଡ଼େ । ସେଇ ଜାଗାର କାହାଣୀ ଶୁଣିଥିଲି କେଉଁ ପିଲାଦିନରୁ । କାଠଯୋଡ଼ିକୂଳର ସ୍କୁଲଘରେ କେବେ ଅଳ୍ପ ଦାଢ଼ିବାଲା ମୌଲବୀ ପଢ଼ାଇଥିଲେ, "ପୃଥିବୀର ଛାତ କାହାକୁ କହନ୍ତି ?" କହିଥିଲି, "ପାମୀର ମାଳଭୂମିକୁ ।"

ଏବେ ସେହି ପାମୀର ପାରିହୋଇ ଆସିଛି । ଆସିଛି ହଜିଲା ଦିଗ୍‌ବଳୟର ଖୋଜରେ।

୧୯୫୫ ସାଲ ଜୁନ ମାସ ୧୬ ତାରିଖର ଭୋରରେ ନିଦରୁ ଉଠି ବସିଥିଲି । ନିଦ ବୋଲି କହିଲେ ଭୁଲ କରିବି – ତନ୍ଦ୍ରାରୁ ଉଠିଥିଲି । କାରଣ ଶୋଇଲାବେଳକୁ ରାତି ଦୁଇ ବାଜିସାରିଥିଲା। ମୋର କୋଠରୀରେ ଥିବା ଆଉ ଜଣକ ସାଥୀ ହେଉଛନ୍ତି ଆମର ଦୋଭାଷୀ, ମସ୍କୋରୁ ଆମକୁ ପାଛୋଟି ନେବାକୁ ଆସିଥାଆନ୍ତି । ତାଙ୍କ ସାଙ୍ଗରେ ଆଉ ଦୁଇଜଣ ମସ୍କୋବାଲା ମଧ୍ୟ ଥାଆନ୍ତି । ଶେଷୋକ୍ତ ଦୁଇଜଣ ସ୍ତ୍ରୀଲୋକ । ଜଣଙ୍କର ନାଁ ଲୁସି; ଆଉ ଜଣକ ନାମ ମ୍ୟାଡାମ୍ ଗାଲିନା । ଉଭୟଙ୍କ ବିଷୟରେ ପରେ ପ୍ରସଙ୍ଗ କ୍ରମେ କହିବି ।

ହଁ, ସେଦିନ ରାତିରେ ବହୁତ ଡେରିଯାଏ ମୁଁ ଶୋଇ ନଥିଲି । ମୋର ଦୋଭାଷୀ ସାଥୀ – ତାଙ୍କ ନାଁ ହେଉଛି ଗ୍ଲିସେବ୍, ଆଗରୁ ଶୋଇପଡ଼ିଥାଆନ୍ତି । ବାହାରେ ତାଜିକ୍‌ସ୍ଥାନର ରଜତ ଜ୍ୟୋସ୍ନାରେ ସଂସାର ବୁଡ଼ିଯାଇଥାଏ; କିନ୍ତୁ ମୋ ଆଖିରେ ନିଦ ନଥାଏ । ଏପରି ଗୋଟିଏ ରାତିରେ ଏପରି ଗୋଟିଏ ପରିବେଶକୁ ମୋର ପ୍ରାଣର ପ୍ରତି ରନ୍ଧ୍ରେ ରନ୍ଧ୍ରେ ଅନୁଭବ କରିବାପାଇଁ ମୁଁ ବ୍ୟାକୁଳ ହେଉଥାଏ ।

ମୋର ମନେ ନାହିଁ କେତେବେଳେ ଗ୍ଲିସେବ୍ ତାଙ୍କର ଗାଢ଼ ନିଦରୁ ଜାଗିଉଠିଛନ୍ତି । ମୁଁ ଟେବୁଲ୍ ପାଖରେ ବସି ଲେଖୁଛି – ଦୁଇ ପାଖରେ ରାଶି ରାଶି ଫୁଲ । ଦୁଇଟି ଅନିନ୍ଦ୍ୟସୁନ୍ଦରୀ ରମଣୀ ମୂର୍ତ୍ତିର ଛନ୍ଦିତ ହାତରୁ ଗୋଟିଏ ଟେବୁଲ ଲ୍ୟାମ୍ପର ପ୍ରଦୀପଭିତରୁ ବିଜୁଳିବତୀ ଜଳୁଛି । ଝରକା ସେପଟେ ଅଶ୍ରୁମୟୀ ଉଇଲୋ ଲତାର ଦୁଇଟି ଅନାହୂତ ଶାଖା ପ୍ରେମିକାର ଅଙ୍ଗୁଳିପରି ରମଣୀୟ ଅରଗାଣ୍ଡି କନାର ଝରକା

ପରଦାକୁ ଅସ୍ୱୀକାର କରି ଘରଭିତରେ ପ୍ରବେଶ କରିଛି । ଡ୍ରେସିଂ ଟେବୁଲର ଦର୍ପଣଟିକୁ ମଧ୍ୟ ଦୁଇଟି ନିର୍ଜୀବ କାଠଫ୍ରେମ ବାନ୍ଧି ନାହିଁ । ଦୁଇ ପ୍ରସାରିତ ବାହୁରେ ଦୁଇଜଣ ସାକ୍ଷାତ୍ ନାରୀ ଆକାରରେ ଦଣ୍ଡାୟମାନା ରମଣୀଙ୍କର ମର୍ମରମୂର୍ତ୍ତି ଦର୍ପଣଟିକୁ ବାମ ଏବଂ ଦକ୍ଷିଣ ହାତରେ ଟେକିଧରିଛନ୍ତି ଏବଂ ଅନ୍ୟ ଦୁଇଟି ମୁକ୍ତ ହାତରେ ଗୋଟିଏ ଗୋଟିଏ ଟ୍ରେ'ରେ ପ୍ରସାଧାନ-ସାମଗ୍ରୀ ସଜ୍ଜିତ କରି ରଖିଛନ୍ତି । ହଠାତ୍ ଗ୍ୱଲିସେବ୍ କହିଲେ, "ସାଥି, ଆପ୍ କ୍ୟା କରତେ ହେଁ ।"

ମୁଁ ଚକିତ ହୋଇ ତାଙ୍କ ଆଡ଼େ ଚାହିଁଲି । ଗ୍ୱଲିସେବ୍ ଉଠି ପଡ଼ିଛନ୍ତି ! – "ଅବ୍ ଦେଶ ତ ଛୋଡ଼ କର ଆୟେ ହେଁ । "ଅବ୍ କ୍ୟା ଘର ୟାଦ୍ ଆତା ହେ, ଘର୍‌ପର୍ ଖତ୍ ଭେଜ୍‌ତେ ହେଁ ।"

ମୁଁ ଅପ୍ରତିଭଭାବରେ ତାଙ୍କ ଆଡ଼କୁ ଚାହିଁଲି । କହିଲି,

"ଖତ୍ ନେହିଁ ।"

"ତବ୍ କ୍ୟା ଲିଖ୍‌ତେ ହେଁ ?"

"ଏକ୍ କବିତା ଲିଖ୍‌ତା ହୁଁ ।"

"କବିତା ଲିଖତେ ହେ ! କିସ୍‌କେ ବାରେ ମେଁ ?"

"ହିନ୍ଦୁସ୍ଥାନ ଅଉର ତାଜିକ୍‌ସ୍ଥାନ କୀ ଦୋସ୍ତି କୀ ବାରେ ମେଁ ।"

ସେଠୁ ଗ୍ୱଲିସେବ୍ କୌତୂହଳୀଭାବରେ ଟେବୁଲପାଏ ଆସିଲେ । ଯୁବକ ଲୋକ, ବୟସ ୨୪।୨୫ ହେବ, ଗଲା ଦିନଟିଯାକ ସେ ସୋଭିଏଟ୍ ଦେଶର ନାନା କଥା ଆମକୁ କହିଛନ୍ତି ହିନ୍ଦୀଭାଷାରେ । ତାଙ୍କର ହିନ୍ଦୀ ଉଚ୍ଚାରଣ ସାହେବୀ; ଲକ୍ଷ୍ୟ ନକଲେ ହିନ୍ଦୀ କହୁଛନ୍ତି ବୋଲି ଜାଣିହେବନି । ତେଣୁ ସେହି ହିନ୍ଦୀଭାଷାରେ ସେ ଯେତେବେଳେ ଗତ ଦିନଟିଯାକ ଆମକୁ ନାନା ବିଷୟରେ ବଖାଣୁ ଥାଆନ୍ତି, ସେତେବେଳେ ଆମର ବାରଜଣିଆ ଡେଲିଗେସନ ଭିତରୁ ଅନେକେ ତାଙ୍କୁ "ବାକ୍ୟବାଗୀଶ" ବୋଲି ଥଟ୍ଟା କରୁଥାଆନ୍ତି – ବିଶେଷତଃ ବଙ୍ଗଳାର ବ୍ୟକ୍ତିମାନେ ।

ଗ୍ୱଲିସେବ୍ ମୋତେ ବଡ଼ ଅଡୁଆରେ ପକାଇଦେଲେ । ରାତି, ପୁଣି ଜ୍ୟୋତ୍ସ୍ନା-ରାତି, ସମସ୍ତ ଘରଟି ନିଶୂନ । ସେହି ବଙ୍ଗଳାର ଅନ୍ୟାନ୍ୟ ସାତୋଟି କୋଠରୀରେ ମୋର ଅନ୍ୟ ଏଗାର ଜଣ ସାଥୀ ଏବଂ ଆମର ସତ୍କାରକମାନେ ଗାଢ଼ ନିଦ୍ରାରେ ଶୋଇଛନ୍ତି । ଆମର ଘରଟି ଯେଉଁ ବଗିଚ୍ଚ ଭିତରେ ଅବସ୍ଥିତ ଥିଲା, ସେହି ବଗିଚ୍ଚରେ ଦିନବେଳର ମୁଖରିତ ପକ୍ଷୀର କାକଳି ମଧ୍ୟ ପୂରାପୂରି ନିଶୂନ ହୋଇଯାଇଛି ।

ଫଳଭାରରେ ନଇଁପଡ଼ିଥିବା ପିଅର, ଆପ୍ପୁଲ, ରାପସବରି, ଆଲୁବୋଖରା ପ୍ରଭୃତି ଗଛଗୁଡ଼ିକର ଘଞ୍ଚ ଶାଖା ଗହଳଭିତରୁ ଚନ୍ଦ୍ରକିରଣ ଝରି ଝରି ମାଟିରେ ଠାଏ-ଠାଏ ବିଚିତ୍ର ପ୍ୟାଟର୍ଣ୍ଣ ସୃଷ୍ଟି କରିଛି । ଏଭଳି ନିସ୍ତବ୍ଧ ରାତିରେ ମଣିଷର କଥାବାର୍ତ୍ତା ବଡ଼ କର୍କଶ ଆଉ ଅଠିକଣା ଶୁଭନ୍ତା । ମୁଁ ନୀରବ ହୋଇ ରହିଲି ।

ତା' ଛଡ଼ା ମୁଁ ଯାହା ଲେଖୁଥିଲି, ତାହା କାହାରିକୁ ପଢ଼ାଇବା ବା ପ୍ରକାଶ କରିବାପାଇଁ ନୁହେଁ । ମୋର କ୍ଷୁଦ୍ର ଜୀବନର ଗୋଟିଏ ଅପାସୋରା ଅନୁଭୂତିର ରାତି ସେଇଟା । ତାକୁ ପୂର୍ଣ୍ଣଭାବରେ ସ୍ମରଣୀୟ ରଖିବାପାଇଁ ମୁଁ ଲେଖୁଥିଲି । ଯେପରି ସେହି ଲେଖାରେ ମୁଁ ମୋର ପ୍ରାଣର ଗଭୀର କୃତଜ୍ଞତା ଏବଂ ସାର୍ଥକତା ପ୍ରକାଶ କରିପାରିବି । ଯେପରିକି ସେହି ପ୍ରକାଶର ଆନନ୍ଦରେ ମୁଁ ମଧ ସନ୍ତୁଷ୍ଟ ହୋଇ ଶୋଇପଡ଼ିବି । ଗ୍ଲିସେବ୍ ମୋତେ ବହୁତ ବାଧ କଲାରୁ ମୁଁ କବିତାଟିକୁ ଇଂରାଜୀ କରି ତାଙ୍କୁ ବୁଝାଇଦେଲି । ଓଡ଼ିଆ କବିତା, ପୁଣି ଅସମ୍ପୂର୍ଣ୍ଣ । ଅସମ୍ପୂର୍ଣ୍ଣ କବିତାକୁ ବୁଝାଇବାପାଇଁ ନିଜେ କବିକୁ କେତେ ଲଜ୍ଜିତ ହେବାକୁ ପଡ଼େ, ସେ କଥା ମୁଁ ବା କ'ଣ କହିବି ? ତଥାପି ଗ୍ଲିସେବ୍ ନଛୋଡ଼ବନ୍ଦା । ମୁଁ ଯାହା ବୁଝାଇଲି, ସବୁତକ ସେ ଟିପି ନେଇଗଲେ ।

ଷ୍ଟାଲିନାବାଦ୍‌ରେ ଆମର ଦ୍ୱିତୀୟ ଦିନର ଭୋର ହେଲା । ଗୋଟିଏ ଦିନ କଟିଯାଇଛି । ଜୁନ୍ ମାସ ୧୬ ତାରିଖରେ ଆମ୍ଭେମାନେ କାବୁଲ୍‌ରୁ ସକାଳ ୮ଟାବେଳେ ବାହାରି ଦିନ ୧୨ଟା ବେଳେ ଷ୍ଟାଲିନାବାଦରେ ପହଞ୍ଚିଥିଲୁ । ଉଡ଼ାଜାହାଜ ଷ୍ଟେସନରେ ଷ୍ଟାଲିନାବାଦର ଅଗଣିତ ଜନତା ଆମକୁ ଅପେକ୍ଷା କରିଥିଲେ ସୋଭିଏଟ୍ ତାଜିକ୍‌ସ୍ଥାନ ସାଧାରଣତନ୍ତ୍ରର ପ୍ରଧାନ ପ୍ରଧାନ ନାଗରିକ, ସଂସ୍କୃତି ବିଭାଗର ମନ୍ତ୍ରୀ, ରାଜକର୍ମଚାରୀ ଓ ବିଭିନ୍ନ ଅନୁଷ୍ଠାନମାନଙ୍କର ହଜାର ହଜାର ବାଳକବାଳିକା ।

ଆଗରୁ କହିଛି (ଲେଖକର 'ଏସିଆର ନିଦ୍ରିତା ରାଜକନ୍ୟା' ଦେଖନ୍ତୁ), ଆମର ପୂର୍ବ ପ୍ରସ୍ତାବ ଅନୁସାରେ ସମସ୍ତ ଶାନ୍ତି-ଡେଲିଗେସନ ତାଜିକ୍‌ସ୍ଥାନ ବାଟଦେଇ ଯିବାର ଥିଲା । ଆମର ତେଣୁ ପ୍ରସ୍ତାବିତ ସଂଖ୍ୟା ଥିଲା ୬୦ ଜଣ । ସେଥିପାଇଁ ଉଡ଼ାଜାହାଜ ବନ୍ଦରକୁ ଆମପାଇଁ ସୋଭିଏଟ୍‌ର ସୁନ୍ଦର ଲିମୋସିନ ଗାଡ଼ି, ଜିପ୍, ମୋଟର କାର୍‌ରୁ ୧୯ ଗୋଟି ଆସିଥିଲା । ଏହି ଗାଡ଼ିଗୁଡ଼ିକ ରୁଷିଆର ସବୁଠାରୁ ବଡ଼ ଗାଡ଼ି । ଜିପ୍ ଗାଡ଼ିଭଳି ଏହି ଗାଡ଼ିର ବାଁପଟେ ଡ୍ରାଇଭର ବସନ୍ତି । ଡ୍ରାଇଭର ପାଖରେ ଦୁଇଜଣ ଲୋକ ବସିବା ଲାଗି ଯଥେଷ୍ଟ ଜାଗା ଥିଲେ ବି କେବଳ ଜଣେ ବସିଯିବା ନିୟମ ଅଛି । ଅକ୍ଳେଶରେ ପଛ ସିଟ୍‌ରେ ଚାରିଜଣ ବସିପାରିବେ । ସେହି ଚାରିଜଣଙ୍କ ଛଡ଼ା ଡ୍ରାଇଭର ସିଟ୍‌ର ପଛର କାନ୍ଥରେ ଦୁଇଟି ଫୋଲ୍‌ଡ଼ିଂ ଚେଆର ଅଛି । ଏଥିରେ ପଛ ସିଟ୍‌ର

ସାମାନାରେ ଦୁଇଜଣ ବସି ଯାଇପାରିବେ । ଏପରି ସମୁଦାୟ ଗାଡ଼ିରେ ସାତଜଣ ଲୋକ ଭଲଭାବରେ ବସିଯିବେ । ଯେଉଁମାନେ ଗତ ୧୯୫୫ ମସିହା ଡିସେମ୍ବର ମାସରେ ଦିଲ୍ଲୀରେ ଅନୁଷ୍ଠିତ ହୋଇଥିବା ଶିଳ୍ପ ପ୍ରଦର୍ଶନୀକୁ ଯାଇଥିବେ, ସେମାନେ ସୋଭିଏଟ୍ ପାଭିଲିଅନର ବାହାର ପଟେ ଏହି ବିଶାଳକାୟ ସୁଦୃଶ୍ୟ ମୋଟର ଗାଡ଼ି ନିଶ୍ଚୟ ଦେଖିଥିବେ ।

ଆମର ପ୍ରସ୍ତାବିତ ସଂଖ୍ୟା ଥିଲା ୬୦ ଜଣ; କିନ୍ତୁ ଆମେ ଆସିଛୁ ଜମା ବାରଜଣ । ଆମ ବାରଜଣଙ୍କ ଲାଗି ୧୯ଟି ଏପରି ବିଶାଳକାୟ ମୋଟରଗାଡ଼ି । ଯାହା ହେଉ, ଗୋଟାଏ ବଡ଼ ପଟୁଆର ପରି ଆମେ ଉଡ଼ାଜାହାଜ ଷ୍ଟେସନରୁ ବାହାରିଲୁ । ଉଡ଼ାଜାହାଜ ବନ୍ଦରରେ ବିଖ୍ୟାତ ତାଜିକ୍-କବି ମିର୍ଜାତୁର୍ସୁନ ବାଜେ ଆମର ପ୍ରଧାନ ଅଭ୍ୟର୍ଥକ ଥିଲେ । ସେ ଅଭ୍ୟର୍ଥନା କଲେ ଗୋଟିଏ ରମଣୀୟ କବିତାରେ । ଏହି କବି ଏଥିପୂର୍ବରୁ ଥରେ ଭାରତ ଆସିଛନ୍ତି ଏବଂ ଭାରତ ବିଷୟରେ ଗୋଟିଏ କବିତା ତାଜିକ୍-ଭାଷାରେ ଲେଖିଛନ୍ତି । ସେହି କବିତାଟି ଇଂରାଜିରେ ଅନୂଦିତ ହୋଇସାରିଛି । କବିତାଟିର ଇଂରାଜି ନାମ ହେଉଛି – "ବାଲାଡ୍ ଅଫ୍ ଇଣ୍ଡିଆ" ।

ଆମ୍ଭେମାନେ ଷାଠିଏ ଜଣ ନ ଆସି ବାରଜଣ ଆସିବା ଫଳରେ ଗୋଟିଏ ଲାଭ ହେଲା । ଷାଠିଏ ଜଣ ଆସିଥିଲେ ଆମ ସମସ୍ତଙ୍କ ରହିବାପାଇଁ ବୃଦ୍ଧ ଶ୍ରମିକମାନଙ୍କର ଗୋଟିଏ ବିଶାଳ ବିଶ୍ରାମ ଭବନରେ ବ୍ୟବସ୍ଥା ହୋଇଥାଆନ୍ତା । କିନ୍ତୁ ବାରଜଣଙ୍କ ପାଇଁ ଏତେ ବଡ଼ ବିରାଟ ହର୍ମ୍ୟ ଏକାବେଳକେ ଅନୁପଯୁକ୍ତ ଥିଲା । ତେଣୁ ଆମେ ପୂର୍ବର ଜଣେ ତାଜିକ୍ ସାମନ୍ତରାଜାଙ୍କର ଗୋଟିଏ ବଗିଚ୍ଚ-ଘରେ ରହିଲୁ । ଏହି ଘରେ ପ୍ରାକୃତିକ ସୌନ୍ଦର୍ଯ୍ୟ ଆଉ ବୈଜ୍ଞାନିକ ପ୍ରାଚୁର୍ଯ୍ୟର ଯେଉଁ ମନୋହର ସଂଯୋଗ ଆମେ ଦେଖିଲୁ, ତାହାର କିଛି ମୁଁ ଆଗରୁ ବ୍ୟକ୍ତ କରିଛି । ଯାହା ଅବ୍ୟକ୍ତ ରହିଗଲା, ତାହା କହିବାକୁ ମୋର ଭାଷା ନାହିଁ ।

ଉଡ଼ାଜାହାଜଘାଟିଠାରୁ ଆମର ନିର୍ଦ୍ଦିଷ୍ଟ ରହଣୀଜାଗାକୁ ଆସିଲାବେଳେ ପଥପାର୍ଶ୍ୱରେ ଧାଡ଼ି ଧାଡ଼ି ଦଣ୍ଡାୟମାନ ଉଚ୍ଛଳ ତାଜିକ୍ ଜନସାଧାରଣଙ୍କୁ ଦେଖି ଆମେ ପ୍ରଥମେ ଗୋଟିଏ ମାତ୍ର କଥା ସ୍ଥିର କରିନେଇଥିଲୁଁ । ଏଠାରେ କୌଣସି ଲୋକର ବୟସ କ'ଣ ଚାଳିଶରୁ ବେଶି ନୁହେଁ । ଯଦି ବା ଚାଳିଶରୁ ବେଶି, ତଥାପି ଯେପରି ମନେ ହୁଏ ଚାଳିଶରୁ ଅନେକ କମ୍ ।

ମନ୍ତ୍ରୀ, ରାଜକର୍ମଚାରୀ, କବି, କୋଠରକ୍ଷୀ, ଶ୍ରମିକ, ମାଷ୍ଟ୍ରାଣୀ, ଡାକ୍ତରାଣୀ, ପରିବେଷିକା ଆଉ ଡ୍ରାଇଭର ସମସ୍ତେ ଯେପରି ୨୫, ୩୦ ବର୍ଷରେ ରହିଯାଇଛନ୍ତି । ଏଇଟା ଏକ ନବଯୌବନର ଦେଶ ।

ଏହି ଦେଶର ପୁରୁଷ ଓ ନାରୀଙ୍କୁ ଦେଖି ମୋର ଗୋଟିଏ ବହୁ ବର୍ଷ ତଳର ପଢ଼ିଥିବା ବହି ମନେ ପଡ଼ିଗଲା । ବହିଟି ଲେଖିଛନ୍ତି ଇଂରାଜି-ଲେଖକ ଜେମସ୍ ବ୍ୟାରୀ । ତାଙ୍କ ବହିର ପ୍ରଧାନ ଚରିତ୍ର ହେଉଛି ପିଟର ପ୍ୟାନ୍ । ପିଟର ପ୍ୟାନ ଥିଲା ଏକ ଚିରନ୍ତନ ଯୁବକ; ଯିଏ ବୁଢ଼ା ହେବାକୁ ନାରାଜ ହୋଇଥିଲା । ସୋଭିଏଟ ଦେଶର ଏହି ଷ୍ଟାଲିନାବାଦରେ ଆମେ ଏପରି ଏକ ପିଟର ପ୍ୟାନର ଦେଶରେ ପହଞ୍ଚିଥିଲୁ ।

ତେବେ ଏଠାର ବୁଢ଼ାମାନେ ଗଲେ କୁଆଡ଼େ ? ଶୁଣିଲେ ଆଶ୍ଚର୍ଯ୍ୟ ଲାଗିପାରେ – ଏଠି ବୁଢ଼ାମାନେ ପାଠ ପଢୁଛନ୍ତି । ପୁଅ ଝିଅମାନେ ମାଷ୍ଟର-ମାଷ୍ଟ୍ରାଣୀ ଆଉ ବାପାମା'ମାନେ ହେଉଛନ୍ତି ଛାତ୍ରଛାତ୍ରୀ । କୋଠଗ୍ରାମରେ ସାଧାରଣତଃ କୃଷି ବିଭାଗର ବିଶାରଦ ହେଉଛନ୍ତି ପୁଅ ଆଉ ଝିଅମାନେ – ଯୁବକ ଓ ଯୁବତୀ । କିନ୍ତୁ ସାଧାରଣ କୋଠଗ୍ରାମୀ ହେଉଛନ୍ତି ବୟସ୍କ ଲୋକେ । ସେଥିପାଇଁ ପ୍ରାୟ ପ୍ରତ୍ୟେକ ଅନୁଷ୍ଠାନର ମୁଖ୍ୟ ହେଉଛନ୍ତି ପୁଅଝିଅ; ଆଉ ତାଙ୍କ କର୍ମୀ ହେଉଛନ୍ତି ତାଙ୍କର ବାପା, ମା, ମାମୁଁ, ମଉଳା, ମାଉସୀ ଇତ୍ୟାଦି । କେବଳ ଗୋଟିଏ କୋଠଗ୍ରାମର ଚେୟାରମ୍ୟାନଙ୍କୁ ଦେଖିଥିଲୁ । ତାଙ୍କର ଚନ୍ଦା ମୁଣ୍ଡ ଉପରେ ପଚାଶଥର ଖରାବର୍ଷା ଶୀତ କଟିଛି ବୋଲି ମନେ ହେଲା ।

ତାଜିକ୍‌ସ୍ଥାନ ଯେ ଆଗେ କିଛି ନଥିଲା, କେବଳ ୧୯୨୧ ମସିହାରୁ ତାହା ଯେ ଗୋଟାଏ ସଭ୍ୟ ଦେଶ ହୋଇଛି, ଏ କଥା ଅବଶ୍ୟ ନୁହେଁ । ମଧ୍ୟଏସିଆର ଯାଯାବର ଜାତିମାନଙ୍କର ଏହା ବାସସ୍ଥଳୀ ଥିଲା । ଆମୁଦରିଆ ଆଉ ସିରଦରିଆ ନଦୀରେ ଯେତେବେଳେ ଯଥେଷ୍ଟ ଜଳ ଥିଲା, ସେତେବେଳେ ଏହା ଉର୍ବର ଏବଂ ଶସ୍ୟଶ୍ୟାମଳ ଥିଲା; କିନ୍ତୁ ପରେ ଆମୁଦରିଆ ଆଉ ସିରଦରିଆ ପୋତି ହୋଇପଡ଼ିଲା । ଏହି ଅଞ୍ଚଳରେ କୃଷି-ସଭ୍ୟତା ପରିବର୍ତ୍ତରେ ଆଉ କୌଣସି ନୂତନ ସଭ୍ୟତା ଗଢ଼ିଉଠିଲା ନାହିଁ । ଆଗେ ଅବଶ୍ୟ ତାଜିକ୍‌ସ୍ଥାନ, ଉଜ୍‌ବେକିସ୍ଥାନ, କାଜାକ୍‌ସ୍ଥାନ ଏଭଳି ବିଭିନ୍ନ ରାଜ୍ୟ ନଥିଲା । ଏହି ନାମକରଣ ଏବେ ୧୯୨୧ ମସିହାରୁ ଆରମ୍ଭ ହୋଇଛି । ତେଣୁ ଏ ଅଞ୍ଚଳର ଲୋକେ କି ତାଜିକସ୍ଥାନ ବା କି ଉଜ୍‌ବେକିସ୍ଥାନ ଉଭୟେ ହାଫିଜ, ଓମାରଖାୟାମ୍‌ଙ୍କୁ ଆପଣା ଆପଣାର ଜାତୀୟ କବି ବୋଲି ମାନନ୍ତି ।

ହାଫିଜ୍ ବା ଓମାରଖାୟାମ୍ ତାଜିକ୍‌ସ୍ଥାନର କି ଉଜ୍‌ବେକିସ୍ଥାନର, ଏଥିପାଇଁ କନ୍ଦଳ ଲାଗେ ନାହିଁ ।

କିନ୍ତୁ ଆମ ଭାରତରେ ଦୁର୍ଭାଗ୍ୟର କଥା ଏତିକି ସଭ୍ୟତା ବା ସଂସ୍କୃତି ଘଟିନାହିଁ । ତେଣୁ ଆମ୍ଭେମାନେ ଜଣେ ପ୍ରାଚୀନ ଲେଖକ ବା କବିଙ୍କର ଜନ୍ମସ୍ଥାନ ନିରୂପଣପାଇଁ

ଏକାବେଳକେ ଗଳଦ୍‌ଘର୍ମ ହେଉଁ । କୌଣସି ପ୍ରକାରେ ତାଙ୍କର ଜନ୍ମସ୍ଥାନଟାକୁ ବର୍ତ୍ତମାନ ଗଠିତ କୌଣସି ରାଜ୍ୟର ସୀମାଭିତରେ ସାବ୍ୟସ୍ତ କରିଦେଲେ ଆମେ ଗୋଟାଏ ବଡ଼ ଦେଶପ୍ରେମର ବାହାଦୁରୀ ନେଉଁ । ଉଦାହରଣ ସ୍ୱରୂପ, ଜୟଦେବଙ୍କ କଥା ଧରାଯାଉ । ଜୟଦେବ ସଂସ୍କୃତରେ 'ଗୀତଗୋବିନ୍ଦ' ଲେଖିଥିଲେ । ତାଙ୍କର ଅନବଦ୍ୟ କାନ୍ତ ପଦ୍ୟାବଳି ଭାରତୀୟ ସାହିତ୍ୟର ଏକ ଅମୂଲ୍ୟ ସମ୍ପଦ । ସେହି ପଦ୍ୟାବଳିର ଲାଳିତ୍ୟ ଏବଂ ସଙ୍ଗୀତ-ଝଙ୍କାର ବିଷୟରେ ଗବେଷଣା ଏବଂ ସମାଲୋଚନା ହେଲେ ଆମର ଆଧୁନିକ କବିମାନେ ଅନେକ କଥା ଶିଖିପାରନ୍ତେ । କିନ୍ତୁ ଜୟଦେବଙ୍କ କବିତାପ୍ରତିଭା ବିଷୟରେ ଯେତେ ଆଲୋଚନା ନ ହୋଇଛି, ଏ ପର୍ଯ୍ୟନ୍ତ ଜୟଦେବ ଓଡ଼ିଶାର, ବିହାରର କି ବଙ୍ଗଳାର, ଏଥିପାଇଁ ତତୋଧିକ କଳିକନ୍ଦଳ ଚାଲିଛି । ଜୟଦେବଙ୍କର ଜନ୍ମସ୍ଥାନଟାକୁ ବ୍ରିଟିଶ ଅମଳର ବା ଆଜିର ସୀମାଭିତରେ ଥିବା ଗୋଟାଏ ଗାଁରେ ଥୋଇଦେଇ ପାରିଲେ ଯେପରି ଓଡ଼ିଆ, ବଙ୍ଗଳା ବା ବିହାରୀ ତାଙ୍କର ସବୁତକ କୃତିତ୍ୱର ଏକଚାଟିଆ ଦାୟାଦ ହୋଇଯାଆନ୍ତେ ।

ସୋଭିଏଟ୍ ଦେଶର ଉଜ୍‌ବେକିସ୍ଥାନ ଓ ତାଜିକସ୍ଥାନ ଉଭୟେ ହାଫିଜ ବା ଓମାରଖାୟାମଙ୍କର କବିତାକୁ ଆପଣାର ଐତିହ୍ୟ ବୋଲି ଗ୍ରହଣ କଲାବେଳେ କେବେ ପରସ୍ପରଭିତରେ କଳହ ଲଗାଇଥିବାର ମୁଁ ଜାଣେ ନାହିଁ । କିନ୍ତୁ ଯେଉଁମାନଙ୍କର କୃତିତ୍ୱ ଖାସ୍ ତାଙ୍କର ଗୋଟିଏ ଦେଶର ସୀମାଭିତରେ ପରିପୁଷ୍ଟ, ତାହାକୁ ସେମାନେ ତାଙ୍କରି ଦେଶର ବୋଲି ଗ୍ରହଣ କରନ୍ତି । ଆଲିସର୍ନାଭୟ ହେଉଛନ୍ତି ତାସକେନ୍ଦର ମନୀଷୀ । ତାଙ୍କୁ ଉଜ୍‌ବେକିସ୍ଥାନ ନିଜସ୍ୱ ଐତିହ୍ୟ ବୋଲି ଗ୍ରହଣ କରେ । ଏଥିରେ ତାଜିକ୍‌ସ୍ଥାନ କେବେ ଭାଗ ବସାଏ ନାହିଁ । ଅନ୍ୟ ପକ୍ଷରେ ଅସ୍ତ୍ର-ଚିକିତ୍ସାର ଆଦିଜନକ ଅଭିସେନା ହେଉଛନ୍ତି ତାଜିକଭୂମିର ଲୋକ । ତାଙ୍କ ଉପରେ ଉଜ୍‌ବେକିସ୍ଥାନ କେବେ ଓଜର କରି ନାହିଁ ।

## ଦୁଇ

ଅତୀତର ସେହି ଐତିହ୍ୟ ସରିଲାପରେ ବହୁକାଳ ମଧ୍ୟଏସିଆ ଏକପ୍ରକାର ଅରାଜକ ଅଞ୍ଚଳ ହୋଇ ରହିଥିଲା । ବାରମ୍ବାର ଏହି ସ୍ଥାନରୁ ଚେଙ୍ଗିଜ୍, ତୈମୁର ପ୍ରଭୃତିଙ୍କର ବୁଭୁକ୍ଷୁ ଏବଂ ଲୋଲୁପ ସୈନ୍ୟବାହିନୀ ପୃଥିବୀର ସେତେବେଳର ଜଣାଶୁଣା ଦେଶମାନଙ୍କରେ ଲୁଣ୍ଠନ ଏବଂ ଆତଙ୍କର ଅଭିଯାନ ଚଳାଇଥିଲେ । ଆପଣା ଦେଶରେ ସେମାନଙ୍କର ସ୍ୱଚ୍ଛଳ ଜୀବନଯାତ୍ରା ଏବଂ ଶାନ୍ତି ପରିବେଶ ପାଇଁ କୌଣସି ସୁବିଧା ନଥିଲା । ତେଣୁ ସେମାନେ ପରଦେଶ ଲୁଣ୍ଠନ କରିବାରେ ତତ୍ପର ରହୁଥିଲେ ।

ସାରା ସଂସାର ଜାଣେ, ଆମରି ଭାରତବର୍ଷ ଏକ ଶାନ୍ତିପ୍ରିୟ ଦେଶ ଏବଂ ଚୀନ ଦେଶ ମଧ୍ୟ ଆଉ ଏକ ଶାନ୍ତିପ୍ରିୟ ଦେଶ । ଇତିହାସର ଶୈଶବରୁ ଆଜିଯାଏ ଭାରତବର୍ଷ ବା ଚୀନର କୌଣସି ସୈନ୍ୟବାହିନୀ ବାହାରି ଅନ୍ୟ ଦେଶ ଆକ୍ରମଣ କରିନାହିଁ । ବରଂ ଅନ୍ୟ ଦେଶରୁ ଆକ୍ରମଣକାରୀ ଦଳ ଆମରି ଦେଶରେ ପ୍ରବେଶ କରି ଏଇ ସଭ୍ୟତାର ଅତଳ ବାରିଧିରେ ଲୀନ ହୋଇଯାଇଛନ୍ତି । ଏଥିପାଇଁ ଆମ୍ଭେମାନେ ଭାରତୀୟ ବା ଚୀନା ଲୋକେ ଯଥାର୍ଥରେ ଗର୍ବିତ ହେବାର କଥା । କାରଣ ଏହାଫଳରେ ଦୁନିଆରେ ଆଜି ଆମର ସମ୍ମାନ ବଢ଼ିଛି ଏବଂ ଆମର ଉଦାର ମାନବିକତାର ଖୁବ୍ ପ୍ରଶଂସା ହୋଇଛି ।

ପରବର୍ତ୍ତୀ କାଳରେ ଯେତେବେଳେ ଆମ୍ଭେମାନେ ବିଦେଶ ଯାଇଛୁଁ, ଚୀନ୍‌ଲୋକେ ମାଲୟ, ବର୍ମା, ଇଣ୍ଡୋନେସିଆ, ଶ୍ୟାମ ଇତ୍ୟାଦି ବହୁ ଦେଶରେ ଲକ୍ଷ ଲକ୍ଷ ସଂଖ୍ୟାରେ ବସତି ସ୍ଥାପନ କରିଛନ୍ତି ଏବଂ ଭାରତୀୟ ଲୋକେ ଦକ୍ଷିଣ ଆଫ୍ରିକା, ଫିଜି, ମରିସସ୍ ବା ବ୍ରିଟିଶ-ଗାଏନାରେ ଆପଣାର ନୂଆ ଜନ୍ମଭୂମି ବାଛି ନେଇଛନ୍ତି, ସେତେବେଳେ ସେମାନେ ମଧ୍ୟ ଅଭିଯାତ୍ରୀ ବା ବିଜେତାଭାବରେ ଯାଇନାହାନ୍ତି । ସେହି ଦେଶରେ ଲୁଣ୍ଠନ କରିବା ବା ସାମ୍ରାଜ୍ୟ ସ୍ଥାପନ କରିବା ଅଭିପ୍ରାୟ ସେମାନଙ୍କ ମନରେ ଜାଗି ନାହିଁ ।

ଏଥିପାଇଁ ଆମକୁ ତାରିଫ୍ କରିବାର କଥା; କିନ୍ତୁ ଆମରି ଏଇ ଦୁଇ ଜାତି – ଭାରତ ଓ ଚୀନ୍ ଯେ ସବୁବେଳେ ଏପରି ଶାନ୍ତିପ୍ରିୟ, ଏଥିର ଐତିହାସିକ କାରଣ କ'ଣ କିଛି ନାହିଁ ? ଏଥିପାଇଁ ଭୌଗୋଳିକ କାରଣ କ'ଣ କିଛି ନାହିଁ ? ଏଥିପାଇଁ ଆମର ସୁନାବ୍ୟା ସୁଦୂରବାହୀ ନଦୀ ଗଙ୍ଗା ଆଉ ୟାଙ୍‌ସି ଏବଂ ସେମାନଙ୍କର ଉର୍ବର ଅବବାହିକା କ'ଣ ଦାୟୀ ନୁହନ୍ତି ? ଶାନ୍ତିପୂର୍ଣ୍ଣ ବାତାବରଣ ପାଇଁ ସ୍ୱଚ୍ଛଳ ଜୀବନଧାରା ଅପରିହାର୍ଯ୍ୟ । ପରବର୍ତ୍ତୀକାଳରେ ଅବଶ୍ୟ ଯେତେବେଳେ ଶୋଷଣ ଫଳରେ ସ୍ୱଚ୍ଛଳତା କମିଯାଇଛି, ସେତେବେଳେ ବହୁକାଳରୁ ପ୍ରଚଳିତ ଶାନ୍ତିପୂର୍ଣ୍ଣ ସ୍ୱଭାବଯୋଗୁ ଭାରତବାସୀ ବା ଚୀନ୍‌ବାସୀ ବିଦେଶକୁ ଗଲେ ମଧ୍ୟ ଅସ୍ତ୍ରଶସ୍ତ୍ର ଧରି ଯାଇ ନାହିଁ; ବଣିଜ-ବିପଣୀ ଧରି ଯାଇଛି । ସୈନିକ ବେଶରେ ଯାଇ ନାହିଁ; ବଣିକ ବା ଶ୍ରମିକଭାବରେ ଯାଇଛି ।

ଭାରତର ବା ଚୀନ୍‌ର ସ୍ୱଚ୍ଛଳତା ଏବଂ ଉର୍ବର ଶସ୍ୟଶ୍ୟାମଳିମାର ସୁଯୋଗ ଏଇଠି ଅତୀତରେ ନଥିଲା, ତେଣୁ ଏଇଠି ସଭ୍ୟତା ଚିରନ୍ତନ ହୋଇ ରହିଲା ନାହିଁ । ସର୍ବଂସହା ଭାରତର କଳାମାଟି ବା ଚୀନ୍‌ର ପୀତମୃତ୍ତିକା ବସୁଧା-ମାତାପରି ବହୁ ଆକ୍ରମଣ ଅଭିଯାନର ଭୂମିକମ୍ପକୁ ସମ୍ଭାଳି ନେଲା । ଅବ୍ୟାହତ ଭାବରେ ଆମରି ଦୁଇଟି

ସଭ୍ୟତା ଆବହମାନକାଳରୁ ବଞ୍ଚି ରହିଲା । ପରବର୍ତ୍ତୀକାଳର ଶୋଷଣ ଫଳରେ ଏଥିରେ ଅବଶ୍ୟ କୌଣସି ନୂତନ ସନ୍ଦନ ବା ଉନ୍ମେଷ ଦେଖାଦେଲା ନାହିଁ । ଏହି ସର୍ବଂସହା କୃଷି ସଭ୍ୟତାକୁ କୌଣସି ଝଂଜା ଧୂଳିସାତ୍ କରିପାରିଲା ନାହିଁ ।

କିନ୍ତୁ ସେ ସୌଭାଗ୍ୟ ମଧ୍ୟଏସିଆର ନଥିଲା । ତେଣୁ ଏମାନଙ୍କର ଜୀବନ-ଯାତ୍ରା ଆମଠାରୁ ଫରକ୍ ହୋଇ ରହିଲା । କେତେକ ଯୁଦ୍ଧ-ସାମନ୍ତ ଆପଣାର ବାହୁବଳରେ ଏଇଠି କୌଣସି ମରୁଦ୍ୱୀପ ବା ପାହାଡ଼ ଅଞ୍ଚଳରେ ପ୍ରଭୁତ୍ୱ କରୁଥିଲେ । କେତେବେଳେ ପାହାଡ଼ରୁ ବହିଆସିଥିବା ଝରଣା ବା ଆମୁଦରିଆ, ସିରଦରିଆ ନଦୀଧାରାରୁ କେନାଲ ନେଇ ଏହି ଅଞ୍ଚଳମାନଙ୍କରେ କୌଣସି କୌଣସି କ୍ଷୁଦ୍ର ଭୂମିଖଣ୍ଡରେ ଚାଷ ଆବାଦ କରାଯାଉଥିଲା । କିନ୍ତୁ ଏହି ଚାଷ ଆବାଦ ଫଳରେ ଖାଦ୍ୟ ଯଥେଷ୍ଟ ହେଉ ନଥିଲା; ତୂଳା ଇତ୍ୟାଦି ଶିଳ୍ପ-ଶସ୍ୟ ମିଳୁ ନଥିଲା ଏବଂ ଗୋଚାରଣ ଭୂମିର ଦୁରନ୍ତ ଅଭାବ ଦେଖାଦେଉ ନଥିଲା । ଏଭଳି ଅବସ୍ଥାରେ ମଧ୍ୟଏସିଆର ସଭ୍ୟତାର ଧାରା ଅଟକି ଯାଇଥିଲା । ୧୯୨୧ରେ ଅର୍ଥାତ୍ ୧୯୧୭ ରୁଷ-ବିପ୍ଳବ ପରେ ଏହି ଧାରା ପୁଣି ଆରମ୍ଭ ହୋଇଛି ।

## ତିନି

ଆଜକୁ ପଚିଶ ବର୍ଷତଳେ ଯେଉଁ ଦେଶରେ ପ୍ରଥମେ ଲୋକେ ଅକ୍ଷର ଚିହ୍ନି ଶିଖିଲେ, ରୋଗ-ବୈରାଗରେ ଡାହାଣୀ ବା ଗୁଣୀଙ୍କଠାରୁ ଔଷଧ ନଖାଇ ଆଧୁନିକ ଔଷଧପତ୍ର ବ୍ୟବହାର କଲେ, ସେହି ଦେଶ ତାଜିକ୍‌ସ୍ଥାନ ଏବଂ ତା'ର ରାଜଧାନୀ ଷ୍ଟାଲିନାବାଦ୍ ହିଁ ସେହି ନବଯୌବନର ଦେଶର ସୁଯୋଗ୍ୟ ପ୍ରତିନିଧି ।

ଷ୍ଟାଲିନାବାଦ୍ ବିଷୟରେ ଆମେ ସେଠାରେ ପହଞ୍ଚିଲା ମାତ୍ରେ ଆମର ଯାହା ଅନୁମାନ କରିନେବାର କରିନେଲୁ । ଆଗ ଆଖିରେ ପଡ଼ିଲା ଗଛପତ୍ର । ସମସ୍ତ ଷ୍ଟାଲିନାବାଦ୍ ଗୋଟିଏ ବଗିଚା-ସହର କହିଲେ ଅତ୍ୟୁକ୍ତି ହେବ ନାହିଁ । ଗଛଗୁଡ଼ିକ ଦେଖିଲେ ଜଣାପଡ଼ିବ, ନିଶ୍ଚୟ ସେଗୁଡ଼ିକ ଭିତରୁ କେହି ୩୦ ବର୍ଷରୁ ବେଶିକାଳର ନୁହନ୍ତି । ପରେ ବୁଝିଲୁ ଆମର ଅନୁମାନ ସତ୍ୟ ଏବଂ ଷ୍ଟାଲିନାବାଦ୍‌ର କୌଣସି ଅଞ୍ଚଳର ବୟସ ଜାଣିବାକୁ ହେଲେ ଆଗ ସେହି ଅଞ୍ଚଳର ଗଛଗୁଡ଼ିକପ୍ରତି ନଜର ଦେବାକୁ ହେବ । ସବୁଠାରୁ ପୁରାତନ ଅଞ୍ଚଳରେ ୨୫ ବର୍ଷତଳର ଗଛ ଦେଖିବାକୁ ମିଳିବ ଏବଂ ଏବେ ମଧ୍ୟ ଯେଉଁ ଅଞ୍ଚଳ ତୋଳାଚାଲିଛି, ସେଥିରେ ଗଛର ବୟସ ବର୍ଷେ ବା ଦେଢ଼ବର୍ଷ ହେବ । ଷ୍ଟାଲିନାବାଦ୍ ଉଡ଼ାଜାହାଜ ଷ୍ଟେସନରୁ ଆମେ ଆମର ନିର୍ଦ୍ଦିଷ୍ଟ ରହଣି ଜାଗାରେ

ପହଞ୍ଚିବାପରେ ଭୋଜନ-ପାନ ସାରି ପ୍ରାୟ ଦଶମିନିଟ ଯାଏ ବିଶ୍ରାମ କରିଛୁ, ଆମକୁ ଡାକରା ଆସିଲା – "ଯଦି ଆମର ଅତିଥିମାନେ ବିଶେଷ କ୍ଳାନ୍ତ ନ ହୋଇଥାଆନ୍ତି, ତେବେ ସହରର ପ୍ରଧାନ ବିନ୍ଧାଣି ବା ଆର୍କିଟେକ୍ଟ ସହରର ପ୍ଲାନ୍ ବିଷୟରେ ଅତିଥିମାନଙ୍କୁ କିଛି ଜ୍ଞାତବ୍ୟ ବିଷୟ ଜଣାଇବେ । ତା'ପରେ ଅତିଥିମାନେ ସହରଭିତରେ ବୁଲି ବିଭିନ୍ନ ସ୍ଥାନରେ ଆଖି ପକାଇ ଆସିବେ ।"

ଏତକ ମ୍ୟାଡ୍ାମ୍ ଗ୍ୟାଲିନା ଆମକୁ ଜଣାଇଲେ । ଏହାପରେ ସୋଭିଏଟ୍ ଦେଶରେ କେତେବାର ଯେ ମୁଁ ଏକଥା ନ ଶୁଣିଛି, "ଯଦି ଆମର ଅତିଥିମାନେ ଅନୁମତି ଦିଅନ୍ତି, ତେବେ ଆମେ ଆମରି ଏହି ଫାକ୍ଟରୀଟିକୁ ବୁଲାଇ ଦେଖାଇବୁ ।" ଅଥବା "ଯଦି ଆମର ଅତିଥିମାନେ ଅନୁମତି ଦିଅନ୍ତି, ତେବେ ଏଇଠାରେ ଗୋଟିଏ ନୃତ୍ୟ-ଗୀତ ପ୍ରଦର୍ଶନୀ ହେବ ।" ଏପରି ଭାଷାରେ ଅତିଥିମାନଙ୍କୁ ସମ୍ବୋଧନ କରିବାର ନମ୍ରତା ଏବଂ ସଂସ୍କୃତି କେବେ ମନରୁ ପାସୋରଯିବ ନାହିଁ ।

କିନ୍ତୁ ଷ୍ଟାଲିନାବାଦ୍‌ରେ ଆମର ଯେଉଁ ଦର୍ଶନ-ପର୍ବ ଆରମ୍ଭ ହେଲା, ତାହା ରୁଷିଆରୁ ଫେରିବାଯାଏ ସରିଲା ନାହିଁ । ଅସମ୍ଭବ ଏହି ଦେଶ, ଆଉ ଅସମ୍ଭବ ଏମାନଙ୍କର କ୍ଳାନ୍ତିହୀନ କର୍ମ-ଚଞ୍ଚଳତା । ସୋଭିଏଟ୍ ଦେଶରେ ଦେଖି ଦେଖି ଶୁଣି ଶୁଣି ଆମେ ବେଦମ୍ ହୋଇଛୁ । ଏକେ ତ ଆମର ଭାରତୀୟ ଅଭ୍ୟାସ, ଅଳ୍ପକରେ ଆମେ ଥକି ପଡୁଁ । ଦ୍ୱିତୀୟରେ ଆମର ଛୋଟ-ମୁଣ୍ଡର ଖପୁରିତଳେ କେତେ ବା ମସ୍ତିଷ; ଏତେ ଜିନିସ ମନେ ରଖିବାକୁ ସ୍ମୃତି-ଶକ୍ତି କାହାର ବା ଅଛି ?

ପ୍ରଥମେ ପ୍ରଥମେ ଆମ୍ଭମାନଙ୍କ ଭିତରେ ନୂତନ ଉତ୍ସାହ ଥିଲା । କିନ୍ତୁ କେତେ କାଳ ? ସକାଳ ୭ଟା ବେଳେ ବ୍ରେକ୍‌ଫାଷ୍ଟ । ସେଠୁ ମୋଟରଯୋଗେ ଯିବାକୁ ପଡ଼େ । ବିଶ୍ୱବିଦ୍ୟାଳୟ, ଏକାଡେମୀ ଅଫ୍ ସାଇନ୍‌ସ, କୋଠଘ୍ରଷ, କାରଖାନା, କିଣ୍ଡରଗାର୍ଟେନ ବା ଶିଶୁଶିକ୍ଷାଶାଳା, କ୍ରିସେ ଇତ୍ୟାଦି ଦେଖୁ ଦେଖୁ ସକାଳ ଓଳିଟାଯାକ ପାହିଯାଏ । ରହଣି ଜାଗାକୁ କେଉଁ ଦିନ ଫେରି ଲଞ୍ଚ ବା ଦିପହରିଆ ଖାଇବା ଖାଉ, ନତୁବା ଯେଉଁଠି ଦ୍ୱିପ୍ରହର ହେଲା ସେଇଠି ଲଞ୍ଚର ବ୍ୟବସ୍ଥା । ସେ ଲଞ୍ଚ ସରିଲେ ପୁଣି ବାହାର, ସବୁ ଜାଗାରେ କରତାଳି, ଫୁଲତୋଡ଼ା, କରମର୍ଦ୍ଦନ, ଫଟୋଗ୍ରାଫ୍‌ର ପାଲା । ସବୁ ସ୍ଥାନର ଟେବଲ ଉପରେ ପ୍ରତ୍ୟେକଙ୍କପାଇଁ ଖଣ୍ଡିଏ ଖଣ୍ଡିଏ ନୋଟଖାତା ଓ ପେନ୍‌ସିଲ, ଆଉ ଲିମୋନେଡ୍ ଓ ଅନ୍ୟାନ୍ୟ ପାନୀୟ । ଅଧିକାଂଶ ସ୍ଥାନରେ ଏହାଛଡ଼ା ବିସ୍କୁଟ, ଲଜେନ୍‌ସ ଅଥବା ଫଳ– ଆପଲ, ପିଅର, ଆଖରୋଟ, କୋଳି ଏବଂ ଆଲୁବୋଖରା; ଆଉ ସବୁଠି ହଜାର ହଜାର ଖୁଣ୍ଟିନାଣ୍ଟି ତଥ୍ୟ । ଏତେ ଲକ୍ଷ ଏକର ଜମିରେ ଆବାଦ,

ଏତେ ମିଲିୟନ୍ ରୁବଲ ବାର୍ଷିକ ଆୟ, ଏତେ କିଲୋଓ୍ୱାଟ ଜଳ – ଲେଖ ଲେଖ ଆଉ ଲେଖ । ନୋଟଖାତା ଏବଂ ପେନ୍‌ସିଲ ଚାଳନାର ବିରାମ ନାହିଁ ।

ତା'ପରେ ସନ୍ଧ୍ୟାବେଳେ ବ୍ୟାଲେ, ଅପେରା ବା ପପେଟ୍ ଥିଏଟର ନତୁବା ଗୋଟିଏ କନ୍‌ସର୍ଟରେ ଯୋଗଦେବାକୁ ପଡ଼େ । ସେଠାରେ ପୁଣି ଆଉ ତୁହାଏ ବେଦମ୍ ଅଭ୍ୟର୍ଥନା । ସାମ୍ବାଦିକ, ବ୍ୟକ୍ତିଗତ, ଆନ୍ତରିକ ଅଥବା ଆନୁଷ୍ଠାନିକ ହଜାର ରକମର କରମର୍ଦ୍ଦନ "କିପରି ଅଛନ୍ତି", "ଓଚିମ୍ ଖାରସୋ" (ଖୁବ୍ ଭଲ), ସ୍ପାସିବା (ଧନ୍ୟବାଦ), ଦଶବିଦାନିୟା (ପୁଣି ଦେଖା ହେବ, ବର୍ତ୍ତମାନ ବିଦାୟ) । ତା'ଛଡ଼ା କିଏ ତୁମ ଛାତିରେ ଗୋଟାଏ ବ୍ୟାଜ୍ ପିନ୍ଧାଇଲାଣି ତ କିଏ ତୁମକୁ ତୁମର ଦସ୍ତଖତ (Autograph) ଲେଖିବାକୁ ନୋଟଖାତା ବଢ଼ାଇଲାଣି ଅଥବା ଆଉ କିଏ ଆହୁରି ବିହ୍ୱଳିତ ହୋଇ ତୁମର କଳାବାଳକୁ ସାଉଁଳିଲାଣି ଅଥବା ଚୁମା ଦେଲାଣି । ଏଇଠି ପୁରୁଷ, ସ୍ତ୍ରୀ, ପରିଚିତ, ଅପରିଚିତ ଇତ୍ୟାଦିର ବାରଣ କିଛି ନାହିଁ । ଏପରି ଉଚ୍ଛଳ ଜୀବନସ୍ରୋତ ଭିତରେ ଆମେ ଭାରତୀୟମାନେ କେତେ ସମ୍ଭାଳି ପାରନ୍ତୁ ?

ଏଭଳି ପ୍ରୋଗ୍ରାମରେ ଆମେ ବେଦମ୍ ହୋଇଯାଇଛୁ କେବଳ ସୋଭିଏଟ୍ ରୁଷିଆରେ ନୁହେଁ, ଚେକୋସ୍ଲୋଭାକିଆରେ ମଧ୍ୟ । ତା'ପରେ ରାତି ୮ଟା ବେଳେ ଡ଼ିନର ଆରମ୍ଭ ହେବ ଯେ ସମସ୍ତେ ଟେବଲ ଛାଡ଼ି ଯାଉ ଯାଉ ସାଢ଼େ ଗୋଟାଏ ବା ଦୁଇଟା ବାଜେ । ଗୀତ, ନୃତ୍ୟ, ସ୍ୱାସ୍ଥ୍ୟପାନ (ଟୋଷ୍ଟ), ଅଥବା ଡିନର ପାର୍ଟିର ବକ୍ତୃତା; ଆଉ ବିରାଟ ହାସ୍ୟରୋଳ ଭିତରେ ରାତି ୨ ଟା ଯାଏ ବିରାମ ନଥାଏ । ତା'ପରେ ପୁଣି ତା' ଆରଦିନ ୭ ଟା ସକାଳ ବ୍ରେକ୍‌ଫାଷ୍ଟ ।

ତେଣୁ ଦେଖି ଦେଖି, ଲେଖି ଲେଖି, ଅବିଶ୍ରାନ୍ତଭାବରେ ଆମର ଦେଢ଼ମାସ ସମୟ ଗୋଟାଏ ବିରାମହୀନ ଅନୁଭୂତି ଭିତରେ କଟିଥିଲା । ବାସ୍ତବରେ ଆମଭିତରେ ଯେତେ ବୟସାଧିକ ଲୋକ ଥିଲେ, ସେମାନେ ବେଳେ ବେଳେ କ୍ଲାନ୍ତ ହୋଇ ବିଶ୍ରାମ ଲୋଡୁଥିଲେ । କିନ୍ତୁ ବିଶ୍ରାମ କାହିଁ ? ଯଦି ତୁମେ କୌଣସି ପ୍ରୋଗ୍ରାମକୁ ଯିବାକୁ ଅନିଚ୍ଛୁକ ହୋଇ ବିଶ୍ରାମ ନେବାକୁ ଚାହିଁଲ, ତେବେ ବି ରକ୍ଷା ନାହିଁ । "କାହିଁକି ଆମର ଅତିଥି ପ୍ରୋଗ୍ରାମ୍ ଦେଖିବାକୁ ଯାଉନାହାନ୍ତି ? କ'ଣ ସ୍ୱାସ୍ଥ୍ୟ ଖରାପ ଅଛି ? ଡାକ୍ତରକୁ ଖବର ଦିଆଯିବ ?" – ଏଭଳି ଭାବରେ ବ୍ୟାକୁଳତା ପ୍ରକାଶ କରାଯିବ ଯେ ତୁମେ ଲଜ୍ଜିତ ହୋଇ ପ୍ରୋଗ୍ରାମ୍‌ରେ ଯୋଗଦେବାକୁ ବାହାରିବ; କାରଣ ବାସ୍ତବ ପକ୍ଷରେ ତୁମର କୌଣସି ଶାରୀରିକ ଅସୁସ୍ଥତା ନାହିଁ ।

# ଘରି

ଷ୍ଟାଲିନାବାଦ୍‌ରେ ପହଞ୍ଚିବାର ଏକ ଘଣ୍ଟାପରେ ଆମର ଦର୍ଶନପର୍ବ ଆରମ୍ଭ ହେଲା । ପ୍ରଥମେ ଉକ୍ତ ସହରର ପ୍ରଧାନ ବିନ୍ଧାଣି ଆମକୁ ଆମର ରହିବା ଘରର ମନୋରମ ଫଳ ବଗିଚ୍ଚଭିତରେ ଗୋଟିଏ ଗୋଲାକାର ମଣ୍ଡପକୁ ନେଇଗଲେ । ସେଇଠି ମଣ୍ଡପର ଉପରେ ଛାତ ରହିଛି । ମଣ୍ଡପର ବାହାରର ଗୋଲିଆକୁ ଲାଗି ସିମେଣ୍ଟର ଚଉକି ଠିକ୍ ଆମର ପାର୍କମାନଙ୍କରେ ହୋଇଥିବା ସିମେଣ୍ଟ ଚଉକିଭଳି । ରୁଷିଆରେ, ବିଶେଷତଃ ମଧ୍ୟଏସିଆରେ ଏଭଳି ଚଉକିର ପ୍ରଚଳନ ବେଶି । ତାସକନ୍ଦ, ସମରକନ୍ଦ, ଷ୍ଟାଲିନାବାଦ୍ ଏପରି କି ମସ୍କୋରେ ମଧ । ଆମେ ଦେଖିଛୁଁ, ଚ୍ଚହା ଦୋକାନ ଅଥବା ଘରମାନଙ୍କର ସାମନାରେ ଗୋଟିଏ ଗୋଟିଏ ଗୋଲାକାର ପ୍ରକାଣ୍ଡ ଛତାର ଛାତତଳେ ଗୋଟିଏ ଟେବଲ ଘରିପାଖରେ ଘରିଗୋଟି ଚଉକି ଥାଇ ବସିବା ଜାଗା ତିଆରି ହୋଇଥାଏ । ଏଗୁଡ଼ିକ ଅବଶ୍ୟ କାଠରେ ତିଆରି । ଛତାର ଛାତ ସମେତ ସମଗ୍ର ଟେବୁଲ ଚଉକିକୁ ଏକାଥରକେ ଗୋଟିଏ ଜାଗାରୁ ଅନ୍ୟ ଜାଗାକୁ ନିଆଆଣ କରିହେବ ।

ଷ୍ଟାଲିନାବାଦ୍ ବିଷୟରେ ଆମେ ଆସିଲାବେଳେ ଯେପରି ପ୍ରତ୍ୟକ୍ଷ ଧାରଣା କରିଥିଲୁ, ତାହା ସତ୍ୟ ବୋଲି ପ୍ରମାଣ ହେଲା । ଲତାୟିତ ଫଳବଗିଚ୍ଚ ସୁଶୀତଳ ଛାୟାରେ ଆମକୁ ସେହି ସହରର ବିନ୍ଧାଣି ଷ୍ଟାଲିନାବାଦ୍‌ର ଇତିହାସ ଠିକେ ଠିକେ କହିଗଲେ । ବିନ୍ଧାଣିଙ୍କର ବୟସ ୪୫ ବର୍ଷ ହେବ । ଷ୍ଟାଲିନାବାଦ୍‌ର ଗଠନ ଦିନୁ ସେ ଏଥିରେ କାମ କରିଆସିଛନ୍ତି । ତେଣୁ ସେହି ସହର ବିଷୟରେ କହିଲାବେଳେ ତାଙ୍କର ଆନନ୍ଦ କହିଲେ ନସରେ । ତାଙ୍କର ସ୍ୱଭାବ ବଡ଼ ସଲଜ୍ଜ; ତେଣୁ ତାଙ୍କର କଥାଭାଷାରେ ଗର୍ବ ବା ବଡ଼େଇର କୌଣସି ସୂଚନା ନଥିଲା । କିନ୍ତୁ ଏପରି ମଧୁର ଏବଂ ବିନୟଭାବରେ ସେ କହୁଥାଆନ୍ତି ଯେ ଆମ ମନରେ ଗୋଟାଏ ସ୍ପଷ୍ଟ ଦାଗ ଆଙ୍କି ହୋଇଗଲା ।

ପଚିଶ ବର୍ଷତଳେ ଷ୍ଟାଲିନାବାଦ ବୋଲି ଗୋଟିଏ ସହର ନଥିଲା । ଏହା ଗୋଟିଏ କିସ୍‌ଲାକ ବା ଗାଁପରି ଥିଲା । ତାଜିକ୍ ଭାଷାରେ ଗାଁକୁ କିସ୍‌ଲାକ (Kislak) କହନ୍ତି । ସାତଶହ ଗୋଟି ମାଟିର କୁଡ଼ିଆ ମାତ୍ର ଗାଁର ସମ୍ବଳ ଥିଲା । ଏଠାରେ ସୋମବାର ଦିନ ଗୋଟିଏ ହାଟ ବସୁଥିଲା । ସେହି କାରଣରୁ ବୋଧହୁଏ ଗାଁର ନାଁ ଦୋସାମ୍ବେଜ୍ (ତାଜିକ୍‌ମାନଙ୍କର ଭାଷା ହେଉଛି ଏକ ପୁରୁଣା କିସମର ପର୍ସିୟାନଭାଷା । ପର୍ସିୟାନଭାଷାରେ ସୋମବାରକୁ ଦୋସାମ୍ବେଜ୍ କହନ୍ତି) । ୧୯୨୯ ମସିହା ପୂର୍ବରୁ ଏହି ଦୋସାମ୍ବେଜ୍ ନାମଧେୟ ଗାଁ ଖଣ୍ଡିକ ବାହାର ସଂସାରରୁ ବିଚ୍ଛିନ୍ନ ଥିଲା । ୧୯୨୯

ମସିହାରେ ଷ୍ଟାଲିନାବାଦ୍‌କୁ ପ୍ରଥମ ରେଳବାଇ ଲାଇନ ଲମ୍ବିଲା । ଏଇ ଲାଇନ ତିଆରି ହେବା ପୂର୍ବରୁ ଏବଂ ପରେ ମଧ୍ୟ ତାଜିକ୍‌ସ୍ଥାନର ସ୍ଥାନୀୟ ଯାନବାହନରେ ଯାତ୍ରୀ ଓ ଜିନିସ ନିଆଆଣ ହେଉଥିଲା ।

ପ୍ରଥମେ ଯେତେବେଳେ ତାଜିକ୍‌ସ୍ଥାନ ନାମକ ସୋଭିଏଟ୍ ସାଧାରଣତନ୍ତ୍ର ପ୍ରତିଷ୍ଠା ହେଲା ଏବଂ ତା'ର ରାଜଧାନୀ ହିସାବରେ ଷ୍ଟାଲିନାବାଦକୁ ବଛାହେଲା, ସେତେବେଳର ଫଟୋଗ୍ରାଫ ଆମେ ଦେଖିବାକୁ ପାଇଲୁ । ବିଦ୍ଧାଣି ମହାଶୟ ସେହିଭଳି ଫଟୋଗ୍ରାଫ୍ ଖଣ୍ଡିକରେ ଗୋଟିଏ ନିତାନ୍ତ ଅଢ଼ଙ୍ଗର ମାଟି-କୁଡ଼ିଆ ତା'ର କାନ୍ଥଗୁଡ଼ିକର ବଙ୍କା-ତେଢ଼ାକୁ ଦେଖାଇ କହିଲେ, ଏଇଠି ତାଜିକ୍ ସୋଭିଏଟ୍‌ର ଅର୍ଥ ବିଭାଗର ମନ୍ତ୍ରୀ ଅଫିସ କରୁଥିଲେ । ଆମର ଭାରତୀୟ ଯେକୌଣସି ନିକୃଷ୍ଟ କୁଡ଼ିଆଠାରୁ ମଧ୍ୟ ଏ ଘର ଆହୁରି ନିକୃଷ୍ଟ ଥିଲା । ଅବଶ୍ୟ ସେମାନଙ୍କ ଛାତରେ ନଡ଼ା ବିଛାଯାଇଥିଲା । ନଡ଼ାବିଛା ଛାତର ମଧ୍ୟଏସିଆରେ ପ୍ରଚଳନ କମ୍ । କାବୁଲରେ ଆମେ ଦେଖିଥିଲୁ ଯେ, ସବୁ କୁଡ଼ିଆଘରର କାନ୍ଥ, ମେଝିଆ ଉଭୟ ମାଟି; ଛାତଟା ମଧ୍ୟ ମାଟି । ମାଟି ଛାତକୁ ଘୋଡ଼ାଇବାପାଇଁ ନଡ଼ା, ଘାସ, ତାଳ ବା ଖଜୁରୀପତ୍ର ଇତ୍ୟାଦିର କୌଣସି ବ୍ୟବସ୍ଥା ନାହିଁ । ଘରଗୁଡ଼ିକ ନାହାଗ୍ଭଳିଆ ଢ଼ଙ୍ଗରେ ଦୁଇପଟକୁ ନୁଆଁଣିଆ; ଯେପରି ଶୀତଦିନରେ ବରଫ ଜମା ହୋଇ ନରହି ତଳକୁ ଗଡ଼ିଯିବ । ସମରକନ୍ଦ ପ୍ରଭୃତି ଜାଗାରେ ଯେଉଁଠି ଆମ୍ଭେମାନେ ପ୍ରାଚୀନ କାଳର ଛିଟା ଦେଖିଥିଲୁ, ସେଇଠାରେ ମଧ୍ୟ ଏଭଳି ପ୍ୟାଟର୍ଣ୍ଣର ଘର ତିଆରି ହୋଇଛି ଦେଖିଲୁ । କାବୁଲରେ ଭଲ କିସମର ଘର ହୋଇଥିଲେ ମାଟି ଛାତଉପରେ ଗୋଟାଏ କରୋଗେଟେଡ୍ (ଟିଣ) ଛାତ ଦୋହରି ଭାବରେ ଦିଆଯାଇଥାଏ ।

ଛାତଗୁଡ଼ିକ ମାଟି ହେଲେ ସେ ଜାଗାରେ ଆଉ କିଛି ଅସୁବିଧା ନାହିଁ । କାରଣ ବର୍ଷାର ପରିମାଣ ବର୍ଷରେ ଏତେ କମ୍ ଯେ, ବର୍ଷାରେ ମାଟିଛାତ ଧୋଇହୋଇଯିବାର କୌଣସି ଆଶଙ୍କା ନାହିଁ । ତେବେ ଘରଭିତରେ ଚୁଲୀର ବ୍ୟବସ୍ଥା କରି ହୁଏ ନାହିଁ । କାରଣ ପୂରାପୂରି ନିବୁଜ ମାଟିଛାତରେ ଧୂଆଁ ଯିବାକୁ ବାଟ ନଥାଏ । ସେଥିପାଇଁ କାବୁଲରେ ଏବଂ ବୋଧହୁଏ ପୂର୍ବକାଳର ମଧ୍ୟଏସିଆରେ ଲୋକେ ରୋଷେଇବାସ ଘରଭିତରେ କରୁ ନଥିଲେ । ଅବଶ୍ୟ ଏବେ ତାଜିକ୍‌ସ୍ଥାନ ଆଉ ଉଜ୍‌ବେକିସ୍ଥାନରେ ଏକ ନୂଆ ଢ଼ଙ୍ଗର ଷ୍ଟୋଭ ଏବଂ ଚିମ୍‌ନିର ପ୍ରବର୍ତ୍ତନ ହୋଇଛି । ତେଣୁ ସେମାନଙ୍କର ପରମ୍ପରାଗତ ପ୍ୟାଟର୍ଣ୍ଣରେ କେହି ଘର ତୋଳିବାକୁ ଇଚ୍ଛା କଲେ ବି ରୋଷାଇଘରର ଧୂଆଁ ଭଲଭାବରେ ବାହାରକୁ ନିଷ୍କାସନ କରାଯାଇ ପାରିବ ।

୧୯୨୯ ମସିହାରେ ଲୋକାଳୟ ବା ଅଫିସରଙ୍କର ଘର ତ ଦୂରର କଥା; ଶିକ୍ଷା ଏବଂ ଶ୍ରମମନ୍ତ୍ରୀ ଦପ୍ତର ଯେଉଁ କୁଡ଼ିଆରେ ଅଫିସ କରୁଥିଲେ, ତା'ର ସାମନା ରାସ୍ତାରେ ଆଣ୍ଠୁଏ ଆଣ୍ଠୁଏ କାଦୁଅ ହେଉଥିଲା । ସେ କାଦୁଅ ପୁଣି ସାଧାରଣ ମାଟିର କାଦୁଅ ନୁହେଁ, ମଧ୍ୟଏସିଆର ମଟାଳ ମାଟିର କାଦୁଅ ।

ବିନ୍ଧାଣି ତାଙ୍କର ଅତୀତ ଦିନର ଏହି ସ୍ମୃତିତକ କହିଲାବେଳେ ତାଙ୍କର କି ଉତ୍ସାହ । କାରଣ ଦୁଃସ୍ୱପ୍ନପରି ଏହି ସ୍ମୃତିକୁ ସେ ପଛରେ ଫୋପାଡ଼ ଦେଇ ଆସିଛନ୍ତି । ସେ ଆମକୁ ୨୫ ବର୍ଷ ତଳର ଯେଉଁ ଫଟୋ ଦେଖାଉଥାଆନ୍ତି, ତାହାକୁ ଏବେ ଦେଖିଲେ କେଉଁ ଯୁଗର ଫଟୋପରି ମନେହେବ । କିନ୍ତୁ କାଳେ ଆମ ମନରେ ଧାରଣା ହେବ ଯେ ତାଜିକ୍‌ସ୍ଥାନର ଲୋକେ କେବଳ ଗଲା ୫ ବର୍ଷ ହେଲା ଘରଦ୍ୱାର ତୋଳିବା ଶିଖିଛନ୍ତି, ସେଥିପାଇଁ ସେ ବାରମ୍ବାର କହୁଥାଆନ୍ତି – "୨୫ ବର୍ଷ ତଳର ଏହି ଅବସ୍ଥା ଦେଖି ଅବଶ୍ୟ ଆପଣମାନେ ଇତିହାସ ଭୁଲିଯିବେ ନାହିଁ । ଆମ ଦେଶର ଲୋକେ ଖୁବ୍ ସୁଦକ୍ଷ ବିନ୍ଧାଣି ଏବଂ ନିର୍ମାତା ଥିଲେ । ସେମାନେ ଅତୀତର ଅତି ସୁନ୍ଦର କାରୁକାର୍ଯ୍ୟପୂର୍ଣ୍ଣ ସ୍ଥାପତ୍ୟ ନିର୍ମାଣ କରି ଯାଇଛନ୍ତି ।"

ତାଜିକ୍ ଜନସାଧାରଣ ଯେଉଁଠି ଜାଗାରେ ଆପଣାର ରାଜଧାନୀ ଗଢ଼ିବେ ବୋଲି ନିଷ୍ପତ୍ତି କଲେ, ତାହାର ଅବସ୍ଥା ସେତେବେଳେ ଆମର ଭୁବନେଶ୍ୱର, ଏପରି କି ପଞ୍ଜାବର ବର୍ତ୍ତମାନ ରାଜଧାନୀ ଚଣ୍ଡିଗଡଠାରୁ ବହୁଗୁଣରେ ଖରାପ ଥିଲା । କିନ୍ତୁ ଏଥିରେ ସେମାନେ ଆଦୌ ଦବି ନଥିଲେ; କାରଣ ସେମାନେ ଜାଣିଥିଲେ ଯେ ରୁଷିଆର ବିଭିନ୍ନ ଜାତିମାନଙ୍କର ଭ୍ରାତୃତ୍ୱପୂର୍ଣ୍ଣ ସହଯୋଗ ସେମାନେ ପାଇପାରିବେ । ସତକୁ ସତ ବିଭିନ୍ନ ଅଞ୍ଚଳରୁ ଶହ ଶହ ଇଞ୍ଜିନିୟର ଆଉ ବିଶାରଦ ସେମାନଙ୍କର ନିବେଦନକ୍ରମେ ଆସି ଷ୍ଟାଲିନାବାଦ୍‌ରେ ରୁଣ୍ଡ ହେଲେ । ଗୋଟିଏ ରାଜ୍ୟ ପ୍ରୋଜେକ୍ଟ ଅଫିସ ଗଢ଼ାହେଲା ଏବଂ କାମ ଚାଲିଲା ।

ସେତେବେଳେ ତାଜିକ୍‌ସ୍ଥାନର ନିକଟବର୍ତ୍ତୀ ଅଞ୍ଚଳରେ ଘରତୋଳା ସରଞ୍ଜାମ କିଛି ମିଳୁ ନଥିଲା । କାରିଗର ମଧ୍ୟ ଅଭାବ ଥିଲେ । ରେଳଲାଇନପାଇଁ ଗୋଡ଼ି, ପଥର ଏବଂ କାଠ ମଧ୍ୟ ଅଭାବ ଥିଲା । ଉଜ୍‌ବେକିସ୍ଥାନ, ୟୁକ୍ରେନ୍ ଏବଂ ରୁଷିଆ ଫେଡ଼େରେସନରୁ ଏସବୁ ଅଣାଯାଇଥିଲା । ଆରମେନିଆରୁ କେତେକ କାରିଗର ଆସି ସ୍ଥାୟୀବସତି କରି ରହିଲେ । ଇଟାବାଲା ଆଉ ବଢ଼େଇ ରୁଷିଆ ଆଉ ଉଜ୍‌ବେକିସ୍ଥାନରୁ ଆମଦାନି ହେଲେ, ଆଉ ସାଇବେରିଆରୁ କାଠ ଅଣାଗଲା ।

ରୁଷିଆ ଦେଶରେ ସାଇବେରିଆର କାଠ ହେଉଛି ଉତ୍କୃଷ୍ଟ ଏବଂ ମୂଲ୍ୟବାନ୍। ଏହି କାଠ ଆଣିବାକୁ ରେଳଲାଇନର ସୁବିଧା ନଥିଲା । ମୋଟର ବା ଟ୍ରକଯୋଗେ ଆଣିବାର ରାସ୍ତାନଥିଲା। ତେଣୁ ଓଟ ଏବଂ ଘୋଡ଼ାମାନେ ଏସବୁ ଟାଣି ଟାଣି ୮୦୦-୯୦୦ ମାଇଲ ଦୂରରୁ ଆଣିଥିଲେ । ରାସ୍ତାରେ ଟଣା ହୋଇଆସିବା ଫଳରେ କାଠ ଦେହରୁ ଅଧ ମିଟରଯାଏ ବାଟରେ ଘୋରି ହୋଇଯାଉଥିଲା ।

କେବଳ ସେତିକି ନୁହେଁ, ଏହି ବିରାଟ ଗଠନ (ନିର୍ମାଣ) ଯୋଜନାକୁ କାର୍ଯ୍ୟକାରୀ କରିବାଲାଗି ଯେଉଁମାନେ କାରିଗର ଏବଂ ଇଞ୍ଜିନିୟର ଭାବରେ ଆସିଲେ, ସେମାନଙ୍କୁ ଘର ଯୋଗାଇବା ଏକ ବିଷମ ବ୍ୟାପାର ଥିଲା । ପାନୀୟ ଜଳ, ଖାଦ୍ୟପଦାର୍ଥ ଇତ୍ୟାଦିର ସୁବିଧା ନକଲେ ଭଲ ବିଶାରଦ ଆସିବାକୁ ମଙ୍ଗନ୍ତେ ନାହିଁ । ତେଣୁ ତାଜିକ୍ ଜନସାଧାରଣ ଅସୀମ ତ୍ୟାଗ ସ୍ୱୀକାର କରି ଏମାନଙ୍କ ପାଇଁ ପାରୁପର୍ଯ୍ୟନ୍ତ ସୁବିଧା କରିଥିଲେ ।

ଏହିପରି ଆରମେନିଆର ବଢ଼େଇ, ରୁଷିଆର ବିଶାରଦ, ସାଇବେରିଆର କାଠ, ୟୁନସନ୍‌ର ସିମେଣ୍ଟ ଏବଂ ସାରା ସୋଭିଏଟ୍ ଦେଶର ଅନୁଷ୍ଠିତ ସହଯୋଗ ଫଳରେ ହିନ୍ଦୁକୁଶ ପାହାଡ଼ର ଉତ୍ତରପଟ ଟାଙ୍ଗର ଭୂଇଁରେ ଏକ ବିରାଟ ଶ୍ୟାମଳ ଅଞ୍ଚଳ ଏବଂ ସହର ଗଢ଼ିଉଠିଲା । ଶ୍ୟାମଳ ଅଞ୍ଚଳ ବୋଲି ମୋର ଜୋର ଦେବାର କାରଣ ହେଉଛି ଯେ ସହର ତୋଳିବାପାଇଁ ବା କୋଠାବାଡି ନିର୍ମାଣ କରିବାପାଇଁ ପ୍ରାଥମିକ ଅବସ୍ଥାରେ ତାଜିକ୍‌ସ୍ଥାନର ଲୋକେ ଅସୀମ କଷ୍ଟ ସ୍ୱୀକାର କରିଛନ୍ତି । କିନ୍ତୁ ତା'ଠାରୁ ଆହୁରି ଅଦ୍ଭୁତ ଏବଂ ଚମତ୍କାରୀ କୃତିତ୍ୱ ହେଉଛି ଗଛପତ୍ର ତିଆରି କରିବା । ଷ୍ଟାଲିନାବାଦ୍‌ର ଚାରି ଦିଗକୁ ବେଢ଼ି ଯେଉଁ ପାହାଡ଼ର ଗୋଲେଇ ଘେରିଛି ତାହା ଆଉ ଟାଙ୍ଗର, କଙ୍କରଭୂମି ନୁହେଁ । ସେହି ପାହାଡ଼ମାନ ମଧ୍ୟ ଚିରଶ୍ୟାମଳ ହୋଇଛନ୍ତି ଏବଂ ଏହି ମନୋରମ ସହର ଶ୍ୟାମଳ ମେଖଳା ସୃଷ୍ଟି କରିଛି ।

ପରେ ଯେତେବେଳେ ଷ୍ଟାଲିନାବାଦ୍‌ର ପ୍ରତ୍ୟେକ ଅଞ୍ଚଳ ଆମେ ବୁଲି ଦେଖିଲୁ, ସେତେବେଳେ ଏହି ବିରାଟ କୃତିତ୍ୱ କଥା ଅନୁଭବ କରି ଆଶ୍ଚର୍ଯ୍ୟ ହୋଇଗଲୁ । ସର୍ବମୋଟ ଷ୍ଟାଲିନାବାଦ୍ ସହରରେ ୩୦ ଲକ୍ଷ ଗଛ ଲାଗିଛି । ଗଛଗୁଡ଼ିକ ପପଲାର୍, ଲାଇମ୍, ବାର୍ଚ୍ଚ ଏବଂ ସାଗୁଆନ । ପାହାଡ଼ମାନଙ୍କରେ ଏକପ୍ରକାର ଧଣିଘ୍ନ ଜାତୀୟ ଘାସ ଲଗାଯାଇ ସେମାନଙ୍କର ଖତ ଉପରେ ଲାଇମ୍ ଗଛ ଲଗାଯାଇଛି । ଏବେ ବି ପାହାଡ଼ଗୁଡ଼ିକୁ ଚାହିଁଲେ ସେଗୁଡ଼ିକରେ ବଡ଼ ବଡ଼ ଗଛ ଦେଖିବାକୁ ମିଳେ ନାହିଁ । ଗଛଗୁଡ଼ିକ ଏଭଳି

ଶିଶୁ ଅବସ୍ଥାରେ ଅଛନ୍ତି ଯେ ପାହାଡ଼ ଦେହରେ ଶାଗୁଆ ପ୍ଲାଷ୍ଟର୍ ବୋଳା ହେଲାପରି ଦେଖାଯାଏ ।

ଷ୍ଟାଲିନାବାଦ୍‌ର ଉପକଣ୍ଠରେ ଦୋସାମ୍ବେ ନଦୀ ବହିଯାଉଛି । ଖାଲି ପଡିଆରାପାଇଁ ନାଁଟା ତା'ର ନଦୀ; କିନ୍ତୁ ତାହା ଗୋଟିଏ ନାଳ ଛଡ଼ା ଆଉ କିଛି ନୁହେଁ । ସେଇ ନଦୀର ସେପଟ ତଟରେ ଗୋଟିଏ ବା ଦୁଇଟି ଗଛର ଧାଡ଼ି ଲମ୍ବିଛି ବହୁଦୂରଯାଏ । ସେହି ଗଛଧାଡ଼ି ସେପଟେ ଖାଲି ଟାଙ୍ଗରଭୂମି; ଗୋଟିଏ ଘାସଗଛ ବି ସେପଟେ ଉଠେ ନାହିଁ । ବିନ୍ଧାଣି ତାହାପ୍ରତି ଆମର ଦୃଷ୍ଟି ନିବଦ୍ଧ କରି କହିଲେ, "ଦୋସାମ୍ବେ ନଦୀର ସେପଟେ ଯେଉଁ ଅବସ୍ଥା ଥିଲା । ନଦୀ ଆର ପଟରେ ତ ମାଟି ନାହିଁ, ଖାଲି କଙ୍କର । ତୁମେ ସିନା ମାଟିରେ ଗଛ ପୋତିବ; କଙ୍କରରେ କି ଗଛ ପୋତିବ ? ତେଣୁ ସେମାନେ ପ୍ରସ୍ତରତକ ସେଠାରୁ କାଢ଼ି ଲରିରେ ମାଟି ନେଇ ସେଇ ମାଟି ପକାଇ ଗଛ ପୋତିଛନ୍ତି ।"

"ତା ଛଡ଼ା ପାଣିର ଅଭାବ ଏକ ପ୍ରଧାନ ଅଭାବ । ସେଥିପାଇଁ ଏପରି ଗଛ ପୋତିବାକୁ ପଡ଼ିବ ଯାହା ପାଇଁ ପାଣିର ବେଶି ପ୍ରୟୋଜନ ପଡ଼ିବ ନାହିଁ । ପ୍ରଚୁର ପାଣି ଲୋଡ଼ା ନଥିବା ଗଛପତ୍ର ପାହାଡ଼ମାନଙ୍କରେ ବେଶି ଲାଗିଛି । ପ୍ରଥମେ ଗଛଗୁଡ଼ିକ ବଞ୍ଚିବା ବିଷୟରେ ଆଶଙ୍କା ଥିଲା । କିନ୍ତୁ ଶହେକେ ଅଶି ଗଛ ବେଶ୍ ହୃଷ୍ଟପୁଷ୍ଟ ହୋଇ ବଢ଼ିଛନ୍ତି, ତେଣୁ ଆମର ଗଛ ପୋତିବାର ଦୃଷ୍ଟିକୋଣ ଏବଂ ଯୋଜନା ସଫଳ ହୋଇଛି ।"

## ପାଞ୍ଚ

ମଣିଷର ଅପାର ଦେଶପ୍ରେମ ଏବଂ ଆନ୍ତରିକତା କିପରି ଅସାଧ୍ୟ ସାଧନ କରିପାରେ, ଷ୍ଟାଲିନାବାଦ୍ ସହର ହିଁ ତାହାର ଏକ ଜ୍ୱଳନ୍ତ ସାକ୍ଷୀ । ଆମର ଭୁବନେଶ୍ୱର ପରି ଏଠାରେ ତାଜିକ୍ ସାଧାରଣତନ୍ତ୍ରର ଗୋଟିଏ ପ୍ରାଦେଶିକ ରାଜଧାନୀ କରିବାର ବନ୍ଦୋବସ୍ତ କରାଯାଉଥିଲା । ପାଖରେ ଦୋସାମ୍ବେ ନଦୀ ବହିଯାଉଛି । ଗୋଟିଏ ପାଖରେ ହିନ୍ଦୁକୁଶ ପାହାଡ଼ । ଏ ପଟେ ଗିସାର୍ ପାହାଡ଼ ଏବଂ ତା'ର ଉପତ୍ୟକା । ତେଣୁ ସୋଭିଏଟ୍ ଦେଶର ଏହି ନୂତନତମ ସାଧାରଣତନ୍ତ୍ର ପାଇଁ ଏହି ସ୍ଥାନଟି ରାଜଧାନୀର ଉପଯୁକ୍ତ ବୋଲି ବିବେଚିତ ହୋଇଥିଲା । ସେତେବେଳେ ଯୋଜନାକାରୀମାନେ କେବଳ କେତୋଟି ସରକାରୀ ଦପ୍ତର, ସେକ୍ରେଟେରୀଏଟ୍ ଏବଂ କେତୋଟି ସାଧାରଣ ଅନୁଷ୍ଠାନ, କ୍ରୀସେ (ଶିଶୁସଦନ), କିଣ୍ଡରଗାର୍ଟନ, ଅପେରା ହାଉସ, ଥିଏଟର, ଗୋଟାଏ ବା ଯୋଡ଼ିଏ ପାର୍କ ଅଫ୍ କଲଚର୍ ଅର୍ ରେଷ୍ଟ ଇତ୍ୟାଦି ତିଆରି କରିବେ ବୋଲି କଳ୍ପନା

କରିଥିଲେ । କାରଣ ସେତେବେଳେ ସବୁଠାରୁ ସ୍ୱପ୍ନିଳ ଆଶାବାଦୀର ମଧ କଳ୍ପନାଭିତରେ ନଥିଲା ଯେ ଏହି ଦୁରନ୍ତର ସଭ୍ୟତାଠାରୁ ବିଚ୍ଛିନ୍ନ ଅଧିତ୍ୟକା ଭିତରେ ଆଧୁନିକ ସହର ତୋଳାର ସରଞ୍ଜାମଦ୍ୱାରା ଗୋଟାଏ ଆଖିଦୃଶିଆ ଜନବସତି ଗଢ଼ି ଉଠିବ ।

ତେଣୁ ପ୍ରଥମେ ପ୍ରଥମେ ଷ୍ଟାଲିନାବାଦ୍ ବିଶେଷ କୌଣସି ଯୋଜନା ଅନୁସାରେ ଗଢ଼ାଯାଇ ନଥିଲା । ଅବଶ୍ୟ କୋଠାଘର ଗୁଡ଼ିକର ପ୍ଲାନ୍ ଥିଲା; କିନ୍ତୁ ସମଗ୍ର ସହରପାଇଁ ଗୋଟାଏ ଯୋଜନାର ବ୍ୟବସ୍ଥା ନଥିଲା । ୧୯୩୧ ମସିହାରେ ପ୍ରଥମ ଯୋଜନା ପ୍ରସ୍ତୁତ ହେଲା ଏବଂ ସେହିଦିନଠାରୁ ସୋଭିଏଟ୍ ଦେଶର ପ୍ରତ୍ୟେକ ପଞ୍ଚବାର୍ଷିକ ଯୋଜନା ଅନୁସାରେ ଏହି ସହରର ଦ୍ରୁତ ଉନ୍ନତି ଚାଲିଛି । ୧୯୩୧ ପୂର୍ବରୁ ଏହାର ଲୋକସଂଖ୍ୟା ଏକଶହ ତିରିଶ ହଜାର ହୋଇଗଲା । ବର୍ତ୍ତମାନର ଲୋକସଂଖ୍ୟା ଦେଢ଼ଲକ୍ଷରୁ ବେଶି । ଇତିହାସରେ ଏପ୍ରକାର ଦ୍ରୁତବେଗରେ ଖୁବ କମ୍ ସହର ଗଢ଼ିଉଠିଛି ।

ଏକଥା ତ ଜଣାଶୁଣା ଯେ କେବଳ ସହର ଗଢ଼ିଉଠିଛି କହିଲେ କୌଣସି ଅର୍ଥ ହୁଏ ନାହିଁ । ଭାରତରେ କାନପୁର, ଜାମସେଦପୁର ପ୍ରଭୃତି ସହର ଗଢ଼ିଉଠିବାର କାରଣ ହେଉଛି ଏମାନେ ନୂତନ ଭାରତର ପ୍ରଧାନ ଶିଳ୍ପକେନ୍ଦ୍ର ହୋଇଛନ୍ତି । ଷ୍ଟାଲିନାବାଦ୍ ଆଜି କେବଳ ତାଜିକ୍ସ୍ତାନର ରାଜଧାନୀ – କେବଳ ଗୋଟାଏ ଭୁବନେଶ୍ୱର ନୁହେଁ। ଏହା ବର୍ତ୍ତମାନ ଏହି ନୂତନ ସଭ୍ୟତାର ଶିଳ୍ପ, ବାଣିଜ୍ୟ, ଶିକ୍ଷା, ସଂସ୍କୃତିର ରାଜଧାନୀ ଏବଂ ଏହି ରାଜଧାନୀର ବିଭିନ୍ନ ବିଭାଗ ପରିଚାଳନାରେ ତାଜିକ୍ ଯୁବକଯୁବତୀ ତାଲିମ ହୋଇଛନ୍ତି । ତାଜିକ୍ସ୍ତାନରେ ପଚିଶ ବର୍ଷ ତଳର ଅଶିକ୍ଷିତ ଅଥବା ସଭ୍ୟତା-ଆଲୋକରୁ ବଞ୍ଚିତ ଯୁବକଯୁବତୀ ନାହାନ୍ତି କହିଲେ ଚଳେ । କେବଳ ଏକ ନୂତନ ସଭ୍ୟତା ନୁହେଁ, ଏକ ନୂତନ ମନୁଷ୍ୟ ଗୋଷ୍ଠୀ ଗଢ଼ିଉଠିଛି ।

ଷ୍ଟାଲିନାବାଦ ହିଁ ତାଜିକ୍ ଅଗ୍ରଗତିର ଗଲା ୨୫ ବର୍ଷର ଏକ ସୁସ୍ପଷ୍ଟ ମ୍ୟୁଜିୟମ । ପ୍ରଥମେ ଏଠାରେ ଯୁବକଯୁବତୀମାନେ ଯେତେବେଳେ କାରିଗରୀ ବିଦ୍ୟା ଶିଖିଲେ, ସେତେବେଳେ କେବଳ ଏକମହଲା ଘର ତୋଳିପାରୁଥିଲେ । ତେଣୁ ପୁରୁଣା ଘରଗୁଡ଼ିକ ଏକମହଲା । ସେହି ଘରଗୁଡ଼ିକ ଆଧୁନିକ ଭାରତୀୟ ଘର ତୋଳାଭଳି ଇଟା-ଚୂନ-ସୁରକିରେ ହିଁ ତିଆରି । ପରବର୍ତ୍ତୀ ଘର ଦୁଇ, ତିନି ଏବଂ ତା'ପରେ ବହୁ ମହଲା ହେଲାଣି । ଆଗେ ସେମାନେ କେବଳ ହାତରେ ଘର ତୋଳୁଥିଲେ; କିନ୍ତୁ ଏବେ ଘରତୋଳାର ପ୍ରାୟ ଅଧିକାଂଶ କାମ ମେସିନ୍ ସାହାଯ୍ୟରେ ଚାଲିଛି । ଷ୍ଟାଲିନାବାଦର ଉପକଣ୍ଠରେ ଯେଉଁ ନୂଆ ୟୁନିଟ୍‌ମାନଙ୍କରେ ଘରତୋଳା ଚାଲିଛି, ସେଗୁଡ଼ିକର ପ୍ରିଫାବ୍ରିକେଟେଡ୍ କାନ୍ଥ, କଡ଼ି ଏବଂ ସେଗୁଡ଼ିକୁ ଉପରକୁ ନେବାପାଇଁ ବିରାଟ କ୍ରେନ୍

ସବୁ ଦେଖିବାକୁ ମିଳିଲା । ଏବେ ସେମାନେ ଫାକ୍ଟରୀ ବସାଇ ଘରଗୁଡ଼ିକର ପାର୍ଟ ତିଆରି କରୁଛନ୍ତି । ପ୍ରଧାନ ବିନ୍ଧାଣି କହିଲେ, "ଦୁଇ ବର୍ଷ ପରେ ଆପଣମାନେ ଯଦି ଷ୍ଟାଲିନାବାଦ୍ ଆସି ଦେଖନ୍ତି; ତେବେ ଦେଖିବେ, ଏଠାରେ କେବଳ ମୋଟରଗାଡ଼ି ବା ରେଳଗାଡି ତିଆରି କଲାଭଳି କେତେଗୁଡ଼ାଏ ସିମେଣ୍ଟ ଆଉ ଲୁହା ସମ୍ବଳିତ ଘରକୁ ଏକାଠି କରି ରାତି ରାତିକେ ଆମ୍ଭେମାନେ ନୂଆ ଘର ତୋଳିବାରେ ସମର୍ଥ ହେବୁ । ଏ ପର୍ଯ୍ୟନ୍ତ ଆମେ ଆମର ଆବଶ୍ୟକୀୟ ସରଞ୍ଜାମପାଇଁ ପୂରାପୂରି ଆତ୍ମନିର୍ଭରଶୀଳ ହୋଇ ପାରିନାହୁଁ ।"

ଉତ୍ତରରେ ଦୋସାମ୍ଭେ ନଦୀର ସରୁ ରେଖାପରି ଧାରଠାରୁ ଦକ୍ଷିଣରେ ବିରାଟ ସମତଳ ପ୍ରାନ୍ତରକୁ ମାଡ଼ି ଷ୍ଟାଲିନାବାଦ୍ ସହର ଏକ ଆୟତ ବର୍ଗକ୍ଷେତ୍ରପରି ରହିଛି । ଏହାର ଲମ୍ବ ସାତ କିଲୋମିଟର ଏବଂ ପ୍ରସ୍ଥ ମଧ ସାତ କିଲୋମିଟର । ଏହି ବର୍ଗକ୍ଷେତ୍ରର ଆକାରକୁ ଅବ୍ୟାହତ ରଖି ଲମ୍ବ ଏବଂ ଓସାରରେ ସହରତୋଳା ଚାଲିଛି । ଉତ୍ତରକୁ ସହର ତ ବଢ଼ିପାରିବ ନାହିଁ; କାରଣ ନଦୀ ରହିଛି । ଦକ୍ଷିଣରେ ସହର ବଢୁଛି । ଆଉ ବଢୁଛି ପୂର୍ବ ଓ ପଶ୍ଚିମ ଦିଗରେ । ସହର ଭିତରେ ଷ୍ଟାଲିନାବାଦ୍ ବିଶ୍ୱବିଦ୍ୟାଳୟ, ଅନେକଗୁଡ଼ିଏ ସିନେମାଘର, ଶିଶୁମାନଙ୍କର ଅନୁଷ୍ଠାନମାନ, ଅନେକଗୁଡ଼ିଏ ଡାକ୍ତରଖାନା, ଶିଶୁ-ସଦନ (ନର୍ସରୀ), କିଣ୍ଡରଗାର୍ଟେନ ଇତ୍ୟାଦି ତୋଳାଯାଇଛି । ସୋଭିଏଟ୍ ଦେଶର ପ୍ରତ୍ୟେକ ସହରର ଏକ ଅବିଚ୍ଛେଦ୍ୟ ଅଙ୍ଗ ହିସାବରେ ଗୋଟିଏ ଷ୍ଟେଡିୟମ୍ ରହିଛି । ଏଇଠି ସାଇକେଲ ରେସ୍ ରିହର୍ସାଲ କରୁଥିବା ସ୍ୱାସ୍ଥ୍ୟବତୀ ଅନେକଗୁଡ଼ିଏ ଯୁବତୀଙ୍କୁ ଦେଖିଥିଲୁଁ । ତା' ଛଡ଼ା ସୋଭିଏଟ୍ ଦେଶର ପ୍ରତ୍ୟେକ ସହରରେ ଯେପରି ପାର୍କ ଅଫ୍ କଲଚର ଏଣ୍ଡ୍ ରେଷ୍ଟ (ସଂସ୍କୃତି ଏବଂ ବିଶ୍ରାମର ଉଦ୍ୟାନ) ଥାଏ, ଏଇଠି ସେମିତି ଗୋଟିଏ ଉଦ୍ୟାନ ରହିଛି ।

ଏଭଳି ଗୋଟିଏ ଉଦ୍ୟାନ ବିଷୟରେ ଗୋଟିଏ ବଡ଼ ପୋଥି ଲେଖାଯାଇପାରେ । ଏଭଳି ପାର୍କର ଧାରଣା ଦେବାପାଇଁ ଆମ ଭାରତବର୍ଷରେ କୌଣସି ତୁଳନା ନାହିଁ । ବମ୍ବେରେ ମାଲବାର ହିଲ୍‌ର ଝୁଲନ୍ତ ବଗିଚା (Hanging Garden) ଇତ୍ୟାଦି ଅବଶ୍ୟ ଅତୀବ ମନମୋହକର । କିନ୍ତୁ ଏହା କେବଳ ସୌନ୍ଦର୍ଯ୍ୟ ଏବଂ ମନୋହାରିତାପାଇଁ ବିଖ୍ୟାତ । ଏହା କେବଳ ପର୍ବଦିନରେ ପଲାଉ ଖାଇଲାପରି, ନିତିଦିନିଆ ନୁହେଁ । କିନ୍ତୁ ସୋଭିଏଟ୍‌ର ବିଶ୍ରାମ ଏବଂ ସଂସ୍କୃତିର ପାର୍କଗୁଡ଼ିକ ଆଠକାଳି ବାରମାସୀ ଉପଭୋଗ ଏବଂ ଶିକ୍ଷାପାଇଁ ଗଢ଼ାଯାଇଛି । ପ୍ରଥମ ପାର୍କର ବିରାଟ ତୋରଣପରି ଫାଟକରେ ସୋଭିଏଟ୍ ଦେଶର ଅଗ୍ରଗତିର ନାନା ତାଲିକା, ପଞ୍ଚବାର୍ଷିକ ଯୋଜନାମାନଙ୍କର ହିସାବ

ଦେଖିବାକୁ ମିଳିବ । ତା'ପରେ ପୃଥିବୀର ଏବଂ ସୋଭିଏଟ୍ ଦେଶର ଯୁଗାନ୍ତକାରୀ ନେତା, ନାଗରିକ, ବୈଜ୍ଞାନିକ, କବି ପ୍ରଭୃତିଙ୍କର ତୈଳଚିତ୍ର ବିରାଟ ସିମେଣ୍ଟ ଫ୍ରେମ୍‌ଭିତରେ ମୁକ୍ତ ଆକାଶର ଚନ୍ଦ୍ରାତପତଳେ ଛିଡ଼ା ହୋଇଥିବାର ଦେଖିବାକୁ ମିଳେ । ଷ୍ଟାଲିନାବାଦ୍‌ରେ ଆମେ ଭାରତର ଶାନ୍ତି ଆନ୍ଦୋଳନର ନେତା ଡାକ୍ତର କିଚ୍‌ଲୁ ଏବଂ ମେଜର ଜେନେରାଲ ଶୋଖେଙ୍କର ପ୍ରତିକୃତି ମଧ ଏଇଠି ଦେଖିବାକୁ ପାଇଲୁ । ଏଇଠି ସେକ୍‌ସପିଅର, ଗେଟେ, ଡିକେନ୍‌ସ, ହୁଇଟମ୍ୟାନ, ଭିକ୍ଟର ହ୍ୟୁଗୋଙ୍କଠାରୁ ଆରମ୍ଭ କରି ରୁଷିଆର ପୁଷ୍କିନ୍, ଟଲଷ୍ଟୟଙ୍କଯାଏ ଲେଖକ ଓ କବି ଏବଂ ତା'ପରେ ତାଜିକ୍‌ସ୍ଥାନର ଅଭିସେନା, ହାଫିଜ୍, ଓମରଖାୟାମ୍‌ଙ୍କର ପ୍ରାଚୀନ କୃତିଠାରୁ ଆଜିର ମିର୍ଜା ତାରସନ୍ ଜାଦେଙ୍କ ପର୍ଯ୍ୟନ୍ତ କବି, ବୈଜ୍ଞାନିକ ଏବଂ ଲେଖକମାନଙ୍କର ପ୍ରତିକୃତି ରହିଛି । ଏଇଠି ସୋଭିଏଟ୍ ଦେଶର ଷୋହଳ ଗୋଟି ଜାତିର ବିଭିନ୍ନ ଭାଷା ଏବଂ ସଂସ୍କୃତିର ବିଷୟ ବିରାଟ ସିମେଣ୍ଟ ଫଳକମାନଙ୍କରେ ନାନାବର୍ଣ୍ଣର ଆକର୍ଷକ ରଙ୍ଗରେ ଲିପିବଦ୍ଧ ହୋଇଛି । ମଧ-ଭାଗରେ ଅଭିସେନାଙ୍କର ପ୍ରକାଣ୍ଡ ମର୍ମର ମୂର୍ତ୍ତି ଏବଂ ତାହାର ଘେରିପଟେ ଚୀନ୍, ରୁମାନିଆ, ବୁଲଗେରିଆ, ହଙ୍ଗେରୀ, ପୋଲାଣ୍ଡ ଆଦି ଜନଗଣତନ୍ତ୍ରର ପତାକା ଏବଂ ତାହାରି ତଳେ ସେମାନଙ୍କ ବିଷୟରେ ଜ୍ଞାତବ୍ୟ ବିଷୟମାନ ଲିପିବଦ୍ଧ ରହିଛି ।

ଏହି ବିଶ୍ରାମ ଏବଂ ସଂସ୍କୃତି ପାର୍କ ଆମୋଦ ଆଉ ଶିକ୍ଷାର ଗୋଟାଏ ସଂସାର ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଆମେ ତା' ଭିତରେ ପଶିବାମାତ୍ରେ ପ୍ରାୟ ୫୦୦/୬୦୦ ଯାଏ ଯୁବକଯୁବତୀ ଆମକୁ ବେଢ଼ିଗଲେ । କେତେ ଯେ ଆଇସକ୍ରିମ୍ ଖାଇଛୁଁ, ତା'ର ହିସାବ ନାହିଁ । ସୋଭିଏଟ୍ ଦେଶରେ ଲୋକେ ଆଇସକ୍ରିମ୍ ଖାଇବାକୁ ବଡ଼ ଭଲ ପାଆନ୍ତି । ସେତେବେଳକୁ ଜୁନ ମାସ । ଷ୍ଟାଲିନାବାଦ୍‌ର ଖରା ଦିଲ୍ଲୀ ସହର ଖରାଭଳି ପ୍ରଖର ହେଉ ନ ଥିଲେ ବି ଗରମ ବୋଧ ହେଉଥାଏ । ତେଣୁ ବୋଧହୁଏ ପାର୍କର ଠାଏ ଠାଏ ଆଇସକ୍ରିମ୍‌ର ଦୋକାନ ଥାଏ । କହିବା ଦରକାର ନାହିଁ ଯେ ଦୋକାନଗୁଡ଼ିକ ସରକାରୀ । ଦୋକାନ ଚଳାଉଥିବା ଲୋକ ବା ସ୍ତ୍ରୀଲୋକ ସରକାରୀ କର୍ମଚାରୀ । ଏହି ଆଇସକ୍ରିମ୍ ବା ସିଗାରେଟ୍, ଲିମୋନେଡ୍ ମିନରାଲି ଭୋଦା (ମିନରାଲ ୱାଟର ବା ସୋଡ଼ା) ଦୋକାନଗୁଡ଼ିକ କାଠରେ ତିଆରି । ଛାତ ମଧ କାଠ । ସେ ଦୋକାନଗୁଡ଼ିକର ତଳେ ରବର ଟାୟାରଦିଆ ଚକ ଥାଏ । ଠିକ୍ କରି କହିପାରିବି ନାହିଁ; କିନ୍ତୁ ମୋର ମନେ ହେଉଛି, ଏପରି ଗୋଟିଏ ଗୋଟିଏ ଟ୍ରକ୍‌ଦ୍ୱାରା ଜାଗାରୁ ଜାଗାକୁ ନେଇହେବ ।

ଆମଭିତରେ ଦୁଇ ଜଣ ପର୍ସିୟାନ୍‌ଭାଷା ଜାଣିଥିବା ଭାରତୀୟ ଥିଲେ । ସେମାନେ ସେଠାରେ ଏକାବେଳକେ ସ୍ଥାୟୀ ବାସିନ୍ଦାଭଳି ମିଶିଗଲେ । ଜମାରୁ ତ ବାର ଜଣ ଲୋକ ଥାଉ । ସେଥିଭିତରୁ ଦୁଇ ଜଣ ମହିଳା । ସେ ଦୁଇଜଣଙ୍କର ଶାଢ଼ୀ ସେଠାରେ ଗୋଟାଏ ଅପୂର୍ବ କୌତୂହଳ ସୃଷ୍ଟି କରୁଥାଏ । ଷ୍ଟାଲିନାବାଦ୍‌ଟା ରୁଷିଆର ଗୋଟାଏ କଡ଼ପଟରେ ଥିବା ଅଞ୍ଚଳରେ ଅବସ୍ଥିତ । ଏଠାକୁ ସାଧାରଣତଃ ରୁଷିଆ ବାହାର ଲୋକେ ଆସୁ ନଥିଲେ । ଆମ ପୂର୍ବରୁ ମଧ ଯେତେ ଭାରତୀୟ ରୁଷିଆ ଆସିଛନ୍ତି, ସେମାନେ ଖୁବ୍ ବେଶିହେଲେ ତାସକନ୍ଦ ବା ସମରକନ୍ଦଯାଏ ଆସନ୍ତି । ଆମର ଯିବାର ଅଳ୍ପଦିନ ପୂର୍ବରୁ ପଣ୍ଡିତ ଜବାହରଲାଲ ନେହରୁ ତାସକନ୍ଦ ଆଉ ସମରକନ୍ଦ ବୁଲି ବାହାରି ଯାଇଥାନ୍ତି । ଆମ ପୂର୍ବରୁ ଡାକ୍ତର ମଦନ ଅଟଲ ଏବଂ ଡାକ୍ତର ଲଙ୍କାସୁନ୍ଦରମ୍‌ଙ୍କ ନେତୃତ୍ୱରେ ବୋଧହୁଏ ଦଳେ ଭାରତୀୟ ଏଠାକୁ ଆସିଥିଲେ । ଆମେ ହେଉଛୁ ତୃତୀୟ ଦଳ । ଅଥଚ ତାସକନ୍ଦ ବା ସମରକନ୍ଦରେ ସେମାନେ ଆମକୁ କହିଛନ୍ତି, ଆମେ ପଞ୍ଚମ ବା ଷଷ୍ଠ ଦଳ ।

ତେଣୁ ଆମେ ଥିଲୁ ଷ୍ଟାଲିନାବାଦ୍‌ରେ ଏକ ଅପୂର୍ବ ପ୍ରଦର୍ଶନୀ । ଜଣେ ଆସାମବାସୀ, ପାଞ୍ଚଜଣ ବଙ୍ଗାଳୀ, ଜଣେ ହାଇଦରାବାଦର ମୁସଲମାନ, ଜଣେ ଓଡ଼ିଆ, ଦୁଇଜଣ ପଞ୍ଜାବୀ ମହିଳା । ଜଣେ ଦିଲ୍ଲୀବାଲା ହିନ୍ଦୁସ୍ଥାନୀ, ଜଣେ ମାଲବାରୀ ମାଲୟଲାମ୍‌ଭାଷୀ । ଆମମାନଙ୍କର ପରସ୍ପର ଚେହେରା ମଧ ବିଭିନ୍ନ ପ୍ରକାର ଥିଲା । ଅବଶ୍ୟ ଆମ ଭିତରୁ କେହି ଧୋତି-ପଞ୍ଜାବୀ ପିନ୍ଧୁ ନଥିଲେ । ଆମେ ଅଧିକାଂଶ ଟାଇଭିଡୁ ନଥିଲୁ । ଓଭରକୋଟ ତ ଦୂରର କଥା, କୋଟ୍ ଟାଏ ମଧ ଦେହରେ ପକାଇବା ଦରକାର ପଡୁ ନଥିଲା । ତେଣୁ ଆଜିକାଲି ଭାରତୀୟ ସହରମାନଙ୍କରେ ଚଳପ୍ରଚଳ ହେଉଥିବା ଖଣ୍ଡେ ଖଣ୍ଡେ ହାଫ୍ ବା ଫୁଲ ସାର୍ଟପିନ୍ଧା ଟ୍ରାଉଜରବାଲା ଯୁବକ ଭଳି ଆମେ ଯେ କୌଣସି ବୟସର ପୁରୁଷ, ସ୍ତ୍ରୀ ବୋଲି ବିଦେଶୀ ଲୋକେ ମନେ କରିବାରେ ଆଶ୍ଚର୍ଯ୍ୟ ହେବାର କିଛି ନଥିଲା ।

## ଛଅ

ଷ୍ଟାଲିନାବାଦ୍ ସହରଟି ଗୋଟିଏ ପୂରାପୂରି ସମାଜବାଦୀ ସହର । ଏହାର ଅର୍ଥ, ଏହି ସହରଟିର ପ୍ରତ୍ୟେକ ଘର ସମାଜବାଦୀ କାଳରେ ତିଆରି ହୋଇଛି । ଏହାର ପ୍ରତ୍ୟେକ ବୃକ୍ଷଲତା, ଏହାର ବିପୁଳ ପୁଷ୍ପବାଟିକା, ପାଣିର ଉଚ୍ଛଳ ଫୁଆରା ଏବଂ ପ୍ରତ୍ୟେକ ଛକ ପାଖରେ ଥିବା ଚଉକଗୁଡ଼ିକରେ ଥିବା ବିଭିନ୍ନ ଅନୁଷ୍ଠାନସବୁ ଗତ ପ୍ରଚିଶ

ବର୍ଷ ଭିତରେ ତିଆରି ହୋଇଛି । ଆମର ଭୁବନେଶ୍ୱରପରି ଏଠାରେ ଗୁଡ଼ିଏ ୟୁନିଟ୍ ରହିଛି । ସମସ୍ତ ସହର ପଚିଶ ଗୋଟି ୟୁନିଟ୍‌ରେ ବିଭକ୍ତ । ଆଗରୁ କହିଛି, ଛଅ ଗୋଟି ରାସ୍ତା ଓସାର-ବାଗରେ ଏବଂ ଛଅ ଗୋଟି ରାସ୍ତା ଲମ୍ବ-ବାଗରେ ଗୋଟିଏ ବର୍ଗକ୍ଷେତ୍ର ଭଳି ଏହି ସହରଟିକୁ ୨୫ ଗୋଟି ବର୍ଗକ୍ଷେତ୍ରରେ ବିଭକ୍ତ କରିଛି । ଏହି ଲମ୍ବ ଓସାରରେ ପଡ଼ିଥିବା ବାରଗୋଟି ରାସ୍ତା ପ୍ରତ୍ୟେକ ଛଅ ଛଅ ଗୋଟି ରାସ୍ତାର ସମଷ୍ଟି । ତେଣୁ ମୋଟ ଉପରେ ୭୨ ଗୋଟି ରାସ୍ତା – ଅର୍ଥାତ୍ ଲମ୍ବରେ ୩୬ଟି ଏବଂ ଓସାରରେ ୩୬ଟି ରାସ୍ତା ଏହି ସହରର ଚତୁର୍ଦ୍ଦିଗର ସୀମା ସ୍ଥିର କରିଛି । ସହର ଭିତରେ ଗୋଟିଏ ବିଶ୍ୱବିଦ୍ୟାଳୟ, ଅନେକ ଗୁଡ଼ିଏ ସିନେମା, ଶିଶୁମାନଙ୍କର ଅନୁଷ୍ଠାନ, ଡାକ୍ତରଖାନା, ନର୍ସରୀ ବା ଶିଶୁସଦନ, କିଣ୍ଡରଗାର୍ଟନ ବା ଶିଶୁ-ବିଦ୍ୟାଳୟ ରହିଛି ।

ଆଜିକୁ ତିରିଶ ବର୍ଷ ପୂର୍ବରୁ ଆସିଥିଲେ ଆମ୍ଭେମାନେ ଗୁଡ଼ିଏ ଲଣ୍ଡା ପାହାଡ଼– ପରିବେଷ୍ଟିତ ଏକ ଅପନ୍ତରା କଙ୍କରମୟ ଭୂମି ଏହିଠାରେ ଦେଖିଥାଆନ୍ତୁ; କିନ୍ତୁ ବର୍ତ୍ତମାନ ପାହାଡ଼ଗୁଡ଼ିକ ଶ୍ୟାମଳ ବୃକ୍ଷରାଜିରେ ଶୋଭିତ ହୋଇଛନ୍ତି । ଏଠାରେ ପ୍ରକୃତିର ଜଳଦାନ ଉଦାର ନୁହେଁ । ବର୍ଷା ଖୁବ୍ କମ୍ ହୁଏ । ତେଣୁ କଙ୍କର ସଫା କରି ବୃକ୍ଷରୋପଣ କରିବାକୁ ପଡ଼ିଥାଏ । ତେଣୁ ଚତୁର୍ଦ୍ଦିଗର ପାହାଡ଼ରେ ଗଛ ପୋତିବା କି ଦୁଷ୍କର, ତାହା ସହଜେ ଅନୁମାନ କରାଯାଇପାରେ; କିନ୍ତୁ ପାହାଡ଼ରେ ଗଛ ପୋତାଯାଇଛି । ଗୋଟିଏ ଯୋଡ଼ିଏ ନୁହେଁ, ତିରିଶ ଲକ୍ଷ ଗଛ ଏବଂ ଏହି ତିରିଶ ଲକ୍ଷ ଗଛ ମଣିଷର ଅଦ୍ଭୁତ ସୃଜନ କୃତିର ମହିମା ଗାନ କରୁଛନ୍ତି । ସେଗୁଡ଼ିକ ମଣିଷ ହାତରେ ବଢ଼ିଛନ୍ତି । ତେଣୁ ସମସ୍ତ ଷ୍ଟାଲିନାବାଦ୍ ଏବଂ ତା'ର ଚତୁର୍ଦ୍ଦିଗ ଗୋଟିଏ ବିରାଟ ରମଣୀୟ ବଗିଚ୍ଚପରି ଦିଶୁଛି । କୌଣସିଠାରେ ଖିଆଲ ନାହିଁ, ସବୁ ଯୋଜନା ଅନୁସାରେ ହୋଇଛି । ତେଣୁ ଏହା ହିଁ ମଣିଷ ସୃଷ୍ଟ ସମାଜବାଦର ଅବଦାନ । ପ୍ରକୃତପକ୍ଷେ ଷ୍ଟାଲିନାବାଦ ସମାଜବାଦୀ ସହର ଏବଂ ମଣିଷର ସାମାଜିକ ସାମୂହିକ ପ୍ରଚେଷ୍ଟାର ଅପୂର୍ବ କୃତି ।

ଷ୍ଟାଲିନାବାଦ୍‌ରେ ଆମର ପ୍ରଥମ ଦିନର ସ୍ମୃତିଭିତରେ ଏକ ବିରାଟ ହ୍ରଦରେ ମୋଟର ବୋଟଯୋଗେ ଭ୍ରମଣ ସ୍ମୃତିର ଏକ ଅକ୍ଷୟ ସମ୍ପଦରୂପେ ଜାଗରୂକ ରହିବ । ଏହି ହ୍ରଦ ଷ୍ଟାଲିନାବାଦର ଅନ୍ୟାନ୍ୟ ଜିନିଷ ଭଳି ମଣିଷଗଢ଼ା । ଏହା ପ୍ରାକୃତିକ ନୁହେଁ; କିନ୍ତୁ ଏତେ ବଡ଼ ହ୍ରଦ ଯେ ମଣିଷ ଖୋଳିପାରିଛି, ତାହା ବିଶ୍ୱାସ କରି ହୁଏ ନାହିଁ । ପୁଣି ଏହାକୁ ଷ୍ଟାଲିନାବାଦ୍‌ର ଯୁବକ ଅନୁଷ୍ଠାନର ତରୁଣ ଯୁବକ କମ୍ୟୁନିଷ୍ଟ ଲିଗ୍‌ର ସଭ୍ୟମାନେ ଆପଣା ହାତରେ ଖୋଳିଛନ୍ତି । ହ୍ରଦ ଖୋଳାହେବା ଆରମ୍ଭ ହୋଇଥିଲା ୧୯୨୭ ମସିହାରେ । ସେତେବେଳେ ସୋଭିଏତ୍ ଦେଶରେ ଆଧୁନିକ ବିରାଟ ଖନନଯନ୍ତ୍ର

Walking Excavator (ଚଳନ୍ତି ଖନନକାରୀ ଯନ୍ତ୍ର) ତିଆରି ହୋଇ ନଥିଲା । ତେଣୁ ପ୍ରାଥମିକ ଅବସ୍ଥାରେ କ୍ଷୁଦ୍ର କ୍ଷୁଦ୍ର ଯନ୍ତ୍ରପାତି ଏବଂ ପ୍ରାଥମିକ ଖଣତିରେ ହିଁ ଏହା ଖୋଳା ଯାଇଥିଲା । ପରବର୍ତ୍ତୀକାଳରେ ଅବଶ୍ୟ ଏଥିରେ ଖନନ ଯନ୍ତ୍ରପାତି ବ୍ୟବହାର କରି ଏହାର ଆକାର ବିସ୍ତାର କରାଯାଇଛି ।

ହ୍ରଦଟି ଆମର ବିନ୍ଦୁସାଗର ପୋଖରୀର ଦୁଇଗୁଣରୁ ଅଧିକ ହେବ । କିନ୍ତୁ ବିନ୍ଦୁସାଗର ଭଳି ଏହାର ଚତୁର୍ଦ୍ଦିଗରେ ପଥରର ବାଡ଼ ନାହିଁ । ଗୋଟିଏ ଗୋଟିଏ ପଟରେ ଏଥିରେ ଅନୁଚ୍ଚ ମାଟିର ହୁଡ଼ା ଅଛି ଏବଂ ଆମର କେତେକ ସାଧାରଣ ପୋଖରୀଭଳି ଏହି ହୁଡ଼ା ଚାରିପଟେ ସଡ଼କ ରହିଛି । ହ୍ରଦଟି ମଧ ଚାରିକୋଣିଆ ନୁହେଁ । ଏହାର ମଝିରେ ଗୋଟିଏ ସ୍ଥାନରେ ଖୋଳା ନ ହୋଇ ଗୋଟିଏ ଦ୍ୱୀପଭଳି ରହିଯାଇଛି । ଏହି ଦ୍ୱୀପରେ କେତୋଟି ଘର ସ୍ନାନାର୍ଥୀ ବା ସନ୍ତରଣକାରୀଙ୍କର ଲୁଗାପଟା ରଖିବାପାଇଁ ରହିଛି ଏବଂ କେତୋଟି ସିମେଣ୍ଟର ବା ଲୁହାର ଲମ୍ବା ବେଞ୍ଚ ରହିଛି । ହ୍ରଦର ତିନୋଟି ପ୍ରଧାନ ଘାଟରେ ସିମେଣ୍ଟ-ମେଜିଆର ପାହାଚ ରହିଛି । ହ୍ରଦର ହୁଡ଼ାଉପରକୁ ଉଠିବାର ପାହାଚ ଉପରେ ଚଢ଼ିଲାମାତ୍ରେ ଆମେ ଅଜସ୍ର ଯୁବକଯୁବତୀଙ୍କର ସ୍ୱାଗତ ଅଭିନନ୍ଦନ ଏବଂ କରତାଳି ଶୁଣିବାକୁ ପାଇଲୁଁ । ପାଣିଭିତରେ ଯେଉଁ ଦଳେ ଦଳେ ଯୁବକଯୁବତୀ ଛୋଟ ଛୋଟ ଡ଼ଙ୍ଗା ଖଣ୍ଡେ ଖଣ୍ଡେ ଧରି ନୌ-ଚାଳନ କରୁଥିଲେ, ସେମାନେ ମଧ ନିକଟ ଓ ଦୂରରୁ ଜୟଧ୍ୱନି କରି ଆମର ସମ୍ବର୍ଦ୍ଧନା କଲେ । ସେମାନଙ୍କ ଭିତରୁ କେତେକ ସାଦା ପୋଷାକ ପିନ୍ଧିଥିଲେ ଏବଂ କେତେକ ସନ୍ତରଣ-ପୋଷାକ ପିନ୍ଧିଥିଲେ ।

ପରବର୍ତ୍ତୀକାଳରେ ଆମେ ରୁଷଦେଶର ବହୁସ୍ଥାନରେ ମଟର-ବୋଟ ଯୋଗେ ବୁଲିଛୁଁ । ବିଶେଷତଃ ମସ୍କୋ-ନଦୀଉପରେ ମୋଟର-ବୋଟ ଚଢ଼ି ଆମେ ମସ୍କୋ-କେନାଲଯାଏ ପ୍ରାୟ ୧୫ ମାଇଲ ପର୍ଯ୍ୟନ୍ତ ଯାଇଛୁଁ ।

ସୋଭିଏଟ୍ ରୁଷିଆର ଅନ୍ୟତମ ସହର ଲେନିନଗ୍ରାଡ଼ରେ ନେଭା ନଦୀଉପରେ ମଧ ଆମେ ଖଣ୍ଡେଦୂର ଡଙ୍ଗାରେ ଚଢ଼ି ଯାଇଛୁଁ । ସାଧାରଣତଃ ଖରାପାଗରେ ଆମେ ଗଲାବେଳେ ଦେଖିଛୁଁ ହଜାର ହଜାର ସଂଖ୍ୟାର ନରନାରୀ ନଦୀକୂଳଯାକ ଛାଇହୋଇ ଯାଇଥାଆନ୍ତି । ସମସ୍ତ ନଦୀକୂଳରେ ଅକଳନ୍ତା ଡେକ୍ ଚେୟାର ବା କାନ୍‌ଭାସର ଆରାମ୍‌ଚୌକୀ, ବିଭିନ୍ନ ରଙ୍ଗର ମହିଳା ଛତାତଳେ କେତେକ ନୀଳବର୍ଣ୍ଣ ଆଖି ରୁଷୀୟ ଯୁବତୀ ଗାଧୋଇବା ପୋଷାକ ପିନ୍ଧି ଦେହକୁ ଅଳସଭାବରେ ଖରାରେ ମେଲି ଦେଇ ଥାଆନ୍ତି, କେବଳ ମୁଣ୍ଡଟି ମାତ୍ର ଛତାଭିତରେ ଥାଏ । ଆଉ ପାଣି ଭିତରେ ଗୋଟିଏ ଗୋଟିଏ ଦୁଇଜଣିଆ ଡଙ୍ଗାରେ ଗୋଟିଏ ଯୁବକ ଆଉ ଗୋଟିଏ ଯୁବତୀ ଅସଂଖ୍ୟ

ସଂଖ୍ୟାରେ ଭାସୁଥାଆନ୍ତି । କଦବା କ୍ୱଚିତ୍ ଯୋଡ଼ିଏ ଯୁବତୀ ବା ଯୋଡ଼ିଏ ଯୁବକଙ୍କୁ ଦେଖିବାକୁ ମିଳେ ଏକାଠି; ନତୁବା ସବୁଠି ପ୍ରାୟ ପୁରୁଷ ସ୍ତ୍ରୀର ଯୋଡ଼ି ।

ଷ୍ଟାଲିନାବାଦରେ ମସ୍କୋ ବା ଲେଲିନ୍‌ଗ୍ରାଡ୍ ପରି ଏତେ ଶୀତ ଶୀତଦିନେ ହେଉ ନଥିବ; କିନ୍ତୁ ଖରାଦିନେ ନିଶ୍ଚୟ ଷ୍ଟାଲିନାବାଦର ଗରମ ବେଶି । ଆମେ ତାହା ଅନୁଭବ କରିଥିଲୁଁ । କାରଣ ଖରାଦିନେ ଷ୍ଟାଲିନାବାଦରେ ଆମକୁ ଗରମ କୋଟ ପିନ୍ଧିବାକୁ ପଡ଼ି ନଥିଲା; ମସ୍କୋ ଏବଂ ଲେଲିନଗ୍ରାଡ଼ରେ କିନ୍ତୁ ପିନ୍ଧିବାକୁ ପଡ଼ିଥିଲା । ଅଥଚ ଏଠାରେ ସେତିକ ଗରମରେ ହଜାର ହଜାର ଯୁବକଯୁବତୀ ଉଞ୍ଚା ପାହାଡ଼ଉପରୁ ଅଥବା ସ୍ୱତନ୍ତ୍ର ମଞ୍ଚାଉପରୁ ପାଣିକୁ ଡିଆଁ ମାରୁଥିବାର ଦେଖିଲୁ । ଆମେ ହ୍ରଦର ଘରିପଟେ ମଟର-ବୋଟରେ ୪ ଥର ପରିକ୍ରମା କଲାପରେ ଯେତେବେଳେ ପ୍ରଧାନ ଘାଟକୁ ଓହ୍ଲାଇ ଆସୁଛୁଁ, ସେତିକିବେଳେ ଦେଖିଲୁ ହ୍ରଦଭିତରୁ ଅଧିକାଂଶ ଯୁବକଯୁବତୀ ଧାଡ଼ିବାନ୍ଧି କୂଳଉପରେ ଛିଡ଼ା ହୋଇ ରହିଛନ୍ତି । ଆମ୍ଭେମାନେ ଡଙ୍ଗାରୁ ମାଟିକୁ ପାଦ ଦେଲାମାତ୍ରେ ପ୍ରାୟ ୩୦୦, ୪୦୦ ଯୁବକଯୁବତୀଙ୍କର ସମବେତ କଣ୍ଠର ସଙ୍ଗୀତ ଆମକୁ ଅଭିଭୂତ କରିଦେଲା । ସଙ୍ଗୀତଟି କେବଳ ସୁଲଳିତ ନୁହେଁ; ତା'ର ଭାବ ମଧ୍ୟ ଯେ କୌଣସି ଲୋକକୁ କିଣିନେବ । ସଙ୍ଗୀତର ଅର୍ଥ ହେଉଛି, ଆମର ଏହି ସୂର୍ଯ୍ୟାଲୋକମୟ ତାଜିକ୍‌ସ୍ଥାନରେ ତୁମେ ରହ, ଏଠାରୁ ଯାଅନାହିଁ । ପ୍ରତି ଋତୁରେ ତୁମେ ଏଇଠାରେ ଏହାର ପ୍ରକୃତିର ମଧୁର ଆସ୍ୱାଦ ଅନୁଭବ କରିପାରିବ । ତୁମେ ଏଇଠି ରହିଯାଅ । ଅଙ୍ଗୁର ବନାନୀତଳେ ତୁମେ ମନୁଷ୍ୟର ମାଟି ପ୍ରତି ଗଭୀର ସ୍ନେହର ସନ୍ଧାନ ପାଇବ । ଏହି ବାତ୍ସଲ୍ୟମୟୀ ସୂର୍ଯ୍ୟାଲୋକିତ ତାଜିକ୍‌ସ୍ଥାନରେ ରହିଯାଅ; ଯିବାକୁ ମନ ବଳାଅ ନାହିଁ ।

## ସାତ

ଆମ ଭାରତବର୍ଷର ଦିନ ୪ଟା ପରି ଦେଖାଯିବା ସମୟରେ ଷ୍ଟାଲିନାବାଦରେ ୬ଟା ବାଜି ସାରିଥାଏ । ସେତିକିବେଳେ ଆମର ପହଞ୍ଚିବାର ଦ୍ୱିତୀୟ ଦିନ । ଆମପାଇଁ ଆନୁଷ୍ଠାନିକ ଅଭ୍ୟର୍ଥନାର ଆୟୋଜନ ହେଲା ।

ଷ୍ଟାଲିନାବାଦ ସହରରେ ସୋଭିଏଟ୍‌ର ସଭାପତି ପ୍ରଥମେ ଆମକୁ ତାଙ୍କରି ଭାଷାରେ ସମ୍ବର୍ଦ୍ଧନା ଜଣାଇଲେ । ତାହା ଇଂରାଜୀ ଭାଷାରେ ଦୋଭାଷୀ ଅନୁବାଦ କରିଦେଲେ । ଆମ ତରଫରୁ ମଧ୍ୟ ଉତ୍ତର ଦିଆଗଲା ଇଂରାଜୀରେ । ତା'ର ରୁଷୀୟ ଅନୁବାଦ ମଧ୍ୟ ହୋଇଗଲା । ତା'ପରେ ଆରମ୍ଭ ହେଲା କନ୍‌ସାର୍ଟ ।

ୟୁରୋପ ମହାଦେଶରେ ସବୁଠି ଅଭ୍ୟର୍ଥନାରେ ଗୋଟିଏ ଅପରିହାର୍ଯ୍ୟ ଅଙ୍ଗ ହେଉଛି କନ୍‌ସାର୍ଟ । ଏହା ଅନେକାଂଶରେ ଆମ ଦେଶରେ ଅଧୁନା ପ୍ରଚଳିତ ବିଚିତ୍ରା-

ଅନୁଷ୍ଠାନପରି । ଗୀତ, ବାଦ୍ୟ, ନୃତ୍ୟ, କୁସ୍ତି, କସରତ୍, ମ୍ୟାଜିକ, ପ୍ରହସନ ଇତ୍ୟାଦି ଦ୍ୱାରା ଏହି କନ୍ସାର୍ଟ ଶେଷ କରାଯାଏ । ଏସିଆର ଜାତିମାନେ ଆପଣା ଆପଣା ଅତିଥିମାନଙ୍କୁ ସମ୍ବର୍ଦ୍ଧନା କଲାବେଳେ ଏଭଳି ଆନୁଷ୍ଠାନିକଭାବରେ ଗୀତ-ବାଦ୍ୟର ପ୍ରୋଗ୍ରାମ ରଖନ୍ତି ବୋଲି ଇତିହାସରେ ପ୍ରମାଣ ନାହିଁ । ବେଳେ ବେଳେ ସେମାନେ ହୁଏତ ଆପଣାର ଲୋକନୃତ୍ୟ ଇତ୍ୟାଦିରେ ଅତିଥିମାନଙ୍କ ସହିତ ଯୋଗ ଦିଅନ୍ତି । ଷ୍ଟାଲିନାବାଦରେ ମଧ୍ୟ ରାତ୍ରି ଭୋଜନବେଳେ ଏ ପ୍ରକାର ପୂରାପୂରି ଅସଂଯୋଜିତ ସ୍ୱତଃସ୍ଫୂର୍ତ୍ତ ନାଚଗାନ ହୋଇଥିଲା; କିନ୍ତୁ ସେଦିନ କନ୍ସାର୍ଟଟା ହେଉଛି ପୂରାପୂରି ୟୁରୋପୀୟ କାଏଦାରେ । କେବଳ ବେଶଭୂଷା ତାଜିକ୍ ହେଲେ ବି ଏଥିରେ ଏସିଆର ପରମ୍ପରାଗତ ଗୀତବାଦ୍ୟର ବିଶେଷ ସମ୍ପର୍କ ନଥିଲା । ତାହାଛଡ଼ା ସମସ୍ତ କାର୍ଯ୍ୟପନ୍ଥା ବୈଜ୍ଞାନିକ ଯୋଜନାବଦ୍ଧ ୟୁରୋପୀୟଭାବରେ ହୋଇଥିଲା ।

ମୋର ମନେହୁଏ, ଭାରତ ଛଡ଼ା ଏସିଆର କୌଣସି ଦେଶର ନୃତ୍ୟ ଓ ସଙ୍ଗୀତ ଆଉ ଆପଣାର ପରମ୍ପରାଗତ ବିଶୁଦ୍ଧତା ଏବଂ ବିଶେଷତ୍ୱ ରକ୍ଷା କରିନାହାନ୍ତି । ଚୀନ୍ ଏବଂ ଜାପାନ ମଧ୍ୟ ବହୁ ପରିମାଣରେ ୟୁରୋପୀୟ ଯନ୍ତ୍ର ସଙ୍ଗୀତ ଏବଂ ସେମାନଙ୍କର ଧରାବନ୍ଧା ଗତଦ୍ୱାରା ବନ୍ଧା ହୋଇଯାଇଛନ୍ତି । ଏସିଆ ମହାଦେଶର ବିଭିନ୍ନ ଦେଶରେ ସଙ୍ଗୀତ ହେଉଛି ସ୍ୱରପ୍ରଧାନ । ନୃତ୍ୟ ହେଉଛି ପୂରାପୂରି ଏକକ । ଯୌଥ-ନୃତ୍ୟରେ ମଧ୍ୟ ଏକକ ଭାବ ଅତି ସୁସ୍ପଷ୍ଟ; କିନ୍ତୁ ୟୁରୋପୀୟ ସଙ୍ଗୀତ ହେଉଛି ପୂରାପୂରି ଯନ୍ତ୍ରପ୍ରଧାନ ଏବଂ ନୃତ୍ୟ ଏକକ ହୋଇପାରେ ନା ।

ପ୍ରଥମେ ସଙ୍ଗୀତ କଥା ଧରାଯାଉ । ଆମ ଦେଶରେ ମଣିଷର କଣ୍ଠସ୍ୱରର ତାଳ, ମାନ, ଲୟ ଏବଂ ଲାଳିତ୍ୟ ଉପରେ ସଙ୍ଗୀତର ସୌନ୍ଦର୍ଯ୍ୟ ପୂରାପୂରି ନିର୍ଭର କରିଥାଏ । ଯଦି କୌଣସି ଯନ୍ତ୍ର ବ୍ୟବହାର କରାଯାଏ, ତାହା ସ୍ୱରକୁ ଆହୁରି ପରିସ୍ଫୁଟ କରିବାପାଇଁ ସ୍ୱରର ପରିପୂରକ ଭାବରେ । ସ୍ୱରକୁ ଗୌଣ କରି ଯନ୍ତ୍ର କେବେ ଉପରକୁ ଉଠିପାରେ ନାହିଁ । ଭାରତୀୟ ସଙ୍ଗୀତର ବାଦ୍ୟଯନ୍ତ୍ର ମଧ୍ୟ ସେଥିପାଇଁ ଅତି ସୂକ୍ଷ୍ମ । ତାହାର ଶବ୍ଦ ମଧ୍ୟ ସୁଲଳିତ ଏବଂ ଅତି ପ୍ରତିଧ୍ୱନିକାରୀ ନୁହେଁ । ବେଶି ଗୁଡ଼ାଏ ବାଦ୍ୟଯନ୍ତ୍ରଦ୍ୱାରା ଏହି ସ୍ୱରକୁ ଅତି ଉଉରଳ ଏବଂ ପ୍ରତିଧ୍ୱନିସଙ୍କୁଳ କରିଦେବା ଭାରତୀୟ ସଙ୍ଗୀତର ବିଧି ନୁହେଁ ।

ୟୁରୋପୀୟ ସଙ୍ଗୀତରେ ସ୍ୱର ତ ଗୌଣସ୍ଥାନ ଅଧିକାର କରିଛି । କେବଳ ସେତିକି ନୁହେଁ, ସେହି ସ୍ୱର ସହିତ ଯେଉଁ ଯନ୍ତ୍ରସବୁ ସଙ୍ଗତ କରାଯାଏ, ସେମାନେ

ଗୋଟିଏ ଯୋଡ଼ିଏ ବାଦ୍ୟଯନ୍ତ୍ର ନୁହନ୍ତି; ପ୍ରାୟ ଶହେ, ଦୁଇଶହ ଯାଏ ବାଦ୍ୟଯନ୍ତ୍ର । ସ୍ୱର କେବଳ ଏମାନଙ୍କୁ ସାହାଯ୍ୟ କରେ । ଯେପରି ଆମ ଓଡ଼ିଶାରେ ଏବଂ ବଙ୍ଗଳାର କେତେକ ଅଞ୍ଚଳରେ ଆମେ ଆମର ସମସ୍ତ ଖାଦ୍ୟ ଏକାଠି ବାଢ଼ି ଖାଉଁ, ଭାତ ଡାଲି ତରକାରି ଇତ୍ୟାଦି ସବୁ ଏକାଠି ଏକ ସମୟରେ ଖାଇ ବିଭିନ୍ନ ସ୍ୱାଦ ଅନୁଭବ କରୁ ଏବଂ ଇଉରୋପରେ ଖାଦ୍ୟ ଗୋଟିଏ ଗୋଟିଏ କୋର୍ସରେ ଥରକୁ ଥର ହୋଇଆସେ, ଆମର ଠିକ୍ ଓଲଟା ପ୍ରକାରରେ । ଠିକ୍ ଅନ୍ୟପକ୍ଷରେ ଆମ ଦେଶରେ ଆମେ ସଙ୍ଗୀତ ଗୋଟିଏ ଗୋଟିଏ କୋର୍ସରେ ଅନୁଭବ କରୁ । ଗୋଟିଏ ବୀଣା ବା ଗୋଟିଏ ସୀତାର ବା ଗୋଟିଏ ବଂଶୀ ସହିତ କଣ୍ଠସ୍ୱର; କିନ୍ତୁ ୟୁରୋପରେ ଶହ ଶହ ବାଦ୍ୟଯନ୍ତ୍ର ଖେଚେଡ଼ିରେ ଯେଉଁ ଶବ୍ଦ-ସଂଯୋଗ ସୃଷ୍ଟି ହୁଏ, ସେଥିରେ ସେମାନେ ଆନନ୍ଦପାଆନ୍ତି ।

ୟୁରୋପୀୟ ସଙ୍ଗୀତ ଶୁଣିଲାବେଳେ ମୋର ଏକ ବିଚିତ୍ର ଅନୁଭୂତି ବାରମ୍ବାର ହୋଇଛି । ଯେପରି ମୁଁ ହାଉଡ଼ା ଷ୍ଟେସନରେ ପ୍ଲାଟଫର୍ମ ଉପରେ ଛିଡ଼ାହୋଇଛି; ଯେପରି ଏକ ସଙ୍ଗରେ ଆଠଟା ଗାଡ଼ି ବିଭିନ୍ନ ସ୍ଥାନକୁ ଯିବାପାଇଁ ପ୍ଲାଟଫର୍ମରେ ହୁଇସିଲ ଦେଇଛନ୍ତି ଏବଂ ଯେପରିକି ମୁଁ ସବୁ ଗାଡ଼ିରେ ଯିବାକୁ ଟିକଟ କିଣିଛି । ତେବେ ମୁଁ କେଉଁ ଗାଡ଼ିରେ ବସିବି ? ଗୋଟାଏ ଗାଡ଼ିରେ ବସିଗଲେ ଆଉ ଗାଡ଼ିର କୌଣସି ଅନୁଭୂତି ପାଇପାରିବି ନାହିଁ । ଏପରି ବିକଳ ଅବସ୍ଥାରେ ପଡ଼ିଲେ ଯେପରି ଲାଗନ୍ତା, ୟୁରୋପୀୟ ସଙ୍ଗୀତରେ ଠିକ୍ ସେପରି ଲାଗେ ।

ୟୁରୋପୀୟ ନାଟକ ଏବଂ ନୃତ୍ୟ ମଧ୍ୟରେ ଠିକ୍ ସେହି କଥା । ଗୋଟିଏ ଗୋଟିଏ ଅପେରା ଗୀତି-ନାଟ୍ୟରେ ପ୍ରାୟ ତିନିଶତ ଚାରିଶତ ଲୋକଙ୍କର ଏକ ଏକ ଜନତା ସିନ୍ ଦେଖିବାକୁ ମିଳେ । ଗୋଟାଏ ଗୋଟାଏ ନୃତ୍ୟଭିତରେ ତିରିଶ କିମ୍ବା ଚାଳିଶି ଜଣ ଲୋକ ଥାଆନ୍ତି । ପୁରୁଷ ହୁଅନ୍ତୁ ଅଥବା ସ୍ତ୍ରୀ ହୁଅନ୍ତୁ, ସେମାନଙ୍କର ପରସ୍ପର ନୃତ୍ୟଭଙ୍ଗୀ ବା ଅଭିନୟ ପରସ୍ପରଠାରୁ ଭିନ୍ନ । ଭାରତରେ ନୃତ୍ୟରେ ଯେଉଁମାନେ ଯୋଗଦିଅନ୍ତି, ସେ ସମସ୍ତେ ଗୋଟିଏ ପ୍ରକାରର ନୃତ୍ୟ କରନ୍ତି । ଅଭିନୟରେ ଷ୍ଟେଜ୍‌ଉପରେ ମଧ୍ୟ ତିନି ଚାରିଜଣ ଏବଂ ବେଶି ହେଲେ ଦଶ ବାରଜଣ ଲୋକ ଥାଆନ୍ତି । ଏମାନଙ୍କ ଭିତରେ ଜଣେ କହିଲାବେଳେ ଅନ୍ୟମାନେ ସେହି କହିବା ବା ଅଭିନୟ କରିବା ସଂକ୍ରାନ୍ତରେ ଆପଣାର ମାନସିକ ଭାବ ପ୍ରକାଶ କରନ୍ତି; କିନ୍ତୁ ୟୁରୋପୀୟ ନୃତ୍ୟ ବା ଅଭିନୟରେ ଏହି ଏକକତା ନାହିଁ କହିଲେ ଚଳେ । କଳ୍ପନା କରାଯାଇପାରେ, ଗୋଟାଏ ଗୋଟାଏ ଜନତା ସିନ୍‌ରେ ଦୁଇ ଶହଯାଏ ଲୋକ ଷ୍ଟେଜ୍ ଉପରେ ଅଛନ୍ତି - ଏଠି ଚାରିପାଞ୍ଚ ଜଣ, ସେଠି ଦଶବାର ଜଣ, କେଉଁଠି କୋଡ଼ିଏ ପଚିଶ ଜଣ । କିଏ ପାହାଡ଼ରେ ବସି

ସଙ୍ଗୀମାନଙ୍କ ସାଙ୍ଗରେ ଆଳାପ କରୁଛି । କିଏ ତଳ ଝରଣାରୁ ମାଛ ମାରୁଛି । କିଏ ବା ଗଛଡାଳରେ ବସି ବଂଶୀ ବଜାଉଛି । ପରସ୍ପର ପରସ୍ପର ସହିତ ଆଲୋଚନା କଥାଭାଷା କରୁଛନ୍ତି ଏବଂ ଅଭିନୟ କରୁଛନ୍ତି ଏକ ସମୟରେ । ଏଥିଭିତରୁ ଏପରିକି ଯିଏ ପ୍ରଧାନ ଚରିତ୍ର, ସେ ମଧ୍ୟ ଏମାନଙ୍କ ଭିତରୁ ଜଣେ । ତା'ର ବି ବିଶେଷତ୍ୱ ଏଠାରେ କିଛି ଦେଖିବାକୁ ମିଳୁନାହିଁ । ଏପରି ଅବସ୍ଥାରେ ପ୍ରାୟ ଦଶ ମିନିଟ୍ ବା ଅତି ବେଶି ହେଲେ ପନ୍ଦର ମିନିଟ୍‌ର ଗୋଟିଏ ଦୃଶ୍ୟ ଭିତରେ ଜଣେ ଦର୍ଶକ କ'ଣ କରିବ ? ଲୋଭୀ ଶୃଗାଳପରି ବହୁ ଶିକାର ଦେଖି "ଅଦ୍ୟ ଭକ୍ଷ୍ୟ ଧନୁର୍ଗୁଣଃ"ବୋଲି ବିଶ୍ୱର ସବୁଠାରୁ ସୂକ୍ଷ୍ମ ଏବଂ ଅଳ୍ପ ଗୁରୁତର ମନେ ହେଉଥିବା କୌଣସି ଗୋଟାଏ ଅଭିନୟକୁ ଅନୁଭବ କରୁ କରୁ ସିନ୍ ସରିଯାଏ । ଭାରତୀୟ ଦର୍ଶକ ଏବଂ ଗ୍ରାହକମାନେ ଏପ୍ରକାର ଅନୁଭୂତିପାଇଁ ଆଦୌ ତାଲିମ୍ ହୋଇ ନାହାନ୍ତି, ତେଣୁ ବଡ଼ ବ୍ୟାକୁଳ ଲାଗେ ।

ମୋର ମନେ ହୁଏ, ନୃତ୍ୟ ଏବଂ ନାଟକକୁ ଆହୁରି ଜୀବନ୍ତ ଏବଂ ବାସ୍ତବ କରିବାପାଇଁ ୟୁରୋପ ଦେଶରେ ନାଟ୍ୟକଳା ଏହି ପନ୍ଥା ଗ୍ରହଣ କରିଛନ୍ତି । ସେମାନେ ହୁଏତ ଯୁକ୍ତି କରିବେ ଯେ ଗୋଟାଏ ନିର୍ଦ୍ଦିଷ୍ଟ ସ୍ଥାନରେ ତ ତାହା ହାଟ ବଜାର, ରାଜଦରବାର ବା ବୈଠକଖାନା ହେଉ, ଜଣେ ଲୋକ ବା ଦୁଇଜଣ ଲୋକ କେବଳ କଥାଭାଷା ହୁଅନ୍ତି ନାହିଁ ବା ଜୀବନର ଦୈନନ୍ଦିନ କାର୍ଯ୍ୟ କରନ୍ତି ନାହିଁ; ସମସ୍ତେ କିଛି ନା କିଛି କରୁଥାଆନ୍ତି । ତେଣୁ ନାଟକର କଥାବସ୍ତୁ ଯେଉଁମାନଙ୍କୁ ଧରି ଗଢ଼ା, ସେମାନେ ଅଭିନୟ କଲାବେଳେ ପାରିପାର୍ଶ୍ୱିକ ଜୀବନ ତ ଅଟକି ରହେ ନାହିଁ ? ତାହା ମଧ୍ୟ ତା'ର ନିଜ ପନ୍ଥାରେ ଚାଲିଥାଏ । ବୈଠକଖାନାରେ କୋଡ଼ିଏ ଜଣ ଥିଲେ ସମସ୍ତେ ଏକାଠି ଗୋଟିଏ କଥା ଚର୍ଚ୍ଚା କରନ୍ତି ନାହିଁ । ସେମାନଙ୍କ ଭିତରେ ଏକ ସମୟରେ ବିଭିନ୍ନ କଥା ଚାଲିଥାଏ । ଏହା ହିଁ ଜୀବନ । ନୃତ୍ୟରେ ମଧ୍ୟ ଠିକ୍ ସେହିପରି । ବାଦ୍ୟଯନ୍ତ୍ରର ତାଳରେ ଯେଉଁ ବିଭିନ୍ନ ନରନାରୀ ନୃତ୍ୟ କରନ୍ତି, ସେମାନଙ୍କର ଆପଣାର ବ୍ୟକ୍ତିତ୍ୱର ବିକାଶ ଏବଂ ଦୃଷ୍ଟିକୋଣ ଅନୁସାରେ ସେମାନେ ନୃତ୍ୟ କରନ୍ତି, ଏହା ସ୍ୱାଭାବିକ । ଗୋଟିଏ ନିର୍ଦ୍ଦିଷ୍ଟ ବାଦ୍ୟର ସ୍ୱର ପ୍ରତ୍ୟେକ ନର ବା ନାରୀର ପ୍ରାଣତନ୍ତ୍ରୀରେ ସମାନପ୍ରକାରର ଦରଦ ସୃଷ୍ଟି କରେନାହିଁ । ଯେହେତୁ ଜୀବନ ବିଚିତ୍ର ଏବଂ ମନୁଷ୍ୟର ବ୍ୟକ୍ତିତ୍ୱ ମଧ୍ୟ ବିଚିତ୍ର ।

ଅନ୍ୟ ପକ୍ଷରେ ଯେଉଁ ଅନୁଭୂତିର ନିର୍ଯ୍ୟାସକୁ ଦର୍ଶକମନରେ ପ୍ରବେଶ କରାଇବାପାଇଁ ଏହି ଅଭିନୟ ବା ନୃତ୍ୟ କରାଯାଏ, ତାହା ଏଥିଦ୍ୱାରା କ୍ଷୁର୍ଣ୍ଣ ହୁଏ ନାହିଁ

କି ? ଜୀବନଠାରୁ କଳାର ବୈଶିଷ୍ଟ୍ୟ ହେଉଛି ସେହିଠାରେ । ଜୀବନରେ ଘଟୁଥିବା ବହୁ ନିତିଦିନିଆ ଘଟଣାର ମାମୁଲି ସମ୍ଭାର ଭିତରୁ କଳା ଆପଣାର ଅଭିପ୍ରେତ ଜିନିସ ନିର୍ବାଚନ କରିନିଏ । ତାହାକୁ ଆରମ୍ଭରୁ ରସାନ୍ୱିତ କରି ଦର୍ଶକର ପ୍ରାଣତନ୍ତ୍ରୀରେ ଆଘାତ କରେ । ତାହା ନହେଲେ ଦର୍ଶକ ସେଥିରେ ଅନୁପ୍ରାଣିତ ହେବ କିପରି ?

ନୃତ୍ୟକଳା, ସଙ୍ଗୀତ ଏବଂ ନାଟକର ଏହି ଦୁଇଟି ଦୃଷ୍ଟିକୋଣ ବିଷୟରେ କୌଣସି ରାୟ ଦେବାର ଅବକାଶ ଏ ନୁହେଁ । ଏତିକି କହିଲେ ଯଥେଷ୍ଟ ହେବ ଯେ ଭାରତୀୟ ଦର୍ଶକ ଯେଉଁ ପ୍ରକାରର ଅନୁଭୂତିପ୍ରତି ପରିଚିତ, ଯେଉଁ ଏକାଗ୍ରତାରେ ସେ ଗୋଟାଏ ନିର୍ଦ୍ଦିଷ୍ଟ ବିଷୟରେ ମଜ୍ଜି ତଲ୍ଲୀନ ହୋଇଯାଏ, ଏଥିରେ ତାହା ହେବା ଅସମ୍ଭବ । ଯେପରି ଧାନକଟାଳି ଗୋଟାଏ ଏକ୍ସପ୍ରେସ ଗାଡ଼ିର ଝରକାଭିତରୁ କାହାକୁ କାହାକୁ ଗ୍ରହିଁ ହାତ ଠାରେ ଏବଂ ତା' ପରେ ତାକୁ ଭୁଲିଯାଏ, ଏଭଳି ନୃତ୍ୟ, ସଙ୍ଗୀତ ଏବଂ ଅଭିନୟର ବହୁଳତା ଏବଂ ଏକତାର ଅଭାବରେ ଭାରତୀୟ ଦର୍ଶକ ସେହି ଧାନକଟାଳୀ ପରି ନିର୍ବିକାର ରହେ । ଏହା ତାହା ଭିତରେ ଗୋଟାଏ ବୌଦ୍ଧିକ ନିର୍ଲିପ୍ତତା ଦେଇପାରେ । କିନ୍ତୁ ଏହା ତାହାର ହୃଦୟ ମନ୍ଥନକରି ତାକୁ ଆତ୍ମହରା କରିପାରିବ ବୋଲି ମୋର ବିଶ୍ୱାସ ହେଉ ନାହିଁ ।

## ଆଠ

ସେହି ଦିନ ତାଜିକସ୍ଥାନ ବିଜ୍ଞାନ ଏକାଡ଼େମୀରେ ଆଗରୁ ତାଜିକ୍ ବୈଜ୍ଞାନିକମାନଙ୍କ ସମ୍ବନ୍ଧରେ ୟୁରୋପୀୟ ସଂସ୍କୃତି ଏବଂ ଏସିଆ ସଂସ୍କୃତିରେ ପ୍ରଭେଦ ବିଷୟରେ ନାନାପ୍ରକାର ଆଲୋଚନା ହୋଇଥିଲା । ଆମ୍ଭମାନଙ୍କ ଭିତରୁ ଅନେକ ପ୍ରଶ୍ନ କରିଥିଲେ ତାଜିକ୍ସ୍ଥାନର ଭାଷା ପୁରୁଣା ପାର୍ସୀଭାଷାର ଲିପିକୁ ରୁଷୀୟ ଲିପିରେ ପରିବର୍ତ୍ତନ କରିବାର କାରଣ କ'ଣ ?

ଆଗରୁ କହିଛି, ତାଜିକସ୍ଥାନର ଭାଷା ହେଉଛି ପୁରୁଣା ପାର୍ସୀଭାଷା । ଆଧୁନିକ ପାର୍ସୀଭାଷାରେ ଯେଉଁସବୁ ଆରବୀ ବା ହିନ୍ଦୁସ୍ଥାନୀ ଶବ୍ଦ ମିଶିଛି, ଏହି ଭାଷାରେ ସେପରି ଶବ୍ଦ ମିଶି ନାହିଁ; ବରଂ ରୁଷୀୟ ଭାଷାର ପ୍ରଭାବରେ ଆସି ଏହି ଭାଷାରେ ଅନେକ ରୁଷୀୟ ଶବ୍ଦ ମିଶିଛି । ସମଗ୍ର ସୋଭିଏଟ୍ ସ୍କୁଲ କଲେଜରେ ରୁଷୀୟ ଭାଷା ହେଉଛି ବାଧତାମୂଳକ ଦ୍ୱିତୀୟ ଭାଷା । ଯେଉଁମାନଙ୍କର ମାତୃଭାଷା ରୁଷୀୟ, ସେମାନେ ସୋଭିଏଟ୍ ଦେଶର ଅନ୍ୟ ଏକ ଆଞ୍ଚଳିକ ଭାଷା ଶିଖିବାକୁ ବାଧ୍ୟ । ତାହାଛଡ଼ା ଇଂରାଜୀ, ଫରାସୀ, ଜର୍ମାନ, ସ୍ପେନୀୟ, ଚୀନା ଇତ୍ୟାଦି ଭାଷାରୁ ଗୋଟିଏ ଭାଷା ଶିଖିବାକୁ ମଧ୍ୟ

ବାଧ । ଆଉ ଯେଉଁମାନଙ୍କର ମାତୃଭାଷା ରୁଷୀୟ ନୁହେଁ, ସେମାନେ ଆପଣାର ମାତୃଭାଷା ଛଡ଼ା ରୁଷୀୟ ଭାଷା ଶିଖିବା ବାଧତାମୂଳକ ଏବଂ ତାହାଛଡ଼ା ଗୋଟିଏ ଗୋଟିଏ ପ୍ରଧାନ ବିଦେଶୀ ଭାଷା ଇଂରାଜୀ, ଫ୍ରେଞ୍ଚ ବା ଜର୍ମାନ ଇତ୍ୟାଦି ଶିଖିବାକୁ ହେବ । ଏପରି ଭାବରେ ରୁଷଦେଶର ସେକେଣ୍ଡାରୀ ସ୍କୁଲର ବାଳକବାଳିକାମାନଙ୍କୁ ମାତୃଭାଷା ଛଡ଼ା ଆଉ ଦୁଇଗୋଟି ଭାଷାରେ ବ୍ୟୁତ୍ପତ୍ତି ହାସଲ କରିବାକୁ ହୁଏ ।

ଏଭଳି ପରିସ୍ଥିତିରେ ପୁଣି ତାଜିକ୍ ଭାଷା ବା ପୁରୁଣା ପାର୍ସୀଭାଷା ଶିକ୍ଷା କରିବାକୁ ବର୍ତ୍ତମାନ ରୁଷୀୟ ଲିପି ବ୍ୟବହାର କରାଯାଉଛି । ଏକଥା ଜଣାଶୁଣା ଯେ ପାର୍ସୀଭାଷାର ଲିପି ହେଉଛି ଉର୍ଦ୍ଦୁଲିପି ପରି । ଏହି ଲିପିରେ ଟାଇପ୍ କରିବା ଏବଂ ବହିପତ୍ର ଛାପିବା ଅସୁବିଧା ହେତୁ ବିପ୍ଳବ ପରେ ପରେ ଲେନିନ୍‌ଙ୍କ ଅମଳରେ ରୋମାନ୍‌ଲିପିରେ ପାରସୀଭାଷାର ପୋଥିପତ୍ର ଲେଖା ଯାଉଥିଲା । ତେଣୁ ୩୦।୪୦ ବର୍ଷ ବୟସ୍କ ତାଜିକ୍ ଲୋକେ ରୋମାନ୍ ଲିପି ସହିତ ପରିଚିତ । ଏହାର ଅର୍ଥ ରୋମାନ୍ ବା ଇଂରାଜୀ ଲିପିରେ ଠିକଣା ଲେଖି ସେମାନେ ଭାରତକୁ ଚିଠିପତ୍ର ପଠାଇ ପାରନ୍ତେ; କିନ୍ତୁ ବର୍ତ୍ତମାନ ରୋମାନ୍ ଲିପିର ପ୍ରଚଳନ ବନ୍ଦ କରାଯାଇ ରୁଷୀୟ ଲିପିର ପ୍ରଚଳନ ଆରମ୍ଭ କରାଯାଇଛି ।

ଆମ୍ଭେମାନେ ପଚ୍ଚରିଥିଲୁ, ଏପରି ଲିପି ପରିବର୍ତ୍ତନ କରାଗଲା କାହିଁକି ? ଏଥିରେ ଯେଉଁ ଅସୁବିଧା ଉପୁଜିପାରେ ସେକଥା ମଧ ଆମ୍ଭେମାନେ ଦର୍ଶାଇଥିଲୁ । ଘନଘନ ଲିପି ପରିବର୍ତ୍ତନ ଫଳରେ ପାଠ୍ୟ ପୁସ୍ତକ ଏବଂ ଅନ୍ୟାନ୍ୟ ବହିପତ୍ର ଛାପିବାରେ ତୁମୁଳ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିବ ଏବଂ ଶିକ୍ଷାଲାଭ କରୁଥିବା ବାଳକବାଳିକା ଏବଂ ବୟସ୍କ ଲୋକେ ନାନା ଅଡୁଆରେ ପଡ଼ିବେ । ତାହାଛଡ଼ା ରୋମାନ୍ ଲିପି ବା ରୁଷୀୟ ଲିପିରେ ଅକ୍ଷରମାନଙ୍କ ଉଚ୍ଚାରଣ ପାରସୀ ଲିପିର ଅକ୍ଷରମାନଙ୍କର ଉଚ୍ଚାରଣ ସହିତ ସମାନ ନୁହେଁ । ତେଣୁ ପାରସୀ ଭାଷାରେ ଯେଉଁ ଶବ୍ଦର ଯାହା ଉଚ୍ଚାରଣ ହେବାର କଥା, ତାହା କାଳକ୍ରମେ ରୋମାନ୍ ବା ରୁଷୀୟ ଲିପି ଫଳରେ ଲୋପ ପାଇଯିବ ଏବଂ ଭାଷାର ଉଚ୍ଚାରଣ ସୌନ୍ଦର୍ଯ୍ୟରେ ମଧ ଖିଲାପ ଘଟିବ ।

ଏହା ଘଟିଛି ମଧ । ତାଜିକ୍‌ମାନେ ଯେଉଁ ପାରସୀ କହୁଛନ୍ତି, ତାହା ଅନେକାଂଶରେ ଉଚ୍ଚାରଣ-ଭଙ୍ଗୀରେ ଏବଂ କଣ୍ଠର ସ୍ୱର ଯୋଜନାରେ ରୁଷୀୟ ହୋଇଯାଇଛି । ପ୍ରତ୍ୟେକ ଭାଷାରେ ତାହାର ନିଜସ୍ୱ ଉଚ୍ଚାରଣ ଭଙ୍ଗୀ ଏବଂ କଣ୍ଠର ସ୍ୱର-ତରଙ୍ଗର ଗୋଟାଏ ବିଶେଷତ୍ୱ ଅଛି । ବଙ୍ଗଳାଭାଷାରେ ସେମାନେ ତାଲବ୍ୟ ଶ'ର ବେଶି ବ୍ୟବହାର କରି ଥାଆନ୍ତି । ଇଂରାଜୀର 'F' ଶବ୍ଦର ଓଡ଼ିଆ ଉଚ୍ଚାରଣ 'ଫ'

ନୁହେଁ । ଓଡ଼ିଆରେ 'ଳ' ଏବଂ 'ଲ'ର ଉଚ୍ଚାରଣ ପାର୍ଥକ୍ୟ ପୃଥିବୀର ଅନ୍ୟ ଭାଷାରେ ନାହିଁ କହିଲେ ଚଳେ । ଏପରି ଅଜସ୍ର ଉଦାହରଣ ଦିଆଯାଇପାରେ । ତେଣୁ ତାଜିକ୍‌ଭାଷା ନିଜସ୍ୱ ପାରସୀ ଲିପି ଛାଡ଼ିବା ଫଳରେ ଉଚ୍ଚାରଣରେ କେତେକ ବିଶୁଦ୍ଧତା ନଷ୍ଟ ହୋଇଯାଇଛି ।

ତାଜିକ୍ ବୈଜ୍ଞାନିକ ଏବଂ ପଣ୍ଡିତମାନେ ଆମ୍ଭମାନଙ୍କର ଆଶଙ୍କା ସହିତ ଏକମତ ହେଲେ । କିନ୍ତୁ ସେମାନେ ଯେଉଁ ଯୁକ୍ତି ଯୋଗୁଁ ରୁଷୀୟ ଲିପିକୁ ଗ୍ରହଣ କରିଛନ୍ତି, ତାହା ମଧ ସଂକ୍ଷେପରେ ଦର୍ଶାଇଲେ । ଏହା ଫଳରେ ରୁଷୀୟଭାଷା ଶିକ୍ଷା କରିବା ଏବଂ ଅନ୍ୟ ପକ୍ଷରେ ରୁଷୀୟ-ଭାଷୀଙ୍କୁ ତାଜିକ୍‌ଭାଷାରେ ପରିଚିତ କରିବା ଅଧିକ ସହଜ ହୋଇଛି । ଏହା ଫଳରେ ଦେଶ ଭିତରେ ଆଉ ଗୁଡ଼ିଏ ଲିପିର ପ୍ରବର୍ତ୍ତନ ଦରକାର ପଡ଼ିନାହିଁ । ତେଣୁ ଉଚ୍ଚାରଣର ଖିଲାପ ସତ୍ତ୍ୱେ ସମସ୍ତେ ରୁଷୀୟ ଲିପିକୁ ଗ୍ରହଣ କରି ନେଇଛନ୍ତି । ରୋମାନ୍ ଲିପି ଫଳରେ ପ୍ରଧାନ ଅସୁବିଧା ହେଲା ଏହି ଯେ ସୋଭିଏଟ୍ ଦେଶର ଅଧିକାଂଶ ଭାଷା ରୁଷୀୟ ଲିପିରେ ଲେଖା ହେଉଛି । ତେଣୁ ରୋମାନ୍ ଲିପିରେ ତାଜିକଭାଷାରେ ପ୍ରଚଳନ ସମ୍ବାଦପତ୍ର, ଲାଇବ୍ରେରୀ, ଛାପାଖାନା, ପୋଷ୍ଟର, କଳକବ୍‌ଜାରେ ନାମ ମୋହର ଏବଂ ବାଣିଜ୍ୟ ବ୍ୟବସାୟ ଦୃଷ୍ଟିରୁ ସୁବିଧାଜନକ ହେଲା ନାହିଁ ।

ସଙ୍ଗୀତ ବିଷୟରେ ମଧ ମୁଁ ପ୍ରଶ୍ନ କରିଥିଲି । ଏ କଥା ଜଣାଶୁଣା ଯେ ତାଜିକ୍‌ସ୍ଥାନ କଓ୍ୱାଲି ଏବଂ ଗଜଲ ପ୍ରଭୃତି ଉଚ୍ଚକୋଟିର ମଧ୍ୟଏସିଆ ସଙ୍ଗୀତରେ ଖୁବ୍ ପ୍ରଶସ୍ତି ଲାଭ କରିଥିଲା । ଏଇଠାର ବିପଣୀ-ସମ୍ଭାର ଧରି ଯେଉଁ ଯାଯାବର ବଣିକମାନେ ତମ୍ବୁପାଖରେ ମୁକ୍ତ ଆକାଶତଳେ ହାଫିଜ୍ ଫିଉଜରସୀଙ୍କର ବା ସେ ସମୟର ଶତ ଶତ ଅଜଣା ଲୋକ କବିଙ୍କର ସଙ୍ଗୀତରେ ଆକାଶକୁ ମୂର୍ଚ୍ଛିତ କରିଥିଲେ, ସେମାନେ କ'ଣ ପିଆନୋ ଦେଖିଥିଲେ ବା ସ୍ୱର-ସଂଯୋଗପାଇଁ ଯେଉଁ ଅତି ଆଧୁନିକ ଏବଂ ବିଶାରଦ ହାରମନି ବା ଯନ୍ତ୍ରଲିପି ହୋଇଛି, ତା'ର ଧାର ଧାରିଥିଲେ ? ଆଦୌ ନୁହେଁ । ଗୋଟିଏ ବା ଯୋଡ଼ିଏ ଡୋମ୍ବରା; ଗୋଟିଏ ତାରର ଯନ୍ତ୍ର; ଆଉ ଖଣ୍ଡେ ଢ଼ୋଲକ ବୋଧହୁଏ ସେମାନଙ୍କର ସ୍ୱର ସଙ୍ଗୀତ ପାଇଁ ବାଦ୍ୟଯନ୍ତ୍ର । କିନ୍ତୁ ଆଜି ?

ତାଜିକ୍ ପଣ୍ଡିତମାନଙ୍କର ଯୁକ୍ତି ଅବଶ୍ୟ ଅକାଟ୍ୟ ଥିଲା । ସେମାନେ କହିଲେ ପ୍ରାଚୀନ ସଙ୍ଗୀତ ବା ଲୋକସଙ୍ଗୀତକୁ ଏଭଳି ବ୍ୟକ୍ତିବିଶେଷର କଣ୍ଠରେ ଛାଡ଼ିଦେଇ ନିଶ୍ଚିନ୍ତ ହେବାର କାଳ ଯାଇଛି । ଏଗୁଡ଼ିକର ଗ୍ରାମୋଫୋନ୍ ରେକର୍ଡ କରିଦେଲେ ମଧ ଯଥେଷ୍ଟ ହେବ ନାହିଁ । ଏଗୁଡ଼ିକର ସ୍ୱରଲିପି ମଧ ପ୍ରୟୋଜନ । ତାହାହେଲେ ଆଗାମୀ

ବଂଶଧରମାନେ ଯିଏ ଇଚ୍ଛା କରିବେ, ସିଏ ଲେଖା ସ୍ୱରଲିପିକୁ ଦେଖି ଯେକୌଣସି ସଙ୍ଗୀତ ଗାଇପାରିବେ ।

ଚମତ୍କାର କଥା ! ଶୁଣାଗଲା ମଧ୍ୟ ଭଲ । କିନ୍ତୁ ମୋର ମନ ପାଇଲା ନାହିଁ । ପ୍ରକୃତ କାର୍ଯ୍ୟକ୍ଷେତ୍ରରେ କ'ଣ ହେବ, ସେ କଥା ଜାଣିବାପାଇଁ ମନଟା ଗୋଳେଇପୋଳେଇ ହେଉଥାଏ ।

ସୋଭିଏଟ୍ ଦେଶରେ କବିଙ୍କର ଆଦର ସର୍ବବ୍ୟାପୀ । ଏହି ଆଦର ଏବଂ ସ୍ନେହ କିଭଳି ପ୍ରକାଶ ପାଏ, ତାହା ଘଟଣା କ୍ଷେତ୍ରରେ ବେଳେବେଳେ କହିବାକୁ ପଡ଼ିବ । କହିବି, ଆମ ଦେଶରେ ଆମେ ଯେପରି ନାମଧାମ ପଚ୍ଚରିସାରି ପଚ୍ଚରୁ "ତୁମେ କ'ଣ କର ?" ଉତ୍ତରରେ ଆମ ଭିତରୁ ଅନେକ କହନ୍ତି, "ମୁଁ ପାର୍ଲିଆମେଣ୍ଟ ମେମ୍ବର" ବା "ମୁଁ ଶାନ୍ତି-କମିଟିରେ କାମ କରେ" ଇତ୍ୟାଦି । ରୁଷିଆ ଦେଶରେ ଏଭଳି ଉତ୍ତରରେ ଲୋକ କିଛି ବୁଝିପାରନ୍ତି ନାହିଁ। ପାର୍ଲିଆମେଣ୍ଟ ମେମ୍ବର ହେବା ବା ଶାନ୍ତି କମିଟିରେ କାମ କରିବା ଗୋଟାଏ ବ୍ୟବସାୟ ନୁହେଁ – ଏହା ଜୀବିକା ନୁହେଁ । ଏଥିରେ ପେଟ ପୋଷାଯାଏ ନାହିଁ, ବରଂ ଏହା ହେଉଛି କର୍ତ୍ତବ୍ୟ । ଯେଉଁ ସମାଜ ତୁମକୁ ଜୀବିକା ଦେଇଛି, ସେହି ସମାଜ ତୁମଠାରୁ କିଛି ସେବା ଆଶା କରେ । ତୁମର ବିଚ୍ଚରବୁଦ୍ଧି ଏବଂ ପାରିବାପଣିଆ ଦୃଷ୍ଟିରୁ ତୁମ ଉପରେ କିଛି ଦାୟିତ୍ୱ ଦିଏ ଏବଂ ସେହି ଦାୟିତ୍ୱ ତୁମର ତୁଲେଇବା ନିତାନ୍ତ ପ୍ରୟୋଜନ ।"

ତେଣୁ ସୋଭିଏଟ୍ ଦେଶର ତଳଠାରୁ ଉପରଯାଏ ସବୁ ସାଧାରଣତନ୍ତ୍ର ସହର, କୋଠଘ୍ଷ, କ୍ଷେତଖମାର, କଳକାରଖାନାରେ ଯେତେ ଲୋକ କାମ କରନ୍ତି, ସେମାନଙ୍କର କିଛି ନା କିଛି ଗୋଟାଏ ଦାୟିତ୍ୱ ଥାଏ । ନିଜ ମାତୃଭାଷା ଛଡ଼ା ଯେପରି ସେଠାରେ ଅନ୍ୟାନ୍ୟ ଯୋଡ଼ିଏ ଭାଷା ଶିଖିବାକୁ ପଡ଼େ, ସେପରି ଆପଣା ଜୀବିକା ଛଡ଼ା ପ୍ରତ୍ୟେକ ସୋଭିଏଟବାସୀ ପ୍ରାପ୍ତବୟସ୍କ ଲୋକର କିଛି ନା କିଛି ସାମାଜିକ ଦାୟିତ୍ୱ ଥାଏ । ତେଣୁ ସେଠାରେ "ତୁମେ କ'ଣ କର" ବୋଲି ପଚ୍ଚରିଲେ ମୁଁ ଆସେମ୍ବ୍ଲି ମେମ୍ବର ବା ରାଜନୈତିକ କର୍ମୀ ବା କମ୍ୟୁନିଷ୍ଟ ପାର୍ଟିର ପ୍ରାଦେଶିକ କମିଟି ମେମ୍ବର ବୋଲି କହିଲେ ତା'ର କିଛି ଅର୍ଥ ହୁଏ ନାହିଁ ।

ଭାରତବର୍ଷରେ ବିଶେଷତଃ ଓଡ଼ିଶାରେ ନିଜକୁ ଜଣେ କବି ବା ସାମ୍ବାଦିକ ବୋଲି କହିବାଭଳି ହୀନ କଥା କିଛି ନାହିଁ । ଏହାର କାରଣ ଏଠାରେ କହି କିଛି ଲାଭ ନାହିଁ; କିନ୍ତୁ ସୋଭିଏଟ୍ ରୁଷିଆରେ ଆପଣାକୁ କବି ବୋଲି ପରିଚୟ ଦେବାକୁ ଅନ୍ୟ କାରଣରୁ ଲଜ୍ଜା ହୁଏ । ଠିକ୍ ଓଲଟା କାରଣରୁ ଏଠାରେ ତୁମକୁ ଏକ ଦୟାର ପାତ୍ର, ହୀନ ଜୀବ

ବୋଲି ଦେଖନ୍ତି । ସେଠାରେ ତୁମେ ଏତେ ଶ୍ରଦ୍ଧା ଏବଂ ସ୍ନେହର ପାତ୍ର ହେବାର ଆଶଙ୍କା ଯେ ସେଥିରେ ତୁମେ ଲାଜ ପାଇଯିବ । ତୁମେ ଯଦି ତୁମର ଜୀବିକା କଥା ନ କହ, ତେବେ ତୁମର ଛାଡ଼ପତ୍ରରେ ସେମାନେ ତାହା ଦେଖି ନିଅନ୍ତି । "ପୋଏଟ୍" (କବି) ବା "ପିଶାଚି" (ରୁଷିୟ ଭାଷାରେ) ବୋଲି ଶୁଣିଲାମାତ୍ରେ ୧୭।୧୮ ବର୍ଷର ତରୁଣୀ ବାଳିକାଠାରୁ ୪୦।୫୦ ବର୍ଷ ବୃଦ୍ଧା ଜେଜେ ମା' ପର୍ଯ୍ୟନ୍ତ ତୁମକୁ ବେଢ଼ିଯାଆନ୍ତି । ତୁମର କଳା ବାଳକୁ ଚୁମା ଦିଅନ୍ତି । ପୁରୁଷ ଲୋକେ ତୁମକୁ ଉପରକୁ ଉଠାଇ କାନ୍ଧଉପରେ ବସାଇ ବୁଲାନ୍ତି ।

କବି, କଳାକାର, ନାଟ୍ୟକାର ପ୍ରଭୃତିଙ୍କର ଏଭଳି ଆଦର ଦେଖିଲେ ବେଳେ ବେଳେ ମନେ ହୁଏ ଜୀବନରେ ଏହି ବ୍ୟବସାୟ କରିଥିଲେ ଇହକାଳ ଏବଂ ପରକାଳରେ ଯେଉଁ ସମ୍ମାନ ମିଳିଥାନ୍ତା, ତାହା ମୁଁ ଛାଡ଼ିଲି କାହିଁକି ? ସୋଭିଏଟ ଦେଶରେ ଥିଲାବେଳେ ତେଣୁ ମନରେ ଗୋଟାଏ ସଂକଳ୍ପ କରିଥିଲି, ଭାରତ ଫେରିଲା ପରେ ଲେଖିବା ମୋର ମୁଖ୍ୟ ଜୀବିକା କରିଦେବି । ହିନ୍ଦୀଭାଷାରେ ଲେଖିବା ଶିଖିବି ଏବଂ କିଛିଦିନ ଗଲେ ଇଂରାଜୀ ଛଡ଼ା ଗୋଟାଏ ବିଦେଶୀ ଭାଷା ରୁଷୀୟ କିମ୍ବା ଚୀନ୍ ଭାଷା ଶିଖିବାକୁ ଚେଷ୍ଟା କରିବି । କିନ୍ତୁ ଭାରତକୁ ଫେରି ଓଡ଼ିଶା ଦେଶରେ ଦେଖିଲି ମୋର ଯିବାର ଦୁଇ ମାସ ଭିତରେ କବି-ଦୁର୍ଗତିର କୌଣସି ବିଶେଷ ପରିବର୍ତ୍ତନ ହୋଇ ନାହିଁ । ଏଥି ଭିତରେ ପଦ୍ମଚରଣ ଏବଂ ବୈଷ୍ଣବ ପାଣି ମରିଛନ୍ତି । କିପରି ମରିଛନ୍ତି ଏବଂ ତାଙ୍କର ମୃତ୍ୟୁ ଏଠାରେ କ୍ଷମତାଶାଳୀ ମହଲରେ କି ପ୍ରଭାବ ପକାଇଛି ତାହା ସମସ୍ତେ ଜାଣନ୍ତି ।

## ନଅ

ତାଜିକ୍‌ସ୍ଥାନର ସଙ୍ଗୀତ ନାଟ୍ୟକଳା ଏକାଡ଼େମୀକୁ ଆମେ ନିମନ୍ତ୍ରଣକ୍ରମେ ଯାଇଥିଲୁ । ଏହାକୁ (Philharmonic Society) ଫିଲ୍‌ହାରମନିକ ସୋସାଇଟି ବୋଲି କୁହାଯାଏ । ଏଠାରେ ଅନ୍ୟମାନଙ୍କଠାରୁ ମୋତେ ଏବଂ ଆଉ ଜଣେ ସଙ୍ଗୀତଜ୍ଞଙ୍କୁ ବିଶେଷ ଆଦର କରାଯାଇ ନିଆଯାଇଥିଲା । ସେଠାରେ ଦୁଇଜଣ ତାଜିକ୍ ଚିତ୍ରତାରକା ମହିଳା ମଧ୍ୟ ଆମକୁ ତାଙ୍କ ଘରକୁ ନିମନ୍ତ୍ରଣ କରିଥିଲେ । ଏଭଳି ସୌନ୍ଦର୍ଯ୍ୟ ଏବଂ ନମ୍ରତା, ଆଉ ଏଭଳି ଅନାଡ଼ମ୍ବର ଆତ୍ମୀୟତା ଆଉ କେଉଁଠି ଦେଖିଛି ବୋଲି ମୋର ମନେ ହେଉ ନାହିଁ । ଉଭୟଙ୍କର ଯୋଡ଼ିଏ ଏକକ ନୃତ୍ୟବେଳର ମନୋହର ଫଟୋ ଉଭୟେ ଆମ ଦୁହିଁଙ୍କୁ ପଛ ପଟରେ ସେମାନଙ୍କର ନାମ ଲେଖି ଉପହାର ଦେଇଥିଲେ । ସେଦିନ ରାତ୍ରିଭୋଜନବେଳେ ସେମାନଙ୍କର ଆମରି ଗୀତର ତାଳେ ତାଳେ ନୃତ୍ୟଭଙ୍ଗୀ ଏବଂ

ବିଦାୟ ଦିନ ଷ୍ଟାଲିନାବାଦ ଏରୋଡ୍ରାମରେ ସେମାନଙ୍କର ବିଦାୟ ସମ୍ବର୍ଦ୍ଧନାର ଆନ୍ତରିକତା ଏବେ ମଧ୍ୟ ମନେ ପଡୁଛି । ସୋଭିଏଟ୍ ଦେଶର ବିଶେଷତଃ ୟୁରୋପୀୟ ସୋଭିଏଟ୍‌ର ମହିଳାଙ୍କର ବ୍ୟବହାର ଏବଂ ଏମାନଙ୍କର ବ୍ୟବହାର ଭିତରେ ପ୍ରଭେଦରୁ ୟୁରୋପୀୟ ଏବଂ ଏସୀୟ କୃଷ୍ଟିର ପ୍ରଭେଦ ମଧ୍ୟ ବୁଝିହୁଏ ।

ତାଜିକ୍‌ସ୍ଥାନର ମହିଳାମାନଙ୍କର ସଂଯମ, ଭଦ୍ରତା ଏବଂ ସଂସ୍କୃତି ଅଧିକାଂଶ ଭାରତୀୟ ଏବଂ ଏସିଆ ମହାଦେଶର ସଂସ୍କୃତି ଭଳି; ୟୁରୋପୀୟ ସଂସ୍କୃତି ଭଳି ନୁହେଁ । ତେଣୁ ସୋଭିଏଟ୍ ଦେଶରେ ସୋଭିଏଟ୍-ଏସିଆ ଏବଂ ସୋଭିଏଟ୍-ୟୁରୋପର ଗ୍ଭଲିଚଳଣ, ବ୍ୟବହାର, ସଂଯମ ଏବଂ ଆଦବ୍‌କାଇଦାରେ ପ୍ରଭେଦଟା ବାରି ହୋଇପଡ଼େ ।

ଗୋଟିଏ ଉଦାହରଣ ଦେଲେ ଯଥେଷ୍ଟ ହେବ । ସୋଭିଏଟ୍-ୟୁରୋପୀୟ ଦେଶର ଯୁବତୀ ବା ତରୁଣୀ ମହିଳା ପରିଚିତା ହେଲା ପରେ ତୁମ ସହିତ ଅତି ଆପଣାର ହୋଇ ମିଶିଯାଆନ୍ତି । ସେମାନଙ୍କର ହାସ୍ୟରସ ଏବଂ ଥଟ୍ଟାତାମସା ମଧ୍ୟ ବେଳେ ବେଳେ ଖୁବ୍ ଉତ୍କଟ ଧରଣର ହୁଏ; କିନ୍ତୁ ସୋଭିଏଟ୍-ଏସିଆର ମହିଳାମାନଙ୍କର ସଂଭ୍ରମ, ସଂଯମ ଏବଂ ଗୁରୁତା ପ୍ରକୃତରେ ଭାରତୀୟକୁ ମୁଗ୍ଧ କରେ ଏବଂ ବଡ଼ ସୁସ୍ଥ ଲାଗେ ।

ଆମ୍ଭେମାନେ ପହଞ୍ଚିବାର ତୃତୀୟ ଦିନ ଷ୍ଟାଲିନାବାଦ୍‌ର ଅଦୂରରେ ଗୋଟିଏ କୋଠଗ୍ଭଷ ଦେଖିବାକୁ ଯାଇଥିଲୁ । ସେଠାରେ ନାନା ବିଷୟ ଦେଖିବା ସଙ୍ଗେ ସଙ୍ଗେ ଗୋଟିଏ ପ୍ରସୂତିଘରଂ ଦେଖିବାର ସୁଯୋଗ ମିଳିଥିଲା । ସେତେବେଳେ ଦିନ ପ୍ରାୟ ଗୋଟାଏ ବେଳ । ଖାଇବାର ସମୟ ହୋଇଯାଇଥାଏ । କୋଠଗ୍ଭଷର ପ୍ରଧାନ ପ୍ରଧାନ ବ୍ୟକ୍ତିମାନେ ନ ଖାଇ ଆମକୁ ଅପେକ୍ଷା କରି ଥାଆନ୍ତି । ତେଣୁ ଆମ୍ଭେମାନେ ଆଉ ପ୍ରସୂତିଘର ଭିତରକୁ ଏପରି ଅବେଳାରେ ପ୍ରବେଶ କରିବାକୁ ଅନିଚ୍ଛା ପ୍ରକାଶ କଲୁଁ । ଆଗରୁ କହିଛି, ଆମ ଭିତରେ ଦୁଇଜଣ ମହିଳା ଥିଲେ । ପ୍ରସୂତିଘରଟିକୁ ସେମାନେ ଆମ ତରଫରୁ ଅଳ୍ପ ସମୟଭିତରେ ଦେଖି ନ ଆସିଲେ କାଳେ ସେହି ଅନୁଷ୍ଠାନର କର୍ମକର୍ତ୍ତାମାନେ ମନଦୁଃଖ କରିବେ । ତେଣୁ ସେମାନଙ୍କୁ ପ୍ରସୂତିଘର ଦେଖିବାକୁ ଭିତରକୁ ଛାଡ଼ିଦେଲୁଁ ଏବଂ ବାହାରେ ଅପେକ୍ଷା କଲୁଁ । ତା'ଛଡ଼ା ଦିନ ଗୋଟାକବେଳେ ନିଦ୍ରିତ ଥିବା ସାନ ସାନ ପିଲାଙ୍କୁ ଆମର ବୁଟ୍‌ଯୋତା ଶବ୍ଦରେ ଉଠେଇବା ଆଦୌ ଉଚିତ ହୁଅନ୍ତା ନାହିଁ । ଆଉ ୪୦ଟି ବିଛଣା ଥିବା ଗୋଟିଏ ପ୍ରସୂତିଘରେ କେବଳ ମସୃଣ ଦୁଗ୍ଧଫେନନିଭ ଶଯ୍ୟା, ଫୁଲଦାନୀ, ଝରକାର ମଖମଲ ପରଦା ଆଉ ରେଡ଼ିଓ ଇତ୍ୟାଦି

ଉପକରଣ ପ୍ରଭୃତି ଛାଡ଼ିଦେଲେ ଦର୍ଶନୀୟ ବସ୍ତୁ ବା କ'ଣ ଥିଲା ? ଅଯଥା ପ୍ରସୂତି–ମାଆମାନଙ୍କୁ ପୁରୁଷମାନଙ୍କର ଏକ ପରିଦର୍ଶକଦଳ ଦେଖିବାରେ କ'ଣ ବା ଅର୍ଥ ଅଛି ?

ତେଣୁ ଆମ୍ଭେମାନେ ବାହାରେ ଛିଡ଼ା ହେଲୁଁ । ଆମ ଭିତରୁ ଦୁଇଜଣ ମହିଳା ଭିତରକୁ ଗଲେ । ବାହାରେ ଆମ ସାଥିରେ ଥିବା କୋଠଘରର ଚେୟାରମ୍ୟାନ ଇତ୍ୟାଦି ବନ୍ଧୁମାନେ ମଧ୍ୟ ଅପେକ୍ଷା କଲେ । ଏତିକିବେଳେ ମୁଁ ଦେଖିଲି, ବାହାରେ ମଧ୍ୟ ଆମର ଦୋ'ଭାଷୀ ଲୁସି ଛିଡ଼ା ହୋଇଛନ୍ତି । ଲୁସି ମସ୍କୋ ସହରର ଜଣେ ଶିକ୍ଷୟିତ୍ରୀ, ଭାରତକୁ ବାରମ୍ବାର ଆସିଛନ୍ତି । ଖୁବ୍ ଉଞ୍ଚା ପୂରା ଏବଂ ପ୍ରମିଳା-ବାହିନୀର ସେନାପତିପରି ଚେହେରା, ଆଖି ନୀଳ ଆକାଶପରି ନୀଳ, ମଥାର କେଶ ସ୍ୱର୍ଣ୍ଣାଭ, ସାଧାରଣ ସୋଭିଏଟ୍ ମହିଳାଙ୍କଠାରୁ ଗମ୍ଭୀର ଏବଂ ଆତ୍ମସଚେତନ ।

ସେ ଜଣେ ସ୍ତ୍ରୀଲୋକ ଏବଂ ଦୋ'ଭାଷୀ । ତେଣୁ ଆମର ଦୁଇଟି ମହିଳାଙ୍କ ସାଙ୍ଗରେ ସେ ଭିତରକୁ ଯିବାର କଥା । କାରଣ ଆମ ଭିତରେ ଆଉ ଜଣେ ଦୋ'ଭାଷୀ ଥିଲେ, ଯିଏ ପୁରୁଷ ଲୋକ । ଆଗରୁ ତାଙ୍କର ନାମ କହିଛି– ଖ୍ଲିସେବ୍ । ତା' ଛଡ଼ା ବୁଢ଼ାଜଣକ ଯିଏ ଆମର ସମସ୍ତ ସୋଭିଏଟ୍-ଗସ୍ତର ଖର୍ଚ୍ଚରେ ଥିଲେ, ସେ ତ ସାଧାରଣ ମାମୁଲି ଦୋ'ଭାଷୀ ନୁହନ୍ତି, ତେଣୁ ସେ ମଧ୍ୟ ଭିତରକୁ ଯିବାର ପ୍ରୟୋଜନ ନଥିଲା ।

ଲୁସି କିନ୍ତୁ ଏହି ଦୁଇ ମହିଳାଙ୍କ ସଙ୍ଗେ ଭିତରକୁ ଯାଇ ନଥିଲେ । ପରେ ମୁଁ ଅନୁମାନ କଲି ଯେ ଯେଉଁ ଦୁଇଟି ଭାରତୀୟ ମହିଳା ସେହି ପ୍ରସୂତିଘର ଭିତରକୁ ପ୍ରବେଶ କଲେ, ସେଥିଭିତରୁ ଜଣେ ରୁଷୀୟଭାଷା ଏବଂ ଆଉ ଜଣେ ପାରସୀଭାଷା ଜାଣନ୍ତି । ତେଣୁ ଲୁସି ସେମାନଙ୍କ ସଙ୍ଗରେ ଯିବା ଦରକାର ମନେ କରି ନ ଥିଲେ । ନତୁବା ସୋଭିଏଟ୍ ଦେଶରେ ଦୋଭାଷୀମାନଙ୍କର ତତ୍ପରତାରେ ମୁଁ କେବେ ଟିକିଏ ମାତ୍ର ଖିଲାପ ଦେଖିନାହିଁ । ବେଳେବେଳେ ୭୦।୮୦ ଜଣ ଭାରତୀୟଙ୍କ ମେଳରେ ଜଣେ କିଏ ଇଂରାଜୀରେ ବା ହିନ୍ଦୀରେ କଥା କହିବା ମାତ୍ରେ ତାଙ୍କର ପଛେ ପଛେ ଦୋ'ଭାଷୀଙ୍କର ସୁନିଶ୍ଚିତ ଏବଂ ଅବଶ୍ୟମ୍ଭାବୀ କଣ୍ଠସ୍ୱର ଶୁଣାଯିବ । ତେଣୁ ଲୁସି ସେମାନଙ୍କ ସାଙ୍ଗରେ ଭିତରକୁ ଯାଇ ନଥିବାର ଦେଖି ମୋତେ ଟିକିଏ ଆଶ୍ଚର୍ଯ୍ୟ ଲାଗିଥିଲା । ମୁଁ ଲୁସିଙ୍କୁ ବାହାରେ ଦେଖି ପଚ୍ଚରିଦେଲି "ଆପଣ କେମିତି ଭିତରକୁ ଯାଇ ନାହାନ୍ତି ?"

ସାଧାରଣତଃ ଗମ୍ଭୀର ଏବଂ ଆତ୍ମସଚେତନ ଏହି ଦୋ'ଭାଷୀ ଜଣକ, ବୋଧହୁଏ ଉଚ୍ଚତାରେ ମୋଠାରୁ ଦୁଇ ତିନି ଇଞ୍ଚ ବେଶି ହେବେ, ମୋ ଆଡ଼କୁ ଚ୍ୱହିଁ ହସି ହସି ଉତ୍ତର କଲେ, "ମୁଁ ତା' ଭିତରକୁ ଯାଇଛି, ଆଉ ଯିବାକୁ ଚ୍ୱହେଁ ନାହିଁ ।"

ମୁଁ ତାଙ୍କ କଥା ବୁଝିପାରିଲି । ତାଙ୍କର ଏହି ମୃଦୁ ଥଟ୍ଟା ବେଶ୍ ଉପଭୋଗ୍ୟ ଥିଲା । ସାଧାରଣତଃ ଗମ୍ଭୀର ଜଣେ ସ୍ତ୍ରୀଲୋକ ଏପରି କଥାଭାଷା ଏବଂ ରସିକତା କରିବାର ଦେଖି ମୁଁ ମଧ୍ୟ ଟିକିଏ ଆପ୍ୟାୟିତ ହେଲି ।

ମୁଁ ତେଣୁ କହିଲି, "Why not try again ?" ଆଉ ଥରେ ଗଲେ କ୍ଷତି କ'ଣ ?

ଆଉ ଯାଏଁ କୁଆଡ଼େ ? ତାଙ୍କର ସର୍ବନାଶକାରୀ ଉତ୍ତରରେ ମୁଁ ଏକାବେଳକେ ଅପ୍ରତିଭ ହୋଇଗଲି । ସେ କହିଲେ "ଆଠବର୍ଷ ତଳେ ମୁଁ ଥରେ ତା' ଭିତରେ ପଶିଥିଲି । ଏଥରକ ତୁମେ କ'ଣ ମୋତେ ତା' ଭିତରେ ପୂରାଇବାକୁ ଚେଷ୍ଟା କରିବ ? ଚେଷ୍ଟା କର ନାହିଁ, ଫେଲ୍ ମାରିବ ।" ଏ କଥା କହିବାବେଳେ ଅନାବିଳ ହସର ଲହରୀ ତାଙ୍କ ମୁହଁରୁ ଛୁଟୁଥାଏ । ସେଠାରେ ଛିଡ଼ା ହୋଇଥିବା ଇଂରେଜି ଜାଣିଥିବା ରୁଷୀୟ ଏବଂ ଭାରତୀୟମାନେ ମଧ୍ୟ ହସିଲେ । ଏପରି ଲଜ୍ଜାକର ବିଦ୍ରୂପ କୌଣସି ସ୍ତ୍ରୀଲୋକଙ୍କ ଠାରୁ ମୁଁ ଜୀବନରେ ପୂର୍ବରୁ କେବେ ଶୁଣି ନଥିଲି । ଲୁସି ଜଣେ ବିବାହିତା ମହିଳା; କିନ୍ତୁ ନିତାନ୍ତ ନିର୍ବିକାରଭାବରେ ଏପରି ଥଟ୍ଟା ସେ କରି ଦେଇପାରିଲେ ।

ୟୁରୋପୀୟ ରୁଷିଆର ସ୍ତ୍ରୀଲୋକ ଏବଂ ସାଧାରଣତଃ ଇଂରାଜୀ, ଫରାସୀ ଇତ୍ୟାଦି ୟୁରୋପୀୟ ମହିଳାଙ୍କର ଏପ୍ରକାର ଥଟ୍ଟା ତାମସାରେ କୌଣସି ଖରାପ ସଂସ୍କାରର ଗନ୍ଧ ନଥାଏ । କିନ୍ତୁ ଆମ ଭାରତୀୟ ଲୋକଙ୍କୁ ବିଶେଷତଃ ମୋ ପରି ମଫସଲିଆ ଓଡ଼ିଆ ପାଇଁ ଏପ୍ରକାର ଥଟ୍ଟା ଅତି ଅସହ୍ୟ ବୋଧ ହେବା ସ୍ୱାଭାବିକ । ପରବର୍ତ୍ତୀକାଳରେ କିଏଭ ଏବଂ ମସ୍କୋ ପ୍ରଭୃତି ସହରରେ ମଧ୍ୟ ଏପରି ଆମରି ଦୃଷ୍ଟିକୋଣରୁ ଅସଯତ ଥଟ୍ଟା ଶୁଣି ଶୁଣି ମୁଁ ଜାଣିପାରିଛି ଏଇଟା ୟୁରୋପୀୟ କାଏଦାର ଲକ୍ଷଣ ।

ମନେ କରନ୍ତୁ, ଆମ ଭାରତୀୟ ଦଳ କିଏଭ ସହରର ରାସ୍ତାରେ ଚାଲିଛୁ । କେତେ ସମୟ ପରେ ରାସ୍ତାରେ ଜଣେ କେହି ପଛରେ ପଡ଼ିଗଲା । ହଠାତ୍ ତାକୁ ଶହ ଶହ ପୁରୁଷ, ସ୍ତ୍ରୀ ବେଢ଼ିଗଲେ । ପ୍ରଶ୍ନ ପରେ ପ୍ରଶ୍ନର ବାଣ । କେତେ ପ୍ରଶ୍ନ – ତୁମେ ତୁମର ଦେଢ଼ ମାସର ରୁଷ ଦେଶୀୟ ଭାଷାରୁ ଯାହା ଶିଖିଚ ସେତିକି ଉତ୍ତର ଦେଲ; ନ ଦେଇ ପାରିଲେ କେବଳ ହସିଲ । ତୁମେ ଯଦି ଜଣେ କବି ବୋଲି ନିଜର ପରିଚୟ ଦେଲ, ତେବେ ତ ରକ୍ଷା ନାହିଁ; ନୋଟଖାତା ପରେ ନୋଟଖାତା ବାହାରିଲା – ଲେଖ ପଦେ କବିତା ଆଉ ଦସ୍ତଖତ କର । କେତେ ଫଟୋଗ୍ରାଫ୍ କ୍ୟାମେରାର କ୍ଲିକ୍ ଶୁଭିଲା । କିଏ ତୁମ କାନ୍ଧରେ ହାତ ଦେଇ କେତେ ଠାଣିରେ ଛିଡ଼ା ହୋଇ ତା'ର ସାଥୀକୁ କହୁଛି

ଚଞ୍ଚଳ ଫଟୋ ନେ । ଏଣେ ତୁମର ଭାରତୀୟ ଦଳ କେତେ ଦୂରରେ – ଅଧ ମାଇଲ ବା ଫର୍ଲଙ୍ଗ ଦୂରରେ ପହଞ୍ଚିଲେଣି । ସେଠୁ ଦୋ' ଭାଷୀ ମହିଳାଙ୍କର ହୋସ୍ ହେଲାଣି, ତୁମେ କୁଆଡ଼େ ହଜିଲଣି ।

ସେଠୁ ସେ ଦୌଡ଼ିଲେ । ଯେଉଁଠି ଲୋକଙ୍କର ଗହଳି, ସେଇଠି ପହଞ୍ଚି ଦେଖିଲେ ତୁମକୁ ଦଳେ ତରୁଣତରୁଣୀ – ବେଶି ଭାଗ ତରୁଣୀ ବେଢ଼ିଯାଇଛନ୍ତି । ସୋଭିଏଟ୍ ରୁଷିଆରେ ବିଶେଷତଃ ସୋଭିଏଟ୍ ୟୁରୋପର ତରୁଣୀମାନେ ବେଶି ଫରଓ୍ୱାର୍ଡ । ପୁରୁଷମାନେ ଟିକିଏ ବେଶି ଗମ୍ଭୀର । ସେମାନେ ତୁମକୁ ଛାଡ଼ିବାକୁ ପ୍ରସ୍ତୁତ ନୁହନ୍ତି । ତାଙ୍କର ଗହଳି ଭିତରେ ଠେଲାଠେଲି କରି ପଶି ଯୁବତୀ ଦୋ'ଭାଷୀ ତୁମକୁ ଉଦ୍ଧାର କଲେ । ତୁମକୁ ଟାଣି କରି ଘେନି ଆସିଲାବେଳେ ପଛରୁ ନାନାପ୍ରକାରର ମନ୍ତବ୍ୟ ଶୁଣାଯାଉଥିବ । ତୁମେ ଯଦି ଦୋ'ଭାଷୀ ତରୁଣୀଙ୍କୁ ପଚ୍ଚାରିବ, "ସେମାନେ କ'ଣ କହୁଛନ୍ତି ?" ସେ କହିବେ, "ସେମାନେ କହୁଛନ୍ତି ସେମାନେ ତୁମକୁ ଭଲ ପାଆନ୍ତି ?" ତା'ପରେ ତରୁଣୀ ତୁମ ଆଡକୁ ନିତାନ୍ତ ନିର୍ବିକାରଭାବରେ ହସି ହସି କହିବେ, "ମୋର ଈର୍ଷା ହେଉଛି । ତୁମେ ଯଦି ଏପରିଭାବରେ ରୁଷୀୟ ଝିଅମାନଙ୍କୁ ଭଲ ପାଇବ, ଆମେ ତେବେ କରିବୁ କ'ଣ ?"

କିନ୍ତୁ ସୋଭିଏଟ୍–ଏସିଆରେ ଯେଉଁଠି ଆମେ ବୁଲିଛୁଁ, ସେଇଠି ଏପ୍ରକାର ଭାରତୀୟ ରାଜନୀତି ଦୃଷ୍ଟିରୁ ଅସଙ୍ଗତ ଥଟ୍ଟା ବିଦ୍ରୂପ ଦେଖିନାହୁଁ । ତାଜିକ୍‌ସ୍ଥାନର ସେଇ ଦୁଇ ଜଣ ଅନିନ୍ଦ୍ୟସୁନ୍ଦରୀ ନୃତ୍ୟତାରକାଙ୍କର ସଂଭ୍ରମ ଏବଂ ସଂଯମ କଥା ତ କହିଛି । ସେମାନେ କରମର୍ଦ୍ଦନ୍ ସୁଦ୍ଧା ନ କରି ମୁସଲମାନ କାଏଦାରେ ସଲାମ୍ କରିବାର ମଧ ମୋର ମନେ ପଡୁଛି; କିନ୍ତୁ ଏଇଠି ମଧ ଯେ ୟୁରୋପୀୟ ରାଜନୀତିର ଅଭିଯାନ ଆରମ୍ଭ ନୋହିଛି, ସେ କଥା ମଧ ନୁହେଁ ।

## ଦଶ

ଷ୍ଟାଲିନାବାଦର ମେଡ଼ିକାଲ କଲେଜ ବା ଇନ୍‌ଷ୍ଟିଚ୍ୟୁଟର ଘଟଣା ଏଠାରେ ଉଲ୍ଲେଖଯୋଗ୍ୟ । ଷ୍ଟାଲିନାବାଦରେ ପହଞ୍ଚିବାର ଦ୍ୱିତୀୟ ଦିନ ଆମ୍ଭେମାନେ ସେହି ଫିଲହାରମନିକ୍ ସୋସାଇଟି ଦେଖିସାରି ଇନ୍‌ଷ୍ଟିଚ୍ୟୁଟକୁ ଗଲୁ । ବାଟଯାକ ଧାଡ଼ି ଧାଡ଼ି ମନୋହର ବେଶଭୂଷାରେ ସଜ୍ଜିତ ପୁରୁଷ ସ୍ତ୍ରୀ ଛିଡ଼ାହୋଇ ଆମକୁ ହାତ ଠାରି ଠାରି ସ୍ୱାଗତ କରୁଥାଆନ୍ତି । ଏତେ ବନ୍ଧୁତା ଆଉ ସୌହାର୍ଦ୍ଦ୍ୟ ତ ଆଗରୁ ଜୀବନରେ କେଉଁଠି ଭେଟି ନଥିଲି । ତେଣୁ ଆମରି ଦ୍ରୁତଗାମୀ ମୋଟରଗାଡ଼ିରେ ଗଲାବେଳେ ସେଆଡ଼କୁ

ନିବିଷ୍ଟ ଚିତ୍ତରେ ଆମେ ଦୁଇ ପାଖରେ ଏହି ଅଦ୍ଭୁତ ଜନସ୍ରୋତର ନିଶ୍ଚଳ ଅଥଚ ଜୀବନ୍ତ ଅଭିବାଦନ ଗ୍ରହଣ କରିଥିଲୁ ।

ଇନ୍‌ଷ୍ଟିଚ୍ୟୁଟର ଦ୍ୱାରରେ ପହଞ୍ଚିଲା ମାତ୍ରେ ସେଠାରେ ପିମ୍ପୁଡ଼ି-ପଲପରି ଆସି ନରନାରୀ ରୁଣ୍ଡ ହୋଇଗଲେ । ଆମକୁ ଯିବାକୁ ବାଟ ଛାଡ଼ି ଦେଉଥାଆନ୍ତି; କିନ୍ତୁ ଫୁଲତୋଡ଼ା ଆଉ ନୋଟ୍ ବୁକ୍‌ରେ ଦସ୍ତଖତ୍ କରିବାକୁ ଅସଂଖ୍ୟ ହାତ ବଢ଼ାଇଥାଆନ୍ତି । କେତେକ କେବଳ ହାତ ମିଳେଇବାପାଇଁ ହାତ ବଢ଼େଇଦେଉ ଥାଆନ୍ତି । ତୁମର ହାତର ସ୍ପର୍ଶ ଯଦି ଜଣକ ହାତରେ ବାଜିଲା, ଆଉ ଜଣକ ହାତରେ ନ ବାଜିଲା, ତେବେ ନ ବାଜିଲା ବ୍ୟକ୍ତିର ମୁହଁର ପ୍ରସନ୍ନତା ଉପରେ ଗୋଟାଏ କଳା ଛାଇ ପଡ଼ିଯାଏ । ଆମେ ବାରଜଣ ଭାରତୀୟ ଏଭଳି ଦୁଇ ପାଖର ଜନସ୍ରୋତକୁ ପାରହୋଇ ଆଗକୁ ଗ୍ଲଲିଲୁ । ମୋର ନିଜର ବିଶେଷ ଦରଦିପଣିଆରୁ ହେଉ ଅଥବା ମୋର ଚଳନଶକ୍ତି ଅନ୍ୟମାନଙ୍କ ଅପେକ୍ଷା ଶିଥିଳତର ହେଉ, କୌଣସି କାରଣରୁ ମୁଁ ସମସ୍ତଙ୍କ ପଛରେ ପଡ଼ିଗଲି । ଇନ୍‌ଷ୍ଟିଚ୍ୟୁଟର ପାହାଡ଼ ଉପରେ ଅର୍ଦ୍ଧ ପଥରେ ଜଣେ ୨୭।୨୮ ବର୍ଷର ମହିଳା ଆମକୁ ସ୍ୱାଗତ କରିବା ପାଇଁ ଛିଡ଼ାହୋଇ ଥାଆନ୍ତି । ତାଙ୍କରି ପଛରେ ସିଷ୍ଟର ବା ନର୍ସ ଭଳି ପୋଷାକ ପିନ୍ଧି ଅନେକ ମହିଳା ମଧ୍ୟ ଛିଡ଼ା ହୋଇଥାଆନ୍ତି, ପୁରୁଷ ମଧ୍ୟ ଥାଆନ୍ତି; କିନ୍ତୁ ସେମାନଙ୍କର ସଂଖ୍ୟା ଶହକେ କୋଡ଼ିଏ ହେବ ।

ଇନ୍‌ଷ୍ଟିଚ୍ୟୁଟର ଦ୍ୱାର ଅତିକ୍ରମ କରି ଗୋଟି ଗୋଟି ହୋଇ ମୋର ସଙ୍ଗୀମାନେ ଗ୍ଲଲିଲେ । ଅଭ୍ୟର୍ଥିକା ମହିଳା ଜଣକ ସେମାନଙ୍କ ସାଙ୍ଗରେ କରମର୍ଦ୍ଦନ କରି ସେମାନଙ୍କୁ ଭିତରକୁ ଛାଡ଼ି ଦେଉଥାଆନ୍ତି । ଦୋ'ଭାଷୀ ଲୁସି ସେଠାରେ ଛିଡ଼ା ହୋଇ ପ୍ରତ୍ୟେକଙ୍କୁ ପରିଚିତ କରାଇ ଦେଉଥାଆନ୍ତି । ସବାଶେଷରେ ମୋର ପାଳି ପଡ଼ିଲା । ମୋ ସହିତ ମହିଳା ଜଣକ କରମର୍ଦ୍ଦନ କଲେ ଏବଂ ଲୁସି ମୋର ପରିଚୟ କହିଦେଲେ । ବାହାରେ ଉଭାହୋଇଥିବା ସମବେତ ଜନତା ଭିତରୁ ବିପୁଳ କରତାଳି ଧ୍ୱନି ଶୁଣାଗଲା-ପିଶାଚୀ, ପିଶାଚୀ; ଅର୍ଥାତ୍ କବି । ତା'ପରେ ମହିଳା ଜଣକ ମୋତେ ଆଗ ଭିତରକୁ ଯିବାକୁ ନିମନ୍ତ୍ରଣ କଲେ ।

ମୁଁ ଯେହେତୁ ଶେଷ ବ୍ୟକ୍ତି, ତେଣୁ ମୁଁ ତାଙ୍କୁ ଆଗରେ ଯିବାପାଇଁ ଅନୁରୋଧ କରି ହାତ ବଢ଼ାଇଦେଲି ଏବଂ ତାଙ୍କ ପଛେ ପଛେ ଅନୁସରଣ କରିବି ବୋଲି ସଙ୍କେତ କଲି । ଏହାହିଁ ଆମରି ଭାରତୀୟ ଭଦ୍ରତା । କାରଣ ଜଣେ ମହିଳାଙ୍କୁ ପଛରେ ଛାଡ଼ି ପୁରୁଷ ଲୋକ ଆଗେ ବଢ଼ିବା ଭାରତୀୟ ଭଦ୍ରତା ନୁହେଁ; କିନ୍ତୁ ୟୁରୋପୀୟ ଭଦ୍ରତା ଏହାଠାରୁ ଆହୁରି ଦୂରକୁ ଯାଇଛି ବୋଲି ମୋର ଖିଆଲ ନଥିଲା । ମୁଁ ଦେଖିଲି ମହିଳା

ଜଣକ ମୋର ବାହୁକୁ ଆପଣାର ବାହୁରେ ସଂଲଗ୍ନ କରି ମୋତେ ଘେନି ଭିତରକୁ ବାହାରିଗଲେ । ମହିଳା ମସ୍କୋରୁ ଡାକ୍ତରୀବିଦ୍ୟା ପଢ଼ି ଆସିଛନ୍ତି; ସେଠାର ରୀତି ନୀତିରେ ଅଭ୍ୟସ୍ତା ।

ୟୁରୋପୀୟ ରୀତି ଅନୁସାରେ ମୋର ତାଙ୍କୁ ବାହୁ ଦେବା ଉଚିତ ଥିଲା । ତାହା ତାଙ୍କପ୍ରତି ମୋର ସମ୍ମାନ ଏବଂ ଶ୍ରଦ୍ଧାର ପ୍ରକୃତ ପରିଚୟ ହୋଇଥାଆନ୍ତା । ଓଲଟା ସେ ମୋର ବାହୁକୁ ନିଜ ବାହୁରେ ଧରି ନେଲେ ଏବଂ ମୋ ସାଙ୍ଗରେ ଭିତରକୁ ଗ୍ଭଲିଲେ । ଏଭଳି ମୋର ବାମ ବାହୁ ସହିତ ତାଙ୍କର ଦକ୍ଷିଣ ବାହୁର ବନ୍ଧନ ପ୍ରାୟ ପନ୍ଦର ମିନିଟଯାଏ ରହିଲା । ମୋତେ ଘୋର ଅସ୍ୱସ୍ତି ଏବଂ ଲଜ୍ଜା ଲାଗୁଥାଏ । ମହିଳା କିନ୍ତୁ ନିର୍ବିକାର, ସେ ପୁଣି ଉକ୍ତ ମେଡ଼ିକାଲ ଇନ୍‌ଷ୍ଟିଚ୍ୟୁଟ୍‌ର ଡିରେକ୍ଟର ବା ସର୍ବୋଚ୍ଚ କର୍ମୀ । ଭାରତୀୟ ଅତିଥିମାନଙ୍କୁ ବିଭିନ୍ନ ବିଭାଗର ଚେୟାର ଏବଂ ବିଶେଷ ଦର୍ଶନୀୟ ପଦାର୍ଥମାନ ବାମ ହାତରେ ଦେଖାଉ ଥାଆନ୍ତି । ଡାହାଣହାତ ମୋର ବାମ ହାତ ସହିତ ଛନ୍ଦା ହୋଇଥାଏ ।

ତା'ପରେ ଯେତେବେଳେ ଆମ୍ଭେମାନେ ଇନ୍‌ଷ୍ଟିଚ୍ୟୁଟ୍‌ର ଅଭ୍ୟର୍ଥନା ହଲ୍ ମଧ୍ୟରେ ପଶିଲୁଁ ଏବଂ ମହିଳା ଜଣକ ଉକ୍ତ ଅଭିସେନା ମେଡ଼ିକାଲ କଲେଜ ବିଷୟରେ ପ୍ରାଥମିକ ଜ୍ଞାତବ୍ୟ ବିଷୟ ଆମ୍ଭମାନଙ୍କୁ ଜଣାଇବାପାଇଁ ଆମକୁ ବସିବାକୁ ଅନୁରୋଧ କଲେ, ସେତେବେଳେ ମୁଁ ଯାଇ ତାଙ୍କର ଦକ୍ଷିଣ-ବାହୁର ବନ୍ଧନରୁ ନିଷ୍କୃତି ପାଇଲି । ସେତେବେଳକୁ ମୁଁ ଲାଜରେ ଝାଳନାଳ ହୋଇଗଲିଣି ଏବଂ ଆମ ଭାରତୀୟ ସଙ୍ଗୀମାନେ ମୋତେ ଥଟ୍ଟାରେ ବେଳେ ବେଳେ ଚୁମୁଟି ଦେଉଥାଆନ୍ତି । ଲୁସି ମଧ ଏହି ଘଟଣାକୁ କମ ଉପଭୋଗ କରିନାହାନ୍ତି । ମୋର ମନେ ହୁଏ, ସେ ବୋଧହୁଏ ଏହି ସମସ୍ତ ଭାରତୀୟଙ୍କ ଭିତରେ ମୋତେ ସବୁଠାରୁ ସରଳ ବୋଲି ଭାବୁଥିଲେ । ସେ ଏଥିପୂର୍ବରୁ ଭାରତ ଦୁଇ ଥର ଆସିଥିଲେ । ତେଣୁ ଭାରତୀୟମାନଙ୍କର ରୀତିନୀତିର ସମ୍ଭ୍ରମ ଏବଂ ସନ୍ତର୍ପଣ ବିଷୟରେ ତାଙ୍କର କିଛି ଧାରଣା ଥିଲା । ତେଣୁ ମୋର ଏଭଳି ଦୁର୍ଦ୍ଦଶାରେ ସେ ବି ଟିକିଏ କୌତୁକ ଅନୁଭବ କରୁଥିଲେ ।

ମେଡ଼ିକାଲ ଇନ୍‌ଷ୍ଟିଚ୍ୟୁଟ୍‌ରେ ଯାହା ସବୁ ଦେଖିଲୁ, ସେଥିରୁ ବିଶେଷ କିଛି ମୋର ମନେ ନାହିଁ । ଡାକ୍ତରମାନେ ଅପରେସନ ବେଳେ ପିନ୍ଧିଲାଭଳି ସମସ୍ତଙ୍କୁ ଗୋଟାଏ ଗୋଟାଏ ଧଳା ଆଲଖାଲା ପିନ୍ଧିବାକୁ ପଡ଼ିଥିଲା ଏବଂ ଭିତରକୁ ଯିବାକୁ ପଡ଼ିଥିଲା । ୧୯୩୯ ମସିହାରେ ଏହି ମେଡ଼ିକାଲ କଲେଜ ଆରମ୍ଭ ହୋଇଥିଲା । ଏହା ଷ୍ଟାଲିନାବାଦ୍‌ରେ କେବଳ ନୁହେଁ; ସମସ୍ତ ତାଜିକ୍‌ସ୍ଥାନରେ ସବୁଠାରୁ ବଡ଼ ମେଡ଼ିକାଲ

କଲେଜ । ୧୯୫୪ ମସିହାରେ ଏହାର ପଞ୍ଚଦଶ-ବାର୍ଷିକୀ ପାଳନ ହୋଇଯାଇଛି । ଆରମ୍ଭବେଳେ ୨୫୦ ଜଣ ତାଜିକ୍‌ସ୍ଥାନର ବିଭିନ୍ନ ଜାତି – ତାଜିକ୍, ଉଜ୍‌ବେକ୍ ଏବଂ ରୁଷିୟାର ଛାତ୍ର ଏଥିରେ ଯୋଗ ଦେଇଥିଲେ । ପ୍ରଥମ ବାର୍ଷିକ ଶ୍ରେଣୀରେ ବର୍ତ୍ତମାନ ଛାତ୍ରସଂଖ୍ୟା ୧୫୦୦ । ଏହି ଛାତ୍ରଙ୍କ ଭିତରୁ ବର୍ତ୍ତମାନ ତାଜିକ୍‌ଭାଷୀ ଛାତ୍ର ୭୫୦ ପର୍ଯ୍ୟନ୍ତ ହେବେ । ଏଠାରେ ଡିଗ୍ରୀ ଏବଂ ସ୍ନାତକୋତ୍ତର ଡିଗ୍ରୀ ଉଭୟ ପାଠପଢ଼ାର ବ୍ୟବସ୍ଥା ଅଛି । ଆମ ଭାରତବର୍ଷର ମେଡ଼ିକାଲ କଲେଜରେ ଯେପରି ଚିକିତ୍ସା ଏବଂ ଅସ୍ତ୍ରୋପଚାରକ ଯାବତୀୟ ଶିକ୍ଷା ଦିଅଯାଏ, ଏଠାରେ ମଧ୍ୟ ତାହା ଦିଆଯାଏ । କିନ୍ତୁ ଶିକ୍ଷାର ଶେଷ ଦୁଇବର୍ଷ (ମୋଟ ଶିକ୍ଷାକାଳ ଛଅବର୍ଷ) କୌଣସି ନିର୍ଦ୍ଦିଷ୍ଟ ବିଭାଗରେ ବିଶେଷଜ୍ଞ ହେବାକୁ ଶିକ୍ଷା ଦିଆଯାଏ । ଏଭଳି ନିର୍ଦ୍ଦିଷ୍ଟ ବିଭାଗ ତେରଗୋଟି ପାଇଁ ଡିଗ୍ରୀ ହାସଲ କରିବାକୁ ଏଠାରେ ବ୍ୟବସ୍ଥା ଅଛି । ସ୍ନାତକୋତ୍ତର ଛାତ୍ରମାନେ ଏଠାରୁ ଯାହା ଶିକ୍ଷା ପାଆନ୍ତି; କିନ୍ତୁ ସେମାନେ ତାଙ୍କର ଡିଗ୍ରୀ ପାଇବା ପୂର୍ବରୁ ତାଙ୍କ ରିପବ୍ଲିକ୍‌ର ବିଭିନ୍ନ ସ୍ଥାନରେ ଗୋଟିଏ ଗୋଟିଏ ହେଲଥ ଇନ୍‌ଷ୍ଟିଚ୍ୟୁଟ୍‌କୁ ସଂଗଠନ କରିବାର ଭାର ଦିଆଯାଏ । ଏହି ସଂଗଠନଦକ୍ଷତା ମଧ୍ୟ ସେମାନଙ୍କର ପାରଦର୍ଶିତାର ଏକ ଅଙ୍ଗ ବା ପାଠ୍ୟରୂପେ ଗଣ୍ୟ କରାଯାଏ । ଏଠାର ଶିକ୍ଷକ, ଅଧ୍ୟାପକମାନେ ରିପବ୍ଲିକ୍‌ର ବିଭିନ୍ନ ସ୍ଥାନକୁ ଯାଇ ସେଠାରେ ରୋଗୀ ଦେଖନ୍ତି ଏବଂ ଲୋକଙ୍କର ସ୍ୱାସ୍ଥ୍ୟର ତତ୍ତ୍ୱ ନିଅନ୍ତି । ପାହାଡ଼ିଆ ଅଞ୍ଚଳକୁ ହେଲିକୋପ୍‌ଟର ବା ଉଡ଼ାଜାହାଜରେ ମଧ୍ୟ ଏମାନେ ଯାଇ ଚିକିତ୍ସା କରନ୍ତି । ପ୍ରତିବର୍ଷ ଏହି କଲେଜରେ ପ୍ରଥମ ବାର୍ଷିକ ଶ୍ରେଣୀରେ ୩୦୦ ଜଣ ଛାତ୍ର ନିଆହୁଅନ୍ତି । ମେଡ଼ିକାଲ କଲେଜର ଅଦୂରରେ ଗୋଟିଏ ଡାକ୍ତରଖାନା ଅଛି । ଏହାକୁ ସେଠାରେ ପଲିକ୍ଲିନିକ୍ ବା କ୍ଲିନିକ୍ କହନ୍ତି । ଆମର ଏଠାରେ ଯାହାକୁ ଆଉଟ୍ ଡୋର କହୁ, ରୁଷିଆରେ ତାହାକୁ ପ୍ରଫିଲାକ୍‌ଟୋରିୟମ୍ କହନ୍ତି । କ୍ଲିନିକ୍‌ରେ ମଧ୍ୟ ଆମେ କେତେଗୁଡ଼ିଏ ରୋଗୀଙ୍କୁ ଦେଖିଥିଲୁ । ରୋଗ ଗୁଡ଼ିକ ସର୍ଦ୍ଦି, କାଶ ଇତ୍ୟାଦି । ମାମୁଲି ଧରଣର କ୍ୟାନ୍‌ସର ପ୍ରଭୃତି ରୋଗର ସଂଖ୍ୟା ମଧ୍ୟ କମ୍ ଶୁଣିବାକୁ ପାଇଲୁ । ପ୍ରତିଷେଧକ ବ୍ୟବସ୍ଥାଯୋଗୁଁ ଯକ୍ଷ୍ମା, କୁଷ୍ଠ, ଯୌନରୋଗ ଏଠାରୁ ଉଭାନ ହୋଇଯାଇଛି । ପରମାଣୁ ଶକ୍ତିରେ ଯେଉଁ ଚିକିତ୍ସା ସବୁ କରାଯାଉଛି, ସେପରି ଗୋଟିଏ ଚିକିତ୍ସାକେନ୍ଦ୍ର ଏବଂ ପିଲାଙ୍କର ରହିବା ବୋର୍ଡ଼ିଂ ମଧ୍ୟ ଦେଖିଲୁ । ସେମାନେ ଆମକୁ କହିଲେ ଯେ ଜେନିଭାଠାରେ ଯେଉଁ ପରମାଣୁ ବୈଜ୍ଞାନିକ ସମ୍ମିଳନୀ ବସୁଛି, ସେଠାକୁ ଚିକିତ୍ସାରେ ପରମାଣୁ ଶକ୍ତିର ବ୍ୟବହାର ବିଷୟରେ କେତେଗୁଡ଼ିଏ ଗବେଷଣାପତ୍ର ଏହି ଇନ୍‌ଷ୍ଟିଚ୍ୟୁଟ୍‌ରୁ ପଠାଯିବାର ବ୍ୟବସ୍ଥା ହେଉଛି ।

ସୋଭିଏଟ୍ ଦେଶର ମେଡ଼ିକାଲ କଲେଜରେ ଭର୍ତ୍ତି ହେବାର ଦୁଇଟି ପନ୍ଥା ଅଛି । ଗୋଟିଏ ହେଉଛି ଦଶବର୍ଷିଆ ସ୍କୁଲରେ ପଢ଼ା ଶେଷ କରି ଭର୍ତ୍ତି ହେବା ଅଥବା ସାତବର୍ଷିଆ ସ୍କୁଲରେ ୪।୫ ବର୍ଷ ପଢ଼ି ତା'ପରେ ମେଡ଼ିକାଲ ଇନ୍‌ଷ୍ଟିଚ୍ୟୁଟ୍‌ରେ ଯୋଗଦେବା । ଉଭୟ କ୍ଷେତ୍ରରେ ଇନ୍‌ଷ୍ଟିଚ୍ୟୁଟ୍‌ରେ ଯୋଗଦେବା ପୂର୍ବରୁ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ପଡ଼େ । ତାଜିକସ୍ଥାନରେ ସେମାନେ ହଜାର ଲୋକ ପିଛା ଜଣେ ଡାକ୍ତର ଯେପରି ହୋଇପାରିବେ, ସେହି ବ୍ୟବସ୍ଥା କରିବାପାଇଁ ଲକ୍ଷ୍ୟ ରଖିଛନ୍ତି । ସେମାନେ ଆଉ ମଧ କହିଲେ ଯେ ସୋଭିଏଟ ଦେଶରେ ରୋଗ ବା ରୋଗୀର ଚିକିତ୍ସା ଅପେକ୍ଷା ପ୍ରତିଷେଧକ ବ୍ୟବସ୍ଥା ପାଇଁ ଅଧିକ ନଜର ଦିଆଯାଇଥାଏ । ଏଠାରେ ମଧ ବହୁ ଚେର ମୂଳ ଗଛଲଟା ପୂର୍ଣ୍ଣ ଗୋଟିଏ ଉଦ୍ଭିଦ ଗବେଷଣା କେନ୍ଦ୍ର ଦେଖିଲୁ । ଏଠାରେ ମଧ ଭେଷଜ ବିଦ୍ୟାରେ ଗବେଷଣା ହେଉଥିବା ଦେଖିବାକୁ ପାଇଲୁ ।

ଯେଉଁ ମହାତ୍ମାଙ୍କ ନାମ ଅନୁସାରେ ଏହି ମେଡ଼ିକାଲ ଅନୁଷ୍ଠାନ ନାମିତ ହୋଇଛି, ସେ ହେଉଛନ୍ତି ଅଭିସେନା; ପୃଥିବୀର ଚିକିତ୍ସାବିଦ୍‌ମାନେ ଅଭିସେନାଙ୍କୁ ଅସ୍ତ୍ର ଚିକିତ୍ସା ବିଜ୍ଞାନର ଜନକ ବୋଲି ସ୍ୱୀକାର କରନ୍ତି । ତାଙ୍କରି ଲିଖିତ ପୁସ୍ତକର ଗବେଷଣା ପାଇଁ ଏଠାରେ ମଧ ଗୋଟିଏ ଚେଆର ବା ବିଭାଗର ବନ୍ଦୋବସ୍ତ କରାଯାଉଛି । ମେଡ଼ିକାଲ କଲେଜର ଲାଇବ୍ରେରୀରେ ଷାଠିଏ ହଜାର ପୁସ୍ତକ ରହିଛି । ତାହାଛଡ଼ା ସୋଭିଏଟ୍ ଦେଶ ଏବଂ ପୃଥିବୀର ବିଭିନ୍ନ ଦେଶର କେତେକ ମେଡ଼ିକାଲ ପତ୍ରପତ୍ରିକା ସେହି ଲାଇବ୍ରେରୀ ପଢ଼ାଘରେ ଦେଖିଲୁ । ଏହି ପତ୍ରପତ୍ରିକାସଂଖ୍ୟା ଏକଶତ ହେବ । ଭାରତ ଏବଂ ବିଲାତ, ଆମେରିକାର ଇଂରାଜୀ ଭାଷାର ଡାକ୍ତରୀ ପତ୍ରପତ୍ରିକା ବେଶି ଦେଖିବାକୁ ପାଇଲୁ ନାହିଁ । ପଗ୍ଭରି ବୁଝିଲୁ ଯେ ଏପର୍ଯ୍ୟନ୍ତ ସୋଭିଏଟ ଚିକିତ୍ସା ବିଜ୍ଞାନ ବିଲାତ ଏବଂ ଆମେରିକା ଚିକିତ୍ସକମାନଙ୍କ ସହିତ ଯଥେଷ୍ଟ ସଂପର୍କ ପ୍ରତିଷ୍ଠା କରିପାରିନାହିଁ ।

୧୯୧୭ ବିପ୍ଳବ ପୂର୍ବରୁ ଆଜି ତାଜିକ୍‌ସ୍ଥାନ ବୋଲାଉଥିବା ଅଞ୍ଚଳରେ ଗୋଟିଏ ମାତ୍ର ଆଧୁନିକ ଡାକ୍ତରଖାନା ନଥିଲା । କେତେଗୁଡ଼ିଏ ଗୁଣିଗାରଡ଼ିବାଲା ରୋଗୀକୁ ଫୁଙ୍କାଝଡ଼ା କରି କିମ୍ୱା ଭଗବାନଙ୍କର ଧଣ୍ଡା ଖୁଆଇ ରୋଗ ଭଲ କରିବାର ଛଳନା କରୁଥିଲେ । ଆଜି ଏହି ଅଞ୍ଚଳରେ ସର୍ବମୋଟ ୨୦୮ ଗୋଟି ଡାକ୍ତରଖାନା ଅଛି । ଏଥିଭିତରୁ ୩୦ ଗୋଟି ଖଟିଆ ଥିବା ଡାକ୍ତରଖାନାଠାରୁ ୪୦୦ ଗୋଟି ଖଟିଆ ଥିବା ବିରାଟ କ୍ଲିନିକ୍ ପର୍ଯ୍ୟନ୍ତ ରହିଛି । ବହୁ କିସମର ରୋଗ ଏ ଅଞ୍ଚଳରୁ ନିର୍ବାସିତ ହୋଇଯାଇଛି । ସୁସ୍ଥ ଏବଂ ସବଳ ମନୁଷ୍ୟର କର୍ମ ଧନ୍ଦାରେ ଏହି ନବଯୌବନର ଦେଶ ବିକଶିତ ହୋଇ ଉଠିଛି ।

ଡାକ୍ତରୀ ଅନୁଷ୍ଠାନରୁ ଫେରିଲାବେଳେ ବାଟରେ ମୋତେ ଦୋ'ଭାଷୀ ଲୁସି ପଗ୍ଭରିଲେ "ଆପଣ ସେହି ଡିରେକ୍ଟରଙ୍କର ହାତରେ ହାତ ଛନ୍ଦି ଗ୍ଭଲିଲାବେଳେ ଏପରି ଲାଜ କରୁଥିଲେ କାହିଁକି ?"

ମୁଁ କହିଲି, "କାରଣ କୌଣସି ସ୍ତ୍ରୀଲୋକଙ୍କ ସହିତ ବାହୁରେ ବାହୁ ଛନ୍ଦି ପବ୍ଲିକ୍‌ରେ ଗ୍ଭଲିବା ମୋର ଆଗରୁ କେବେ ଘଟି ନଥିଲା ।"

ସେ ପଗ୍ଭରିଲେ, "ଆପଣଙ୍କ ସ୍ତ୍ରୀ ସାଙ୍ଗରେ ମଧ୍ୟ ନୁହେଁ ?"

ମୁଁ କହିଲି, "ନୁହେଁ ।"

ସେ ପୁଣି ପଗ୍ଭରିଲେ, "ଆଶ୍ଚର୍ଯ୍ୟ କଥା ତ ।"

ମୁଁ ହଠାତ୍ ଏହି ଉତ୍ତର ପାଇଁ ପ୍ରସ୍ତୁତ ଥିଲି । ମୁଁ ଜବାବ ଦେଲି "ମୁଁ ଯଦି ବାହାରେ ମୋ ସ୍ତ୍ରୀଙ୍କର ବାହୁରେ ବାହୁ ଛନ୍ଦି ଚାଲିବାକୁ ଇଚ୍ଛା କରିବି, ତେବେ ସେ ମୋତେ ବାରଣ କରିବେ । ସେ କହିବେ, ତୁମେ ଯଦି ମୋତେ ଏତେ ଶ୍ରଦ୍ଧା କର ତେବେ ତାହା ଘର ଭିତରେ ଦେଖାଇଲେ ଚଳିବ । ବାହାରେ ତୁମର ଶ୍ରଦ୍ଧା ବା ପ୍ରେମର ପ୍ରଦର୍ଶନୀ କରିବାରେ ପ୍ରୟୋଜନ କ'ଣ ?"

ମୋର ଏତକ ଉତ୍ତର ବୋଧହୁଏ ଖୁବ୍ କଠୋର ହୋଇଗଲା । ମୁଁ ଦେଖିଲି, ଲୁସିଙ୍କର ହସ ହସ ଏବଂ କୌତୂକାକ୍ରାନ୍ତ ଆଖିରେ ହଠାତ୍ ଗୋଟାଏ ଚିନ୍ତାର ଛାଇ ପଡ଼ିଗଲା । ସେ ନୀରବ ହୋଇଗଲେ । ମୋର ଏପ୍ରକାର ଉତ୍ତର ଅବଶ୍ୟ ରୂଢ଼ ହୋଇଗଲା କିନ୍ତୁ ମୁଁ ଆପଣାକୁ ବେଶ୍ ଆଶ୍ୱସ୍ତ ଏବଂ ବିଜେତାଭଳି ବୋଧକଲି ।

## ଏଗାର

ସଙ୍ଗୀତ ନାଟ୍ୟକଳା ଏକାଡେମୀରେ ଅନ୍ୟମାନଙ୍କ ଅପେକ୍ଷା ମୁଁ ଏବଂ ଆଉ ଜଣେ ସଙ୍ଗୀତଜ୍ଞ ବ୍ୟକ୍ତିଙ୍କୁ ଟିକିଏ ବେଶି କାଳ ରହିବାକୁ ମିଳିଥିଲା । ମୋର ଉକ୍ତ ସଙ୍ଗୀଜଣକ ପ୍ରକୃତରେ ଗୀତ ବୋଲି ଜାଣନ୍ତି । ଏଥିପୂର୍ବରୁ ସେ ଆମେରିକାରେ ପାଠପଢ଼ି ଫେରିଛନ୍ତି; ପ୍ୟାରୀ ଏବଂ ରୋମରେ ବୁଲିଛନ୍ତି । କିଛି କିଛି ୟୁରୋପୀୟ ସଙ୍ଗୀତ-ଚର୍ଚ୍ଚା କରିଛନ୍ତି ବୋଲି ମଧ୍ୟ ମନେ ହୁଏ । ଭାରତୀୟ ଗଣନାଟ୍ୟ ସଂଘର ମଧ୍ୟ ଜଣେ ସୁପରିଚିତ ଶିଳ୍ପୀ ସିଏ । ସୋଭିଏଟ୍ ଦେଶରେ ପହଞ୍ଚିବା ପୂର୍ବରୁ ଯୋଡ଼ିଏ ଗୀତ ସେ ଦିଲ୍ଲୀଠାରୁ ରିହାର୍ସାଲ କରି ଆସିଥାଆନ୍ତି । ସେଠାରେ ସେ ଦୁଇଟି ଗୀତ ବାରମ୍ୱାର ଗାଇଲେ । ସେ ଗୀତଗୁଡ଼ିକର ଛନ୍ଦ ଏବଂ ମାଧୁରୀ ପ୍ରକୃତରେ ଅସାଧାରଣ ଥିଲା । ତେଣୁ ସେ ସୋଭିଏଟ ଦେଶରେ ସର୍ବତ୍ର ଗୋଟାଏ ଚହଳ ହୋଇଗଲେ ।

ତାଙ୍କୁ ସଙ୍ଗୀତ ନାଟ୍ୟକଳା ଏକାଡେମୀରେ ସମ୍ବର୍ଦ୍ଧନା କରିବାର କାରଣ ଥିଲା । ଯଦିଓ ଆମ ଭିତରୁ ଅନେକ ମନେ କରୁଥିଲେ ଯେ ଯେପରିଭାବରେ ସେ ଆତ୍ମ-ବିଜ୍ଞାପନ କରୁଛନ୍ତି, ତାଙ୍କର ସେତେ ବଡ଼ କୃତ୍ୟ ନାହିଁ । କିନ୍ତୁ ଏକଥା ସତ୍ୟ ଯେ ଆମ ଭିତରେ ସେ ହିଁ ଏକମାତ୍ର କଳାକାର ଥିଲେ । ପରବର୍ତ୍ତୀକାଳରେ ସୋଭିଏଟ୍ ଦେଶର ରେଡ଼ିଓରେ ସଙ୍ଗୀତ ଏବଂ ଅନ୍ୟାନ୍ୟ ବିଷୟରେ ଆଲୋଚନା ଓ ଆବୃତ୍ତି କରି ସେ ପ୍ରାୟ ୨୦୦୦-୩୦୦୦ ରୁବଲ ପର୍ଯ୍ୟନ୍ତ ରୋଜଗାର କରିଥିଲେ ଏବଂ ସେଥିରେ ଅନେକ ଜିନିଷ କିଣି ନେଇଥିଲେ । ତାଙ୍କର ଦେଖାଦେଖି ଗୋଠ ମାତିଲେ ଖଣ୍ଡିଆ ମାତିଲାପରି ଆହୁରି ଅନେକ ଭାରତୀୟ ମଧ୍ୟ ହଠାତ୍ ସଙ୍ଗୀତଜ୍ଞ ଅଥବା ଭାରତୀୟ ସଂସ୍କୃତିର ବିଭିନ୍ନ ବିଭାଗରେ ଗୋଟାଏ ଗୋଟାଏ ବିଶାରଦ ବନିଗଲେ । ମୋଟ ଚେଷ୍ଟା ହେଲା କିଛି କିଛି ରୁବଲ୍ ଅର୍ଜନ କରିବା । ଏମାନଙ୍କ ଭିତରୁ କେତେକ ପାଇଲେ, କେତେକ ପାଇଲେ ନାହିଁ । ଏହି ବିଷୟରେ କୌତୁକାବହ ପରିଣତି ପରେ ପ୍ରସଙ୍ଗରେ ଆସିଯିବ ।

କିନ୍ତୁ ମୋତେ ସେଠାରେ ଅଭ୍ୟର୍ଥନା କରିବାର କୌଣସି କାରଣ ମୁଁ ପାଇଲି ନାହିଁ । ଏକେତ ମୁଁ ସଙ୍ଗୀତର ଧାର ଧାରେ ନାହିଁ । ଘଟଣା ଚକ୍ରରେ ଗୀତ ଲେଖିବାକୁ ପଡ଼ିଛି ବୋଲି ମୁଁ ମୋର ଗୀତକୁ ଗାଇଛି ଏବଂ ସେଥିରେ ସ୍ୱର ସଂଯୋଗ କରିଛି । ତାକୁ ଭାରତରେ ଗାନ କୁହାଯାଇପାରେ । ଭାରତରେ ମଧ୍ୟ ଓସ୍ତାଦ୍‌ମାନେ ଏଭଳି ଗୀତକୁ ଗାନ ବୋଲି କହନ୍ତେ ନାହିଁ । ଉକ୍ତ ସଙ୍ଗୀତଜ୍ଞଙ୍କ ଭାଷାରେ ତାହା "ସ୍ୱରଯୁକ୍ତ କବିତା"; ଯେଉଁ କବିତା ଆବୃତ୍ତି ବେଳେ ଟିକିଏ ସଙ୍ଗୀତପରି ଶୁଣାଯାଏ । ଏପରି ଅବସ୍ଥା ମୋତେ ତାଙ୍କ ସହିତ ସମାନ ସମ୍ବର୍ଦ୍ଧନାର କାରଣ ଅନୁମାନ କରିବା ମୋ ପକ୍ଷରେ ଦୁରୂହ ଥିଲା ।

ମୋର ସଙ୍ଗୀ ସଙ୍ଗୀତଜ୍ଞ ତାଙ୍କର ଦୁଇଟିଯାକ ଗୀତ ସେହି ସଙ୍ଗୀତ ନାଟ୍ୟକଳା ଏକାଡେମୀରେ ଗାଇଲେ । ଗାଇବା ପୂର୍ବରୁ ତାଙ୍କର ସେଠାରେ ଅର୍କେଷ୍ଟ୍ରା ବା ବାଦ୍ୟଯନ୍ତ୍ରଦଳ ସେଠାରେ ତାଙ୍କର ଗୀତ ଦୁଇଟିର ସ୍ୱରଲିପି ଲେଖି ନେଇଗଲେ । ଦୁଇ ତିନି ଥରରେ ତାଙ୍କର ଗୀତ ଦୁଇଟିର ଲେଖା ସ୍ୱରଲିପି ପ୍ରସ୍ତୁତ ହୋଇଗଲା । ମୁଁ ଲକ୍ଷ୍ୟ କଲି, ତାଙ୍କୁ ମଧ୍ୟ କିଛି କିଛି ପିଆନୋଯନ୍ତ୍ରର କାଏଦା ମାଲୁମ ଥିଲା । ସେ ଅଭିଜ୍ଞ ବ୍ୟକ୍ତିପରି ବିଭିନ୍ନ ପରଦା ଉପରେ ହାତ ରଖି ନିର୍ଦ୍ଦେଶ ଦେଉଥାଆନ୍ତି । ସେଠାରେ ସେହି ଅଧଘଣ୍ଟା ବା ଘଣ୍ଟାଏ କାଳ ସେ ଏକାବେଳକେ ଜଣେ ମିଉଜିକ୍ ଡିରେକ୍ଟରର ଭୂମିକା ଅଭିନୟ କଲେ ଏବଂ ଖୁବ୍ ପାରଦର୍ଶିତା ସହିତ ସେକଥା କରିପାରିଲେ । ମୁଁ ଆହୁରି ମଧ୍ୟ ଲକ୍ଷ୍ୟ କଲି, ସେଠାରେ ଉପସ୍ଥିତ ସଙ୍ଗୀତ ଓ ନୃତ୍ୟ-ତାରକା, ଡିରେକ୍ଟର,

ବାଦକ-ବାଦିକା ଏବଂ ଅନ୍ୟାନ୍ୟ କଳାକାରମାନେ ତାଙ୍କର ସଙ୍ଗୀତ ଜ୍ଞାନରେ ପ୍ରକୃତରେ ମୁଗ୍ଧ ହୋଇଯାଇଥିଲେ ।

ତା'ପରେ ମୋର ପାଳି ପଡ଼ିଲା । ମୋତେ ଏ କାରଖାନା ଏବଂ ଅଡୁଆରେ ପକାଇବାର ଲୋକ ହେଉଛନ୍ତି ଉକ୍ତ ଗ୍ଲିସେବ୍, ପୁରୁଷ ଦୋ'ଭାଷୀ ଜଣକ । ତାଙ୍କର ଅସଲ ମତଲବ୍ ସେପର୍ଯ୍ୟନ୍ତ ମୁଁ ଜାଣି ନଥିଲି । ସେ ମୋତେ ହିନ୍ଦୀରେ କହିଲେ ପୂର୍ବ ରାତିରେ ମୁଁ ଯେଉଁ କବିତା ଲେଖିଛି, ତାହାକୁ ଆବୃତ୍ତି କରିବାକୁ । କବିତାଟି ତ ସେପର୍ଯ୍ୟନ୍ତ ପୂରା ହୋଇ ନଥିଲା । କେତେ ସମୟରେ ପୂରା ହେବ, ତାହା ମଧ୍ୟ ମୁଁ ସେପର୍ଯ୍ୟନ୍ତ ସ୍ଥିର କରି ନଥିଲି । ସେତେବେଳେ ମଧ୍ୟ ମୁଁ ତାକୁ ସାଙ୍ଗରେ ଧରି ଆସି ନଥିଲି । ପୁଣି ତାକୁ ସ୍ୱର-ସଂଯୋଗ କରି ଗାଇବାର କଳ୍ପନା ମଧ୍ୟ ମୁଁ ସେ ପର୍ଯ୍ୟନ୍ତ କରି ନଥିଲି । ତେଣୁ ମୁଁ ଟିକିଏ ଇତସ୍ତତଃ ହୋଇ ରହିଲି ।

କିନ୍ତୁ ସେତେବେଳକୁ ସମବେତ ସମସ୍ତ ବ୍ୟକ୍ତି ମୋ ମୁହଁକୁ ଚାହିଁ ରହିଲେଣି । ଏକେ ତ ଓଡ଼ିଆ ଲୋକ । **ଭାରତରେ ସବୁ ଜାତିର ଧାରଣା ଯେ ଆମେ ବିଦ୍ୟା-ବୁଦ୍ଧି ବା କଳା-କୁଶଳତାରେ ଅନ୍ୟମାନଙ୍କଠାରୁ ନିକୃଷ୍ଟ ।** ଏପରି ଅବସ୍ଥାରେ ଏଠାରେ କିପରି ମୋତେ ରକ୍ଷା କରିବି, ତାହା ମୋର ପ୍ରଧାନ ଚିନ୍ତା ହେଲା । ମୋର ସଙ୍ଗୀତଜ୍ଞ ସଙ୍ଗୀ ଜଣକ ମଧ୍ୟ ସେତେବଳେକୁ ମୋର ଗୁଆଁରପଣିଆ ଯୋଗୁଁ ଟିକିଏ ଅଧୈର୍ଯ୍ୟ ହୋଇପଡ଼ିଲେଣି । ମୋର ସଙ୍ଗୀତଜ୍ଞାନ ସମ୍ବନ୍ଧରେ ମୋର ଯେପରି ଛୋଟ ଧାରଣା ଥିଲା, ତାଙ୍କର ମଧ୍ୟ ସେଥିରୁ କମ୍ ଛୋଟ ଧାରଣା ନଥିଲା । ତେଣୁ ମୁଁ କିପରି ଏ ଦୁର୍ଦ୍ଦଶାରୁ ମୁକୁଳିବି, ତାହାଚିନ୍ତା କରିବାକୁ ଲାଗିଲି ।

ହଠାତ୍ ବୁଦ୍ଧି ଦିଶିଲା । ମୁଁ ସେମାନଙ୍କୁ କହିଲି, ମୋର କବିତାଟି ଗୋଟିଏ ଭାରତୀୟ ସୁରରେ ମୁଁ ଗାଇବି । ଭାରତୀୟ ସୁରର ବିଶେଷତ୍ୱ ହେଉଛି ତାହାର ଗାଇବାର ମାଧୁରୀ । ତାହା ବିଭିନ୍ନ ଗାୟକର କଣ୍ଠସ୍ୱର-ଲହରୀ ଏବଂ ପାରଦର୍ଶିତାରେ ବିଭିନ୍ନ ହେବାକୁ ବାଧ । ଏହା ହିଁ ଖାଣ୍ଟି ଭାରତୀୟ ସଙ୍ଗୀତର ବିଶେଷତ୍ୱ । ତେଣୁ ଭାରତୀୟ ସଙ୍ଗୀତକୁ ଲିଖିତ ସ୍ୱରଲିପିରେ ପକାଇଦେଲେ ସେଥିରେ ସଙ୍ଗୀତଜ୍ଞର ଗାଇବାର ଭଙ୍ଗୀରେ ଖିଲାପ ହୋଇଯିବ । ତେଣୁ ସେମାନେ ମୋର ଗୀତଟିକୁ ପିଆନୋ'ର ବନ୍ଧା ସ୍ୱରଲିପି ସାହାଯ୍ୟରେ ବଜାଇବାକୁ ଚେଷ୍ଟା ନକରି ଆପଣାର ହାର୍ପ, ଏକର୍ଡ଼ିୟାନ୍ ଏବଂ ତାରଯନ୍ତ୍ରଦ୍ୱାରା ସଙ୍ଗତ କରିବାର ଚେଷ୍ଟା କରନ୍ତୁ । ସେମାନେ ମୋ କଥା ବୁଝିଲାପରି ମନେହେଲା । କାରଣ ଗ୍ଲିସେବ୍ ଯେତେବେଳେ ସେମାନଙ୍କୁ ମୋ କଥା ରୁଷୀୟ ଭାଷାରେ ବୁଝେଇଦେଲେ, ସେତେବେଳେ ସେମାନଙ୍କର ଉଚ୍ଛ୍ୱସିତ ଆନନ୍ଦ

ଏବଂ ହାସ୍ୟରୋଳ ବନ୍ଦ ହୋଇଗଲା । ସେମାନେ ଏକାଗ୍ର ଛାତ୍ର ପରି ମୋତେ ଅପେକ୍ଷା କଲେ ।

ସେଠୁଁ ଆରମ୍ଭ ହେଲା ମୋର ଦ୍ୱିତୀୟ ପରୀକ୍ଷା । କବିତାଟି ତ ମୋର ବସାରେ ଛାଡ଼ିଆସିଛି ଶେଯ ତଳେ । ତା'ର ତ କୌଣସି ଛବି ବି ମୋର ମନେ ନାହିଁ; କେବଳ ଭାବଟା କିଛି କିଛି ମନେ ଅଛି । ସ୍ଥିର କରିନେଲି ଗୋଟାଏ ମୋର ଅତି ପରିଚିତ ଏବଂ ବହୁବାର ବୋଲିଥିବା ଗୀତ ସ୍ୱରରେ ଗାଇବି । ଭାବଟାକୁ ମନରେ ଆଣି ଗାଇବା ଭିତରେ ଶବ୍ଦ ଯୋଜନା କରିନେବି । ଏ ଯାତ୍ରାରୁ ପାର ପାଇଲେ ତ ଗଲା । ଏଠାରେ କିଏ ବୁଝୁଛି ମୋର ଶେଯ ତଳେ ଯେଉଁ କାଗଜ ଦୁଇଖଣ୍ଡ ସଂପୂର୍ଣ୍ଣ ହେବାକୁ ଅପେକ୍ଷା କରି ରହିଛନ୍ତି, ସେଥିରେ କ'ଣ ଅଛି । ତେଣୁ ଓଡ଼ିଶାରେ ପରିଚିତ ଗୋଟିଏ ସଙ୍ଗୀତ "ଲାଲ ଓଡ଼ିଶା ମାଟି"ର ସୁରରେ ମୁଁ ଆରମ୍ଭ କଲି : **(ଲାଲ ତାଜିକ୍ ମାଟି)**

ସଲାମ ନିଅ ସଲାମ ନିଅ
ହେ ମୋର ବୀର ସାଥୀ ହେ
ଲାଲ ତାଜିକ୍ ମାଟି ।୦।

ମେହେନତର ମାନବତାର
ସଲାମ ନିଅ ହେ ଅବତାର
ସଲାମ ନିଅ, ଜୀବନ ସୁରା, ଶ୍ୟାମଳ ପରିପାଟିରେ । ୧ ।
ଆଗାମୀ ଯାହା ଥିଲା ଏକଦା
କଳପନାର ନିରତେ ଛନ୍ଦା
ପିରଦୁଶୀର ସ୍ୱପ୍ନେ ଆଉ ଆଭିସେନାର ଖ୍ୟାତିରେ । ୨ ।
ସଲାମ କରେ ପଥିକ ମୁହିଁ,
ରୁବାୟତର ଜନମଭୂଇଁ
ଆଜିର ତେଜେ ଉକୁଟେ ତୋର ମହା-ଅତୀତ ଭାତିରେ ।୩।
ସଲାମ କରେ ଆଶ୍ୱାସରେ
ଯେଣୁ ତୋ ନବ ନିଶ୍ୱାସରେ
ଦ୍ରାକ୍ଷାବନେ ବିଦ୍ୟୁତ୍‌ର ଝଲସି ଉଠେ ମାତି ରେ । ୪ ।

ପୀତସାଗରେ, ଗଙ୍ଗାତୀରେ
ମାନବତାର ବିପୁଳ ନୀଡ଼େ
ଅନାଦି ଯୁଗ ମହିମା ଘେରିଥିଲା ଯେ କାଳ ରାତିରେ । ୫ ।
ପଞ୍ଚଶୀଳ ଏକତା ତହିଁ
ଆଲୋକ କରେ ନିଖିଳ ମହୀ
ନିଷ୍ପ୍ରଦୀପ କୁଟୀରକୋଣେ ସିନ୍ଦୂରା ଦିଶେ ଫାଟି ରେ । ୬ ।
କୁଟୁମ୍ବୀତାରେ ପଡ଼ୋଶୀତାରେ
ହିନ୍ଦୀ ଆଉ ତାଜିକ୍ ନାଁରେ
ମିଳାଅ ହାତ ହେ ମହାତୀର୍ଥ, ଗରିମାମୟୀ ଜାତିରେ । ୭ ।

ଏବେ ଭାବିଲେ ଅସମ୍ଭବ ଲାଗୁଛି, ମୁଁ ଗୁଣୁଗୁଣୁ କରି ବୋଲିଗଲି । ବୋଧହୁଏ କେହି ବୁଝିପାରୁ ନଥିବେ, ତେଣୁ ଭୁଲ ହେଲେ କେହି ଧରିପାରିବେ ନାହିଁ – ଏହି ନିଶ୍ଚିତତା ଫଳରେ ଆଉ କୌଣସି ଦୋ-ଦୋ'ପାଞ୍ଚ ଭାବ ରହିଲା ନାହିଁ; କିନ୍ତୁ ସେମାନେ ଶୁଣିଗଲେ, କେହି କୌଣସି ବାଦ୍ୟଯନ୍ତ୍ର ବଜାଇବାର ଉଦ୍ୟମ ମଧ୍ୟ କଲେ ନାହିଁ ।

ଗୀତ ଶେଷରେ ଗ୍ଲିସେବ୍ ଗୀତର ମର୍ମ ସେମାନଙ୍କୁ ବୁଝାଇ ଦେଲେ । ମୋ ଦେହରୁ ଗୋଟାପଣେ ଝାଳ ବୋହୁଥାଏ, ଯେପରି ମୁଁ ବହୁ ଦୂରରୁ ଧାଇଁ ଧାଇଁ ଆସିଛି । ଏଣେ ଭାବୁଥାଏ ସଙ୍ଗୀତଟା ତ ରବୀନ୍ଦ୍ରନାଥଙ୍କ ଭାଷାରେ ଅର୍ନିବଚନୀୟ; ସଙ୍ଗୀତର ନିଜସ୍ୱ ଭଙ୍ଗୀରୁ ତାର ଭାବ ଗ୍ରାହକ ବୁଝିବା ଦରକାର । ସଙ୍ଗୀତ ତ କବିତା ନୁହେଁ ଯେ ତାର ଭାବ ବୁଝାଇବାକୁ ପଡ଼ିବ । ତେବେ ଏମାନଙ୍କୁ ଭାବ ବୁଝାଇବାକୁ ଚେଷ୍ଟା କରି ଏମାନଙ୍କର ପ୍ରଶଂସା ପାଇବାର ହୀନ ଚେଷ୍ଟା କରିବା କେତେ ହାସ୍ୟସ୍ପଦ । ବରଂ ମୁଁ ଯଦି କବିତାଭଳି ଏହି ଗୀତଟିକୁ ଆବୃତ୍ତି କରିଥାଆନ୍ତି, ତେବେ ବା ତାକୁ ରୁଷଭାଷାରେ ଅନୁବାଦ କରିଥିଲେ ଚଳିଥାଆନ୍ତା । ସଙ୍ଗୀତରେ ଶବ୍ଦ-ଯୋଜନାରେ ଭାବପ୍ରକାଶ କରିବାପାଇଁ କରାଯାଏ ନାହିଁ, ଧ୍ୱନି ପ୍ରକାଶପାଇଁ କରାଯାଏ; ଯେଉଁ ଧ୍ୱନିର ଅନିର୍ବଚନୀୟତାରେ ଭାବ ଫୁଟିଉଠେ । ତେଣୁ ସଚରାଚର ଆଧୁନିକ କୌଣସି ସଙ୍ଗୀତଜ୍ଞ ସାତପଣ ଗୀତ ଗାଏ ନାହିଁ; ସେ ଗାଏ ପଦେ ବା ଅଧପଦେ ।

ତା'ପରେ ସେଠା ବନ୍ଧୁମାନଙ୍କ ଅନୁରୋଧରେ ମୋର ଗୀତର ପ୍ରଥମ ପଦେ ଦୁଇପଦ ଆଉ ଥରେ ଦୁଇଥର ଗାଇଲି । ସେମାନେ ତାହାକୁ ଗୋଟିଏ ଯୋଡ଼ିଏ ବାଦ୍ୟରେ

ସଙ୍ଗତ କରିବାକୁ ଚେଷ୍ଟା କଲେ; କିନ୍ତୁ ସେମାନଙ୍କର ଉଦ୍ୟମ ସଫଳ ହେଲାପରି ମୋର ମନେ ହେଲା ନାହିଁ । ଅନ୍ୟ ପକ୍ଷରେ ମୋର ସଙ୍ଗୀତଜ୍ଞ ବନ୍ଧୁଙ୍କର ଗୀତର ଦୁଇଟି ଲିଖିତ ସ୍ୱରଲିପି ତିଆରି ହୋଇଗଲା । କହିବାକୁ ଭୁଲିଯାଇଛି, ଉକ୍ତ ଗୀତ ଦୁଇଟି ଜଣେ ପ୍ରସିଦ୍ଧ ଭାରତୀୟ ସଙ୍ଗୀତ ଲେଖକଙ୍କର ଗୀତ ଏବଂ ତାକୁ ଭାରତୀୟ ଗଣନାଟ୍ୟ ସଙ୍ଘର ବହୁଶିଳ୍ପୀ ବୋଲିଜାଣନ୍ତି ଏବଂ ମୋର ସଙ୍ଗୀତଜ୍ଞ ସଙ୍ଗୀ ଗୀତ ଦୁଇଟି ଗାଇ ଶୁଣାଇଥିଲେ ।

ଯାହାହେଉ, ଏହି ପରିସ୍ଥିତିରୁ ଯେକୌଣସି ଉପାୟରେ ଉଧୁରିଗଲି ବୋଲି ବିଗ୍ଭରି ମୁଁ ନିଃଶ୍ୱାସ ମାରିଲି । ଏଥିରେ ମୋର କୃତକାର୍ଯ୍ୟତା ଅତି କ୍ଷୀଣ ଥିଲା, ତେଣୁ ଘଟଣାଟିକୁ ପାସୋରି ଯାଇଛି । ଅଥଚ ଏ ଘଟଣା ଯେ ପୁଣି ଆଉ ଥରେ ଆହୁରି ସଙ୍ଗୀନଭାବରେ ଘଟିବ, ସେକଥା ମୁଁ ଘୁଣାକ୍ଷରେ ସୁଦ୍ଧା ଭାବି ନାହିଁ ।

## ବାର

ଆମର ଅଭ୍ୟର୍ଥନା ଉତ୍ସବ ଆନୁଷ୍ଠାନିକ ଭାବରେ ଶେଷ ହେଲା । ଆମ ତରଫରୁ ମଧ୍ୟ ଉତ୍ତର ଦିଆଗଲା । ତା'ପରେ ଆମରି ସମ୍ବର୍ଦ୍ଧନା ଉପଲକ୍ଷରେ କନ୍‌ସର୍ଟ ବା ବିଚିତ୍ରାନୁଷ୍ଠାନ ଗ୍ଭଲିଲା । ସେ ଦିନର ପ୍ରୋଗ୍ରାମ୍ ଏପରି ଭାରାକ୍ରାନ୍ତ ଥିଲା ଯେ ଶେଷରେ ଏହି କନ୍‌ସର୍ଟରେ ମନରେ ଟିକିଏ ଫୁର୍ତ୍ତି ଲାଗିଲା । ପ୍ରକୃତରେ ପରିଶ୍ରମ ପରେ ଏହି ସାଂସ୍କୃତିକ ଅନୁଷ୍ଠାନ ଯେ ଟନିକଭଳି କାମ କରେ, ତାହା ମୁଁ ପ୍ରଥମେ ସେଦିନ ବୁଝିଲି । ଏଥିପୂର୍ବରୁ ଯେଉଁ କେତେ ଥର ମୁଁ ସିନେମା, ଥିଏଟର ବା କୌଣସି ସାଂସ୍କୃତିକ ଅନୁଷ୍ଠାନକୁ ଦର୍ଶକଭାବରେ ଯାଇଛି, କୌଣସି ଥର ମନରେ ଏତେ ପରିମାଣରେ ଆନନ୍ଦ ହୁଏନା । ବେଳେବେଳେ ନିରସ ଜୀବନଯାତ୍ରାରୁ ରକ୍ଷା ପାଇବାକୁ ଏବଂ ମନ ଫୁର୍ତ୍ତି କରିବାକୁ କେହି ସାଂସ୍କୃତିକ ଅନୁଷ୍ଠାନକୁ ଯାଏ; କେହି ବା ନିଜ ପରିବାର, ଆତ୍ମୀୟ ବା ପ୍ରେମୀ ପ୍ରିୟତମାଙ୍କ ମନ ରକ୍ଷାକରି ଏଭଳି ସାଂସ୍କୃତିକ ଅନୁଷ୍ଠାନକୁ ଯାଏ; କିନ୍ତୁ ପ୍ରତ୍ୟେକ ଦିନ କଠୋର ପରିଶ୍ରମପରେ ଏହା ଯେ ଏକ ରସାୟନପରି କାମ କରେ, ଏକଥା ସତ୍ୟ । ଶରଦ-ଗରମ ପାଣିର ଟବ୍ ପରି ଅଥବା ଝାଳ ଗମ୍‌ଗମ୍ ଦେହରେ ସରବତ୍ ପରି ଏ କଥା ମୁଁ ପ୍ରଥମେ ସେହି ଦିନ ଉପଭୋଗ କଲି ।

ସେ ଦିନର ଷ୍ଟାଲିନାବାଦରେ ମେଡ଼ିକାଲ ଇନ୍‌ଷ୍ଟିଚ୍ୟୁଟ୍, ବିଶାଳ ହ୍ରଦରେ ନୌକା ବିହାର, ପାର୍କ ଅଫ କଲଚର ଏଣ୍ଡ ରେଷ୍ଟରେ ହଜାର ହଜାର ନରନାରୀଙ୍କ ସହିତ ବନ୍ଧୁମିଳନ, ଷ୍ଟେଡ଼ିୟମ୍‌ଠାରେ ବିଭିନ୍ନ ଖେଳାଳୀ ବିଶେଷତଃ ପନ୍ଦର ଗୋଟି ତାଜିକ୍ ତରୁଣୀଙ୍କର ସାଇକେଲ ରେସ୍ ଦେଖି ଦେଖି ଏବଂ ବୁଲି ବୁଲି ଦେହ ଆଉ ମନ ଅବସନ୍ନ

ହୋଇଯାଇଥିଲା । ସେତେବେଳେ ମନରେ ଆଦୌ ଧାରଣା ନଥିଲା ଯେ ପ୍ରତ୍ୟେକ ଦିନ ପ୍ରାୟ ଦୁଇ ମାସକାଳ ଏପରି କଠୋର ଭାବରେ ସକାଳ ୭ଟା ବେଳୁ ରାତି ଗୋଟାଏ ଦୁଇଟା ଯାଏ ପ୍ରୋଗ୍ରାମ୍ ଲାଗି ରହିବ ।

କନ୍‌ସର୍ଟରେ ନୃତ୍ୟଗୀତ ଆଗରୁ କହିଛି । ତାଜିକ୍‌ସ୍ଥାନ ସବୁ ବିଷୟରେ ନିଜସ୍ୱ ରକ୍ଷା କରିଛି ବୋଲି ଗର୍ବ କରେ । କଥା କଥାକେ ତାଜିକ୍ ଲୋକେ କହିବାର ଶୁଣିଛୁ, "ଆମେ ତାଜିକ୍ ଲୋକ" (We Tadjik People); କେବେ ଆମେ ସୋଭିଏଟବାସୀ ବୋଲି ଶୁଣି ନାହୁଁ । ରୁଷିଆର ଲୋକଙ୍କୁ ସେମାନେ ଆମର "ବଡ଼ ରୁଷିଆ ଭାଇ" ବୋଲି ଡାକନ୍ତି । ଏହି 'ବଡ଼' ବୋଲି କହିଲେ ମାନସମ୍ମାନରେ ଉଚ୍ଚ ବୋଲି ବୁଝାଏ ନାହିଁ । ରୁଷିଆ ଦେଶରେ ବିଭିନ୍ନ ଜାତିମାନଙ୍କ ଭିତରେ ତିନିପ୍ରକାର ରୁଷୀୟ ଜାତି ଅଛନ୍ତି । ଗୋଟିଏ ପ୍ରକାର ହେଉଛନ୍ତି "Great Russian" (ବଡ଼ ରୁଷୀୟ) । ଏମାନେ ଖୋଦ୍ ରୁଷିଆର ବିରାଟ ସମତଳ ଏବଂ ସାଇବେରିଆ ତୁନ୍ଦ୍ରା-ଅଞ୍ଚଳ ବ୍ୟାପୀ ରହିଛନ୍ତି । ଦ୍ୱିତୀୟ ହେଉଛନ୍ତି, Little Russian (ସାନ ରୁଷୀୟ) । ଏମାନେ ୟୁକ୍ରେନ୍‌ର ଅଧିବାସୀ । ଏମାନଙ୍କୁ ୟୁକ୍ରେନୀୟ ବୋଲି ମଧ୍ୟ କୁହଯାଏ । ତୃତୀୟ ହେଉଛନ୍ତି White Russian (ଶ୍ୱେତ ରୁଷୀୟ) । ଏମାନେ ରୁଷିଆର ଦକ୍ଷିଣ-ପଶ୍ଚିମ ଅଞ୍ଚଳରେ ରହିଛନ୍ତି । ସୋଭିଏଟ୍ ଦେଶକୁ ଡାକିଲାବେଳେ ସମସ୍ତେ ଡାକନ୍ତି "Our Common Motherland" (ଆମର ସାଧାରଣ ମାତୃଭୂମି) । କୋଠାବାଡ଼ି ଏବଂ ଗ୍ଲଳିଚଳଣରେ ଏମାନେ ପ୍ରତ୍ୟେକ ପୂରାମାତ୍ରାରେ ଆପଣାର ଜାତୀୟ ସ୍ଥାପତ୍ୟ ଏବଂ ଐତିହ୍ୟ ରକ୍ଷା କରିଛନ୍ତି । କିନ୍ତୁ ସବୁ ରକ୍ଷା କରିପାରିଛନ୍ତି ବୋଲି ମୁଁ କହିପାରିଥିଲେ ଆନନ୍ଦିତ ହୋଇଥାଆନ୍ତି । ତାହା ସେମାନେ ଜାଣିଶୁଣି କରି ନାହାନ୍ତି ।

ସୋଭିଏଟ୍ ଦେଶର ନୂତନ କଳା ଓ ସାହିତ୍ୟ ବିଷୟରେ ସାଧାରଣତଃ ସବୁବେଳେ ଶୁଣାଯାଇଥାଏ, ତା'ର ବହିରାବରଣ ବା ଫର୍ମ ହେଉଛି ଜାତୀୟ ଏବଂ ତା'ର ଭିତରର Content ବା ବିଷୟବସ୍ତୁ ହେଉଛି ସମାଜବାଦୀ ବା ସୋସିଆଲିଷ୍ଟ । ଏହି ବିଷୟବସ୍ତୁ କି ଭଳି ସମାଜବାଦୀ ତାହା ପରିବର୍ତ୍ତୀ ପ୍ରସଙ୍ଗରେ ଆଲୋଚନା କରାଯିବ; କିନ୍ତୁ ତାହାର ଫର୍ମ ଯେ ଜାତୀୟ ବା ନାସନ୍ୟାଲ୍ ଏକଥା ସ୍ଥାପତ୍ୟ, ଗ୍ଲଳିଚଳଣ ତଥା ବେଶଭୂଷାରେ ଯେତେ ଦେଖିବାକୁ ମିଳିଲା, ସଙ୍ଗୀତ ଏବଂ ନାଟକରେ ସେତେ ଦେଖିବାକୁ ମିଳିଲା ନାହିଁ ।

ଏହାର କାରଣ ଅନେକ ହୋଇପାରେ । ତାଜିକ୍‌ସ୍ଥାନରେ ବର୍ତ୍ତମାନ ରୁଷୀୟ ଏବଂ ଅନ୍ୟାନ୍ୟ ଜାତିର ଲୋକେ ବହୁସଂଖ୍ୟାରେ ବାହାରୁଡ଼ା ହୋଇ ବସବାସ

କରିଗଲେଣି । ବେଶଭୂଷା, ଆଗ୍ରର ବ୍ୟବହାର ଏବଂ ଭାବଭଙ୍ଗୀରେ ମଧ୍ୟ କେତେକ ପରିବର୍ତ୍ତନ କରାଯାଇଛି । ବିପ୍ଳବର ପ୍ରାଥମିକ ଅବସ୍ଥାରେ ଯେତେବେଳେ ତାଜିକ୍‌ସ୍ଥାନରେ କୌଣସି ସ୍କୁଲ ନଥିଲା, କଲେଜ କଥା ଦୂରେ ଥାଉ – ସେପରି ଅବସ୍ଥାରେ ଏଠାର ଛାତ୍ରମାନେ ଦୂରଦୂରାନ୍ତର ସହର ମସ୍କୋ, ଲେନିନିଗ୍ରାଡ଼ ପ୍ରଭୃତିରେ ପାଠ ପଢ଼ିବାକୁ ଗଲେ; ସେତେବେଳେ ବହୁକାଳ ଧରି ଅଟକିଯାଇଥିବା ତାଜିକ୍‌-ଜାତୀୟ-ସ୍ରୋତ ବାହାର ସଂସାର ସହିତ ବିକାଶମୁଖୀ ହୋଇ ବାହାରି ଆସିଥିଲା । ତେଣୁ ଏହି ଅଭୂତପୂର୍ବ ସମ୍ପର୍କ ବହୁ ପରିମାଣରେ ଏହାର ଜାତୀୟ ପ୍ରତିଭାକୁ ପ୍ରଭାବିତ କରିଛି ।

ଆମେ ଓଡ଼ିଶାବାସୀ ଜାଣୁ, କିପରି ଦୂରଦୂରାନ୍ତରରେ ବସବାସ କରି ରହିଲେ ଓଡ଼ିଆ ଲୋକେ ଆପଣାର ନାମ ଏବଂ ସାଙ୍ଗିଆ ପରିବର୍ତ୍ତନ କରନ୍ତି । ସାମଲଙ୍କୁ ସାମ୍‌ଲ, ମହାନ୍ତିକୁ ମାଇତି ଏବଂ ଦକ୍ଷିଣରେ ନାଁ ଆଗରେ ତେଲୁଗୁ ଫେସନରେ ଗୋଟାଏ ଜନ୍ମସ୍ଥାନ ବା 'ଏଣ୍ଡିପେରୁ' ଯୋଡ଼ିବା ଆରମ୍ଭ ହୋଇଯାଏ । ମୋର ଜଣେ ବନ୍ଧୁଙ୍କ ନାମ ଜନାର୍ଦ୍ଦନ ସିଂହ ଥିଲା । କିଛିକାଳ ପରେ ମୁଁ ଦେଖିଲି, ସେ ଲେଖିଛନ୍ତି କେ ଜନାର୍ଦ୍ଦନ ସିଂହ । ବୁଝୁବୁଝୁ ଜାଣିଲି ସେ ଆନ୍ଧ୍ର କାଏଦାରେ ନାଁ ଆଗରେ ଗୋଟାଏ ଶବ୍ଦ ଯୋଡ଼ିଛନ୍ତି । ସେ ଶବ୍ଦଟା ଚିରାଚରିତ ତେଲୁଗୁ ପନ୍ଥାରେ ଜନ୍ମସ୍ଥାନ ନୁହେଁ । ଏଇଠି 'କେ' କହିଲେ କ୍ଷତ୍ରିୟ । ଏଭଳି କିଏ କେତେ ପ୍ରକାର କରିଛନ୍ତି ।

ତାଜିକ୍‌ସ୍ଥାନରେ ଦେଖିଲି ଖାଣ୍ଟି ମୁସଲମାନ ନାମସବୁ ରୁଷୀୟ ନାମରେ ପରିଣତ ହୋଇଯାଇଛି । ଅଖିମ୍‌ ଏବଂ ଆଜିମ୍‌ରୁ ଅଖିମୋଭ ଏବଂ ଆଜିମୋଭ ହୋଇଛି । ତାଜିକ୍‌ସ୍ଥାନର ବିଖ୍ୟାତ କବି ମିର୍ଜା ତାରସୁନ ଜାଦେ ତାଙ୍କର ନାଁକୁ ମିର୍ଜୁ ତୁରସୁନ ଜାଦେ ବୋଲି ଲେଖିଛନ୍ତି । ହୋଇପାରେ, ଇଂରାଜୀମାନେ କଟକକୁ ଉଚ୍ଚାରଣ କରି ନପାରି ଯେପରି 'କ୍ୟାଟାକ' ବୋଲି କହିଲେ ଏବଂ ବାନେର୍ଜି, ଗାଙ୍ଗୁଲି, ମୁଖାର୍ଜି ବୋଲି ନାମକରଣର ଛୋଟ ସଂସ୍କରଣ ବାହାର କଲେ, ସେହିପରି ତାଜିକ୍‌ ଲୋକଙ୍କର ନାମର ଛୋଟ ସଂସ୍କରଣ ବାହାରିଛି ।

## ତେର

ନୃତ୍ୟ-ଗୀତ ଚାଲିଥାଏ । ପ୍ରତ୍ୟେକ ଅନୁଷ୍ଠାନ ସରିବା ସାଙ୍ଗେ ସାଙ୍ଗେ ସମବେତ ଜନତାର ବିପୁଳ କରତାଳି ଶିଳ୍ପୀମାନଙ୍କୁ ପ୍ରଶଂସା ଜଣାଉଥାଏ । ତା'ପରେ କନସାର୍ଟର ଡିରେକ୍ଟର ଆସି ନୂତନ ଅନୁଷ୍ଠାନ ଘୋଷଣା କରୁଥାଆନ୍ତି । ଷ୍ଟେଜ୍‌ତଳେ ବାଦ୍ୟଯନ୍ତ୍ରର ଦଳ ଆପଣାର ଅର୍କେଷ୍ଟ୍ରା ସଜାଡୁ ଥାଆନ୍ତି । ଗୋଟିକପରେ ଗୋଟିଏ ଅନୁଷ୍ଠାନ ଏପରି

ଗୋଟି ଗୋଟି ଶେଷ ହୋଇଯାଉଥାଏ । ହଠାତ୍ ଚତୁର୍ଥ ବା ପଞ୍ଚମ ଅନୁଷ୍ଠାନପରେ ଡିରେକ୍ଟର ଆସି ରୁଷୀୟ ଭାଷାରେ କ'ଣ କହିଲେ । ସେଥିରେ ମୋର ନାମଟା ଶୁଣିବାକୁ ପାଇଲି । ମୁଁ ହଠାତ୍ ଚମକି ପଡ଼ିଲି ।

ସମଗ୍ର ସଭାଗୃହ ଘନଘନ କରତାଳି ଧ୍ୱନିରେ କମ୍ପି ଉଠିଲା । ବହୁ ଉଚ୍ଚରେ ଯେଉଁଠି ଘରର ଛାତ ତାଜିକିସ୍ତାନର ଅଳଙ୍କାର ଖଚିତ ଟୋପି ଆକାରରେ ଆକାଶକୁ ଅନାଇ ରହିଛି, ସେହିଠାରୁ ଚଟାଣ ପର୍ଯ୍ୟନ୍ତ ଅସଂଖ୍ୟ ଦର୍ଶକ ନାରୀ, ପୁରୁଷ, ବାଳକ, ବାଳିକା, – ଆଗ୍ରହାନ୍ୱିତ ଆଖିରେ ପ୍ରତୀକ୍ଷା କରୁଛନ୍ତି । ରୁମାଲ, ଫୁଲତୋଡ଼ାର ବର୍ଷଣ ଚାଲିଛି । ସୋଭିଏଟ୍ ଦେଶରେ କୌଣସି ଥିଏଟର, ବ୍ୟାଲେ (Ballet) ବା ସିନେମା ହଲରେ ସାଧାରଣତଃ ଅନୁଷ୍ଠାନବେଳେ ଗଭୀର ନିସ୍ତବ୍ଧତା ବିରାଜମାନ । ଅନୁଷ୍ଠାନ ଭିତରେ ଏପରିକି ଉଚ୍ଚକୋଟିର ଅଭିନୟ ବେଳେ ମଧ କେହି ପାଟି ତ ଫିଟାନ୍ତି ନାହିଁ, ତାଳି ମଧ ମାରନ୍ତି ନାହିଁ । ଅନୁଷ୍ଠାନ ଶେଷ ହେଲେ କେବଳ ସେମାନଙ୍କର କରତାଳିରେ ସାରା ଗୃହ ଉଚ୍ଛୁଳି ପଡ଼େ । ଆଲୋକଗୁଡ଼ିକ ଜଳିଉଠିଲା ପରେ ଶିଳ୍ପୀମାନେ ଗ୍ରାହକମାନଙ୍କର ଉଚ୍ଛ୍ୱସିତ ପ୍ରଶଂସାର ଜବାବସ୍ୱରୂପ ଆପଣାର ମଥା ନୁଆଁଇ ଅଭିବାଦନ ଜଣାନ୍ତି । ଯେତେବେଳଯାଏ ଏଭଳି କରତାଳି ଚାଲିଥାଏ, ସେତେବେଳଯାଏ ପ୍ରାୟ ଶିଳ୍ପୀମାନେ ଆପଣାର ନୃତ୍ୟଭଙ୍ଗୀ ବା ଅଭିନୟ-ଭଙ୍ଗୀରେ ଏ ପ୍ରକାର ଅଭିବାଦନ ଜଣାଉଥିବାର ବିଧି । ଅଭିବାଦନପରେ ସେମାନେ ଦର୍ଶକମାନଙ୍କ ଆଡ଼କୁ ପଛ ନକରି ଅଭିନୟ ଭଙ୍ଗୀରେ ସ୍ୱକୀୟ ମନୋହର ରୀତିରେ ମଞ୍ଚ ଛାଡ଼ି ବାହାରି ଯାଆନ୍ତି । ଯଦି ତଥାପି କରତାଳି ଜାରି ରହେ, ସେମାନେ ଆଉ ଥରେ ଫେରନ୍ତି । ଯଦି କରତାଳି ବନ୍ଦ ନହୁଏ, ତେବେ ଡିରେକ୍ଟରଙ୍କ ନିର୍ଦ୍ଦେଶରେ ପୁନର୍ବାର ଆପଣାର ଅଭିନୟ ବା ନୃତ୍ୟର କେତୋଟି ଛତ୍ର ପରିବେଷଣ କରନ୍ତି । ଏଇଠି କରତାଳି ହିଁ ଆମର ଏଠାର "ଏନ୍‌କୋର" ବା "ଆଉ ଥରେ" ର କାମ କରେ । ଦର୍ଶକ ଭିତରୁ କୌଣସି ପ୍ରକାର ଶବ୍ଦ ଉଚ୍ଚାରଣ ପୂରାପୂରି ସଂସ୍କୃତି-ବିରୋଧୀ ବୋଲି ବିବେଚିତ ହୁଏ ।

ଡିରେକ୍ଟରଙ୍କ ମୁହଁରୁ ମୋର ନାମୋଚ୍ଚାରଣ ଶୁଣି ମୁଁ ଚକିତ ହୋଇଗଲି । ତା'ର ପୂର୍ବ-ରାତିର କବିତା ବା ସେଦିନ ସଙ୍ଗୀତ ନୃତ୍ୟକଳା ଏକାଡେମୀରେ ଘଟିଥିବା ଘଟଣା ଆଦୌ ମୋର ସ୍ମରଣରେ ନଥାଏ । ମୁଁ ତାକୁ ସ୍ମରଣରୁ ପୋଛି ଦେଇଥାଏ, କାରଣ ଏକେ ତ ଅସମ୍ପୂର୍ଣ୍ଣ, ଦ୍ୱିତୀୟରେ ସେଦିନର ଏକାଡ଼େମୀରେ ବିଫଳତାଯୋଗୁଁ ମୁଁ ତା' ମନେ ରଖନ୍ତି କାହିଁକି ?

କରତାଳି-ଧ୍ୱନି ଭିତରେ ଆମର ଭାରତୀୟ ଡେଲିଗେସନର ଏଗାର ଜଣ ନିଜ ଭିତରେ କୁହାକୁହି ହେବାର ଲାଗିଲେଣି । ଆମ ଭିତରୁ ଯିଏ ରୁଷୀୟ ଭାଷା ଜାଣନ୍ତି ସେ ଜଣେ ମହିଳା; ସେ ଡିରେକ୍ଟରଙ୍କ କଥା ବୁଝିସାରିଥାଆନ୍ତି । ମୋତେ ହିନ୍ଦୀରେ କହିଲେ, "କିରେ ଭାଇ, ତୁମେ ଯା ଭିତରେ ଚୁପଗପ୍ କ'ଣ ଗୋଟାଏ ଚଳାଇ ନେଇଛ । ଆମକୁ କାହାକୁ କିଛି ଜଣାଇ ନାହଁ।" ତାଙ୍କ କଥାରେ ବିସ୍ମୟ, ହର୍ଷ ଏବଂ ବିଦ୍ରୂପର ମିଶାମିଶି ଭାବ ।

କ'ଣ ଘଟୁଛି ଜାଣିବା ପୂର୍ବରୁ ଚାଲିସେବ୍ ରଙ୍ଗମଞ୍ଚ ଉପରକୁ ଉଠିଲେ । ଏଥି ଭିତରେ ସେ ମୋର କବିତାଟିକୁ ରୁଷୀୟ ଭାଷାରେ କେବଳ ଅନୁବାଦ କରିନାହାନ୍ତି, ତାହାକୁ ରୁଷୀୟ କବିତାରେ ପରିଣତ କରିଛନ୍ତି । ଆହୁରି ଆଶ୍ଚର୍ଯ୍ୟର କଥା ଯେ ଯେଉଁ ସୁରରେ ମୁଁ ସେହି ଦିନ ପ୍ରାୟ ୪।୫ ଘଣ୍ଟାତଳେ ଏକାଡେମୀ ଘରେ କବିତାଟିକୁ ଗାଇଥିଲି, ପିଆନୋ ଏବଂ ଯନ୍ତ୍ର-ସଙ୍ଗୀତ ସାହାଯ୍ୟରେ ସେହି ସୁର ବାଜୁଛି । ସେଦିନ ଉପରଓଳି ନୌକା-ବିହାର ଏବଂ ଷ୍ଟେଡ଼ିୟମ ଭ୍ରମଣବେଳେ ଗ୍ଲିସେବ୍ ଯେ ଆମ ସଙ୍ଗରେ ନଥିଲେ, ତାହାର କାରଣ ମୁଁ ଏବେ ବୁଝିପାରିଲି । ସେ ମୋର ଅଜାଣତରେ ସଙ୍ଗୀତଟିର ଲିଖିତ ଲିପି ପ୍ରସ୍ତୁତ କରିବାପାଇଁ ଏକାଡ଼େମୀରେ ଉପସ୍ଥିତ ରହିଥିଲେ ।

ଗ୍ଲିସେବ୍‌ଙ୍କର ସଙ୍ଗୀତ ଶେଷ ହେଲା । ସୁର ସମାନ ହେଲେ ମଧ୍ୟ ସେଥିରେ ଗୋଟାଏ ଯନ୍ତ୍ରର ଭାବ ଥିଲା । ସେହି ଯାନ୍ତ୍ରିକତା ଯୋଗୁଁ ସଙ୍ଗୀତର ପୂର୍ଣ୍ଣପ୍ରାଣତା ସେଥିରେ ପ୍ରକାଶ ପାଉ ନଥିଲା । କିନ୍ତୁ ଏ ସମାଲୋଚନା ମୋର ମନଭିତରେ ବେଶି ସମୟ କରି ପାରିନାହିଁ । ପରବର୍ତ୍ତୀକାଳରେ ମୁଁ ଏହା ବାରମ୍ବାର ମନରେ ଭାବିଛି । ଲିଖିତ ସ୍ୱରଲିପିରେ ଆମର ଭାରତୀୟ ସଙ୍ଗୀତକୁ ବାନ୍ଧିଲେ ଏହାର ସୌନ୍ଦର୍ଯ୍ୟ ଅବଶ୍ୟ ନଷ୍ଟ ହେବ; କିନ୍ତୁ ତାହା ନକଲେ ୟୁରୋପରେ ଏବଂ ଆଜି ୟୁରୋପ କାହିଁକି ଆମେରିକା, ଲାଟିନ୍ ଆମେରିକା, ଏପରିକି ଚୀନ ବା ଜାପାନରେ ବି ଆମର ସଙ୍ଗୀତ ସଭ୍ୟ-ସମାଜରେ ସ୍ଥାନ ପାଇବ ନାହିଁ । ଏହି ସଂକ୍ରାନ୍ତରେ ପରବର୍ତ୍ତୀକାଳରେ ମୋର ଯାହା ଆଲୋଚନା କେତେକ ବିଶିଷ୍ଟ ୟୁରୋପୀୟ ଶିଳ୍ପୀଙ୍କ ସଙ୍ଗରେ ହୋଇଥିଲା, ତାହା ହେଲିସିଙ୍କି ଏବଂ ଫିନଲ୍ୟାଣ୍ଡ ପର୍ଯ୍ୟାୟରେ କହିବି । (ଲେଖକଙ୍କର ପ୍ରବାସପଥେ, ଚତୁର୍ଥ ଖଣ୍ଡ "ଚିର ଗୋଧୂଳିର ଭୂଇଁ" ଦେଖନ୍ତୁ ।)

ଏଣେ କରତାଳିର ଅବାରିତ ସ୍ରୋତ ଛୁଟିଲାଣି । ଡିରେକ୍ଟର ଛିଡ଼ାହୋଇ ପୁଣି କ'ଣ କହିଲେ । ବୋଧହୁଏ ଏହି ସଙ୍ଗୀତର କବିଙ୍କୁ ସମବେତ ଦର୍ଶକଙ୍କ ଆଗରେ ପ୍ରଦର୍ଶନ କରିବାକୁ କହିଲେ ନା କ'ଣ ? ମୋର ଛାତିରେ ହାତୁଡି-ଘ୍ରେଟ ବାଜିଲା ପରି

ବାଜୁଥାଏ । ଏକ ଅଦେଖା ବର୍ଣ୍ଣର ଚଢ଼େଇକୁ ଆବିଷ୍କାର କଲା ଭଙ୍ଗୀରେ ଗ୍ୟାଲିସେବ୍ କରତାଳିକୁ କୁର୍ଣ୍ଣୀସ କରି ଅଭିବାଦନ କରୁଥାଆନ୍ତି । ମୁଁ ମଞ୍ଚଉପରେ ଛିଡ଼ା ହେଲି ଏବଂ ମାଇକ୍ରୋଫୋନ୍ ସାମନାରେ ସମସ୍ତ ସାହସ ଖର୍ଚ୍ଚ କରି ଗୀତଟିକୁ ଗାଇଦେଲି । ଗୀତର ପଦ ବା ପାଦ ପାଟିରେ କିପରି ଆସିଲା ନ ଆସିଲା ସେଥିପାଇଁ ଭ୍ରୂକ୍ଷେପ ନଥାଏ । ତେବେ ସ୍ୱରର ପ୍ରଥମରେ "ଲାଲ ତାଜିକ୍ ମାଟି" ବୋଲିଲା ବେଳେ ମୁଁ ଭାରତୀୟ ସଙ୍ଗୀତର ଛାଞ୍ଚ ଛାଡ଼ି ୟୁରୋପୀୟ ସଙ୍ଗୀତର ଛାଞ୍ଚ ଧରିଲିଣି । ମଝିରେ ଭାରତୀୟ ସଙ୍ଗୀତର ଅନ୍ତରର ସ୍ୱରଭଙ୍ଗୀର ସୂକ୍ଷ୍ମତାକୁ ରକ୍ଷା କରି ପୁଣି ୟୁରୋପୀୟ ସଙ୍ଗୀତର ତାଳକୁ ଫେରିଯିବାକୁ ଟିକିଏ ଅଡୁଆ ଲାଗୁଥାଏ । ସମ୍ଭବତଃ ମୋର ଆଗର ଅନୁରୋଧମତେ ଗୋଟାଏ ତାରଯନ୍ତ୍ର ଛଡ଼ା ଆଉ କିଛି ବାଜୁ ନଥିଲା ।

ଥରେ ଗାଇଲି । ଶ୍ରୋତାମାନେ ନଛୋଡ଼ବନ୍ଧା । ଆଉ ଥରେ ଡିରେକ୍ଟରଙ୍କ ହୁକୁମ ଆସିଲା । ଏଥରକ ବେଶ୍ ସୁସ୍ଥ ଭାବରେ ଅପ୍ରତିଭ ନହୋଇ ସମବେତ ଜନତାକୁ କଳିନେଲି । ଓଡ଼ିଶାରେ ମୁଁ ବହୁବାର ବିରାଟ ଜନତା ଆଗରେ ଗାଇଛି । ମୁଁ କ'ଣ ଗାଏ, ତା'ର ଭାଷା ସେମାନେ ବୁଝନ୍ତି ଏବଂ ମୋର ଗାନ ପଛରେ କଣ୍ଠସ୍ୱର ଓ ଗାଇବା-ଭଙ୍ଗୀର କୌଣସି ମାଦକତା ନଥାଏ । ମୋର ନିଷ୍ଠାପରତା ଏବଂ ଭାବପ୍ରତି ଏକକତା ବୋଧହୁଏ ଜନସାଧାରଣଙ୍କୁ ଆକୃଷ୍ଟ କରିଥାଏ । ତେଣୁ ମୁଁ ସେଇଠି ମନେ କରିନେଲି ଏମାନେ, ମୋର ଓଡ଼ିଶାର ଲୋକ । ମୋର ସ୍ୱରଭଙ୍ଗୀ ବା ଗାଇବାର ସୌନ୍ଦର୍ଯ୍ୟ ଯାହାହେଉ, ମୋର ତନ୍ମୟତା ଫଳରେ ଏଠାରେ ଏମାନେ ଯଦି କିଛି ବୁଝିପାରନ୍ତି ତେବେ ମୋର ଶ୍ରମ ସାର୍ଥକ ହେବ । ଫଳ ଫଳିଲା । ସେଇଠି ମୁଁ ଅନୁଭବ କଲି ସମସ୍ତ ଜାତୀୟ ବୈଶିଷ୍ଟ୍ୟ ସତ୍ତ୍ୱେ କଳା ଏବଂ ସଂଗୀତ ପୃଥିବୀର ସବୁ ଲୋକଙ୍କୁ ମୁଗ୍ଧ କରିପାରେ । କଳା, ଶିଳ୍ପ ଏବଂ ସଙ୍ଗୀତ ସୀମାରେଖା ମାନେ ନାହିଁ । ବିଖ୍ୟାତ ଫରାସୀ ଲେଖକ ରୋମାଁରୋଲାଁଙ୍କ ଭାଷାରେ ଯେଉଁ ସଙ୍ଗୀତ ସାଧାରଣ ଶ୍ରୋତା ମନରେ ଦାଗ କାଟି ନପାରେ, ତା'ର କୌଣସି ମୂଲ୍ୟ ନାହିଁ । ସ୍ୱର୍ଗୀୟ ଡ଼ି.ଏଲ. ରାୟଙ୍କର ପୁତ୍ର ଅରବିନ୍ଦଙ୍କ ଶିଷ୍ୟ ସାଧୁ ଦିଲୀପକୁମାରଙ୍କୁ ଏହି କଥା ହିଁ ମହାତ୍ମା ଗାନ୍ଧୀ କହିଥିଲେ ବୋଲି ସେ ତାଙ୍କର ପୋଥିରେ ଲେଖିଛନ୍ତି । (ଦ୍ରଷ୍ଟବ୍ୟ : Among the great Dilip Kumar Roy – Jaico Publisher)

ମଞ୍ଚଉପରୁ ଓହ୍ଲାଇବା ପୂର୍ବରୁ ସାରା ପ୍ରେକ୍ଷାଗୃହରେ ଯେଉଁ ଉତ୍ତରଳ ସମ୍ଭାଷଣ ଦେଖିଲି, ତାହା ମୁଁ ଭୁଲିପାରିବି ନାହିଁ । କାହିଁ ଓଡ଼ିଶା; ଆଉ ଓଡ଼ିଆଭାଷା । ଏପରି ଭାଷାଟାଏ ଅଛି ବୋଲି ଭାରତରେ ଅଧିକାଂଶ ଲୋକ ଭଲକରି ଜାଣନ୍ତି ନାହିଁ । ମୋର

ମନେ ପଡୁଛି, ଆମରି ଭାରତୀୟ ଡେଲିଗେସନ୍‌ରେ ଯେଉଁମାନେ ପଞ୍ଜାବ ବା ସୌରାଷ୍ଟ୍ରରୁ ଆସିଥିଲେ, ସେମାନେ ମୋତେ ବଙ୍ଗାଳୀ ବୋଲି ଗ୍ରହଣ କରି ନେଇଥିଲେ । କିନ୍ତୁ ବଙ୍ଗାଳୀଙ୍କ ସାଙ୍ଗରେ ମୁଁ ବଙ୍ଗଳାରେ କଥାଭାଷା କରି ପାରୁ ନଥିଲି । ତେଣୁ ସେମାନେ ମୋଠାରୁ ମଧ୍ୟ ଟିକିଏ କରଛଡ଼ା ଦେଇ ରହୁଥିଲେ । ମୋ ପ୍ରତି ଅବହେଳା ବା ଅସମ୍ମାନ ଯୋଗୁଁ ନୁହେଁ, ମୋର ଭାଷାର ସମତା ଅଭାବଯୋଗୁଁ ମୁଁ ସେମାନଙ୍କ ସଙ୍ଗରେ ଗୋଡ଼େଇ ହୋଇ ମିଶିବା ଛଡ଼ା ମୋର ଅନ୍ୟ ଉପାୟ ନଥିଲା । ତେଣୁ ମୁଁ ବି ଦୂରତା ରକ୍ଷା କରୁଥିଲି । ଜଣେ ଯିଏ ଅସମିଆ ଥିଲେ – ଆସାମବାସୀ – ସେ ବି ମୋ ସାଙ୍ଗରେ ବଙ୍ଗଳାରେ କଥାଭାଷା ହେଉଥିଲେ । ତେଣୁ ପଞ୍ଜାବୀ, ଗୁଜୁରାଟୀ ବା ମରହଟ୍ଟୀ ଇତ୍ୟାଦି ଅନ୍ୟାନ୍ୟମାନେ ମନେ କରୁଥିଲେ ମୁଁ ବଙ୍ଗାଳୀ । ମୁଁ ଯେ ବଙ୍ଗାଳୀ ନୁହେଁ ଏବଂ ଆମର ଏକ ସ୍ୱତନ୍ତ୍ର ଭାଷା ଆଉ ସ୍ୱତନ୍ତ୍ର ଲିପି ଅଛି, ଏକଥା ବୁଝେଇବା ପାଇଁ ମୁଁ ନାକେଦମ୍ ହୋଇଛି । ଶେଷରେ ଦଶଟଙ୍କା ନୋଟ୍ ବାହାର କରି ତାର ପଛପଟେ ଓଡ଼ିଆ ଅକ୍ଷରରେ ଲେଖା ଦଶ ଟଙ୍କା ମଧ୍ୟ ସେମାନଙ୍କୁ ଦେଖେଇଛି ।

ଏପରି ଅଜଣା-ଅଶୁଣା ଓଡ଼ିଆଭାଷାର ଧ୍ୱନିରେ ସେ ଦିନ ଷ୍ଟାଲିନାବାଦର ଆକାଶ ଉଛୁଳିବା, ତାହା ମୋର ପ୍ରାଣରେ ଗଭୀର ଆଲୋଡ଼ନ ଆଣିଥିଲା । ଏ ବର୍ଷ ନୂତନ ବର୍ଷର ଅଭିବାଦନରେ ମୁଁ ଲେନିନ୍‌ଗ୍ରାଡ଼ର ଜଣେ ମହିଳା ଶ୍ରୀମତୀ ନାଟାଶା ଟଲଷ୍ଟୟାଙ୍କ ପାଖରୁ ଚିଠି ଖଣ୍ଡିଏ ପାଇଥିଲି । ସେଥିରେ ସେ ଲେଖିଛନ୍ତି, "ଆପଣଙ୍କର ତାଜିକ୍-ହିନ୍ଦୁସ୍ଥାନ ମୈତ୍ରୀ ଉପରେ ଲେଖିଥିବା ସଙ୍ଗୀତ ଏବଂ ଆପଣଙ୍କର କଣ୍ଠସ୍ୱର ମସ୍କୋ ରେଡ଼ିଓରୁ ଶୁଣି ଆପଣଙ୍କର ଲେନିନଗ୍ରାଡ୍ ରହଣୀବେଳର ସ୍ମୃତି ମନେ ପଡିଗଲା । ମୋର ନବବର୍ଷର ଅଭିବାଦନ ଗ୍ରହଣ କରିବେ ।" ମସ୍କୋ ରେଡ଼ିଓରେ ଓଡ଼ିଆଭାଷା ! ଏହା ହିଁ ସାଂସ୍କୃତିକ ବିନିମୟର ମହା-ଚମତ୍କାର ନିଦର୍ଶନ ।

## ଚଉଦ

ସେଦିନ ରାତିରେ ଆମ୍ଭମାନଙ୍କପାଇଁ ଆନୁଷ୍ଠାନିକ ଭୋଜିସଭା ପ୍ରାୟ ୮ଟା ବେଳେ ଆରମ୍ଭ ହେଲା । ଆମକୁ ଛାଡ଼ିଲେ ପାଞ୍ଚଶହଯାଏ ଷ୍ଟାଲିନାବାଦର ଶ୍ରେଷ୍ଠ ବ୍ୟକ୍ତି ଉପସ୍ଥିତ ଥିଲେ । ମନ୍ତ୍ରୀ, ବୈଜ୍ଞାନିକ, ସାହିତ୍ୟକ, କଳାକାର, କୋଠଗ୍ରକ୍ଷୀ, ଶ୍ରମିକ ଇତ୍ୟାଦି ସବୁ ଶ୍ରେଣୀର ପ୍ରତିନିଧି ଥିଲେ । ଆମକୁ କୌଣସି ମାମୁଲି ପରିଚୟ କରାଯିବାର ନଥିଲା । କନ୍‌ସାର୍ଟରୁ ଫେରିବାପରେ ଆମ୍ଭେମାନେ ଟିକିଏ ମୁହଁହାତ ଧୋଇ ଭୋଜିସଭାରେ ବସିଗଲୁ ।

ଯେଉଁମାନେ ପେଶଓ୍ୱାର ବା କ୍ୱେଟା ଯାଇଥିବେ, ସେମାନେ ଜାଣନ୍ତି ସେହି ଟାଙ୍ଗରଭୂମି ଆଉ ଲଣ୍ଡା ପାହାଡ଼ ରାଜ୍ୟରେ କେତେ ପ୍ରକାର ଫଳ ଫଳେ; ଆଉ ତାହା କେତେ ଶସ୍ତା । କେବଳ ଆମର ଆମ୍ବ ଆଉ କଦଳୀ ମିଳେ ନାହିଁ, କମଳା ମଧ୍ୟ ବେଶି ମିଳେ ନାହିଁ; କିନ୍ତୁ ସେଓ, ନାସପାତି, ଅଙ୍ଗୁର, ବିଭିନ୍ନ ପ୍ରକାରର କୋଳି, ଆଖରୋଟ, ଆଲୁବୋଖରା ଇତ୍ୟାଦି ଶହ ଶହ ପ୍ରଚୁର ଫଳ ସେଇ ଅଞ୍ଚଳମାନଙ୍କରେ ମିଳେ । ଆମର ଖାଇବା ଟେବୁଲ ଉପରେ ଏପରି ଫଳରେ ଗୋଟାଏ ବଡ଼ ପ୍ରଦର୍ଶନୀ ହୋଇଥିଲା କହିଲେ ଚଳେ । ଏଥିରୁ କିଏ କେତେବେଳେ ଗୋଟାଏ ଯୋଡ଼ାଏ ଛିଣ୍ଡାଇ ଖାଇବାର ବିଧି । ତା'ପରେ ଏଥିରୁ ଯେଉଁ ବେଶି ଭାଗ ବଳକା ରହେ, ତାହା ପୁଣି ଆଉ ନୂଆ ଫଳ-ସମ୍ଭାର ସହିତ ମିଶି ଟେବୁଲରେ ଥୁଆ ହୁଏ । ଏସବୁ ଗୋଟାଏ ଭୋଜି ସଭାରେ ଖର୍ଚ୍ଚ ହେବାପାଇଁ ନଥାଏ । ବିଶେଷ କରି ଟେବୁଲଟିକୁ ସୁନ୍ଦର ଏବଂ ରୁଚିକର କରିବାପାଇଁ ଏସବୁ ଫଳର ସମ୍ଭାର ସଜାଯାଇଥାଏ । ଷ୍ଟାଲିନାବାଦ ବା ତାସକନ୍ଦ ଇତ୍ୟାଦି ସ୍ଥାନମାନଙ୍କରେ ଏତେଗୁଡ଼ିଏ ଫଳ ଟେବୁଲ ଉପରେ ଦେଖି ସେଗୁଡ଼ିକୁ ସବୁ ଖାଇ ଶେଷ କରିବାକୁ ହେବ ବୋଲି ଭୟ କରିବାର କୌଣସି କାରଣ ନାହିଁ ।

କୋଳି, ଫଳ ପ୍ରଭୃତି ବିଷୟରେ ଯେଉଁ କଥା; ହାରାହାରି ପାଉଁରୁଟି ଖଣ୍ଡ, ବଟର, ଲୁଣ, ମରିଚଗୁଣ୍ଡ, କ୍ରିମ୍ ବା ସର ପ୍ରଭୃତି ବିଷୟରେ ମଧ୍ୟ ସେହି କଥା । ଟେବୁଲ ଉପରେ ପ୍ଲେଟ୍ ବା ବଡ଼ ବଡ଼ ଚିନାମାଟିର ବେଲାମାନଙ୍କରେ ଏସବୁ ଥୁଆ ହୋଇଥିବ; ଯେଉଁଠି ଦରକାର ଖଣ୍ଡେ ଖଣ୍ଡେ ଉମୁଗ୍ର ପଡ଼ିଥିବ । ଟେବୁଲକୁ ଅନାଇଁ ବିଭିନ୍ନ ଜାଗାରେ ଏଥିରୁ ପ୍ରଚୁର ଥିବ । ଆବଶ୍ୟକମତେ ଭୋଜନରତ ବ୍ୟକ୍ତି ସେଥିରୁ ଯାହା ନେବାର ନେବ । ଟେବୁଲର ସୁରୁଚିଦୃଷ୍ଟିରୁ କୌଣସି ଲୋକ କିଛି ଦରକାର ଥିବାର ମନେ କଲେ, ତୁମ ନିକଟରେ ସେହି ଜିନିଷ ଥିଲେ ତାହା ତାଙ୍କ ଆଡ଼କୁ ବଢ଼ାଇଦେବ ।

ଆମର ଭାତ, ଡାଲି, ପରିବା ତରକାରି, ମାଛଭଜା, ମସଲାପକା ମାଂସ ତରକାରି ଏଠି ଦେଖିବାକୁ ସ୍ୱପ୍ନ । ୟୁରୋପରେ କେଉଁଠାରେ ତ ଦେଖିନାହିଁ । କେବଳ ମସ୍କୋଠାରେ ଭାରତୀୟ ଦୂତାବାସରେ ଆମପାଇଁ ଯେଉଁ ସମ୍ବର୍ଦ୍ଧନା କରିଥିଲେ, ସେଇଠି ଭାରତୀୟ ଖାଦ୍ୟ ପଦାର୍ଥ ତୃପ୍ତିର ସହିତ ଖାଇଥିଲୁଁ । ୟୁରୋପ ପରି ଏହି ମଧ୍ୟଏସିଆରେ ପରିବାପତ୍ର କଞ୍ଚାରେ ଖାଆନ୍ତି । କଞ୍ଚା ଖାଇଲେ ଖରାପ ଲାଗିବ ବୋଲି ବେଳେ ବେଳେ ବନ୍ଧାକୋବି, କାକୁଡ଼ି ଇତ୍ୟାଦିକୁ ଲେମ୍ବୁରସ ବା ଭିନ୍‌ଗାରରେ ବୁଡ଼ାଇ ଦିଆଯାଇଥାଏ ।

ଗୋଟାଏ ପ୍ରକାର ଲାଗେ; ଖାଇବାର ରୁଚି ତ ବ୍ୟକ୍ତିଗତ, ତାହା ଉପରେ ବେଶି ଗୁଡ଼ାଏ କହି ଲାଭ ନାହିଁ ।

ସକାଳ ଜଳଖିଆ, ଦ୍ୱିପ୍ରହରର ଲଞ୍ଚ୍ ବା ରାତିର ଡିନର ଛଡ଼ା ବେଳେବେଳେ ଘରିଟାବେଳେ ବି ଖାଇବା ପିଇବା ହୁଏ । ଘରିଟାବେଳେ ଖାଇବା ପିଇବା ଟିକିଏ ବେଶି ହୋଇଗଲେ ଏବଂ ଅପେରା ବା ବ୍ୟାଲେ ଦେଖି ଫେରିବାରେ ଏଗାରଟା ବାରଟା ବାଜିଗଲେ ରାତିରେ ଡିନର୍ ହୁଏ ନାହିଁ । ଟିକିଏ ସାମାନ୍ୟ ସପର (ରାତ୍ରି-ଭୋଜନ) କରାଯାଏ । ଏଥିରେ ଗୋଟାଏ ଯୋଡ଼ାଏ ଅଣ୍ଡାର ଅମଲେଟ୍ ଆଉ ପାଉଁରୁଟି, ବଟର, ଟିକିଏ କଫି ବା ଚ୍ହା, ଆଉ ବେଶି ଭାଗ ପାନୀୟର ବ୍ୟବସ୍ଥା ଥାଏ । ସକାଳର ବ୍ରେକ୍ ଫାଷ୍ଟରେ (ଜଳଖିଆ) ରୁଷିଆ ଦେଶରେ ଗୋଟାଏ ଗୋଟାଏ ବଡ଼ ବୋତଲରେ ବୋତଲେ ଲେଖାଁଏ ଦହି ଦିଆଯାଏ । ବୋତଲଗୁଡ଼ିକ ବଡ଼ ମୁହଁବାଲା; ଅନେକାଂଶରେ ହର୍ଲିକ୍ସ ବୋତଲ ଭଳି ।

ତାଜିକ୍ସ୍ଥାନରେ ଫଳ ଯେତେ ପ୍ରଚୁର, ପରିବା ସେତେ ପ୍ରଚୁର ବୋଲି ମନେ ହେଲା ନାହିଁ । ଏକଥା ଉଣା ଅଧିକେ ପ୍ରାୟ ୟୁରୋପର ସବୁଠି ପ୍ରଯୁଜ୍ୟ । ରୁଷିଆରେ ବିଲାତି ବାଇଗଣ, ପିଆଜ ଏବଂ କାକୁଡ଼ି ଟେବୁଲ ଉପରେ ଥୁଆହେବାର ଦେଖିଛି । ସାଧାରଣତଃ ଏଗୁଡ଼ିକ କଟାହୋଇ ନଥାଏ । ଖାଇବସିଥିବା ଲୋକ ଇଚ୍ଛାକଲେ କାଟିକରି ଖାଇପାରିବ । କେବଳ ପରିବା ଭିତରେ ମଟର-ଛୁଇଁ ଆଉ ବିଲାତି ଆଳୁର ଚେକି ଚେକି (ଚିପ୍ସ) ବେଳେ ବେଳେ ଖାଇବାକୁ ମିଳେ । ତାହା ମଧ୍ୟ ଅଲଗା; ଡିସ୍ ଆକାରରେ ନୁହେଁ । କୁକୁଡ଼ା ବା ଅନ୍ୟାନ୍ୟ ଜନ୍ତୁର ମାଂସ ସାଙ୍ଗରେ ମିଶା ହୋଇ ଅଥବା ଭାତ ସାଙ୍ଗରେ ଏକା ପ୍ଲେଟ୍‌ରେ ଘଖଣା ପରି ଦିଆଯାଏ ।

ବ୍ରେକ୍‌ଫାଷ୍ଟ ଛଡ଼ା ପ୍ରତ୍ୟେକ ଖାଦ୍ୟ ପୂର୍ବରୁ ପ୍ରଥମ ଡିସ୍‌ଟା ହେଉଛି ସୁପ୍ ବା ଝୋଳ । ଏହି ସୁପ୍ ବା ଝୋଳର ପ୍ରଚଳନ ୟୁରୋପରେ ସର୍ବବ୍ୟାପୀ; କିନ୍ତୁ ଏଥିରେ ମଧ୍ୟ ତାରତମ୍ୟ ଅଛି । ଭାରତରେ ଇଂରାଜୀ ସଭ୍ୟତା ପଶିଲାପରେ ସାହେବୀ ହୋଟେଲମାନଙ୍କରେ ଏବଂ ଆଧୁନିକ ସାହେବୀଖାନା ଘରେ ଯେଉଁ ସୁପ୍ ଦିଆଯାଏ, ତାହା ହେଉଛି ହାତସିଝା ଝୋଳ । ଏହାର ପରିମାଣ ମଧ୍ୟ ଅଧକପେ ବା ଖୁବ୍ ବେଶି କପେ ହେବ । ଏହି ଝୋଳ ପାଟିକୁ ତରଳ କରିବାକୁ ଏବଂ କଣ୍ଠ ସଫା କରିବାକୁ ଦିଆହୁଏ ବୋଲି ମନେ ହୁଏ । ଏହା ଭୋକ ଉଦ୍ରେକ କରେ ।

କିନ୍ତୁ ରୁଷିଆରେ ଏବଂ ରୁଷିଆଠାରୁ ଅନୁକରଣରେ ସୋଭିଏଟ ଏସିଆର ତାଜିକ୍‌ସ୍ଥାନ ବା ଉଜ୍‌ବେକିସ୍ଥାନ ପ୍ରଭୃତି ଅଞ୍ଚଳରେ ଯେଉଁ ସୁପ୍ ବା ଝୋଳ ଦିଆଯାଏ,

ତାହା ଝୋଳ ତ ନୁହେଁ; ତାହାକୁ ଏକପ୍ରକାର ମହୁର ବା ଘାଣ୍ଟ ତରକାରି କୁହାଯାଇପାରେ । ଏହା ସୁପ୍ ପରି ତରଳ ନୁହେଁ, ଖୁବ୍ ବହଳିଆ । ଏଥିରେ ଆଳୁ, ଗ୍ଭଉଳ ଅଥବା ସୁଜି, କୁକୁଡ଼ାର ଗୋଟିଏ ଫଡ଼ିଆ ବା ପେଟି ଏପରି ନାନା ଜିନିଷ ପଡ଼ିଥାଏ । ପରିମାଣ ମଧ୍ୟ ଗୋଟାଏ ବଡ଼ ଚିନାବାସନ ବେଲାରେ ବେଲାଏ ହେବ । ଏତକ ଖାଇଦେଲାପରେ ଗୋଟାଏ ପୂରା ମିଲ ଖାଇଦେଲା ପରି ଲାଗେ ।

ତଥାପି ଏହି ଷ୍ଟାଲିନାବାଦ୍‌ର ଡିନରରେ ଆମ୍ଭେମାନେ ବହୁ ପରିମାଣରେ ପଲାଉ ଏବଂ କବାବ୍ ଦିଆଯିବାର ଦେଖିଲୁଁ । ପରବର୍ତ୍ତୀକାଳରେ ମସ୍କୋ ଏବଂ ଲେନିନ୍‌ଗ୍ରାଡ଼ରେ ମଧ୍ୟ ଆନୁଷ୍ଠାନିକ ଡିନର ପାର୍ଟିରେ ହୋଟେଲର ମାମୁଲି ଖାଦ୍ୟ-ପଦାର୍ଥରେ ନୁହେଁ, ଏଭଳି ପଲାଉ ଏବଂ କବାବ୍ ପରିବେଷଣ ହେବାର ଦେଖିଲୁଁ । ପଲାଉ ଏଠାର ମୁସଲମାନୀ ବିରିଆନି ଭଳି । କବାବ୍‌ଗୁଡ଼ିକ ଲମ୍ୱା ଲମ୍ୱା ଇସ୍ପାତ୍ ବା ଆଲୁମିନିୟମ ପାତିଆ ଉପରେ ମାଂସ ଦିଆଯାଇ ତାହାକୁ ନିଆଁରେ ଭଜା ଯାଇଥାଏ । କବାବ୍ ତାଜିକ୍‌ସ୍ଥାନ ଏବଂ ଉଜ୍‌ବେକିସ୍ଥାନର ସବୁଠାରୁ ସୌଖୀନ ଏବଂ ରୁଚିକର ଖାଦ୍ୟ ବୋଲି ପ୍ରସିଦ୍ଧ ।

## ପନ୍ଦର

ପ୍ରାୟ ପାଞ୍ଚଶହ ଜଣ ପର୍ଯ୍ୟନ୍ତ ଆମେ ଖାଇବାକୁ ବସିଛୁଁ । ଏଠାରେ ଖାଇବାଟା ଗୋଟାଏ ପର୍ବ । କେତେବେଳେ "ଆୱାରା ହୁଁ" ଗୀତ କନ୍‌ସାର୍ଟରେ ବାଜୁଛି, କେତେବେଳେ କେହି ନୃତ୍ୟ-ତାରକା ଉଠି କନ୍‌ସାର୍ଟର ତାଳରେ ତାଜିକ୍-ଭଙ୍ଗୀରେ ନୃତ୍ୟ କରିଦେଲେଣି । ପୁଣି ରାତିର ଆନୁଷ୍ଠାନିକ ଡିନର୍‌ରେ ଟୋଷ୍ଟ ହେବାର କଥା । ଟୋଷ୍ଟର ଅର୍ଥ ହେଉଛି ସ୍ୱାସ୍ଥ୍ୟ-ପାନ । ପ୍ରଥମେ ଯେଉଁମାନେ ଅଭ୍ୟର୍ଥକ, ସେମାନଙ୍କର ନେତା ଛିଡ଼ା ହୋଇ ଅତିଥିମାନଙ୍କୁ ସମ୍ବର୍ଦ୍ଧନା ଜଣାଇବେ । ଏହି ସମ୍ବର୍ଦ୍ଧନାରେ ସେ ଭାରତ ବା ହିନ୍ଦୁସ୍ଥାନ ସହିତ ଆପଣା ଦେଶ, ଅର୍ଥାତ୍ ଏଠାରେ ତାଜିକ୍‌ସ୍ଥାନର ପାରମ୍ପରିକ ବନ୍ଧୁତା କିପରି ବିଶ୍ୱଶାନ୍ତିର ଏବଂ ଶାନ୍ତିପୂର୍ଣ୍ଣ ସହାବସ୍ଥାନର ପରିପୋଷକ, ତାହା କହିବେ । ତାଙ୍କର କଥା ଜଣେ ଦୋଭାଷୀ ଛିଡ଼ାହୋଇ ଅନୁବାଦ କରୁଥିବେ । ଏଥିଭିତରେ ଟେବୁଲ ଉପରେ ସମସ୍ତଙ୍କର ପିଆଲାରେ ପରଷୁଣୀମାନେ ମଦ ଢ଼ାଳି ଦେଇ ଯାଉଥିବେ । ତାଙ୍କର ବକ୍ତୃତା ଶେଷରେ ନେତା କହିବେ "ବନ୍ଧୁ ଗଣ ! ମୁଁ ଆଜି ତେଣୁ ମହାନ ଭାରତୀୟ ଜାତିମାନଙ୍କର ନାମରେ ମୋର ପିଆଲା ଉଠାଉଛି । ଭାରତ-ତାଜିକସ୍ଥାନ ମୈତ୍ରୀ ବହୁଯୁଗବ୍ୟାପୀ ସାଂସ୍କୃତିକ ସମ୍ପର୍କ ଏବଂ ଆଜି ବିଶ୍ୱପରିସ୍ଥିତିରେ ଏହି ବନ୍ଧୁତା ବା ମୈତ୍ରୀ ଦୀର୍ଘଜୀବୀ ହେଉ ।" ଏତିକି କହିଲାମାତ୍ରେ ସମସ୍ତେ ଚୌକି

ଛାଡ଼ି ଛିଡ଼ାହେବେ ଏବଂ ଆପଣା ଆପଣା ଗିଲାସ ଟେକି ପାଖରେ ବସିଥିବା ବନ୍ଧୁଙ୍କ ଗିଲାସରେ ଗିଲାସ ଠୁଙ୍କି 'ପରସ୍ପରର ସ୍ୱାସ୍ଥ୍ୟ-ପାନ' କରିବେ । ଏହାର ଉତ୍ତରରେ ପୁଣି ଅତିଥିମାନଙ୍କ ତରଫରୁ ଜଣେ ଛିଡ଼ା ହୋଇ ଉତ୍ତର ଦେବେ, ତାପରେ ସ୍ୱାସ୍ଥ୍ୟ-ପାନ ହେବ ।

ଏହି ପ୍ରାଥମିକ ଆନୁଷ୍ଠାନିକ ସ୍ୱାସ୍ଥ୍ୟ-ପାନ ସରିଲାପରେ ଚାଲିଲା ସ୍ୱାସ୍ଥ୍ୟ-ପାନର ସାହାଣମେଲା– ଯିଏ ପାରିଲା ସିଏ ଉଠିଲା, ବକ୍ତୃତା ଦେଲା, ମେଜିକ୍ ଦେଖାଇଲା, ଗୀତ ଗାଇଲା, ଏପରିକି ଅଭିନୟ କଲା ଏବଂ ତା'ପରେ ବିପୁଳ କରତାଳି ଭିତରେ ପୁଣି ଚାଲିଲା ସ୍ୱାସ୍ଥ୍ୟ-ପାନ । ଭାରତବର୍ଷରୁ ପ୍ରଥମେ ବାହାରି ପ୍ରଥମେ ପ୍ରଥମେ ଏହି ସ୍ୱାସ୍ଥ୍ୟ-ପାନ ବଡ଼ ଉପଭୋଗ୍ୟ ହେଉଥିଲା । ଷ୍ଟାଲିନାବାଦରେ ମଧ୍ୟ ମୁଁ ଅବଶ୍ୟ ନିଜେ କୌଣସି ବକ୍ତୃତା ଦେଇ ନାହିଁ ବା ନିଜେ ଟୋଷ୍ଟ -ପ୍ରସ୍ତାବ କରି ନାହିଁ । କିନ୍ତୁ ପ୍ରତ୍ୟେକ ଟୋଷ୍ଟ-ପ୍ରସ୍ତାବବେଳେ ପିଆଲା ଟୋକିଛି । ପିଆଲାରେ ଯେଉଁ ମଦ ଥାଏ, ତା'ର ପରିମାଣ ଅଳ୍ପ ଏବଂ ତାହା ବଡ଼ ଦାମିକା ମଦ । ଅର୍ଥାତ୍ ସେଥିରେ ବେଶି ପରିମାଣର ନିଶା ନଥାଏ; କିନ୍ତୁ ଗୋଟାଏ ରାତିରେ ୨୦।୨୫ ଥର ବା ୩୦।୪୦ ଥର ଏପରି ପିଇଲେ ଅବସ୍ଥାଟା କ'ଣ ହେବ, ତାହା ସହଜରେ ଅନୁମାନ କରାଯାଇପାରେ । ପରବର୍ତ୍ତୀକାଳରେ ମୋର ଅବସ୍ଥା ଯାହା ହୋଇଥିଲା, ତାସ୍କନ୍ଦ ବିଷୟ କହିଲାବେଳେ ଉଲ୍ଲେଖ କରିବି । ଏହି ଟୋଷ୍ଟ ଚାଲିଥିବା ଭିତରେ ମଧ୍ୟ ଖାଦ୍ୟପଦାର୍ଥ ଥରକୁ ଥର ଅର୍ଥାତ୍ ଗୋଟାକ ପରେ ଗୋଟାଏ ରୀତିମତ ଚାଲିଥାଏ । ଯେଉଁମାନେ ମଦ ଖାଆନ୍ତି ନାହିଁ, ସେମାନଙ୍କ ପାଇଁ ବହୁ ପରିମାଣରେ 'ଲିମୋନେଡ୍' ଆଉ ସୋଡ଼ାପାଣି ଟେବୁଲ ଉପରେ ରଖାଯାଇଥାଏ । ଲିମୋନେଡ୍‌କୁ ରୁଷିଆରେ 'ଲିମନାଡ୍' କହନ୍ତି; ଆଉ ସୋଡ଼ାକୁ କହନ୍ତି 'ମିନରାଲି' ବା 'ମିନରାଲି' ଓ୍ୱାଟର (ଧାତବ ଜଳ) । ବାସ୍ତବରେ ଏହି ମିନରାଲି ବା ଲିମନେଡ ନଥିଲେ ଏହି ପରିମାଣର ଗରିଷ୍ଠ ଖାଦ୍ୟ ଜୀର୍ଣ୍ଣ କରିବା କଷ୍ଟକର ହୁଅନ୍ତା ।

ଆମ୍ଭେମାନେ ଭାରତରେ ଖାଇସାରିବାପରେ ପାଣି ପିଉଁ । ପାଣି ପିଇବାପରେ ଖାଇବା ଶେଷ ହୋଇଯାଏ । ଅନ୍ତତଃ ଆମ ଓଡ଼ିଶା ଦେଶରେ ପାଣି ପିଇବାପରେ ଭୋଜନ ପରିସମାପ୍ତି ହୋଇଯାଏ । ତା'ପରେ ଲମ୍ୱା ଲମ୍ୱା ହାକୁଟି ମାରି ଆମ୍ଭେମାନେ ତୃପ୍ତିରେ ଉଠୁ । ଇଉରୋପରେ ଏବଂ ତାଙ୍କଠାରୁ ଦେଖାଶିଖା ଅନ୍ୟାନ୍ୟ ଏସୀୟ ସଭ୍ୟ-ମହଲରେ ଆଜିକାଲି ପାଣି ପିଇବା ଉଠିଗଲାଣି କହିଲେ ଚଳେ । ତା'ଛଡ଼ା କୌଣସି ତରଳ ପଦାର୍ଥ କେବଳ ପୂର୍ବବର୍ତ୍ତୀ ଖାଦ୍ୟକୁ ପେଟଭିତରେ ଖେଳେଇ ଦେଇ ନୂତନ

ଖାଦ୍ୟ ଖାଇବାକୁ ପ୍ରେରଣା ଦିଏ । ତେଣୁ ପିଇବା ସେପରି ସ୍ଥଳରେ ପରିସମାପ୍ତି ବା ସମାପିକା ନୁହେଁ । ପାନୀୟ ମଦ ହେଉ ବା ସୋଡ଼ା ହେଉ କେବଳ ନୂତନ ଖାଦ୍ୟର ଅପେକ୍ଷାରେ ଗ୍ରହଣ କରାଯାଏ । କେବଳ ଚ଼ହା ଅଥବା କଫି ଖାଇସାରିଲେ ଖାଦ୍ୟ ଶେଷ ହେଲା ବୋଲି ଅନୁଭବ କରାଯାଏ ।

ରୁଷିଆରେ କଫିର ବ୍ୟବହାର ବେଶି ନୁହେଁ, କାରଣ ସେଠାରେ କଫି ଉତ୍ପନ୍ନ ହୁଏ ନାହିଁ । ତେଣୁ ଦାମ୍ ବେଶି ପଡ଼େ । ବ୍ରାଜିଲ୍ ଦେଶରୁ ସିଧା ସଳଖ ରୁଷିଆକୁ ବାଣିଜ୍ୟ ନାହିଁ । ତେଣୁ ରୁଷିଆ ଆପଣାର ଦରକାରୀ କଫି ବ୍ରାଜିଲ୍‌ରୁ ଆମଦାନୀ କରୁଥିବା ପୂର୍ବ-ୟୁରୋପୀୟ ରାଜ୍ୟମାନଙ୍କରୁ କିଣେ ।

ସାହେବୀ ଦେଶର କାଏଦାରେ ଏଉଡ଼ି ମାରିବା ବା ପେଟରୁ ଗ୍ୟାସ୍ ଛାଡ଼ିବା ଅତ୍ୟନ୍ତ ସଂସ୍କୃତିବିରୋଧୀ ଅସଭ୍ୟତା । କିନ୍ତୁ ମୋତେ ଆଶ୍ଚର୍ଯ୍ୟ ଲାଗେ ଏତେ ବାରମ୍ବାର ପିଇଲାପରେ; ବିଶେଷତଃ ସୋଡ଼ା, ଲିମୋନେଡ୍ ଅଥବା ଶେରି ବା କୋନିୟାକ୍ ପରି ମଦ କିପରି ଏଉଡ଼ି ନ ମାରି ଚଳିହେବ । ଅଜାଣତରେ ହେଲେ ତ ଉପାୟ ନାହିଁ; କିନ୍ତୁ ସେତିକିବେଳେ କୌଣସି ଗୋଟାଏ ବାହାନା କରି ମୁଁ ଟେବଲରୁ ଉଠିଯାଏ ଅଥବା ତଳେ ରୁମାଲଟା ପକାଇ ଦେଇ ତାହାକୁ ଗୋଟାଇ ଆଣିବା ଅବସରରେ ଏଉଡ଼ି ମାରିଦିଏ; କିନ୍ତୁ ସେସବୁ ଯାହା ହେଉ ଏପର୍ଯ୍ୟନ୍ତ ଯେ ପାଣିପିଆ ହେଲା ନାହିଁ । କାବୁଲଠାରେ ସେଦିନ ଉପରଓଳି ତ ପାଇପ୍ ଖରାପ ଥିଲା ବୋଲି ପାଣି ପିଇ ନଥିଲୁ । ସେଠାରୁ ଆସିବାର ଦୁଇଦିନ ହୋଇଗଲା, ପେଟରେ ଜଳ ପଡ଼ିଲା ନାହିଁ । ଖାଲି ମଦ, କୋନିୟାକ୍ ବା ବ୍ରାଣ୍ଡି ବା ଶେରି । ଆଉ ଗୋଟାଏ ଖୁବ୍ ହଳଦିଆ ଅଙ୍ଗୁର ରସ ଥାଏ । ଆଉ ରାସ୍‌ପବରି ରସ ବି ଥାଏ । ଏହା ଠିକ୍ ସିରପ ଭଳିଆ ଲାଗୁଥାଏ । ଏସବୁକୁ ସିନା ପିଇବୁ; କିନ୍ତୁ ପାଣି କାହିଁ ?

ଟେବୁଲରେ ବାଧ ହୋଇ ପାଣି ମାଗିଲି । ଆମ ଭିତରେ ଆମେ ଭାରତୀୟମାନେ ବି ସେତେବେଳକୁ ହିନ୍ଦୀରେ ବା ବଙ୍ଗଳାରେ କଥାଭାଷା ହେଲୁଣି ପାଣି ମିଳନ୍ତା କି ? କିନ୍ତୁ କିଏ ଭରସି ଲାଜରେ କହି ପାରୁ ନଥାନ୍ତି । କାରଣ ଆମେ ଏଥିପୂର୍ବରୁ ଥରେ ଦୁଇଥର ପାଣି ମାଗିଲେ, ସେମାନେ ଆଣିକରି ସୋଡ଼ା ବା ଲିମୋନେଡ୍ ଦେଇଛନ୍ତି । ପରେ ମସ୍କୋରେ ଯେତେବେଳେ ପାଣି ନହେଲେ ନ ଚଳେ ବୋଲି ବୁଝିଲେ ଏବଂ ତାକୁ ପିଇବାକୁ ପଡ଼ିବ ବୋଲି ଜାଣିଲେ, ସେତେବେଳେ ସେମାନେ ପାଣିକୁ ଫୁଟାଇ ତାକୁ ଥଣ୍ଡା କରି ଆମେ ଥିବା ରୁମ୍‌ମାନଙ୍କରେ ଗୋଟିଏ ଗୋଟିଏ କାଚ ସୁରେଇରେ ରଖି ଦେଇଥାଆନ୍ତି । ଏଭଳି ପାଣି ବି କେବଳ ଓଠ ଓଦା କରିବାପାଇଁ ଯଥେଷ୍ଟ ହେବ । ଏତିକି ପାଣି ପିଇ ଜଣେ ଭାରତୀୟ ଦିନକଯାକ ଚଳିପାରନ୍ତା ନାହିଁ । ଫିନ୍‌ଲ୍ୟାଣ୍ଡରେ

ତୁମେ ପାଣି ମାଗିଲେ ବରଫପକା ପାଣି ଦିଅନ୍ତି । ଖାଲି ପାଣି ଯେ ପାନୀୟ ହୋଇପାରେ, ଏକଥା ସେମାନଙ୍କର କଳ୍ପନାରେ ନାହିଁ ।

ମୋର ଟେବଲ ପାଖରେ ପୂର୍ବରୁ ମୁଁ କହିଥିବା ଦୋ'ଭାଷୀ ଲୁସି ବସିଥିଲେ । ଦୋଭାଷୀମାନେ ବା ଆଉ ସବୁ ତଦାରଖ କରୁଥିବା ଲୋକମାନେ କେବଳ ନାଁକୁ ମାତ୍ର ଆମ ସାଥିରେ ଟେବଲରେ ବସନ୍ତି । ଥରକୁ ଥର ସେମାନେ ଉଠିକରି ଯାଉଥାଆନ୍ତି କେଉଁ ପ୍ଲେଟରୁ ବଟର ସରିଲା, କେଉଁଠି ଆଇସ୍‌କ୍ରିମ ଦିଆ ହେବ, କିଏ ନିରାମିଷାଶୀ, ତାଙ୍କ ପାଇଁ ଗରମ ଦୁଧ ଏବଂ ମଟର ଆଳୁର ଚପ୍ ଦରକାର, ଏସବୁ କଥା ମନେ ମନେ ଠିକଣା କରିନେଇ ସେମାନେ ବାହାରିଯାଆନ୍ତି । ପୁଣି ଅଧଘଣ୍ଟା ପନ୍ଦର ମିନିଟ୍ ପରେ ଆସନ୍ତି, ପୁଣି ଯାଆନ୍ତି ।

ଖାଇବା ସେତେବେଳକୁ ଅଧାଅଧି ସରିଲାଣି, ମୁଁ ଲୁସିଙ୍କୁ କହିଲି, "କିଛି Plain water (ଏକଦମ୍ ସାଧାପାଣି) ଦେଲେ ବଡ଼ ଉପକୃତ ହୁଅନ୍ତି ।" ସେ ହସିଲେ ଏବଂ ପରିଚର୍ଯ୍ୟାକାରିଣୀକୁ ବୁଝାଇ କହିଲେ, କିଛି ସାଧାପାଣି ଆଣିବାକୁ । ସେତିକିବେଳେ ସାଧାପାଣିର ରୁଷୀୟ ପ୍ରତିଶବ୍ଦ ମୁଁ ଜାଣିଲି । ତାହା ହେଉଛି ଭୋଦା "voda" । ଏହାର ଉଚ୍ଚାରଣ ଉଦାବ ଭଳି । ପରେ ବୁଝିଲି ଆମର ସଂସ୍କୃତର "ଉଦକ" ବା ଜଳର ସମାନ ଧାତୁରୁ ଏହି ଉଦାବ ହୋଇଛି ।

ଆଉ ନୂଆ ଖିଆପିଆର ପ୍ଲେଟ ଆସିଗଲାଣି । ମୁଁ ଟିକିଏ ଆଗ୍ରହରେ ପାଣି ଅପେକ୍ଷାରେ ରହିଛି; ଦେଖିଲି, ପରିଚର୍ଯ୍ୟାକାରିଣୀ ଜଣକ ଟେବଲ୍ ଉପରେ ଗୋଟାଏ ଆକାଶୀ ନେଳିଆ କଦାକାର ସୁରେଇରେ ସ୍ଫଟିକ ପାଣି ଆଣି ଥୋଇଦେଲେ । ସୁରେଇର ମୁହଁରେ ଗୋଟିଏ ଗିଲାସ ରହିଛି ଏବଂ ଡାକ୍ତରୀ ଔଷଧ ବୋତଲ ଭଳି ଗୋଟାଏ ଷ୍ଟାପର ବା କାଚର ମୁହଁରେ ପାଇପ୍‌ଲଗା ଠିପି ରହିଛି ।

ମୁଁ ତ ପାଣି ପାଇଁ ପିଆସୀ ଥିଲି । ଟେବୁଲ୍ ଉପରେ ଏତେ ପାଣି ଦେଖି ଏବଂ ଆଉ କିଏ ପାଣି ପିଇବାକୁ ମାଗିଲେ ମୋତେ ତ ଭଦ୍ରତା ଅନୁରୋଧରେ ଆଗେ ଯାଚିବାକୁ ପଡ଼ିବ ଏହି ଭୟରେ ତୁରନ୍ତ କାଚ ଗିଲାସରେ ଆଚ୍ଛାକରି ଗିଲାସେ ପାଣି ଢ଼ାଳିନେଲି । ସୁରେଇ ଉପରେ ଯେଉଁ ଛୋଟ ଗିଲାସ ଥିଲା, ତାହା ତ ମୋ ପାଇଁ ହୁଅନ୍ତା ନାହିଁ, ଟେବଲ୍ ଉପରେ ଥିବା ସବୁଠାରୁ ବଡ଼ ଫଳରସପିଆ ଗିଲାସଟାଏ ବାଛି ପାଣିତକ ଢ଼ାଳିନେଲି ଏବଂ ସେତେବେଳେ କୌଣସି ଆଡ଼େ ମନୋନିବେଶ ନ କରି ଗିଲାସଟା ଟେକି ଆମର ଓଡ଼ିଆ ବାହ୍ମୁଣିଆଙ୍କ ଢଙ୍ଗରେ ଗିଲାସଯାକ ପାଣି ଟେଣ୍ଡି ଦେଲି ।

ପ୍ରାୟ ଚାରି ପାଞ୍ଚ ଢୋକ ପାଣି ପିଇଛି, ମୋର ଛାତିରେ ଗୋଟାଏ ଧକ୍‌କା ଲାଗିଲାପରି ବୋଧ ହେଲା । ମୁଁ ଚଉକି ଉପରେ ଆଉଜି ପଡ଼ିଲି । ଗିଲାସରୁ ପାଣି ପ୍ରାୟ ସରି ଆସିଥିଲା; ଆଉ ଢୋକେ କି ଦୁଇ ଢ଼ୋକ ଥିଲା । ସେତକ ମୋର ଟାଇ କୋଟ୍‌ରେ ପଡ଼ି ସବୁତକ ପାଣି ହୋଇଗଲା । କିନ୍ତୁ କେତେ ମିନିଟ୍ ! ଅଧ ମିନିଟ୍‌କ ପରେ ତାହା ଧୂଆଁ ଭଳି ଉଡ଼ିଯିବାକୁ ଲାଗିଲା । ଦୋ' ଭାଷୀ ଲୁସି ମୋ ପାଖରେ ବସିଥିଲେ ବୋଲି ଆଗରୁ କହିଛି । ସେ ମୋତେ ଚାହିଁ ଦେଇ କ'ଣ ଘଟିଲା ବୋଲି ପଚାରିଲେ । ମୁଁ କହିଲି, ସେଇ ପାଣିରେ ଗୋଟାଏ କିଛି ପଡ଼ିଛି ଯାହା ମୋ ଛାତିରେ ହାତୁଡ଼ି ପାହାରଭଳି ମୋତେ ଧକ୍‌କା ଦେଲା । ସେ ମୋ ପାଣି ଆଡ଼େ ଆଖି ପକାଇଲେ । ଟେବୁଲ ଉପରେ ଉକ୍ତ ଆକାଶ ନୀଳ କଦାକାର ସୁରେଇ ଆଡ଼େ ତାଙ୍କର ଦୃଷ୍ଟି ପଡ଼ିଲା । ସେ କହିଲେ "My friend, you have drunk vodka" "ମୋର ବନ୍ଧୁ, ତୁମେ ଭୋଦକା ପିଇ ଦେଇଛ ।"

ସେଠୁଁ ସେ ପଚାରିଲେ, "ତୁମେ ଆଗରୁ କେବେ ହୁଇସ୍କି ଇତ୍ୟାଦି କୌଣସି କଡ଼ା ପାନୀୟ ପିଇଛ ?" ମୁଁ କହିଲି, "କେବେ ଚାଖି ନାହିଁ ମଧ ।"

ସେ ହସ ହସ ଅଥଚ ଗମ୍ଭୀରଭାବରେ କହିଲେ, "ତାହା ହେଲେ ତୁମେ ଆଉ ଟେବୁଲରେ ବସ ନାହିଁ । ତୁମେ ଶୋଇପଡ଼ । ତୁମର ମଧୁର ନିଦ୍ରା ହେବ ଏବଂ ଘର ବିଷୟରେ ମଧୁର ସ୍ୱପ୍ନ ମଧ ଦେଖିବ ।"

ପରିଚର୍ଯ୍ୟାକାରିଣୀଙ୍କୁ କୁହାଗଲା 'ଭୋଦାବ' ଅର୍ଥାତ୍ ପାଣି । କିନ୍ତୁ ସେ କାହିଁକି ବୁଝନ୍ତେ ଯେ ଜଣେ ଭାରତୀୟ ଅତିଥିର ଟେବଲ ଉପରେ ପାଣି ଦରକାର । ତେଣୁ ସେ ମନେ କଲେ ଭୋଦାବ ନୁହେଁ 'ଭୋଦକା'; ତେଣୁ ରୁଷଦେଶରେ ସବୁଠାରୁ ଶକ୍ତିଶାଳୀ ମାଦକ ମଦ ଆଣି ପହଞ୍ଚାଇଦେଲେ । ସେହି ଦିନଠାରୁ ମୁଁ ଅନେକ ଥର ସେହି ନିର୍ଦ୍ଦିଷ୍ଟ ଆକାଶୀ ନୀଳ ରଙ୍ଗର କଦାକାର କାଠ ସୁରେଇ ଆଉ ତା'ର ଅବଶ୍ୟମ୍ଭାବୀ ନଳୀଯୁକ୍ତ କାଚ ଠିପି ଆଉ ଉପରେ ଗୋଟାଏ ଛୋଟ କାଚ ଗିଲାସ ଦେଖିଛି । ତାକୁ କେହି ପିଇବାର ଦେଖି ନାହିଁ । ମୁଁ ସେଥିରୁ ଚାରି ପାଞ୍ଚ ଢୋକ ପିଇଦେଇ ଯେଉଁ ଆତଙ୍କରେ ପଡ଼ିଲି, ତାହା କହିବାର ନୁହେଁ ।

## ଷୋହଳ

ଲୁସି ମୋତେ ହାତ ଧରି ମୋର କୋଠରୀକୁ ବାହାରିଗଲେ । ମୋତେ କହିଲେ, "ଏଠାରେ ତ ଆପଣଙ୍କ ସାଙ୍ଗରେ ଚାଲିସେବ୍ ରହନ୍ତି, ତେଣୁ ଆପଣଙ୍କର କୌଣସି

ଅସୁବିଧା ହେଲେ ସେ ନିଶ୍ଚୟ ବନ୍ଦୋବସ୍ତ କରିବେ । ମୁଁ ତାଙ୍କୁ କହି ଦେଉଛି, ଶୁଭ ରାତ୍ରି । ମୋର ଆଶା ଆପଣଙ୍କର ବଢ଼ିଆ ନିଦ ହେବ, ଶୋଇ ପଡ଼ନ୍ତୁ ।" ଗୋଡ଼ରୁ ଯୋତା ମୋଜା ଖୋଲିଦେଲି । ରାତିରେ ବେଡ୍‌ରୁମ୍ ଚଟି ପିନ୍ଧିଲି । ସୁଟ୍ ହେରିକା ଉତାରି ନାଇଟ୍ ସୁଟ୍ ପିନ୍ଧିବାକୁ ଯାଉଛି । ମନରେ ଗୋଟାଏ ଅବଶୋଷ ହେଉଥାଏ, ଏତେବଡ଼ ଡିନର, କେତେ ଲୋକଙ୍କୁ ଚିହ୍ନିଥାଆନ୍ତି, କେତେ ବିଷୟ ମଧ୍ୟ ଲକ୍ଷ୍ୟ କରିଥାଆନ୍ତି । ଏତିକିବେଳେ ଗୁଡ଼ାଏ 'ଭୋଦକା' ଖାଇ ପକାଇଲି । ଖାଇବା ଘରଟା ମୋର ରହିବାଘରର ଆର ପଟେ, ମଝିରେ ଗୋଟାଏ କାନ୍ଥ । ସେ ଘରର ଝରକା ଆଉ ଆମ ଘରର ଝରକା ପରସ୍ପରର ପଡ଼ୋଶୀ ଭଳି । ସେଇ ଘରୁ ସଙ୍ଗୀତ, କଥାଭାଷା, ବକ୍ତୃତା ଏବଂ ହାସ୍ୟରୋଳ ଉଠୁଥାଏ । ଏତିକିବେଳେ ଗୋଟାଏ ନୂତନ ଘଟଣା ଘଟିଲା – ଘରିଆଡ଼ ନିସ୍ତବଧ୍ ହୋଇଗଲା ।

ମୁଁ ଲୁଗାପଟା ନ ଉତାରି ଚଉକିରେ ବସି ଅପେକ୍ଷା କଲି । ଦର୍ପଣରେ ଚାହିଁଲି ମୋର ମୁହଁ ଆଉ ଆଖିରେ କୌଣସି ପରିବର୍ତ୍ତନ ନାହିଁ । ଟେବୁଲ ଉପରେ ଥିବା ଆଲର୍ମ ଘଡ଼ିରେ ଜମା ୧୦ ଟା ବାଜିଛି । ଆଉରି ଅନେକ ବେଳଯାଏ ଡିନର ଚାଲିବ । ମୁଁ ଶୁଣିବାକୁ ପାଇଲି ନିସ୍ତବ୍‌ଧତା ଭଙ୍ଗକରି ଆମର ଭାରତୀୟ ଡେଲିଗେସନ୍‌ର ଜଣେ ମହିଳା ବକ୍ତୃତା ଦେଉଛନ୍ତି ଏବଂ ତାହାପରେ ଘନ ଘନ କରତାଳି ଶୁଭୁଛି । ଏ ବକ୍ତୃତା ତ ଟୋଷ୍ଟ-ବକ୍ତୃତା ନୁହେଁ, ଏ କିଭଳି ବକ୍ତୃତା ! ମୋର ମନେ ପଡ଼ିଲା ଚାରିଘଣ୍ଟାତଳେ ଅପେରା ଘରେ ଆମର ସମ୍ବର୍ଦ୍ଧନାର ଉତ୍ତରରେ ଏହି ବକ୍ତୃତା ହୋଇଥିଲା । ତାହା ପୁଣି ଚାରିଘଣ୍ଟା ପରେ ଶୁଭୁଚି କିପରି ? ମୋର ମନରେ ପାପ ଛୁଇଁଲା । ମନେ କଲି, ଭୋଦକାର ନିଶା ମୋତେ ଧଇଲାଣି ।

ମୁଁ ତୁରନ୍ତ ମୋର ବେକରୁ ଟାଇ ଖୋଲିପକାଇଲି । କୋଟ୍ ଖୋଲିଦେଲି । ଦେହରୁ ଝାଳ ଗମ୍‌ଗମ୍ ବୋହିଲାଣି । କ'ଣ କରିବି ଭାବୁଛି, ଶୁଣିଲି "ଲାଲ ତାଜିକ୍ ମାଟି" ମୋର କଣ୍ଠସ୍ୱର ! ପୂର୍ବେ ମୁଁ ମୋର କଣ୍ଠସ୍ୱର କେବେ ଶୁଣି ନ ଥିଲି । ଏଥି ପୂର୍ବରୁ ମୋର କଣ୍ଠସ୍ୱର କଲିକତା ରେଡ଼ିଓରେ ଥରେ ଦୁଇଥର ରେକର୍ଡ ହୋଇଛି । କିନ୍ତୁ ତାହା ବେତାରରେ ପ୍ରଚାରିତ ହେଲାବେଳେ କେବେ ଶୁଣି ନାହିଁ । ତେଣୁ ଏହି କଣ୍ଠସ୍ୱର ଶୁଣି ମୁଁ ଚମକିପଡ଼ିଲି । ଏକାବେଳକେ ସ୍ପଷ୍ଟଭାବରେ – ଅସମ୍ଭବ କରତାଳି ଶୁଭୁଛି – ତା'ପରେ ମୁଁ ଗାଉଛି । ନିଶ୍ଚୟ ମୋତେ ନିଶା ଧରିଛି । ମନେ ମନେ ସ୍ଥିର କରିନେଲି ମୋତେ ନିଶା ଘୋଟି ଆସୁଛି । ତେଣୁ ବାଥ୍ ରୁମ୍‌କୁ ଯାଇ ମୁହଁହାତ ଧୋଇପକାଇବି । ଏକଥା ବିଚାରି ଟାଉଏଲ୍ ଧରି ଦୁଆରମୁହଁ ପର୍ଯ୍ୟନ୍ତ ଆସିଛି, ଆହୁରି

ସ୍ପଷ୍ଟଭାବରେ ମୋର କଣ୍ଠସ୍ୱରରେ ମୋର ଗୀତ ଶୁଣାଗଲା – "କାଲି ଯା ଥିଲା........ କଳ୍ପନାର ନିଗଡ଼େ ବନ୍ଧା ଫିରଦୁଶୀର ସ୍ୱପ୍ନ; ଆଉ ଆଭିସେନାର ଖ୍ୟାତିରେ ।"

ଦୁଆରମୁହଁରେ ଦେଖିଲି ଦୋଭାଷୀ ଲୁସି ମୋର କୋଠରୀ ଆଡ଼କୁ ଆସୁଛନ୍ତି । ମୋତେ ଯେମିତି ଦେଖିଲେ, ପଚ୍ଚରିଲେ, "ଆପଣ ଭଲ ଅଛନ୍ତି ତ ?" ମୁଁ ସମ୍ମତିରେ ହଁ କଲାରୁ ମୋତେ କହିଲେ, "ଟେବଲରେ ଆପଣଙ୍କୁ ଡାକରା ପଡ଼ିଛି ।" ମୁଁ ଟାଉଏଲଟା କୋଠରୀ ଭିତରେ ଆଉଜେଇ ପୁଣି ଆଉ ଥରେ ଖାଇବାଘରକୁ ପ୍ରବେଶ କଲି ।

ପ୍ରବେଶ କଲାମାତ୍ରକେ ପ୍ରବଳ ହାସ୍ୟରୋଳରେ ମୋତେ ଅଭିନନ୍ଦନ କରାଗଲା । ଯେତେବେଳେ ମୁଁ ଖାଇବା ଛାଡ଼ି ଆସିଥିଲି, ସେତେବେଳେ ୪୦୦-୫୦୦ ଲୋକଙ୍କର ସମଭିବ୍ୟାହାର ମଝିରେ ମୋର ବାହାରି ଆସିବାଟା କାହାରି ଦୃଷ୍ଟିରେ ପଡ଼ି ନଥିଲା; ଅବଶ୍ୟ ଲୁସିଙ୍କ ବ୍ୟତୀତ । କିନ୍ତୁ ମୁଁ ଫେରିବାପରେ ସମସ୍ତେ ମୋତେ ଏପରି ଅଭିନନ୍ଦନ କରିବାରେ ମୁଁ ଲଜ୍ଜିତ ହେଲି । ମନେ କଲି, ମୋର ଅସାବଧାନ କାର୍ଯ୍ୟଟା ସମସ୍ତେ ଜାଣି ସାରିଛନ୍ତି ।

କିନ୍ତୁ ପ୍ରକୃତ ଘଟଣା ତାହା ନଥିଲା । ଅପେରା ହାଉସଠାରେ ଆମର ସମ୍ବର୍ଦ୍ଧନାର ଉତ୍ତର ଏବଂ ଆମ୍ଭମାନଙ୍କର ସଙ୍ଗୀତ ଟେପ୍ ରେକର୍ଡିଂରେ ରେକର୍ଡ ବାଜିଲା । ମୁଁ ଯେଉଁ କଥାସବୁ ମୋର କୋଠରୀରୁ ଶୁଣିଥିଲି ଏବଂ ତାହା ନିଶାର ଜୋର ବୋଲି ଆଶଙ୍କା କରୁଥିଲି, ତାହା ପ୍ରକୃତରେ ରେକର୍ଡରୁ ବାଜୁଥିଲା । ଯେତେବେଳେ ମୋର ଗୀତ ଶୁଣାଗଲା, ସେତେବେଳେ ସ୍ୱାଭାବିକଭାବରେ ଟେବୁଲରେ ସମସ୍ତ ଲୋକ ଭାରତୀୟ କବିକୁ ଅଭିନନ୍ଦନ କରିବାର କଥା । ତେଣୁ ସମସ୍ତେ ମୋତେ ଖୋଜିଲା-ଆଖିରେ ଏଣିକି ତେଣିକି ଚାହୁଁଥିଲେ । ଲୁସି ଏକଥା ଜାଣିପାରି ମୋତେ ଆଣିବାକୁ ଗଲେ ଏବଂ ମୁଁ ଫେରିବାମାତ୍ରେ ସମସ୍ତ ଟେବୁଲରେ ସମ୍ବର୍ଦ୍ଧନା ଏବଂ ସାଧୁବାଦର ଉଚ୍ଛ୍ୱାସ ଖେଳିଗଲା ।

ଆଉ ଦୁଇଥର ଲେଖାଏଁ ରେକର୍ଡଗୁଡ଼ିକ ବାଜିଲା । ତାହାର ତାଳେ ତାଳେ ଷ୍ଟାଲିନାବାଦର ଦୁଇଜଣ ନୃତ୍ୟ-ତାରକା ସେଇଠି ତାଜିକ୍‌ସ୍ଥାନର ଶାସ୍ତ୍ରୀୟ ନୃତ୍ୟ ଆରମ୍ଭ କରିଦେଲେ । ଏହି ନୃତ୍ୟ ଅନେକାଂଶରେ ଭାରତୀୟ ନୃତ୍ୟ-ଭଙ୍ଗୀପରି । ଏଥିରେ ପୂରାପୂରି ଭାରତନାଟ୍ୟମର ମୁଦ୍ରା ନଥିଲା, ଅଥବା ଓଡ଼ିଶୀର ବିଶିଷ୍ଟ 'ଲାସ୍ୟ' ନଥିଲା । ତଥାପି ଏହା ଭାରତୀୟ ନୃତ୍ୟର ନିକଟବର୍ତ୍ତୀ ଥିଲା । ତେଣୁ ଏହି ପରିବେଶ ଭାରତବର୍ଷ ପରି ମନେ ହେଲା ।

ସେଦିନ ଅନ୍ୟ କୌଣସି ବିଶେଷ ଘଟଣା ଘଟି ନାହିଁ । ଡ଼ିନର ଟେବଲରୁ ଆନୁଷ୍ଠାନିକ ଖାଦ୍ୟ ଏବଂ ଟୋଷ୍ଟର ପାଲା ସରିଆସୁଥାଏ । କିଛି କିଛି ସଂଖ୍ୟାରେ ଭଦ୍ରବ୍ୟକ୍ତି ଏବଂ ଭଦ୍ରମହିଳାମାନେ ବିଦାୟ ହୋଇଯାଉଥାଆନ୍ତି । ତଥାପି ଖାଇବା ପରେ ପ୍ରାୟ ଦେଢ଼ଶ' ଦୁଇଶ' ଯାଏ ବ୍ୟକ୍ତି ଥାଆନ୍ତି । ଏପରି ଅବସ୍ଥାରେ ମୁଁ ମୋର କୋଠରୀକୁ ଶେଷ ଥରପାଇଁ ଫେରିଲି ।

ପୋଷାକ ବଦଳାଇ ଶୋଇବାକୁ ବାହାରିଛି, ଗ୍ଲିସେବ୍ – ପୁରୁଷ ଦୋ'ଭାଷୀ ପୁଣି ଆସି ପହଞ୍ଚି କହିଲେ, "ଆପଣଙ୍କୁ କେହି ଜଣେ ଡାକୁଛନ୍ତି ।"

'କେହି ଜଣେ' ହେଉଛନ୍ତି ଷ୍ଟାଲିନାବାଦ ରେଡ଼ିଓ ଷ୍ଟେସନର ଡିରେକ୍ଟର । ମୋତେ ଡାକିବାର ଉଦ୍ଦେଶ୍ୟ ଗୋଟିଏ ଅନୁରୋଧ । "ଆପଣଙ୍କର ଅଜାଣତରେ ଆମ୍ଭେମାନେ ଆପଣଙ୍କର କଣ୍ଠସ୍ୱର ସଙ୍ଗୀତର ରେକର୍ଡ଼ କରିନେଇଛୁଁ । କାଲି ଯଦି ଆପଣ ଏଇଠି ରହନ୍ତେ, ତେବେ ଆପଣଙ୍କର ଏହି ଗୀତଟିକୁ ଆପଣଙ୍କର କଣ୍ଠରୁ ଷ୍ଟାଲିନାବାଦ ରେଡ଼ିଓରେ ପ୍ରଚାର କରିଥାଆନ୍ତୁ । କାଲି ଆପଣଙ୍କର ଅନ୍ୟ ପ୍ରୋଗ୍ରାମ୍ ଅଛି । ତେଣୁ ବାଧ ହୋଇ ଏହି ରେକର୍ଡ଼କୁ ହିଁ ପ୍ରଚାର କରିବାକୁ ହେବ । ଏଥିପାଇଁ ଆପଣଙ୍କର ଅନୁମତି ଦରକାର ।" ଏତିକି କହି ସେ ତାଙ୍କର ଆନୁଷ୍ଠାନିକ ଫର୍ମଟି ମୋତେ ବଢ଼ାଇଦେଲେ । ମୁଁ ସେଥିରେ ଓଡ଼ିଆ ଭାଷାରେ ମୋର ସମ୍ମତିସୂଚକ ଦସ୍ତଖତ୍ କରିଦେଲି ।

ସାଙ୍ଗେ ସାଙ୍ଗେ ପାଞ୍ଚଟି ଶହେ ରୁବଲ୍ ନୋଟ ସେ ମୋ ଆଡ଼କୁ ବଢ଼ାଇଦେଲେ । ନୋଟଗୁଡ଼ିକରେ ଲେଲିନ୍‌ଙ୍କର ଫଟୋ ଛାପାହୋଇଛି ଏବଂ ଆନ୍ତର୍ଜାତିକ ସଂଖ୍ୟାରେ ୧୦୦ ଲେଖାହୋଇଛି । ମୁଁ ଆପତ୍ତି କରିବାକୁ ଯାଉଛି, ସେ କହିଲେ, "କିଛି ମନେ କରନ୍ତୁ ନାହିଁ । ସୋଭିଏଟ୍ ଦେଶରେ କୌଣସି ସୃଷ୍ଟିମୂଳକ ପରିଶ୍ରମ ମାଗଣା ନିଆଯାଏ ନାହିଁ । ଏହା ଆପଣଙ୍କୁ ପୁରସ୍କାର ହିସାବରେ ଦିଆଯାଉ ନାହିଁ, ଏହା ଆପଣଙ୍କର ନ୍ୟାଯ୍ୟ ପାରିଶ୍ରମିକ ।"

## ସତର

ସୋଭିଏଟ୍ ଦୁନିଆରେ ହିସାବ-କିତାବ ସବୁ ଯୋଜନାର ପ୍ରାଣ । ଏତେ ହଜାର କିଲୋମିଟର ରାସ୍ତା, ଏତେ ହେକ୍‌ଟେଆର ଜମି, ଏତେ ବର୍ଗମିଟର ଘରଦ୍ୱାର, ଏତେ ହଜାର ଗୃହପାଳିତ ଜନ୍ତୁ – ସବୁ ଖାଲି ପରିସଂଖ୍ୟାନରେ ମପାଯାଏ । ଏତେ ହିସାବ ଯେ ଶୁଣି ଶୁଣି ବେଦମ୍ ଲାଗେ, ଲେଖି ଲେଖି ଟିପ ଦରଜ ହୁଏ । ଆମ ଭାରତରେ

ଯେପରି କଥା-କଥାକେ ଏତେ ଲକ୍ଷ ଟଙ୍କାର ମାଟି, ଏତେ ଲକ୍ଷ ଟଙ୍କାର ଇଟା, ଏତେ କୋଟି ଟଙ୍କାର ଆସବାବପତ୍ର ଇତ୍ୟାଦି ହିସାବ ହୁଏ, ଏଠି କ୍ୱଚିତ୍ ଟଙ୍କାପଇସାରେ ହିସାବ ଧରାଯାଏ । କିନ୍ତୁ ଏଭଳି ହିସାବ ଶୁଣି କିଏ କିପରି ବୁଝନ୍ତି, ମୁଁ କିଛି ଜାଣିପାରେ ନାହିଁ । କେବଳ ଆଶ୍ଚର୍ଯ୍ୟଭାବରେ ଆଖି ଦୁଇଟି ଚାହିଁବା ହିଁ ସାର ହୁଏ । ବରଂ ଏହି ହିସାବ ଫଳରେ ମୋପରି ଗୋଟିଏ ମର୍ତ୍ତ୍ୟଲୋକରେ ଥିବା ବ୍ୟକ୍ତିର କ'ଣ ସୁବିଧା ହୋଇପାରିଥିବ, ତାହା କହୁଥିଲେ ବୋଧହୁଏ ଅନେକ ଉପକାର ହେଉ ଥାଆନ୍ତା; କିନ୍ତୁ ଏହା ବୋଧହୁଏ ପ୍ରଚାରର ଚିରନ୍ତନ ରୀତି । କୌଣସି ଜ୍ଞାତବ୍ୟ ବିଷୟ ଜଣାଇବା ପ୍ରଚାରର ଉଦ୍ଦେଶ୍ୟ ବୋଧହୁଏ ନୁହେଁ; ଉଦ୍ଦେଶ୍ୟ ଜିଜ୍ଞାସୁକୁ ତଟସ୍ଥ କରିବା ।

ମନେ ପଡୁଛି, ମସ୍କୋ ବିଶ୍ୱବିଦ୍ୟାଳୟର ପ୍ରକାଣ୍ଡ କୋଠାକୁ ଚାହିଁ ଜଣେ ଭାରତୀୟ ପଚାରିଥିଲେ ଏଥିରେ କେତେ ଟଙ୍କା ଖର୍ଚ୍ଚ ହୋଇଛି ? ଯେଉଁ ବିଶେଷଜ୍ଞ ଜଣକ ଏଥିରେ କୋଠରୀ, ସାଜସଜ୍ଜା, ଶୀତାତପ ନିୟନ୍ତ୍ରଣ, ଆସବାବପତ୍ର, ସନ୍ତରଣ ପୋଖରୀ ଇତ୍ୟାଦି ଇତ୍ୟାଦି ଅଜସ୍ର ବିଷୟରେ ଅନର୍ଗଳ କହିଚାଲିଥିଲେ – ଏପରି କି ଏହି କୋଠାର ଉପର ମହଲାକୁ ଉଠିବାକୁ ଇଲେକ୍‌ଟ୍ରିକ ସିଡ଼ିଗୁଡ଼ିକ ପ୍ରତି ମିନିଟ୍‌ରେ କେତେ ଥର ଯା'ଆସ କରନ୍ତି ଏବଂ ପ୍ରତିଦିନ କେତେ ଚଢ଼ାଳିଙ୍କୁ ଚଢ଼ାଉତରା କରନ୍ତି, ତାହାର ହିସାବ ଦେଲାବେଳେ ତାଙ୍କର ମୁହଁରେ ବାଟୁଳି ବାଜୁ ନ ଥିଲା । କେତେ ଟଙ୍କା ଖର୍ଚ୍ଚ ହୋଇଛି ଏହି ଗୋଟିକ ପ୍ରଶ୍ନ ସେ ଆଦୌ ବୁଝି ପାରିଲେ ନାହିଁ । କେତେ ରୁବଲ ଖର୍ଚ୍ଚ ହୋଇଛି ? ଚୂନ, ଇଟା, ସିମେଣ୍ଟ, କ୍ରେନ୍, ପ୍ରିଫେବ୍ରିକେଟେଡ଼ ଜିନିସ, କଙ୍କ୍ରିଟ୍ ଏସବୁ ତ ଖର୍ଚ୍ଚ ହୋଇଛି, କେତେ ଟଙ୍କା ଖର୍ଚ୍ଚ ହୋଇଛି ? ପ୍ରାୟ ମିନିଟିଏ ପର୍ଯ୍ୟନ୍ତ ଚୁପ ରହି ସେ ପ୍ରଶ୍ନଟିକୁ ବୁଝିନେଲେ । କହିଲେ, "ଓ, କେତେ ରୁବଲ୍ ଖର୍ଚ୍ଚ ହୋଇଛି ବୋଲି ପଚାରୁଛନ୍ତି ? ବେଢ଼ାୟ ଖର୍ଚ୍ଚ ହୋଇଛି ।"

ଏପରି ଗୋଟାଏ ହିସାବକିତାବ ଶୁଣନ୍ତୁ । ହିସାବ କିତାବରୁ କୌଣସି କଥା ବୁଝି ନହେଲେ ମଧ ଆଜିକାଲିର ଏହି ବୈଜ୍ଞାନିକ ଦୁନିଆରେ ହିସାବର ଅମଲାତନ୍ତ୍ର ସାରା ବିଶ୍ୱକୁ ଗ୍ରାସ କରି ବସିଛି । ଷ୍ଟାଲିନାବାଦଠାରୁ ୮।୯ ମାଇଲ ଦୂରରେ ଗୋଟିଏ ଆସଫାଲଟ ସଡ଼କ ଉପରେ ଆମେ ପାହାଡ଼ର ଅତଟଦେଶ ଅତିକ୍ରମ କରି ଗୋଟାଏ କୋଠଘଷରେ ପହଞ୍ଚିଥିଲୁ । କୋଠଘଷର ନାମ ଷ୍ଟାଲିନା କୋଠଘଷ, ଉପତ୍ୟକାର ନାମ ଗିସାର ବା ହିସାର ଉପତ୍ୟକା ।

ଏହି କୋଠଘଷଟି ୧୯୨୯ ମସିହାରେ ପ୍ରଥମେ ଆରମ୍ଭ ହେଲା । ପହିଲେ ୨୮୨ ହେକ୍‌ଟେଆର ଜମି ଘେନି ଆରମ୍ଭ ହୋଇଥିଲା । ଏଥିରେ ୧୨୪ ଗୋଟି ପରିବାର

ମେୟର ଥିଲେ । ୧୯୫୫ରେ ଜମିର ପରିମାଣ ୧୦,୫୦୦ ହେକ୍‌ଟେଆର, ଗୋ-ଚାରଣ ୧୭,୦୦୦ ହେକ୍‌ଟେଆର ହୋଇଥିଲା ।

ଏଠାରେ ସରକାରୀ କାଏଦାରେ ସଂକ୍ଷେପରେ ହିସାବ :

| (ନାମ) | (ହେକ୍‌ଟେଆର) |
|---|---|
| ତୁଳା | ୩ ହଜାର |
| ଖାଦ୍ୟଶସ୍ୟ | ୨ ହଜାରରୁ ବେଶି |
| ଗୋ-ଖାଦ୍ୟ (ଘାସ ଇତ୍ୟାଦି) | ୧ ହଜାର |
| ଫଳ ଏବଂ ଅଙ୍ଗୁର କ୍ଷେତ୍ର | ୩୨୦ |
| ରୁଷୀୟ ଛଣପଟ (ଫ୍ଲାକ୍‌ସ) | ୮୫୪ |
| ଫୁଟି ତରଭୁଜ | ୮ |
| ନଡ଼ା ତିଆରି | ୧୨୨୫ |

ଏଠାରେ ଗୋରୁଗାଈ ୨୬୬୪, ମେଣ୍ଢା ୧୮୩୫୭, ଘୁଷୁରି ୬୫, ଘୋଡ଼ା ୮୫୦, ଆଉ କୁକୁଡ଼ା ଇତ୍ୟାଦି ୧୦,୦୦୦ ।

ଏହି ହିସାବ କିତାବ ଶୁଣିଲାବେଳେ ମୁଁ ଭାବୁଥାଏ, ହେଲେ କୁକୁଡ଼ାମାନଙ୍କ ସଂଖ୍ୟା ୧୦,୦୨୫ ହୋଇଥାଆନ୍ତା । ତେବେ ଆଜିର ଭୋଜିରେ ୨୫ଟା ନଷ୍ଟ ହୋଇଗଲେ ବି ଏକାବେଳକେ ୧୦,୦୦୦ ଅଥବା ୨୪ଟା ଗଲେ ଆମ ଭାରତୀୟ ଧାର୍ମିକ ବ୍ୟବସାୟୀ କାଏଦାରେ ଦଶହଜାର ଏକ କୁକୁଡ଼ା ବଳନ୍ତେ; କିନ୍ତୁ ଦୁର୍ଭାଗ୍ୟର କଥା କୁକୁଡ଼ାସଂଖ୍ୟା ବେଳକୁ ୧୦,୦୦୦ ଠୁକାଠୁକି । ଅଥଚ ଗୋରୁଗାଈ ବେଳକୁ ନାନା ଗୋଳିଆ ପୋଳିଆ ସଂଖ୍ୟା, ଯେଉଁଥିରୁ କି ଭାରତୀୟ ଅତିଥିମାନେ କାଟଛାଣ୍ଟ କରିବାର ବିଶେଷ ଆଶା ନାହିଁ । ଅବଶ୍ୟ ୧୮,୩୫୭ଟି ମେଣ୍ଢା ବଡ଼ ଆଶ୍ୱାସନାର କଥା । କିନ୍ତୁ ଏସବୁ ମେଣ୍ଢା ତ ଭୋଜନପାଇଁ ନାହାନ୍ତି; ସେଗୁଡ଼ିକ ପରିଧାନ ପାଇଁ । ଖୋଦ ଭୋଜନ ପାଇଁ ଘୁଷୁରି । ଏଗୁଡ଼ିକୁ ଦେଖିଲେ ଦୟା ହୁଏ । ଏମାନଙ୍କୁ କାଠବାଡ଼ଭିତରେ ଭର୍ତିକରି ସବୁଦିନ ଘୁଷୁରିପରି ଖାଇବାକୁ ଦିଆଯାଏ । ଦିନକୁ ଦିନ କାଠର ବାଡ଼ାକୁ ହୁଗୁଳେଇ ହୁଗୁଳେଇ ପେଞ୍ଚ ଅଣ୍ଟା ହେଉଥାଏ । କଟକ ସହରରେ କାଠଯୋଡ଼ିରେ ହାଇ-ଫ୍ଲଡ଼ ଲେଭର ହେଲେ ଯେପରି ଆଉ ସମ୍ଭାଳି ହୁଏ ନାହିଁ, ସେଥିପାଇଁ ଆଉ କେଉଁଆଡ଼େ ପାଣି ଛାଡ଼ିବାର ବନ୍ଦୋବସ୍ତ କରାହୁଏ, ସେପରି ଏହି

କାଠ-ଫର୍ମାର କାପାସିଟି ବଳିଲେ ନୂଆ କାଠଫର୍ମା ଭିତରେ ବିଗ୍ଭରା ଘୁଷୁରି ଭର୍ତ୍ତି ହୁଏ । ଏପରି ଖାଇ ଖାଇ ଆଉ ହରୁହର୍ଦ୍ଦମ କାଠ ଫର୍ମାରେ ଅଣ୍ଡା ହୋଇ ରହି ଯେତେବେଳେ ଘୁଷୁରିର ଆଖି ଗ୍ଭରିପଟେ ଅସମ୍ଭବ ଚର୍ବି ହୋଇ ଆଖିକୁ ଦୃଶ୍ୟ ହୁଏ ନାହିଁ, ଯେତେବେଳେ ଚର୍ବିର ଆସ୍ତରଣତଳେ ଛାତିର ଦୁକୁଦୁକି ବନ୍ଦ ହେବାର ଉପକ୍ରମ ହୁଏ, ସେତେବେଳେ ବିଗ୍ଭରା ଘୁଷୁରି ହିଁ ରକ୍ଷାପାଏ, ଅର୍ଥାତ୍ ସେତେବେଳକୁ ତା'ର ଜୀବନର ମୂଲ୍ୟ ମାଂସର ମୂଲ୍ୟରେ ପରିଣତ ହୁଏ । ସେ ଜୀବନ ଯନ୍ତ୍ରଣାରୁ ରକ୍ଷା ପାଏ ।

ମୋଟର ଗାଡ଼ିରେ ଆରାମରେ ବସି ପାହାଡ଼ ରାସ୍ତାରେ ଉଠିବାର ଆନନ୍ଦ । ତାକୁ ଛାଡ଼ି ଫାର୍ମ-ରାସ୍ତାରେ ପଶିବାକୁ ବଡ଼ ଖରାପ ଲାଗୁଥାଏ ।

ରୁଷିଆ ଲୋକେ ପ୍ରକୃତିକୁ ନୂଆ କରି ଗଢ଼ିବେ ବୋଲି ଗର୍ବ କରିଛନ୍ତି । ଷ୍ଟାଲିନାବାଦ ଗ୍ଭରିପଟର ଲଣ୍ଡା ପାହାଡ଼ ଏବେ ଯେ ଶାଗୁଆ ପୋଷାକ ପିନ୍ଧିଛି, ତାହା ସେଇମାନେ କରିଛନ୍ତି; କିନ୍ତୁ ତଥାପି ଏମାନେ ଯେତେ ମାଠିଲେ ବି ୨୦।୨୫ଟା ବର୍ଷ ଭିତରେ କେତେ ପ୍ରକୃତିକୁ ନୂଆ କରି ଗଢ଼ିବେ ? ମଝିରେ ମଝିରେ ସେଇ ଲଣ୍ଡା ପାହାଡ଼ ଉଙ୍କି ମାରି ଉଠୁଥାଏ ।

ତା' ଛଡ଼ା ଏହା ପାହାଡ଼ିଆ ଅଞ୍ଚଳ ଅଥଚ ଏତେ କାଦୁଅ; ପ୍ରଧାନ ରାସ୍ତାରୁ କୋଠଗ୍ଭଷ ଭିତରକୁ ଯାଇଥିବା ରାସ୍ତାର କିଛି ବାଟ ଗଲେ ଯେଉଁଠି କୋଠଗ୍ଭଷ ଅଫିସ ବା ଲାଇବ୍ରେରୀ ଅଥବା କେତୋଟି ସାଧାରଣ କୋଠାଘର ରହିଛି, ସେତକ ସବୁ ଛାଡ଼ିଦେଲେ ଅନ୍ୟ ଜାଗାମାନଙ୍କରେ ରୋଡ ଦୁଇପଟେ କାଦୁଅ ମାଟି ଏପରି ଚିକିଟା ଯେ ବୋଧହୁଏ ପୁରୀଜିଲା ବେଗୁନିଆ-ବୋଲଗଡ଼ର ମାଟି ସାଙ୍ଗରେ ତୁଳନା କରାଯାଇପାରିବ । ଅଥଚ ଏମାନେ କହିଲେ, ଏଇଠି ଯେଉଁ ଆସଫଲଟ ବା ପିଚୁ ରାସ୍ତା ତିଆରି କରାଯାଇଛି, ତାହା ଦଶକିଲୋମିଟର ଲମ୍ବ ହେବ । ପିଚୁ ରାସ୍ତାମତେ ପିଚୁ ରାସ୍ତା ପଡ଼ିଛି; କିନ୍ତୁ କାଦୁଅର ସୀମା ନାହିଁ ।

ପୁଣି ମୋଟରରୁ ଓହ୍ଲାଇଲାପରେ ଫାର୍ମଘରେ ବସି ତରଭୁଜ, କାକୁଡ଼ି, ସେହି ଅବଶ୍ୟମ୍ଭାବୀ ଫଳ, ଆଉ ଚମ୍ପା ବର୍ଣ୍ଣର ଫଳସିରାପ୍‌ର ଟେବଲ ପାଖରେ ବସି ଖାଲି ଏଭଳି ହିସାବକିତାବ ଶୁଣି ଶୁଣି ନିଦ ମାଡୁଥାଏ । ଏଥର ଷ୍ଟାଲିନାବାଦରେ ଆମ ଦଳରେ ସେପରି ନଛୋଡ଼ବନ୍ଧା ପ୍ରଶ୍ନ କଲାବାଲା କେହି ନଥାନ୍ତି, ନତୁବା ପରବର୍ତ୍ତୀକାଳରେ ଆମର ଡେଲିଗେସନ୍ ଯେତେବେଳେ ହେଲିସିଙ୍କିରୁ ଫେରି ଦସ୍ତୁରମତ ସୋଭିଏଟ ଗସ୍ତ ଆରମ୍ଭ କଲା, ସେତେବେଳେ ନାନାପ୍ରକାର ପ୍ରଶ୍ନବାଣରେ ତୁମର

ସତ୍କାରକମାନେ କ'ଣ, ଅତିଥିମାନେ ମଧ ଜର୍ଜର ହୋଇଯାଆନ୍ତେ । ପ୍ରଶ୍ନରେ କିଛି ବାଗ-ବାଇଶ ନଥାଏ ! "ଆଚ୍ଛା, ଆପଣଙ୍କର ଏ କୋଠଘରରେ କ'ଣ ସମସ୍ତେ ମେମ୍ବର ?" ଜଣେ ଥରେ ପ୍ରଶ୍ନ ପଚାରିଥିଲା, "ଆପଣମାନେ ମେଣ୍ଢା ଚମକୁ କିପରି କଳ ଉପଯୋଗୀ କରନ୍ତି ?" ଢେଙ୍କାନାଳଠାରୁ ଢେଙ୍କିଶାଳ ପର୍ଯ୍ୟନ୍ତ ନିର୍ବୋଧ ପ୍ରଶ୍ନ ଦେଶକାଳପାତ୍ରର ସମସ୍ତ ଗଣ୍ଡି ଅତିକ୍ରମ କରି ଚାଲିଲେ ଧୈର୍ଯ୍ୟ କାହାର ରହେ ?

କେବଳ ସେତିକି ନୁହେଁ । ଆମ ସାଙ୍ଗରେ ଥିବା ଦୋ'ଭାଷୀଙ୍କ ଭିତରୁ ଜଣେ ଦୁଇଜଣ ରମଣୀଙ୍କ ଚେହେରା ଯଦି ସୁନ୍ଦର, ତେବେ ପ୍ରଶ୍ନ ଥାଉ ବା ନ ଥାଉ, କେତେଜଣ ନିଶ୍ଚେ କିଛି ପଚାରିଦେବେ । କାରଣ ସେହି ସୁନ୍ଦରୀ ତରୁଣୀଙ୍କର କଣ୍ଠସ୍ୱର ବାରମ୍ବାର ଶୁଣିବାକୁ ଯେପରି ତାଙ୍କୁ କୁତୂହଳ ଲାଗେ, ତାଙ୍କ ପ୍ରାଣଟା ଆରାମ ହୋଇଯାଏ । ହେଲିସିଙ୍କିରୁ ଫେରି ଲେଲିନ୍‌ଗ୍ରାଡ଼ ପର୍ଯ୍ୟନ୍ତ ଆସିବା ପରଠାରୁ ଏପରି ଶୋଚନୀୟ ପ୍ରହସନରେ ପଡ଼ି ପଡ଼ି ଆମେ କେତେ ଜଣ ବିଚରା ପ୍ରକୃତ ଦସ୍ତୁରମତ ସନ୍ଧାନୀ ଲୋକ ବ୍ୟତିବ୍ୟସ୍ତ ହୋଇଗଲୁ । ଉପାୟ କ'ଣ ? ଏ ଜଣେ ଚନ୍ଦାମୁଣ୍ଡିଆ ଅଧାବଇସିଆ ଖୁବ୍ ଖ୍ୟାତିସମ୍ପନ୍ନ ଡାକ୍ତର ଅଥଚ ଏଡ଼ିକି ନିର୍ବୋଧ ଏବଂ ଆତ୍ମ-ସମାଲୋଚନାହୀନ ! କେବଳ ଏହି ଡାକ୍ତରଟା ନୁହେଁ; ଏମିତି ଅନେକ ଲୋକ ଏଡ଼ିକି ସଂଯମହୀନ, ଅଥଚ ଭାରତରେ ଏମାନେ ଗଣ୍ୟମାନ୍ୟ ବୋଲି ବିଖ୍ୟାତ । ଆମ୍ଭେମାନେ ଦେଖି ଦେଖି ଚାହିଁ ଚାହିଁ ଅଥୟ ହୋଇଗଲୁଁ ।

ହାୟ ଚରିତ୍ର ! ତୁମେ ଯେଉଁମାନଙ୍କଠାରୁ ଭାରତୀୟ ଶୁଚିମନ୍ତତା, ଭାରତୀୟ ସଂଯମ ଆଉ ସଂଭ୍ରମର ବିରାଟ ବିରାଟ ବ୍ୟାଖ୍ୟାନମାନ ଏହି ଦେଶରେ ଶୁଣିଥାଆନ୍ତ ଏବଂ ତାହାକୁ ବିଶ୍ୱାମିତ୍ରଙ୍କର ପ୍ରାଚୀ ନଦୀ ତଟର ବିଶ୍ରାମକାଳର ସଂହିତା ବୋଲି ଭାବିଥାଆନ୍ତ, ସେମାନେ ଏହି ଭୂମିରୁ ପାରହେବାମାତ୍ରେ ହଠାତ୍ ୧୯୫୫-୫୬ର ୟୁରୋପକୁ ପାରହୋଇ ଷାଠିଏ ମସିହାର ଆଧୁନିକତାକୁ ଲମ୍ଫ ଦେବାକୁ ବସିଛନ୍ତି । ନିର୍ବିକାରରେ ଆପଣାର କମ୍ବଳ ଖଦି କୋଟ ଭିତରୁ ହାତ ବାହାର କରି, ବିଅର ବୋତଲରୁ ଠିପି କାଢ଼ି ସେଥିରେ ମୁହଁ ଲଗାଇବା ଆଉ ପାଖରେ ବସିଥିବା ଷୋଡ଼ଶୀର କାନ୍ଧରେ ହାତ ପକାଇ ଫଟୋଗ୍ରାଫ୍‌ପାଇଁ ପୋଜ୍ କରିବା – ଏହା ଯେପରି ତାଙ୍କର କେଉଁ ଅନାଦି ପୂର୍ବପୁରୁଷର ରକ୍ତ ସହିତ ମିଶିକରି ରହିଥିଲା ।

ସେଠୁଁ ଆମେ କେତେ ଜଣ ଯୁବକ ଲୋକ, ଯେଉଁମାନେ ଭାରତରେ କେବେ ଏପରି ଶୁଚିବାୟର ଛଳନା କରିନାହୁଁ କିମ୍ବା ବାହାରେ ଏଭଳି ଉଚ୍ଛୃଙ୍ଖଳ ହେବାକୁ ଅସମ୍ମାନକର ବୋଲି ମନେ କରିଛୁଁ, କେତେଟା କଥା ଠିକ୍ କରିନେଲୁଁ – ଏହି ପ୍ରକାରର ମହାତ୍ମାମାନଙ୍କୁ ଅପଦସ୍ଥ କରିବା ।

ମନେ କରନ୍ତୁ, କୋଠଘରର ଅଭ୍ୟର୍ଥନା ଘରେ ୭୦।୮୦ ଜଣ ପ୍ରତିନିଧି ଅତିଥି; ଆଉ ବାକୀତକ ସମସ୍ତେ ବସିଛନ୍ତି । ସେତେବେଳକୁ ଦେଢ଼ଘଣ୍ଟା ଦୁଇଘଣ୍ଟା ହେବ ନିତାନ୍ତ କାଳକ୍ଷେପଣକାରୀ ଜବାବସୁଆଲ ସରିଲାଣି । ଦିନ ଦେଢ଼ଟା ହେଲାଣି । ୭୦।୮୦ ଜଣ ଅତିଥି ବସିଛନ୍ତି ବୋଲି କହିବା ଭୁଲ ହେବ । କୌଣସି ଉପାୟରେ ସେମାନେ ଖସି ପଡ଼ି ନାହାନ୍ତି । ଅଧିକାଂଶ ରୁଷିଆ ଦେଶର ପ୍ରତ୍ୟେକ ଡ଼ିନର, ବ୍ରେକ୍‌ଫାଷ୍ଟ ଆଉ ଲଞ୍ଚବେଳେ ମିଳୁଥିବା ଯଥେଚ୍ଛା ସିଗାରେଟ୍‌କୁ ପ୍ରାଣବିକଳରେ ଫୁଙ୍କି ନିଦ୍ରାଦେବୀଙ୍କର ଆକ୍ରମଣରୁ ଆପଣା ଆପଣାକୁ ବଞ୍ଚାଇ ରଖିଛନ୍ତି । ଏତିକିବେଳେ ଖୁବ୍ ଗମ୍ଭୀରଭାବରେ ଜଣେ ପ୍ରଶ୍ନ କଲାଣି – "ଆପ୍‌କା ଇହାଁ ଜାପାନୀକା ପ୍ରଣାଳୀ ମେ ଖେତି ହୋତା ?"

ଭଦ୍ରଲୋକ ବଙ୍ଗାଳୀ ମୁସଲମାନ, ବିରାଟ ବପୁ, ହିନ୍ଦୁସ୍ଥାନୀ ଭାଷାରେ ବଙ୍ଗଳା ବି ମିଶୁଛି । ଦୋଭାଷୀ ଅନୁବାଦ କଲା । ଆମେ ସମସ୍ତେ ହାଇ ମାରିଲୁଣି । ମୁଁ ଆଉ ଧୈର୍ଯ୍ୟ ଧରିପାରିଲି ନାହିଁ । ଦୋଭାଷୀକୁ ଲକ୍ଷ୍ୟ କରି କହିଲି, "ଯେଉଁମାନଙ୍କର ଆଉ ଯାହା ଯାହା ପ୍ରଶ୍ନ ଅଛି, ସବୁତକ ତୁମେ ଏକାଠି ଟିପି ନିଅ । ଆଉ ସବୁତକ ଏକାବେଳକେ କୋଠଘରର ଚେଆରମ୍ୟାନଙ୍କୁ ଦିଅ, ସେ ଉତ୍ତର କରିଦେବେ । ସମୟ ବଞ୍ଚିଯିବ ।"

ଏଥିରେ ସମସ୍ତେ ରାଜି ହେଲେ ।

ସେଇଠୁଁ ମୁଁ କହିଲି, "ମୋର ଗୋଟାଏ ପ୍ରଶ୍ନ ଅଛି । ଆମ ଦେଶରେ ଆମେ ତ ତରଭୁଜ ଖାଇବାକୁ ଭଲ ପାଉଁ । ଆପଣମାନେ ମଧ ଭଲ ପାଆନ୍ତି । ଏଇ ସାଧାରଣ ଭଲ ପାଇବା ଫଳରେ ଆପଣଙ୍କର ଏବଂ ଆମର ବନ୍ଧୁତା ସୁଦୃଢ଼ ହେଉଛି ବୋଲି ଆପଣମାନେ ମନେ କରୁ ନାହାନ୍ତି ?"

ଏହି ଥଟ୍ଟାଟା କେତେ ଜଣ ବୁଝିପାରି ହସିଉଠିଲେ ଏବଂ ଯାହା ହେଉ ସେଦିନପାଇଁ ଆଉ ଅଧିକା ପ୍ରଶ୍ନ ପଚରାଯାଇ ନଥିଲା ।

## ଅଠର

ସୁଖର କଥା, ଏଭଳି ଦୁର୍ଦ୍ଦଶା ଷ୍ଟାଲିନାବାଦ ବେଳକୁ ଘଟି ନାହିଁ । କାରଣ ଆମେ ଯେଉଁ ବାରଜଣ ସେହି ବାଟରେ ଯାଇଥିଲୁଁ, ସେମାନେ ଊଣା-ଅଧିକେ ସୋଭିଏଟ୍ ଦେଶର ରାଜନୀତି, ଅର୍ଥନୀତି, କୋଠଘର, ଚଳିଚଳଣ ବିଷୟରେ କିଛି କିଛି ଜାଣିଥିଲୁ । ଆମ ଭିତରୁ ପ୍ରାୟ ସମସ୍ତେ ଊଣା ଅଧିକେ ସେଠାର ଆଧୁନିକ ଇତିହାସ ଏବଂ ରାଜନୀତି ଜାଣିଥିଲୁ । ତେଣୁ ଆମ୍ଭମାନଙ୍କ ତରଫରୁ ଗୁଡ଼ାଏ ଅବାନ୍ତର ପ୍ରଶ୍ନ ପଚରାଯାଇ ନଥିଲା ।

କିନ୍ତୁ ହିସାବକିତାବର ଢାଲ ଭିତରୁ ବର୍ତ୍ତେ କିଏ ? ତୁମେ ଜାଣିବାକୁ ଇଚ୍ଛା କର ବା ନକର ଏହି ହିସାବରେ ଗମ୍ଭୀର ଫର୍ଦ୍ଦରେ ତୁମେ ନାସ୍ତାନାବୁଦ ହୋଇଯିବାକୁ ବାଧ୍ୟ; ଯଥା – ଏହି କୋଠଚାଷ ୧୯୫୪ ମସିହାରେ ତିନିକୋଟି ତେୟାନବେ ଲକ୍ଷ ରୁବଲ ଆୟ କରିଥିଲା । ୧୯୫୫ ବର୍ଷ ସେମାନେ ଅନୁମାନ କରୁଥିଲେ, ମୋଟ ଆୟ ଚାରିକୋଟି ଅଶୀଲକ୍ଷ ରୁବଲ ଯାଏ ହେବ । ଏହି ଆୟରୁ ଏମାନେ ଆୟକର ବାବଦ ଦିଅନ୍ତି ଶତକରା ୧୦.୩ । କଳଲଙ୍ଗଳ ଆଉ ଅନ୍ୟାନ୍ୟ ଚାଷୋପକରଣ କଳକବ୍‌ଜା ଭଡ଼ା ବାବଦ ଯାଏ ଶତକଡ଼ା ୨, ବୃଦ୍ଧ ଏବଂ ଅକର୍ମଣ୍ୟ ଲୋକଙ୍କର ସାହାଯ୍ୟପାଇଁ ଶତକଡ଼ା ୨, ସାଂସ୍କୃତିକ ଅନୁଷ୍ଠାନ ଇତ୍ୟାଦି ଯେପରି କି କ୍ଲବ, ପାଠାଗାର, ସିନେମା ପ୍ରଭୃତି ପାଇଁ ଶତକଡ଼ା ୧/୨, ରିଜର୍ଭ ଫଣ୍ଡ ବା ପାଣ୍ଠି (ଯାହା ଫଳରେ ମରୁଡ଼ି, ଅଭାବ ଇତ୍ୟାଦିକୁ ସାମନା କରାଯାଏ) ଶତକଡ଼ା ୧୫, ଉତ୍ପାଦନ ଖର୍ଚ୍ଚ (ସାର, ଖତ ଇତ୍ୟାଦି) ବାବଦରେ ଶତକଡ଼ା ୭.୨ ଇତ୍ୟାଦି ଯାଇ ବାକି ଶତକଡ଼ା ୬୧.୭ କୋଠଚାଷୀମାନଙ୍କ ଭିତରେ ବଣ୍ଟାହୁଏ । ୧୯୫୪ ମସିହାରେ ଏହି କୋଠଚାଷରେ ଏ ବାବଦରେ ଚାଷୀଙ୍କର ପାରିଶ୍ରମିକ ହିସାବରେ ଦୁଇ କୋଟି ୪୨ ଲକ୍ଷ ରୁବଲ ବଣ୍ଟା ଯାଇଥିଲା । ଏହା ଛଡ଼ା ମଧ୍ୟ ପ୍ରତ୍ୟେକ ଚାଷୀ ଶସ୍ୟ, ଗୋରୁଖାଦ୍ୟ, ମାଂସ, ପନିପରିବା ଇତ୍ୟାଦି ପାଇଥିଲେ ।

ପାରିଶ୍ରମିକ ମୁଣ୍ଡପିଛା ସମାନଭାବରେ ବଣ୍ଟାଯାଏ ନାହିଁ । ବର୍ଷରେ କିଏ କେତେ କାମ କରିଛି, ତାହାର ମଧ୍ୟ ଗୋଟାଏ ହିସାବ ଅଛି । ଏହି ହିସାବ ଅନୁସାରେ ଯାହାର ଯେତିକି ନିରୀଖ (Labour Unit) ହେଲା, ସେ ସେତିକି ପାଏ । ଏହି ଲେବର ୟୁନିଟ୍ ବା କର୍ମଦିନ ଗୋଟିଏ ଦିନର ଆଠଘଣ୍ଟା ପରିଶ୍ରମ ସଙ୍ଗେ ସମାନ ନୁହେଁ । ପାଣିପାଗ, ଜମିର ପରିମାଣ, ଯନ୍ତ୍ରପାତିର ପ୍ରଭେଦ ସବୁକଥା ହିସାବକୁ ନିଆଯାଇ ଏପରି ଗୋଟାଏ କାମର ନିରୀଖ ସ୍ଥିର କରାଯାଇଛି । ବର୍ଷକରେ ଜଣେ ଜଣେ ମାମୁଲି କୋଠଚାଷୀ ୩୦୦ ରୁ ୩୫୦ ଯାଏ କାମର ଦିନ ହାସଲ କରିପାରନ୍ତି । ଏପରି କି କେହି କେହି ଗୋଟାଏ ଦିନରେ ଦେଢ଼-ନିରୀଖ ବା ବେଳେବେଳେ ଦୁଇ ନିରୀଖ କରି ଦେଇପାରନ୍ତି । ପ୍ରତ୍ୟେକଙ୍କୁ ଆପଣାର କର୍ମଦିନ ହିସାବରେ ହିଁ ମଜୁରି ଦିଆଯାଏ । ମାମୁଲି ବଳଦିଆ ଧାରାରେ ଧୂଆ-ମୂଳା ଆଉ ଅଧୁଆ-ମୂଳାକୁ ସମାନ କରି ଗୋଟାଏ ରେଟ୍‌ରେ ଦାମ ଦିଆଯାଏ ନାହିଁ ।

ପଚାରି ବୁଝିଲୁଁ ଯେ ୧୯୫୪ ବର୍ଷ ଗୋଟାଏ କର୍ମଦିନ ବା ନିରୀଖପାଇଁ ୧୮ ରୁବଲ କୋଡ଼ିଏ କୋପେକ୍ (ଏକ ରୁବଲ ଶହେ କୋପେକ୍) ମୁଦ୍ରା ଆଉ ଦୁଇ କିଲୋଗ୍ରାମ ୩୬୦ ଗ୍ରେନ୍ ଲେଖାଏଁ ଶସ୍ୟ ପଡ଼ିଥିଲା । ତଥାପି ଏଭଳି ନିର୍ଜୀବ ହିସାବପତ୍ରରୁ ମୁଁ

ସନ୍ତୁଷ୍ଟ ନହୋଇ ଗୋଟିଏ ବୁଢ଼ାକୁ ଗୋଟିଏ କୋଣକୁ ଡାକିନେଲି । ତା'ର ଲୁଗାପଟା ଦେଖିଲେ କଟକ କିଲଟରୀରେ ଆଜିକୁ ୫୦ ବର୍ଷତଳେ ମୁକ୍ତାରୀ କରୁଥିବା କୌଣସି ବୁଢ଼ା ମୁକ୍ତାରଙ୍କ ପୋଷାକ ଦେଖିଲାପରି ମନେ ହେବ । ଏପରି ମୁକ୍ତାର ଯେ ଆଜି ଅଭାବ ଅଛନ୍ତି, ତାହା ମଧ ନୁହେଁ । ସେମାନଙ୍କର କେତୋଟି ଜୀବନ୍ତ ଉଦାହରଣ ମୋର ଆଖିରେ ଜଳଜଳ ଦିଶୁଛି । ସେମାନଙ୍କ ଭିତରୁ ଜଣେ ପାଞ୍ଚଫୁଟ ସାତଇଞ୍ଚର ଲୋକ । ଟିକିଏ ବେଶି ଗୋରା ହେଲେ ଯେପରି ଦିଶନ୍ତା, ଉକ୍ତ କୋଠଘ୍ଷୀଟି ତାହାହିଁ ଦିଶୁଥିଲା । ତା' ନାଁ ଜବିରୋଭ । ପୂର୍ବେ ବୋଧ ହୁଏ ସବିର ମହମ୍ମଦ ଥିଲା । ଏବେ ହାଲି ଫେସନରେ – ଏ ପୁରୁଷରେ ବା ପୂର୍ବ-ପୁରୁଷରୁ ସବିରୋଭ ଏବଂ ତା'ପରେ ଜବିରୋଭ ହୋଇଯାଇଛି ।

ବିପ୍ଳବପରେ ଜବିରୋଭ ପାଠପଢ଼ା ଶିଖିଛି ଏବଂ ବେଞ୍ଚ ଉପରେ ବସୁଛି । ଆଉ ବେଶି କିଛି ସାଂସ୍କୃତିକ ଉନ୍ନତି କରିଛି ବୋଲି ମୋର ହୃଦ୍‌ବୋଧ ହେଲା ନାହିଁ । ତେବେ ଏହି ଦେଶରେ ଅନେକ ଜାଗାରେ ଅସମ୍ଭବ ଭାବରେ ଅପ୍ରତ୍ୟାଶିତ ବୁଢ଼ାବୁଢ଼ୀ; ଚଷା-ଘ୍ଷୁଣୀଙ୍କଠାରୁ ବିଖ୍ୟାତ ଚିତ୍ରକର ଲିଓନାର୍ଦ୍ଦୋଦ୍ୟା ଭିନଚିଙ୍କର ଚିତ୍ରର ସମାଲୋଚନା ଶୁଣିଛି । ସେ କଥା ପରବର୍ତ୍ତୀ ଅଧ୍ୟାୟରେ କହିବି । ତେଣୁ ଏଇଠି କାହାର ପେଟରେ କି ବିଦ୍ୟା ଅଛି, ତାହା ଅନୁମାନ କରିବା ସହଜ ନୁହେଁ । ମୋଟ ଉପରେ ଶିକ୍ଷା ଆଉ ସଂସ୍କୃତିର ଗୋଟାଏ ଦୀପ୍ତି ଶିକ୍ଷିତ ବା ସଂସ୍କୃତିମନ୍ତ ଲୋକର ଆଖିରେ ବା ମୁହଁରେ ଫୁଟିଉଠେ; କିନ୍ତୁ ଏ ବୁଢ଼ା ଜବିରୋଭର ଦୀପ୍ତି ଥିଲା ପରି ଦିଶୁ ନଥିଲା । ଆମେ ତ ମନେ କରିଥିଲୁ, ସେ ବୋଧହୁଏ ସେଇଠାରେ କୋଠଘ୍ଷର କେହି ଦରୱାନ ବା ପିଅନ ହୋଇଥିବ ।

୧୯୧୭ ବିପ୍ଳବ ପୂର୍ବରୁ ଜବିରୋଭ ଏହିଠାରେ ହିଁ ଘର କରି ଅଠର ବର୍ଷକାଳ ରହିଆସିଛି । ବାଲ୍ୟକାଳରୁ ତା'ର ବାପା ମରି ଯାଇଥିଲେ । ତେଣୁ ପେଟ ପୋଷିବାକୁ ସେ ଜଣେ ଭୂ-ସ୍ୱାମୀର ଖମାରରେ ମୂଲ ଲାଗୁଥିଲା । ସେତେବେଳେ ସେ ଯାହା ପାଉଥିଲା, ସେଥିରେ କେବଳ ଯଥାକଥା ପ୍ରାଣ ବଞ୍ଚାଇ ରଖିଥିଲା । ଗଲା ବର୍ଷ ୧୯୫୪ରେ ତା'ର ପରିବାର ଏକୋଇଶ ହଜାର ରୁବଲ ଆଉ ଘ୍ରରିଟନ ଶସ୍ୟ ତାଙ୍କର ମଜୁରୀ ବାବଦକୁ ପାଇଛନ୍ତି । ପରିବାରର ଦୁଇଜଣ କାମ କରନ୍ତି । ତେଣୁ ଜଣ ପିଛା ହାରାହାରି ବାର୍ଷିକ ସାଢେ ଦଶହଜାର ରୁବଲ ଆଉ ଦୁଇ ଟନ (ବାଲେଶ୍ୱରୀ ଷାଠିଏ ମହଣ) ଖାଦ୍ୟଶସ୍ୟ ପଡ଼ିଛି, ଅର୍ଥାତ୍ ମାସିକ ଜଣକୁ ୮୭୫ ରୁବଲ ଆଉ ପାଞ୍ଚ ମହଣ ଶସ୍ୟ ହିସାବରେ ପଡ଼ିଛି ।

ଢବିରୋଭର ସାତୋଟି ପିଲାଝିଲା । ସବା ବଡ଼ ପୁଅଟି ଏ ବର୍ଷ ଦଶବର୍ଷିଆ ସ୍କୁଲରୁ ପାଶ କରିଛି । ତା' ତଳ ସାତବର୍ଷିଆ ସ୍କୁଲର ଷଷ୍ଠ ଶ୍ରେଣୀରେ ପଢୁଛି, ଆଉ ଗୋଟିଏ ଝିଅ ତୃତୀୟ ଶ୍ରେଣୀରେ ପଢୁଛି । ବାକି ଚାରୋଟି ପିଲାଝିଲା କ'ଣ କରୁଛନ୍ତି, ତାହା ବୁଝାପଡ଼ିଲା ନାହିଁ । ସେତେବେଳକୁ ଦୋ'ଭାଷୀ ମହାଶୟା ଆଉ କାହାର କଥା ବୁଝିବାକୁ ବାହାରିଗଲେଣି ।

ଏହି କୋଠଗୃଷ ଅଞ୍ଚଳ ଗୋଟିଏ ଛୋଟକାଟ୍‌ର ସହର । ପୂର୍ବେ ଏହାର ପରିବାର ସଂଖ୍ୟା ତ କହିଛି । ଲୋକସଂଖ୍ୟା ଥିଲା ୪୦୦୦ । ବର୍ତ୍ତମାନ ଲୋକସଂଖ୍ୟା ୧୫,୫୦୦ ଅର୍ଥାତ୍ ଆମର ଭଦ୍ରଖ ସହରର ଲୋକସଂଖ୍ୟା ସହିତ ସମାନ ହେବ । ଏଥିଭିତରୁ କୋଠ ଗୃଷରେ କାମ କରୁଥିବା ଲୋକସଂଖ୍ୟା ୭୦୦୦ ଯାଏ ହେବେ । ଏହି ଗାଁରେ ଏହି କୋଠଗୃଷର ତତ୍ତ୍ୱାବଧାନରେ କୋଡ଼ିଏଟି ସ୍କୁଲ ଅଛି । ଯୋଡ଼ିଏ ଦଶବର୍ଷିଆ ସ୍କୁଲ; ଆଉ ବାକିତକ ସାତବର୍ଷିଆ ସ୍କୁଲ । ସ୍କୁଲର ଶିକ୍ଷକମାନଙ୍କୁ ଅବଶ୍ୟ ତାଜିକ୍ ରିପବ୍‌ଲିକ ସରକାରଙ୍କର ଶିକ୍ଷାବିଭାଗ ନିଯୁକ୍ତ କରନ୍ତି । ଏଠି କୋଠ ଚାଷ କାମର ତଦାରଖ କରିବାକୁ କୃଷି-ବିଶାରଦ, ମୃତ୍ତିକା-ବିଶାରଦ, ଡାକ୍ତର, ଇଂଜିନିଅର ଇତ୍ୟାଦି ନିଯୁକ୍ତ ହୋଇଛନ୍ତି । ଏଇଠି ଦାତବ୍ୟ ଚିକିତ୍ସାଳୟ, ଇନ୍‌ଡୋର, ପ୍ରସୂତିଘର, କିଣ୍ଡରଗାର୍ଟେନ (ଶିଶୁ ପଢ଼ାଘର), କ୍ରେସ (ଶିଶୁ ସଦନ), ଲାଇବ୍ରେରୀ ଏବଂ କ୍ଲବମାନ ଖୋଲାଯାଇଛି । ବିଭିନ୍ନ ସାହିରେ କ୍ଲବ୍‌ମାନ ଅଛି ଏବଂ ତା'ଛଡ଼ା ଗୋଟାଏ ବଡ଼ କ୍ଲବ୍ ଅଛି । ସମସ୍ତ କୋଠଗୃଷ ପାଇଁ ଛଅ ଜଣ ଡାକ୍ତର ଅଛନ୍ତି । ଏହି କୋଠଚାଷରୁ ୮ ଜଣ ଷ୍ଟାଲିନାବାଦ ବିଶ୍ୱବିଦ୍ୟାଳୟରେ, ୨୦ ଜଣ କୃଷି ମହାବିଦ୍ୟାଳୟରେ, ୬ଜଣ ଡାକ୍ତରୀ କଲେଜରେ, ୬୭ ଜଣ ବିଭିନ୍ନ ବୈଷୟିକ ସ୍କୁଲରେ, ଆଉ ୧୫ ଜଣ ସୋଭିଏଟ୍‌ର ଅନ୍ୟାନ୍ୟ ସାଧାରଣତନ୍ତ୍ରର ସ୍କୁଲ କଲେଜରେ ପଢୁଛନ୍ତି । କୋଠଗୃଷୀଙ୍କ ଘରେ ରେଡ଼ିଓ ଲାଗିଛି, ଇଲେକ୍‌ଟ୍ରିକ୍ ବତି ଅଛି । ଆଗେ ପାଣିର ବ୍ୟବସ୍ଥା ନଥିଲା । ଏବେ ତିନିବର୍ଷ ହେଲା ପାଣି ପାଇପ୍‌ର ବନ୍ଦୋବସ୍ତ ହୋଇଛି ।

ଏହି କୋଠଗୃଷଟି ଖୁବ୍ ବଡ଼ଧରଣର କୋଠଗୃଷ ନୁହେଁ; ମଧ୍ୟମ ଧରଣର । ଏହି କୋଠଗୃଷ ଅବଶ୍ୟ ଆପଣାର ଉଦ୍ୟମରେ ଗାଁର ୧୦ କିଲୋମିଟରର ରାସ୍ତାତକ ତିଆରି କରିଛି । ଆଉ ଶହେଟି ରହିବା ଘରର ଫ୍ଲାଟ ତିଆରି କରିଛି । ଶୁଣିଲୁ, ଗୋଟାଏ ବଡ଼ ସଂସ୍କୃତି ସଦନ (House of Culture) ତୋଳିବାପାଇଁ ଗାଁର ସାଧାରଣ ମିଟିଂରେ ପାଶ୍ ହୋଇଯାଇଛି । ସୋଭିଏଟ୍ ରୁଷିଆର ଜାତୀୟ ଖେଳ ପ୍ରତିଯୋଗିତାରେ ଏହି କୋଠଗୃଷର ଖେଳାଳିମାନେ କୁସ୍ତି-କସରତରେ କୋଡ଼ିଏଟି ଗ୍ୟମ୍ପିୟନ୍ ମେଡ଼ାଲ

ପାଇଛନ୍ତି । ଏହି କୋଠଘ୍ୱଷରେ ସତର ଜଣ ସମାଜବାଦୀ ଶ୍ରମବୀର ଅଛନ୍ତି (Hero of Socialist Labour)। ତାଙ୍କ ଭିତରୁ ଆଠ ଜଣ ସ୍ତ୍ରୀଲୋକ ।

ପୁରୁଣା ହଳ ବା ଲଙ୍ଗଳରେ ଏଠାରେ ଘ୍ୱଷ ହେବାର ଦେଖିବାକୁ ପାଇଲୁ ନାହିଁ; କିନ୍ତୁ ପାହାଡ଼ ଉପରେ ଯେଉଁଠି କଳ ଲଙ୍ଗଳ ଚଳାଇବା କଷ୍ଟ ବା ଯେଉଁଠି ଅତି ସୂକ୍ଷ୍ମ ଘ୍ୱଷ କରିବାକୁ ପଡ଼େ, ସେଇଠି ଘୋଡ଼ାଟଣା ଲଙ୍ଗଳରେ ଘ୍ୱଷ କରାଯାଏ । ଏହି ଘୋଡ଼ାଟଣା ଲଙ୍ଗଳ ଆମର ଲଙ୍ଗଳପରି ଦେଖିବାକୁ ନୁହେଁ । ଷ୍ଟାଲିନାବାଦରେ ଏହା ଦେଖିବାକୁ କିପରି, ମୁଁ କହିପାରିବି ନାହିଁ । ତେବେ ଫିନ୍‌ଲ୍ୟାଣ୍ଡ ଆଉ ଚେକୋସ୍ଲୋଭାକିଆରେ ଗୋଟିଏ ଯୋଡ଼ିଏ ଜାଗାରେ ମୁଁ ଯେଉଁ ଲଙ୍ଗଳମାନ ଦେଖିଛି, ସେମାନଙ୍କର କଳକବଜା ସମାନ ନୁହେଁ । ଏ ବିଷୟରେ ପ୍ରସଙ୍ଗକ୍ରମେ ଆଲୋଚନା କରିବି । ଏଇ ତାଜିକିସ୍ତାନରେ ପ୍ରାୟ ବେଶି ଭାଗ ଜମିରେ ତୂଳା ଉତ୍ପନ୍ନ କରାଯାଏ । ସେଥିପାଇଁ ଏହି ଭୂମିକୁ "ଧଳା ସୁନାର ଭୂମି" (Land of White Gold) ବୋଲି କହନ୍ତି । ଏହି ତୂଳା ଉତ୍ପାଦନର ଯାବତୀୟ କାର୍ଯ୍ୟ–ହଳ, ବୁଣା, ବଛା, ତୋଳା ଇତ୍ୟାଦି ହରେକ ରକମର କାମ କଳ ସାହାଯ୍ୟରେ କରାଯାଏ । ଧାନ ଫସଲ ଉତ୍ପାଦନରେ ପାହାଡ଼ ଉପରେ ଅଥବା ଜଳସିକ୍ତ ଭୂମିରେ ପୂରାପୂରି କଳକବ୍‌ଜାର ବ୍ୟବହାର କରାଯାଇ ନାହିଁ ।

ବିରାଟ ଶସ୍ୟକ୍ଷେତ୍ର ଅଞ୍ଚଳରେ କାମଦାମ ବଣ୍ଟାଯିବାର ମଧ୍ୟ ଗୋଟାଏ ପ୍ରଣାଳୀ ଅଛି, ଅର୍ଥାତ୍ ସମସ୍ତ କପା, ଧାନ, ଛଣପଟ ଅଞ୍ଚଳକୁ କେତେଗୁଡ଼ିଏ ବିଭାଗ ବା ସେକ୍‌ସନ୍‌ରେ ବିଭକ୍ତ କରିଦିଆଯାଇଛି । ଉଦାହରଣସ୍ୱରୂପ, କପା ଅଞ୍ଚଳ ଦଶୋଟି ସେକ୍‌ସନରେ ବିଭକ୍ତ ହୋଇଛି । ପ୍ରତ୍ୟେକ ସେକ୍‌ସନ୍‌ରେ ୪ ବା ୫ ଗୋଟି ଟିମ୍ କାମ କରନ୍ତି । ଏପରି ସମଗ୍ର କପା ଅଞ୍ଚଳପାଇଁ ପଇଁଚାଳିଶ ଗୋଟି ଟିମ୍ ଅଛନ୍ତି । ଏତକ ଟିମ୍ ଥିବା ଫଳରେ ଯୋଡ଼ିଏ ଲାଭ ହୁଏ । ପ୍ରତ୍ୟେକ ଟିମ୍ ଆପଣା ଆପଣା ଅଞ୍ଚଳର ଦାୟିତ୍ୱ ନିଏ ଏବଂ ତେଣୁ କାମର ତଦାରଖ କରିବାପାଇଁ ଟିମ୍‌ର ନେତା ବା ଲିଡରର ସୁବିଧା ହୁଏ । ଅନ୍ୟ ପକ୍ଷରେ ବିଭିନ୍ନ ଟିମ୍ ଭିତରେ ପ୍ରତିଯୋଗିତା ଫଳରେ କାମ ମଧ୍ୟ ବେଶି ହୋଇପାରେ ।

ସୋଭିଏତ ଶାସନ ବ୍ୟବସ୍ଥାର ଏକ ଗୁରୁତର ଏବଂ ଖୁବ କୌତୂହଳପୂର୍ଣ୍ଣ ଅଭିଜ୍ଞତା ଏହି କୋଠଘ୍ୱଷରେ ନିହିତ ରହିଛି । ଆମରି ଓଡ଼ିଶା ମୁଲକରେ ଯେଉଁ ଗ୍ରାମପଞ୍ଚାୟତର ଉଦ୍ୟମ ହେଉଛି, ଏହି କୋଠଘ୍ୱଷ ଅଞ୍ଚଳ ବା ଶାସନ ସେହି ଗ୍ରାମପଞ୍ଚାୟତଠାରୁ ଆହୁରି ବ୍ୟାପକ ଏବଂ ଆହୁରି ସୁଦୂରପ୍ରସାରୀ ଭଳି ମନେ ହୁଏ ।

ସମସ୍ତ କୋଠଚ୍ଷଷ ପରିବାରଙ୍କର ମିଟିଂରେ ଗୁପ୍ତ ଭୋଟରେ ଏଥିରେ ଚେୟାରମ୍ୟାନ୍ ବା ସଭାପତି ନିର୍ବାଚିତ ହୁଅନ୍ତି । ଏହି ସାଧାରଣ ସଭାରେ ମଧ୍ୟ ଏକ କଣ୍ଟ୍ରୋଲ କମିଶନ୍ ବା ବିଗ୍ଭରପତି ମଣ୍ଡଳୀ ବଛା ହୁଅନ୍ତି । କୋଠଚ୍ଷଷର ନିୟମାବଳୀ ଅନୁସାରେ କୋଠଚ୍ଷଷୀମାନଙ୍କର ଗୋଟିଏ ସାଧାରଣ ସଭା ପ୍ରତି ମାସରେ ଥରେ ଡକାଯିବା ଦରକାର । କୋଠଚ୍ଷଷର ଚେୟାରମ୍ୟାନ ଏବଂ ଶାସନକାରୀ କମିଟି ଦୁଇ ବର୍ଷରେ ଥରେ ବଛାଯାଏ; କିନ୍ତୁ ଦରକାର ପଡ଼ିଲେ କୋଠଚ୍ଷଷୀମାନେ ଏହି ସମୟ ପୂର୍ବରୁ ଚେୟାରମ୍ୟାନ୍ ଏବଂ ଶାସନକାରୀ କମିଟିକୁ ବଦଳାଇପାରନ୍ତି ଏବଂ ସାନି ଚେୟାରମ୍ୟାନ୍ ଇତ୍ୟାଦି ବାଛିପାରନ୍ତି ।

## ଉଣେଇଶ

ସୋଭିଏଟ୍ ରୁଷିଆର କୋଠଚ୍ଷଷ ଯେହେତୁ ଏକ ଅଭୂତପୂର୍ବ ଅନୁଷ୍ଠାନ, ତେଣୁ ତାହା ବିଷୟରେ ଅନେକ ପୋଥି ଏଥି ପୂର୍ବରୁ ଲେଖାଯାଇଛି । କୋଠଚ୍ଷଷର ଉପରର ଅଧିକାଂଶ ଜ୍ଞାତବ୍ୟ ବିଷୟ ମଧ୍ୟ ଅଧିକାଂଶ କୋଠଚ୍ଷଷ ନିୟମାବଳୀ ଅଥବା ସୋଭିଏଟ୍ ଶାସନ ବିଧିରୁ ମିଳିପାରିବ । ଦୁର୍ଭାଗ୍ୟର କଥା, ଓଡ଼ିଆ ଭାଷାରେ ଯେପରି ଅନେକ ଜ୍ଞାତବ୍ୟ ବିଷୟରେ ପୋଥିପତ୍ର ଅଭାବ, ଏ ବିଷୟରେ ମଧ୍ୟ ସେହିପରି ଅଭାବ । ତେଣୁ ଏତେଗୁଡ଼ାଏ ହିସାବକିତାବ ଏବଂ ତଥ୍ୟର ସମଭିବ୍ୟାହାର କରିବାକୁ ଇଚ୍ଛା ନଥିଲେ ମଧ୍ୟ ଏଠାରେ ତାହା କରିବାକୁ ପଡ଼ିଲା ।

କିନ୍ତୁ ଅସଲ କଥା ହେଲା ଏହି କୋଠଚ୍ଷଷରେ ଯେଉଁମାନେ ସାମୂହିକ ଜୀବନ ତିଆରି କରିଛନ୍ତି, ସେମାନଙ୍କର ଜୀବନ ବା ମାନବତାର କେତେ ପରିମାଣରେ ଉନ୍ନତି ହୋଇଛି ? କୋଠଚ୍ଷଷର ଯେଉଁ ୫୦ ବର୍ଷର ବିରାଟ ପଞ୍ଝୁହତା ବ୍ୟକ୍ତିଙ୍କୁ ଚେୟାରମ୍ୟାନ୍ ଭାବରେ ଦେଖିଲି, ତାଙ୍କ ସ୍ଥାନ ଅଧିକାର କଲାଭଳି ଆଉ କେତେ ଜଣ ବ୍ୟକ୍ତି ଏପ୍ରକାର ଚେୟାରମ୍ୟାନ୍ ହେବାର ଯୋଗ୍ୟତା ବା ନେତୃତ୍ୱ ହାସଲ କରିଛନ୍ତି ? କୋଠଚ୍ଷଷର ଚେୟାରମ୍ୟାନ୍‌ଙ୍କ ବିଶାଳକାୟ 'ଜିମ୍' ଗାଡ଼ି ତାଙ୍କର ପ୍ରବଳ ପରାକ୍ରମ ଆଗରେ କୋଠଚ୍ଷଷର ଅନ୍ୟାନ୍ୟ ସାଧାରଣ ଚ୍ଷଷୀ କେତେ ପରିମାଣରେ ଆପଣାର ଉଦ୍ୟୋଗ ଏବଂ ସ୍ୱାଧୀନ ଚିନ୍ତା ପ୍ରକାଶ କରିପାରୁଛନ୍ତି ?

ତା'ପରେ ସହରରେ ଯେତେବେଳେ ହଜାର ହଜାର କାରଖାନା ଆଉ ଶିକ୍ଷାନୁଷ୍ଠାନ ତିଆରି ହୋଇଯାଇଛି, ସେତେବେଳେ ଯେଉଁ ଯୁବକମାନେ ଉଚ୍ଚଶିକ୍ଷା ବା କାରିଗରି ବିଦ୍ୟା ପାଇଁ ସହରକୁ ଯାଇଛନ୍ତି, ସେମାନେ ଗାଁକୁ ଫେରୁଛନ୍ତି ତ ? ଏହା

ଛଡ଼ା ସୋଭିଏଟ୍ ସହରମାନଙ୍କରେ ଶ୍ରମିକ ବସ୍ତିଅଞ୍ଚଳ ଲୋପ କରାଯାଉଛି । ଶ୍ରମିକମାନଙ୍କୁ ଆଧୁନିକ ରୁଚିପୂର୍ଣ୍ଣ ବାସଗୃହରେ ସ୍ଥାନ କରିଦେବାପାଇଁ ଯାବତୀୟ ବନ୍ଦୋବସ୍ତ କରାଯାଉଛି । ଏପରିସ୍ଥଳେ ଅପେକ୍ଷାକୃତ ଅନୁନ୍ନତ ଏବଂ ବାସଗୃହ ଗଠନରେ ପଶ୍ଚାତ୍‌ପଦ ଗ୍ରାମାଞ୍ଚଳରେ ନବ୍ୟସଭ୍ୟ ଶିକ୍ଷିତ ସଂପ୍ରଦାୟ ରହିବାକୁ ମଙ୍ଗୁଛନ୍ତି ତ ?

ଭାରତବର୍ଷପରି ସୋଭିଏଟ୍ ଦେଶ ଏକ ପ୍ରକାଣ୍ଡ ଆଉ ବିଶାଳ ଦେଶ । ପୂର୍ବେ ଏଇଠି ସହର ଥିଲା ଦଶଟି କିମ୍ବା ପନ୍ଦରଟି । ସେସବୁ ପ୍ରାୟ ୟୁରାଲ ପାହାଡ଼ର ପଶ୍ଚିମ ପଟେ ୟୁରୋପରେ ଥିଲା । ଏବେ ନୂତନ ସହରରେ କଳାକାରଖାନାସବୁ, ବାଣିଜ୍ୟକେନ୍ଦ୍ର, ନଦୀ-ବନ୍ଦର ଇତ୍ୟାଦି ପ୍ରାୟ ପ୍ରତିଦିନ ମୁଣ୍ଡ ଟେକୁଛି । ଏକଥା ସୋଭିଏଟ୍ ୟୁନିଅନର ବିଭିନ୍ନ ପତ୍ରପତ୍ରିକାମାନଙ୍କରୁ ଦେଖିବାକୁ ମିଳୁଛି । ତଥାପି ଆସନ୍ତା ପଚ୍ଚଶ ବର୍ଷ ଭିତରେ ମଧ୍ୟ ସୋଭିଏଟ୍ ଦେଶ ବିଲାତ ବା ବେଲଜିୟମ୍ ବା ଚେକୋସ୍ଲୋଭାକିଆ ଭଳି ଏକ ପୂରାପୂରି ସହରର ଦେଶ ହୋଇପାରିବ ନାହିଁ । ବିସ୍ତୀର୍ଣ୍ଣ ଶସ୍ୟକ୍ଷେତ୍ର,ବିଶାଳ ଫଳବାଟିକା, ପାହାଡ଼, ବଣ ଏହାକୁ ବେଶି ଭାଗ ବେସହରୀ ଦେଶ କରି ରଖିବ । ତଥାପି ଏହାର ବହୁଗୁଣରେ ବଢୁଥିବା ଲୋକସଂଖ୍ୟାକୁ ଯଥେଷ୍ଟ ବାସସ୍ଥଳୀ ଯୋଗାଇ ସହରର ସମସ୍ତ ସୁଯୋଗ ମଫସଲରେ ଦେଇପାରିବ ତ ?

କାଗଜ କଲମ ଆଉ ହିସାବକିତାବର ପ୍ରବଳ ଝୁଙ୍କିରେ ବେଳେବେଳେ ପ୍ରକୃତ ସତ୍ୟ ଲୋପ ପାଇଯାଏ । ୧୯୧୭ ପୂର୍ବରୁ ଏଇୟା ଥିଲା; ଏବେ ଏଇୟା ହୋଇଛି – ଏଭଳି ତୁଳନାରେ ଅବଶ୍ୟ ଜାର୍‌ଶାସିତ ରୁଷିଆ ଏବଂ ବର୍ତ୍ତମାନର ରୁଷିଆ ଭିତରେ ଆକାଶ ପାତାଳ ପ୍ରଭେଦ ଦେଖାଯିବ । କିନ୍ତୁ ଗତ ୩୮।୪୦ ବର୍ଷକାଳ ନାନା ବାଦବିସମ୍ବାଦ ଆଉ ଘନଘଟା ଭିତରେ ଯେଉଁ ସଭ୍ୟତା ଆପଣାକୁ ବଞ୍ଚାଇ ରଖିଆସିଛି, ତାହାର କେଉଁଠି ଦୋଷତ୍ରୁଟି ରହିଛି କି ନାହିଁ ? ଅନ୍ୟ ଦେଶରେ ଯେଉଁମାନେ ସମାଜବାଦ ଗଢ଼ିବାର ଆଶା କରିଛନ୍ତି, ସେମାନେ କ'ଣ ଠିକ୍ ସମୁଦ୍ର ଭିତରେ ଜାହାଜ ଗଲାପରି ଏହାରି ରାସ୍ତାରେ ଚାଲିବେ, ଏହାରି ରାସ୍ତାରେ ଠୋକର ଖାଇବେ, ଏହାରି ରାସ୍ତାରେ ପୁଣି ଆଗକୁ ବଢ଼ିବେ, ନା ନିଜରଯାହା ଭୁଲତ୍ରୁଟି ଅଛି, ତାକୁ ସଂଶୋଧନ କରିଯିବାକୁ ଏହି ସଭ୍ୟତା ଶିକ୍ଷା ଦେଉଛି ? ସୋଭିଏଟ ଦେଶରେ ପଶିବା ପୂର୍ବରୁ ଏପରି ଶହ ଶହ ପ୍ରଶ୍ନ ମୋର ମନରେ ଉଠୁଥିଲା । ଏହି ପ୍ରଶ୍ନକୁ ମୁଁ କେଉଁଠାରୁ ଉତ୍ତର କରି ଆଣିବି, ତାହା ମଧ୍ୟ ଭାବି ଭାବି କୂଳକିନାରା ପାଉ ନଥିଲି ।

କୋଠଚାଷର ସମସ୍ତ ହିସାବକିତାବର ପରିପାଟୀ ଶୁଣିସାରି ଯେତେବେଳେ ଆମେ ତାହାର କ୍ଷେତ ଇତ୍ୟାଦି ବୁଲିବାକୁ ଗଲୁ, ଘରଦ୍ୱାର ଏବଂ ମଣିଷଙ୍କୁ ଦେଖିବାକୁ ଗଲୁ, ସେତେବେଳେ ଏକ ନୂତନ ବୁଦ୍ଧିଜୀବୀ ଶ୍ରେଣୀ ଶିକ୍ଷିତ, ସାକ୍ଷର ମଣିଷଗୋଷ୍ଠୀ

ସହିତ ପ୍ରତ୍ୟକ୍ଷ ସଂପର୍କରେ ତ ନିଶ୍ଚୟ ଆସିଥିଲୁ । କିନ୍ତୁ ମୋର ମନେ ହେଲା, ଏମାନଙ୍କର ସଂସ୍କୃତି ଅଛି, ଶିକ୍ଷା ଅଛି, ପରମ୍ପରା ଅଛି, ଆମ ପାଇଁ ଦରଦ ଅଛି; କାରଣ ଆମେ ଶାନ୍ତିପ୍ରେମୀ, ମିତ୍ରତାର ସନ୍ଦେଶ ଘେନି ଆସିଛୁ । କିନ୍ତୁ ଆମେ ଭାରତୀୟ ଏକ ଉପନିବେଶବାଦ କବଳରୁ ମୁକ୍ତ ସମଯୋଦ୍ଧା । ଏପରି ସମଯୋଦ୍ଧୃତାର ଭାବ, ଏପରି ବିପ୍ଳବୀର ଭାବ ଏମାନଙ୍କ ପାଖରେ ଦେଖିବାକୁ ପାଇଲାପରି ମୋର ମନେ ହେଲା ନାହିଁ ।

ଆଗରୁ ଟିକିଏ ବର୍ଷା ହୋଇଯାଇଥାଏ, ତେଣୁ ଆକାଶଟା ଇନ୍ଦ୍ରନୀଳମଣିପରି ଝଟକୁଥାଏ । ଗଛପତ୍ର ଏବଂ ଘରମଥାନ ଉପରେ ଅଭ୍ୟର୍ଥନାର ମଧୁର ନିମନ୍ତ୍ରଣ ପୁଲକୁଥାଏ । କିନ୍ତୁ ତଳେ ମାଟିଟା ସନ୍ତସନ୍ତିଆ, ପାଣି ପଚ୍‌ପଚ । ସର୍କସବାଲାମାନେ ଦଉଡ଼ିରେ ଗ୍ଲଲିଲାପରି ସାଧନା କରି ଚାଲିବାକୁ ପଡ଼ିବ । ମୋଟରଗାଡ଼ିଗୁଡ଼ିକ ମଧ୍ୟ ଯେଉଁ ରାସ୍ତାରେ ବାହାରିଯିବେ, ସେଠାରୁ ଫେରିବାକୁ ସେମାନଙ୍କ ପାଇଁ ଯଥେଷ୍ଟ ରାସ୍ତା ନାହିଁ । ଏଇଠି ଜଣାପଡ଼ିଲା, ଏହି କୋଠଗ୍ରଷର ରାସ୍ତାଘାଟସବୁ ଯୋଜନା ଅନୁସାରେ ତିଆରି ହୋଇ ନାହିଁ । ବିରାଟ କୋଠକ୍ଷେତ୍ରର କପାଗଛଗୁଡ଼ିକ ଏକାବେଳକେ ରାସ୍ତା ଉପରକୁ ମାଡ଼ିଯିବା ଅବସ୍ଥାରେ ରହିଛନ୍ତି । ଦୂରରୁ ଶୁଭୁଛି କଳଲଙ୍ଗଳର ଘର୍ଘର ଶବ୍ଦ ।

ଗୋରୁଗାଈଙ୍କର ରହିବାର ଗୁହାଳ ଦେଖିବାକୁ ଗଲୁ । ୬ ମାସର ବାଛୁରୀଗୁଡ଼ିକ ୪।୫ ବର୍ଷର ପରି ଦିଶୁଛନ୍ତି । ବଡ଼ ବଡ଼ ଅଷାଣ୍ଡୁଆ ଚେହେରା । କାହାର ନାଁ ଇନ୍ଦ୍ରଧନୁ, କାହାର ନାଁ ଗୁରୁବାରୀ, କାହାର ନାଁ ମଧୁରସ୍ମୃତି । ଗୋଟିଏ ଗୋଟିଏ ଖୁଆଡ଼ରେ ବନ୍ଧାହୋଇଛନ୍ତି । ଏଇଠି ଗୋରୁଗାଈଙ୍କୁ ବାନ୍ଧିବା, ନଡ଼ା କାଟିବା, ବାଲିଟିରେ ମୁହେଁଇବା ସବୁକାମ କଳ ସାହାଯ୍ୟରେ ହେଉଛି । ଏପରି କି ଗାଈକୁ ଶୋଷ କଲେ ସେ ଯଦି ତା'ର ମୁହଁ ବଢ଼େଇଲା, ପାଖରେ ଥିବା ପିଇବା କୁଣ୍ଡଭିତରେ ମୁହଁ ପୂରାଇବ, ତେବେ ସେଥିରେ ଏପରି ଙ୍ଗି ବନ୍ଦୋବସ୍ତ ହୋଇଛି ଯେ ଆପେ ଆପେ ପାଣିକୁଣ୍ଡରେ ପାଣି ଭର୍ତ୍ତି ହୋଇଯିବ । ମୁହଁ ଉଠାଇଲେ ତା' ମନକୁ କୁଣ୍ଡ ଖାଲି ହୋଇଯିବ ।

ଗାଈ ଦୁହାଁ ହେଉଛନ୍ତି କଳ ସାହାଯ୍ୟରେ । ସେହି କଳ ସାହାଯ୍ୟରେ ଦୁହାଁ ହୋଇ ଲମ୍ବା ଲମ୍ବା ପାଇପ ମାନଙ୍କରେ ଆପଣାଛାଏଁ ଦୁଧତକ ପଶି ବିଶୋଧନ ଘରକୁ ଯାଉଛି । ଏହି ବିଶୋଧନ ପ୍ରଣାଳୀକୁ ପାଷ୍ଟରାଇଜ ପ୍ରସେସ୍ (Pasteurised Process) କୁହାଯାଏ । ଏହି ବିଶୋଧନ ଫଳରେ ଗାଈଦୁଧରୁ ସବୁତକ ଅବିଶୁଦ୍ଧ ଜିନିଷ କାଢ଼ିନିଆଯାଇ ତାକୁ ନିରୋଗ ଦୁଗ୍ଧରେ ପରିଣତ କରାଯାଏ । ପୁଣି ବିଶୋଧନ ଘରୁ ଏହି ଦୁଗ୍ଧର ସ୍ରୋତ ପାଇପ୍ ବାଟେ ଆଉ ଏକ ଘରକୁ ଯାଉଛି । ସେହି ଘରେ ହଜାର

ହଜାର ଓସାରିଆମୁହଁ ବୋତଲ ଚକାଭଉଁରୀ ଖେଳି ଖେଳି ପାଇପରୁ ଖସୁଥିବା ଦୁଧରେ ଆପଣାକୁ ପୁରାଇ ନେଉଛନ୍ତି ଏବଂ ସ୍ପ୍ରିଂ କଣ୍ଢେଇ ପରି ଆପଣା ମୁଣ୍ଡକୁ ଟିକିଏ ହଲେଇଦେଲାକ୍ଷଣି ସେମାନଙ୍କର ମୁଣ୍ଡରେ ଟୋପି ଭଳି ଗୋଟାଏ ଗୋଟାଏ ଠିପି ଲାଗିଯାଉଛି । ତା'ପରେ ଧାଡ଼ି ଧାଡ଼ି ହୋଇ ଏହି ଠିପିମରା ବୋତଲ କଣ୍ଢେଇ ପଲଟଣ ଭଳି ମାର୍ଚ୍ଚ କରି ଚ୍ଲିଛନ୍ତି ବାହାରକୁ । ସେଇଠି ମୋଟରଟ୍ରକ ଗାଡ଼ିରେ ପ୍ୟାକ୍ ହୋଇ ଘରମାନଙ୍କୁ ବଣ୍ଟାଯିବ ଅଥବା ସହରକୁ ପଠାଯିବ ।

ସର୍କସର ମେନ୍‌ଜାରୀ ବା ପଶୁଶାଳା ଦେଖିଲା ପରି ଆମ୍ଭେମାନେ ମେଣ୍ଢା, ଘୁଷୁରି, ଘୋଡ଼ା, କୁକୁଡ଼ା ଇତ୍ୟାଦି ହରେକ ଜନ୍ତୁଙ୍କୁ ଦେଖିଲୁଁ । ତା'ଛଡ଼ା ଗୋଟାଏ ରୂପାବର୍ଣ୍ଣର କୋକିଶିଆଳି ଦେଖିଲୁଁ । ଅଣ୍ଡିରାଟା କେଉଁଠି ଭିତରେ ଶୋଇଥିଲା । ତାହା ସାଙ୍ଗରେ ସାକ୍ଷାତ୍ ହେଲା ନାହିଁ । ଏହି କୋକିଶିଆଳିର ଚମଡ଼ା ହେଉଛି ଅତି ଦାମିକା । ଗୋଟିଏ ଗୋଟିଏ କୋକିଶିଆଳି ଚମଡ଼ାର କୋଟ୍‌ର ଦାମ ଏକ ଲକ୍ଷ ଟଙ୍କାଯାଏ ହୋଇପାରେ । ପାରସ୍ୟର ସାହାଙ୍କର ଗାଦିନସିନ ବେଳେ ସୋଭିଏଟ୍ ରୁଷିଆରୁ ତାଙ୍କ ପାଇଁ ଏଭଳି ଗୋଟିଏ କୋଟ୍ ଉପହାର ଦିଆଯାଇଥିଲା । ଏହି ପ୍ରକାରର ପ୍ଲାଟିନମ୍ ଫକ୍‌ସ ବା ସିଲଭର ଫକ୍‌ସ (ରୂପା ବା ପ୍ଲାଟିନମ୍ କୋକିଶିଆଳି) ସାଧାରଣତଃ ମେରୁଦେଶର ଅର୍ଥାତ୍ ଶୀତପ୍ରଧାନ ଅଞ୍ଚଳର ବାସିନ୍ଦା । କିନ୍ତୁ ପରେ ମସ୍କୋ ସହରରେ ସୋଭିଏଟ୍ କୃଷି ବିଭାଗର ସ୍ଥାୟୀ ପ୍ରଦର୍ଶନୀରେ ଦେଖିଲୁଁ । ସୋଭିଏଟ୍ ଦେଶର ପ୍ରତ୍ୟେକ ଅଞ୍ଚଳ ଆପଣା ଆପଣା ପ୍ରଦର୍ଶନୀ ମଣ୍ଡପରେ ଅନ୍ତତଃ କୋଡ଼ିଏ ପଚିଶଟା ଯାଏ ଏଭଳି କୋକିଶିଆଳି ଚମଡ଼ା ଟାଙ୍ଗିଥିବାର ଦେଖିଥିଲୁଁ । ତେଣୁ ଏକଥା ସହଜରେ ଅନୁମାନ କରାଯାଇପାରେ ଯେ ସବୁ ଅଞ୍ଚଳର କୋଠଚ୍ଷୀମାନେ ଏଭଳି ଜନ୍ତୁ ପାଳିବା ଆରମ୍ଭ କଲେଣି ।

ଭାରତଛାଡ଼ି ଗଲାବେଳେ ଆମ୍ଭେମାନେ ସାଙ୍ଗରେ କୌଣସି ଉପହାର ଇତ୍ୟାଦି ନେଇ ନଥିଲୁ । ସେସବୁ ଅନ୍ୟ ବାଟରେ ଅନ୍ୟମାନେ ନେଇଯିବାର ଥାଏ । କେବଳ ମୋର ଦିଲ୍ଲୀ ପହଞ୍ଚିବାପରେ ପାରଳାଖେମୁଣ୍ଡିର ଶିଙ୍ଘ କାରିଗରଙ୍କର କୋ-ଅପରେଟିଭ୍ ଗୋଟିଏ ଉଡନ୍ତା ଶାନ୍ତି-କପୋତ ଦିଲ୍ଲୀଠାକୁ ପଠାଇ ଦେଇଥିଲେ । ତାଜିକ୍‌ସ୍ଥାନରେ ଯେତେବେଳେ ଆମ ପୁରୁଷ ପ୍ରତ୍ୟେକଙ୍କୁ ଗୋଟିଏ ଗୋଟିଏ ତାଜିକ୍ ସିଲ୍‌କ ଆଲଖାଲା ଏବଂ ତାଜିକ୍ ଟୋପି ଉପହାର ଦିଆଗଲା ଏବଂ ସ୍ତ୍ରୀଲୋକଙ୍କୁ ଖଣ୍ଡେ ଖଣ୍ଡେ ତାଜିକ୍ ସିଲ୍‌କ କନା ଶାଢ଼ୀ ମାନିଆ ଦିଆଗଲା, ସେତେବେଳେ ଆମ ତରଫରୁ ତାଜିକ୍‌ମାନଙ୍କୁ ଆମେ ସେହି ଶାନ୍ତି କପୋତଟି ଉପହାର ଦେଇଥିଲୁଁ । ଦିଲ୍ଲୀ ଛାଡ଼ିଲାବେଳେ କପୋତଟି ବିଶେଷ ଶାନ୍ତ ଦେଖାଯାଉ ନଥିଲା; କିନ୍ତୁ ଷ୍ଟାଲିନାବାଦ ଭିତରେ ପହଞ୍ଚିଲାପରେ

କପୋତଟି ଦେହରେ ଶାନ୍ତିର ପ୍ରଲେପ ବୋଲି ହୋଇଗଲା ପରି ଦିଶୁଥିଲା । ବୋଧହୁଏ ସେଠାରେ ହୃଷ୍ଟପୁଷ୍ଟ ଚେହେରା ସାଙ୍ଗରେ କପୋତର ଚେହେରା ବେଶ୍ ମିଳିଯାଉଥିଲା ।

କିନ୍ତୁ ଏହି କୋଠଘରରେ ଯେତେବେଳେ ଆମ୍ଭେମାନେ ପହଞ୍ଚିଲୁ, ସେତେବେଳେ ଆମର ଉପହାରର ଗୋଟିଏ ମାତ୍ର ସମ୍ବଳ ଭାରତର 'ଶାନ୍ତି' ବ୍ୟାଜ୍‌ଗୁଡ଼ିକ ଥାଏ । ଏଥିରୁ ପ୍ରାୟ ପାଞ୍ଚଶହଯାଏ ଆମେ ତିଆରି କରି ନେଇଥାଉଁ । ଏଗୁଡ଼ିକ କଳା ଏନାମେଲ୍ ଉପରେ ସୁନାବର୍ଣ୍ଣର ପକ୍ଷମେଲା କପୋତ ଚିହ୍ନଥିବା ଗୋଟିଏ ଗୋଟିଏ ଆଠଣି ଆକରର ଚକତି । ତାହାରି ଉପରେ ହିନ୍ଦୀରେ ଲେଖାଥାଏ 'ଶାନ୍ତି' । ସେଠାରେ ପରସ୍ପର ଆଳାପ-ପରିଚୟ ହେଲାପରେ ମୁଁ ଦେଖିଲି ଯେ କୋଠଘରର ଚେୟାରମ୍ୟାନ୍, ଏକାଉଣ୍ଟାଣ୍ଟ ଏବଂ ଅନ୍ୟାନ୍ୟ ମୁଖ୍ୟମାନଙ୍କୁ ଆମର ଭାରତୀୟ ଡେଲିଗେଟ୍‌ମାନେ ଗୋଟିଏ ଗୋଟିଏ ଶାନ୍ତି-ବ୍ୟାଜ୍ ପିନ୍ଧାଇଦେଲେ । ଯେଉଁଠାକୁ ଆମ୍ଭେମାନେ ବୁଲିବାକୁ ଗଲୁଁ, ସେଠାରେ କଳଲଙ୍ଗନ ଚାଳକ, ନର୍ସ, ଧାଈ, ଡାକ୍ତରାଣୀ, ଶିକ୍ଷୟତ୍ରୀ ସମସ୍ତଙ୍କର ବାମ ଛାତିରେ ଭାରତୀୟ 'ଶାନ୍ତି-ପଦକ' ଶୋଭା ପାଇଲା ।

ଏମିତି ଆମ୍ଭେମାନେ ଚାଲିଛୁ । ପ୍ରତ୍ୟେକଙ୍କ ପାଖରେ ଯେଉଁ ଚାରୋଟି ପାଞ୍ଚୋଟି ଲେଖା ଏଭଳି ବ୍ୟାଜ୍ ରଖିଥିଲୁ, ତାହା ପ୍ରାୟ ସରିଆସିଲାଣି । ଏପରି ଅବସ୍ଥାରେ ଆମେ ସେହି କୋଠଘରର ଲାଇବ୍ରେରୀରେ ପହଞ୍ଚିଲୁ । ଏଇଠି ରୁଷୀୟ, ଉଜବେକି, ତାଜିକ୍ ବହିସବୁ ହୋଇ ୩୦ ହଜାର ପର୍ଯ୍ୟନ୍ତ ଅଛି । ଲାଇବ୍ରେରୀ ଘରଟି ସେତେ ପ୍ରଶସ୍ତ ନୁହେଁ । ଲାଇବ୍ରେରୀ ହେବା ଉଦ୍ଦେଶ୍ୟରେ ଏ ଘର ଆଗରୁ ତୋଳାହୋଇଥିଲା ପରି ମନେ ହୁଏ ନାହିଁ । ଅବଶ୍ୟ ଲାଇବ୍ରେରୀ ହେଲାପରେ ଏ ଘରର କେତେକ ପରିବର୍ତ୍ତନ କରାଯାଇଛି । ଉଞ୍ଚା ଉଞ୍ଚା ପାହାଚ କରାଯାଇ ଘର ଉପରେ ବିଭିନ୍ନ ଜାଗାରେ ବହିପତ୍ରର ର୍ୟାକ୍ କରାଯାଇଛି ଏବଂ ପ୍ରତ୍ୟେକ ର୍ୟାକ୍ ପାଖରେ ବସିବାପାଇଁ ଜାଗା ଏବଂ ଟେବୁଲର ଆୟୋଜନ କରାଯାଇଛି । ଏତିକି ଅଳ୍ପ ଘରରେ ଏପରି ପ୍ରକାଣ୍ଡ ଲାଇବ୍ରେରୀ ରଖାଯାଇଛି ଯେ ଏହା ଗୋଟାଏ ଗୋଲକଧନ୍ଦାପରି ଦେଖାଯାଉଛି । କେଉଁଠି ଗର୍କି, ପୁଷ୍କିନ୍ ପ୍ରଭୃତି ସୋଭିଏଟ୍ ଦେଶର ଆଧୁନିକ ପ୍ରଧାନ ଲେଖକଙ୍କର ଥାକ ସରୁ ନ ସରୁଣୁ ମିଚ୍ୟୁରିନ୍, ପାଭଲଭ ଇତ୍ୟାଦି ବୈଜ୍ଞାନିକମାନଙ୍କର ଚିନ୍ତାର କୃତି ଆରମ୍ଭ ହୋଇଯାଇଛି । ଏହି ଲାଇବ୍ରେରୀ ଭିତରେ କେବଳ ପାଠପଢ଼ା ଚଳିବ ନାହିଁ; ଏଠି ରୀତିମତ ଲୁଚକାଳି ଖେଳ ଖେଳାଯାଇପାରିବ ।

ଯେଉଁମାନେ ଏଭଳି ପୋଥିପତ୍ରର ଗୋଲକଧନ୍ଦାକୁ ଯିବାକୁ ପସନ୍ଦ ନକଲେ, ସେମାନେ କୌଣସି ଗୋଟାଏ ଉପଲକ୍ଷ ନେଇ ଦୁଆରମୁହଁରେ ରହିଗଲେ; କିନ୍ତୁ ମୁଁ ଏଇ ଲାଇବ୍ରେରୀ ଭିତରେ ପଶି ସବୁ ତନ୍ନତନ୍ନ କରି ଦେଖିଲି । ବହିତକ ଯେଉଁ ଭାଷାରେ

ଲେଖା, ତାହା ପଢ଼ିବାକୁ ମୁଁ ଭୂରିଶ୍ରବା । ତେଣୁ କେବଳ ବହି ଦେଖୁ ନଥିଲି, ମୁଁ ଜାଣିବାକୁ ଚାହୁଁଥିଲି କେତେ ଲୋକ କୋଠଘର ଭିତରୁ ପୋଥିପତ୍ର ନେଇ ପଢୁଛନ୍ତି ।

ବହିପତ୍ର ପଢ଼ାଳିଙ୍କ ସଂଖ୍ୟା ଦେଖି ବେଶି ଆଶ୍ଚର୍ଯ୍ୟ ହେଲି । ବିଜ୍ଞାନ, ବୈଷୟିକ ବିଦ୍ୟା, କୃଷି, ଶିଳ୍ପ, କଳକବ୍ଜା ବିଷୟକ ବହିପତ୍ର ଛାଡ଼ିଦେଲେ କବିତା, ଉପନ୍ୟାସ, ପ୍ରାଚୀନ ସାହିତ୍ୟ, ଫିରଦୁସୀ, ଓମାରଖାଏମ୍ ପ୍ରଭୃତି ପଢ଼ାଳିଙ୍କର ସଂଖ୍ୟା ମଧ୍ୟ ଏଠାରେ କମ୍ ନଥିଲା । ଏହାପରେ ଗୋଟିଏ ଯୋଡ଼ିଏ ଚାଷୀଙ୍କ ଘରକୁ ମଧ୍ୟ ଆମେ ଯାଇଛୁ । ଘରଗୁଡ଼ିକ ବାହାରକୁ ଦେଖିବାକୁ ଅପରିଚ୍ଛନିଆ । କୁକୁଡ଼ା ମଞ୍ଚା ଏବଂ ଘୁଷୁରି ଘର ଯୋଗୁଁ ଗୋଟାଏ ଘରର ବଗିଚା ପାଖରେ ମଧ୍ୟ ଖୁବ୍ ପ୍ରୀତିକର ଗନ୍ଧ ହେଉ ନଥିଲା । ଘରଗୁଡ଼ିକ କାଶ୍ମୀର ବା ପଞ୍ଜାବ ବା ସୀମାନ୍ତ ମଫସଲର ମୁସଲମାନ ଘରଭଳି ବାହାରକୁ ଦିଶୁଥାଆନ୍ତି । ଘରର ଚାରିପଟେ ଗବଗଛ ଆଉ ବାବୁଲଲଟାର ବାଡ଼ଘେରା ହୋଇ ଅଧ ଏକରର ଖଣ୍ଡେ ଖଣ୍ଡେ ବଗିଚାରେ ପନିପରିବା ଲାଗିଥାଏ । କିନ୍ତୁ ଏତେ ବଡ଼ ବଗିଚାକୁ ଘରଟିମାନ ଆଦୌ ମାନୁ ନଥାଏ । ତା ଭିତରେ ଗାଲିଚା, ରେଡ଼ିଓ, ବିଜୁଳି, ରନ୍ଧନଶାଳା ଇତ୍ୟାଦି ଦେଖି ଆଶ୍ଚର୍ଯ୍ୟ ହେଲୁ । ଘରଗୁଡ଼ିକ ବଡ଼ ଛୋଟ ଅଣଓସାରିଆ ଆଉ ଅନ୍ଧାରିଆ; କିନ୍ତୁ ବିଜୁଳି ଆଲୁଅ ଟିପି ଦେଇ ଚାହିଁଲି, କାନ୍ଥରେ ଲେଲିନ୍ ଆଉ ଗର୍କିଙ୍କର ଛବି ଝୁଲୁଛି; ଆଉ ତଳୁ ଅଣ୍ଟା ଉଞ୍ଚାଯାଏ ନୀଚ ର୍ୟାକ୍‌ରେ ନାନାପ୍ରକାର ବହି ଥୁଆହୋଇଛି ।

ସୋଭିଏଟ ଭୂମିରେ ପଶିବାପରଠାରୁ ମୁଁ ଏଠାର ମଣିଷକୁ ସନ୍ଧାନ କରିବାକୁ ଚେଷ୍ଟା କରିଛି । ସେ କ'ଣ ଭାବୁଛି, କ'ଣ ପଢୁଛି, କ'ଣ ତାର ଆକାଂକ୍ଷା ? ଭବିଷ୍ୟତର ବେପରବାୟ ସୁଖରେ ବିଭୋର ହୋଇ ସେ ଏକାବେଳକେ ନିଶ୍ଚିତ ହୋଇଯାଉ ନାହିଁ ତ ! ତେଣୁ ସେଠାରେ କଳକବ୍ଜା ଆଉ ବିରାଟ ଉନ୍ନତିକର ଯୋଜନା ପ୍ରତି ମୁଁ ମୁଖ୍ୟ ଦୃଷ୍ଟି ଦେଇ ନଥିଲି । କାରଣ ସେସବୁ ମୋର ଦେଢ଼ମାସ ରହଣି ଭିତରେ ଧାରଣା କରିବା ଅସମ୍ଭବ । ଆଉ ସେସବୁ ବିଷୟରେ ପ୍ରତିଦିନ ଏତେ ଲେଖା ପ୍ରକାଶ ପାଉଛି, ଏତେ ହିସାବ, ଏତେ ତଥ୍ୟ ଯେ ମୁଁ ତାକୁ ଦେଖି ଆଉ ଅଧିକ ଗୁଡ଼ାଏ କ'ଣ କରନ୍ତି ?

ତେଣୁ ମୋ ଭଳି ଏକ ବିଚିତ୍ର ଦର୍ଶକକୁ ଦେଖି ବୋଧହୁଏ ତରୁଣୀ ଲାଇବ୍ରେରୀଆନ୍ ଟିକିଏ କୌତୂହଳୀ ହୋଇଥିବେ । ଆଗରୁ କହିଛି, ତାଜିକ୍ ତରୁଣୀ ସାଧାରଣତଃ ରୁଷୀୟ ବା ୟୁକ୍ରେନୀୟ ସାଇବାଣୀଙ୍କ ଭଳି ଏତେ ଫରଓ୍ୟାର୍ଡ ନୁହନ୍ତି । ଏହି ଲାଇବ୍ରେରୀଆନ୍ କେବଳ ଫରଓ୍ୟାର୍ଡ ତ ମୋଟେ ନଥିଲେ, ବଡ଼ ଲାଜକୁଳୀ ମଧ୍ୟ ଥିଲେ । ଅବଶ୍ୟ ଦୋ'ଭାଷୀଙ୍କର ପ୍ରତ୍ୟେକ ପ୍ରଶ୍ନର ଉତ୍ତର ଦେବାରେ ତାଙ୍କର ଟିକିଏ

ମାତ୍ର ସଙ୍କୋଚ ନଥିଲା । ତାଙ୍କର ବୟସ ୨୦ ବର୍ଷରୁ ନିଶ୍ଚୟ କମ୍ ହେବ; କିନ୍ତୁ ମୋର ମନେ ହେଲା, ଲାଇବ୍ରେରୀରେ କେତେ ଲୋକ ପଢ଼ନ୍ତି, କେତେ ବହି ଘରକୁ ନିଅନ୍ତି, କେଉଁ ପ୍ରକାର ବହିର ଚାହିଦା ବେଶି, କେଉଁ କେଉଁ ବୟସର ଲୋକଙ୍କର କେଉଁ କେଉଁ ବହିର ଚାହିଦା ବେଶୀ, ଏ ପ୍ରକାରର ନାନା ଖୁଣ୍ଟିନାଣ୍ଟି ପ୍ରଶ୍ନଗୁଡ଼ିକୁ ସେ ଉତ୍ତର କଲାବେଳେ ଯେପରି ଆଇ.ଏ.ଏସ୍. ପରୀକ୍ଷାରେ ଭାଇବାଭୋସ ପ୍ରଶ୍ନର ଉତ୍ତର କରୁଛନ୍ତି, ସେପରି ଖୁବ୍ ଅନର୍ଗଳ କହିଯାଉଥାଆନ୍ତି । ଖୁବ୍ ସଂଯତ, ସମ୍ଭ୍ରାନ୍ତ, ସୁମିଷ୍ଟ ତାଙ୍କର ଚେହେରା । ତାଜିକିସ୍ଥାନରେ ତାଙ୍କଠାରୁ ଅଧିକ ସୁନ୍ଦରୀ ମୁଁ ଦେଖିଛି । କିନ୍ତୁ ତାଙ୍କର ବୁଦ୍ଧିଦୀପ୍ତ ମୁଖମଣ୍ଡଳର ଶ୍ରୀ ଭଳି ଖୁବ୍ କ୍ୱଚିତ୍ କୌଣସି ଯୁବତୀଙ୍କର ମୁଖମଣ୍ଡଳ ମୋର ଆଖିରେ ପଡ଼ିଛି ।

ବାହାରେ ମୋର ବନ୍ଧୁମାନେ ସେତେବେଳକୁ ବଡ଼ ବ୍ୟସ୍ତ ହେଲେଣି । ଖାଇବାର ଡାକରା ଆସିଲାଣି । ସେ ଦିନ ଖାଇବା ବି ଡେରି ହୋଇଗଲାଣି । ପ୍ରାୟ ତିନିଟା ବେଳ । ପ୍ରସୂତିଘର, କିଣ୍ଡରଗାର୍ଟେନ ଆଉ ଏଇ ଲାଇବ୍ରେରୀ; ଏହି ତିନୋଟି ଦେଖିବାକୁ ଇଚ୍ଛା କରି ଆମେ ଦୁଇଟାବେଳୁ ସମୟ ଘୋଷାରି ଘୋଷାରି ଚାଲିଛୁଁ । ମୁଁ ଲକ୍ଷ୍ୟ କଲି, ମୋର ପ୍ରଶ୍ନ ଉତ୍ତର କଲାବେଳେ ଅଳ୍ପ ଲାଜଲାଜ କରି ଯୁବତୀ ଜଣକ ବେଳେବେଳେ ମୋର ବାଁ ଛାତିଆଡ଼େ ଚାହୁଁଛନ୍ତି । ମୁଁ ପ୍ରଥମେ କିଛି ଠଉରାଇପାରିଲି ନାହିଁ । ପରେ ଜାଣିପାରିଲି, ମୋର ଛାତିରେ ଯେଉଁ ବ୍ୟାଜ୍‌ଟି ଅଛି, ତାହାକୁ ଲକ୍ଷ୍ୟ କରୁଛନ୍ତି ଏବଂ ବଡ଼ ପିପାସିତାଭାବରେ ଚାହିଁଛନ୍ତି ।

ମୁଁ ଗୋଟାଏ ଭାରତୀୟ ବ୍ୟାଜ୍ ଛାତିରେ ପିନ୍ଧିଛି, ଏକଥା ମୋର ଖିଆଲରେ ଆଦୌ ନଥିଲା । ମୁଁ ଅତି ତରବରରେ ବ୍ୟାଜ୍‌ଟିକୁ ଖୋଲି ତାଙ୍କ ହାତକୁ ବଢ଼ାଇଦେଲି । ଦେଖିଲି, ସେ ପ୍ରଥମେ ହିନ୍ଦୀରେ ଲେଖାଥିବା 'ଶାନ୍ତି' ଅକ୍ଷର ଦୁଇଟି ପଢ଼ିନେଲେ । ଜାଣିପାରିଲି ସେ ହିନ୍ଦୀ ଶିଖୁଛନ୍ତି । ତେଣୁ ପ୍ରଥମ ଶିଖାଳି ଯେପରି ଉତ୍ସୁକ ଭାବରେ ଯେ କୌଣସି ଅକ୍ଷର ପାଇଲେ ପଢ଼ିନିଏ, ସେପରି ସେ ତାହା ପଢ଼ିନେଲେ । ତା'ପରେ କହିଲେ, 'ଶାନ୍ତି' 'ମିର୍' (ରୁଷ୍ ଭାଷାରେ ମିର୍‌ର ଅର୍ଥ ଶାନ୍ତି) । ଏତିକି କହି ସେ ମୋ ହାତକୁ ବ୍ୟାଜ୍‌ଟି ବଢ଼ାଇଦେଲେ । କିନ୍ତୁ ମୁଁ ତାଙ୍କୁ ସେଇଟା ପିନ୍ଧିବାକୁ ଦେଇଥିଲି । ଦୋ'ଭାଷୀଙ୍କୁ କହିଲି, "ଏଇଟା ତାଙ୍କର ବୋଲି ତାଙ୍କୁ କହିଦିଅ ।" ଏକଥା ବୁଝିଲାପରେ ଆନନ୍ଦ ଏବଂ କୃତଜ୍ଞତାରେ ତାଙ୍କର ମୁଖମଣ୍ଡଳ ପ୍ରସନ୍ନ, ସତେଜ ହୋଇଉଠିଲା । ରମଣୀସୁଲଭ ଲଜ୍ଜାର ଅରୁଣିମା ମଧ୍ୟ ମୁହଁରେ ବୋଳିହୋଇଗଲା ବୋଧହୁଏ । ପରେ ଲକ୍ଷ୍ୟ କଲି, ସେ ଆପେ ଆପଣାର ବ୍ଲାଉଜ୍ ଉପରେ ତାହାକୁ ପିନ୍ଧିସାରିଛନ୍ତି ।

ଏଇଠି ଖାଦ୍ୟପଦାର୍ଥରେ ତାଜିକିସ୍ଥାନର ଜାତୀୟ ପରମ୍ପରା ଥିଲା । ଆଉ ଏଇଠି

କଳା ବାଜରାର ବା ଗହମର ପାଉଁରୁଟି ବେଶି ଦେଖିଲି ନାହିଁ । କାଠଛତୁ ଭଳି ବଡ଼ ବଡ଼ ଫଡ଼ା ବିରାଟ ବିରାଟ ସାଦା ରୁଟି ଗୋଟାଏ ଗୋଟାଏ ପ୍ରକାଣ୍ଡ ଥାଳିପଟ ପରି ଟେବଲ ଉପରେ ଥୁଆ ହୋଇଥାଏ । ଏହି ରୁଟିକୁ କୌଣସି ପ୍ଲେଟ୍ ଇତ୍ୟାଦିରେ ରଖାଯାଏ ନାହିଁ । ଟେବଲରେ ବିଛା ହୋଇଥିବା ଶୁଭ୍ର ଆବରଣ ଉପରେ ଏଗୁଡ଼ିକ ଥୁଆ ହୋଇଥାଏ । ପ୍ରଥମେ ପ୍ରଧାନ ସତ୍କାରକ ଏଥିରୁ ଖଣ୍ଡିଏ ଖଣ୍ଡିଏ ଛିଣ୍ଡାଇ ଅତିଥିମାନଙ୍କୁ ବାଣ୍ଟିଦେଲେ, ତା'ପରେ ଖାଇବା ଆରମ୍ଭ ହେଲା ।

ଖାଇବାରେ ବେଶି ପରିମାଣରେ କୁକୁଡ଼ା ମାଂସ ଆଉ ପଲାଉ । କବାବ୍‌ଗୁଡ଼ିକ ମଧ୍ଯ ଏମାନେ ବାଁ ହାତର ଆଙ୍ଗୁଠି ଲଗାଇ ଧରି ଖାଆନ୍ତି । ମୁରଗୀର ଗୋଡ଼ଗୁଡ଼ିକ ମଧ୍ୟ ବାଁ ହାତରେ ଧରି ଖାଆନ୍ତି । ଖାଇବା ପିଇବାରେ ହାତର ଅକୁଣ୍ଠ ବ୍ୟବହାର ଦେଖି ଭାରତବର୍ଷରେ ଥିଲାପରି ଲାଗିଲା । ଖାଦ୍ୟପଦାର୍ଥର ବିଶେଷତ୍ୱ ହେଉଛି ପ୍ରଚୁରତା । ସବୁ ଜିନିଷକୁ ଏତେ ପରିମାଣ ବଢ଼ାଯାଇଥାଏ ଯେ ତାହା ନ ଦେଖିଲେ କଳ୍ପନା କରିହେବ ନାହିଁ । ଆଉ ଖାଇବା ଟେବଲ ଉପରେ ଟିକିଏ ଅନୁରୋଧ କରିବାମାତ୍ରେ ଅନର୍ଗଳ ସମବେତ ସଙ୍ଗୀତର ଝରଣା ଛୁଟିଥିଲା ।

ଖାଇସାରିବାପରେ କୋଠଗ୍ରାମର ଗୋଟିଏ ଡିପାର୍ଟମେଣ୍ଟାଲ ଷ୍ଟୋର ଦେଖିବାକୁ ଯାଇଥିଲୁଁ । ଏହା ପ୍ରାୟ ପନ୍ଦର ଦିନ ହେଲା ଖୋଲିଛି । ସାବୁନ, ବ୍ଲେଡ୍, ପାଉଡର, ଲୁଗାପଟା, ଟର୍ଚ୍ଚଲାଇଟ୍, ଗ୍ରାମୋଫୋନ୍, ବାଇସାଇକେଲ, ସିଲେଇକଳ ଇତ୍ୟାଦି ହରେକ ଜିନିସ ଏହି ଷ୍ଟୋରରେ ଦେଖିଲୁ । ଷ୍ଟୋର ସଜାଇବା ଏବଂ ଜିନିଷପତ୍ର ଥୋଇବାରେ ସାଧାରଣ ଦୋକାନ ସାଜସଜ୍ଜାର ପରିପାଟୀ ଦେଖିଲୁ ନାହିଁ । ଯେପରି ଜଣେ ନୂଆ ଦୋକାନୀ ଏବେ ଦୋକାନ ଖୋଲିଛି; ଏପରି ମନେ ହେଲା । ଜିନିଷପତ୍ରଗୁଡ଼ିକରେ ସେପରି ଦର୍ଶନୀୟ କିଛି ନଥିଲା ।

ବିଦାୟ ନେଇ ଆମ୍ଭମାନଙ୍କର ମୋଟରଗାଡ଼ିକୁ ଫେରୁଥାଉ । କୋଠଗ୍ରାମର ନରନାରୀ, ବାଳକବାଳିକା ଆମକୁ 'ଦଶବିଦାନିୟା' ବୋଲି କହି ବିଦାୟ ଦେଉଥାଆନ୍ତି । ଏତିକିବେଳେ ଦେଖିଲି ଲାଇବ୍ରେରୀଆନ୍ ତରୁଣୀ ଜଣକ ଆପଣାର ହାତରେ କ'ଣ ଖଣ୍ଡିଏ ଧରି ଛିଡ଼ା ହୋଇଛନ୍ତି । ମୋତେ ଦେଖି ତାଙ୍କର ପାଦ ଆଗକୁ ବଢ଼ାଉଛନ୍ତି; ପୁଣି ସଙ୍କୋଚରେ ପଛରେ ରହିଯାଉଛନ୍ତି । ଶେଷରେ ମୋଟର ଛାଡ଼ିଲାବେଳକୁ ସେ ଆସି ମୋ ପାଖରେ ଛିଡ଼ା ହେଲେ । ତାଙ୍କ ହାତରେ ଖଣ୍ଡିଏ ବହି ।

ବହିଟି ରୁଷୀୟ ଭାଷାରେ ଲେଖା । ଲାଇବ୍ରେରୀଆନ୍ କେବଳ ଲାଇବ୍ରେରୀଆନ୍ ନୁହନ୍ତି, ସେଠାର ଦଶବର୍ଷିଆ ସ୍କୁଲର ରୁଷୀୟ ଭାଷାର ଶିକ୍ଷୟିତ୍ରୀ । ମୋତେ ସେ

ବହିଖଣ୍ଡି ବଢ଼ାଇଦେଲେ । ଦୋ' ଭାଷୀ ହସି ହସି କହିଲେ, "ଏଇଟି ଆପଣଙ୍କୁ ସ୍ମାରକସ୍ୱରୂପ ସେ ଦେଉଛନ୍ତି ।" ମୁଁ ସେଥିରେ ତାଙ୍କର ନାମ ଲେଖିଦେବାକୁ ଅନୁରୋଧ କଲି । ସେ ତାଙ୍କର ନାମ ଲେଖୁଁ ନ ଲେଖୁଁଣୁ ଶହ ଶହ ବିଦାୟସୂଚକ ହସ୍ତସଙ୍କେତ ପାରିହୋଇ ଆମର ମୋଟର ଗାଡ଼ି ଛୁଟିଲା । ତରୁଣୀଙ୍କର ନାମ ଭ୍ୟାଲେଣ୍ଟିନା ।

ବହିଟି ଏବେ ମଧ୍ୟ ମୋ ପାଖରେ ସ୍ମାରକସ୍ୱରୂପ ରହିଛି । ବହିଟି ପାଇଲାପରେ ମୁଁ ଦୋ'ଭାଷୀଙ୍କୁ କହିଥିଲି, "ତାଙ୍କୁ କହନ୍ତୁ, ମୁଁ ନିଶ୍ଚୟ ରୁଷ ଭାଷା ଶିକ୍ଷା କରି ବହିଟି ପଢ଼ିବି ।" କିନ୍ତୁ ରୁଷଭାଷା ଏ ପର୍ଯ୍ୟନ୍ତ ଶିଖି ନାହିଁ; କେବଳ ବହିଟିର ନାମ ପଢ଼ିପାରିଛି । ଓଡ଼ିଆରେ ତା'ର ଅର୍ଥ ହେଉଛି 'ମିତ୍ରତା' । ସୋଭିଏଟ୍ ଦେଶରେ ଜଣେ ପ୍ରଧାନ ଲେଖକଙ୍କର ଲେଖା ଏହି ଉପନ୍ୟାସଟି । କେବେ ଏହାକୁ ପଢ଼ିପାରିବି, ତାହା ଏପର୍ଯ୍ୟନ୍ତ ଜାଣେ ନାହିଁ ।

ତା'ର ବାସିଦିନ ଭୋର୍‌ରେ ଆମ୍ଭେମାନେ ଷ୍ଟାଲିନାବାଦ ବିମାନ ବନ୍ଦର ସକାଳ ୭ ଟା (ସାଡେ ସାତଟା) ବେଳେ ଛାଡ଼ିଲୁ । ଟିକିଏ କୁହୁଡ଼ିଆ ପାଗ ହୋଇଥାଏ । ଯେଉଁ ଏରୋପ୍ଲେନ ଆମକୁ କାବୁଲଠାରୁ ଆଣିଥିଲା, ସେହି ଏରୋପ୍ଲେନ୍‌ରେ ସେହି ପୂର୍ବପରିଚିତା ପରିଚର୍ଯ୍ୟାକାରିଣୀ (Air Hostess) ଆମ୍ଭମାନଙ୍କୁ ସ୍ୱାଗତ କରି ଘେନିଗଲେ । ଧୀରେ ଧୀରେ ହିନ୍ଦୁକୁଶର କୁହୁଡ଼ିଘେରା ଶିଖରୀ ଉପରେ ସୂର୍ଯ୍ୟକିରଣର ପହିଲି ପରଶ ବୋଳିହୋଇ ଆସୁଥାଏ । ଜୁନ୍ ମାସ ୧୫, ୧୬, ୧୭– ତିନୋଟି ଦିନ ଏଇଠି ତିନୋଟି ମୁହୂର୍ତ୍ତ ପରି କଟିଗଲା । ଲାଲ ତାଜିକ୍‌ମାଟିର ଶହ ଶହ ଲୋକଙ୍କର ମନ୍ତ୍ରୀ, ସଭାପତି, ନୃତ୍ୟତାରକା, ଏକାଡେମିସିଆନ୍, କୋଠଘ୍ୱଷୀ ଏବଂ ମୋର ପରିଚିତା ସେଇ ଲାଇବ୍ରେରୀଆନ୍‌ଙ୍କର ବିଦାୟସୂଚକ ନମସ୍କାର ଏବଂ ହସ୍ତସଙ୍କେତ ଧୀରେ ଧୀରେ ଅପସରିଗଲା ।

ଆମେ ଜୁନ ୧୮ ତାରିଖରେ ସୋଭିଏଟ୍ ରାଜଧାନୀ ମସ୍କୋ ଆଡ଼କୁ ଗ୍ଭଲିଲୁ । ମୁହୂର୍ତ୍ତକ ମଧ୍ୟରେ ପାଉଁଶିଆ ଆକାଶର ବିରାଟ ଶୂନ୍ୟତା ଆମର ଉଡ଼ାଜାହାଜକୁ ଘେରିଗଲା ।

- ୦ -

# ସମରକନ୍ଦରେ ଗୋଟିଏ ଦିନ

ଜୁନ ମାସର ଅଠର ତାରିଖ । ଷ୍ଟାଲିନାବାଦ ଛାଡ଼ି ଆମ ଉଡ଼ାଜାହାଜ ଛୁଟିଛି ହେଲିସିଙ୍କି ଅଭିମୁଖରେ ।

ତଳେ ମଧ୍ୟାହ୍ନର ଉଜ୍ଜ୍ୱଳ ସୂର୍ଯ୍ୟାଲୋକ । ଶ୍ୟାମଳ ଉଦ୍ୟାନ ଭୂମି ଭିତରେ ଗୋଟିଏ ନ୍ୟାୟବଳ ଖେଳର ରାଜା-ରାଣୀପରି ଦିଶୁଥିଲେ ସମରକନ୍ଦର ତୁଙ୍ଗ ମୀନାର । ଅଳତାରେଖାପରି ରାସ୍ତା ଉପରେ ଦିଆସିଲି ପେଡ଼ିପରି ଦିଶୁଥିଲେ ମୋଟର ଗାଡ଼ି ଆଉ ଟ୍ରକ୍ । ଆମେ ବାରଜଣ ଶାନ୍ତି-ପଥିକଙ୍କର ଆଖି ଆଗରୁ ଉଲ୍‌କା-ଗତିରେ ଏହି ସ୍ୱପ୍ନିଳ ରାଜ୍ୟ ଉଭେଇଯାଇଥିଲା ।

ସେତେବେଳେ ଆଶା ବାନ୍ଧିଥିଲି, ଆଉ ଥରେ ଏଇଠାକୁ ଫେରିବି । ସମରକନ୍ଦ ମୋତେ ଏପରି ଏଡ଼ାଇ ଦେଇପାରିବ ନାହିଁ । ବାରମ୍ବାର ମୋର ସ୍ମୃତିରେ ଉଦିତ ହେଉଥାଏ, "You who with song beguile us" (ତୁମେ ଯିଏ ଆମକୁ ସଙ୍ଗୀତରେ ଭୋଳ କରିଥିଲ) ।

ଠିକ୍ ଏକ ମାସପରେ ମୁଁ ଫେରିଲି । ଏଥରକ ଆମେ ବାରଜଣ ନଥିଲୁ – ଥିଲୁ ଚାଳିଶ ଜଣ । ଭାରତର ବିଭିନ୍ନ ଭାଷା ଭାଷୀ ଆସାମ, ଆନ୍ଧ୍ର, ଓଡ଼ିଆ, ବଙ୍ଗାଳୀ, ଗୁଜରାଟୀ, ମହାରାଷ୍ଟ୍ରୀ, ପଞ୍ଜାବୀ । ସେଥର ଗୋଟିଏ ବିମାନ ଆମକୁ ସମରକନ୍ଦ ଉପରେ ଘେନିଯାଇଥିଲା; ଏଥରକ ଚାରୋଟି ବିମାନ ଏବଂ ଅଧଡ଼ଜନ ଦୋ'ଭାଷୀ ଓ ତ୍ରିଭାଷୀ ସଙ୍ଗରେ ଘେନି ଆମ୍ଭେମାନେ ଫେରୁଛୁ ।

ପୁଣି ଅତର୍କିତଭାବରେ ମାୟାବୀ ସ୍ମୃତିରେ ଭାସିଉଠୁଥାଏ "'Golden Journey to Samarkand' । ଏସିଆ ଇତିହାସର ଏହି ଛବିଳ ରାଜଧାନୀ ସମରକନ୍ଦ । ଦିଗ୍‌ବିଜୟୀ ଆଲେକ୍‌ଜାଣ୍ଡାରଙ୍କ ସେନାନୀ ଏଇଠି ମାନବଶିଶୁର କର୍ମଚଞ୍ଚଳ ମାଟିକୁଟୀରରେ ଅଗ୍ନି ସଂଯୋଗ କରି ଆପଣା ଆପଣା ତମ୍ବୁରେ ଦିଆଲି-ଉତ୍ସବ କରିଥିଲେ ଆଜକୁ ପ୍ରାୟ ଅଢ଼େଇ ହଜାର ବର୍ଷ ତଳେ । ଦିନେ ଏହି ନଗରୀର ଉପକଣ୍ଠରେ ଚୀନ ଦେଶରୁ ରେଶମ ବହିଆଣୁଥିବା କାରାଭାନର ମୁଖର ଘଣ୍ଟି ରଣିତ ହୋଇଥିଲା । ଇତିହାସର କେଉଁ ଗହୀର ଗହନ ଭିତରୁ ଏହି ନଗରୀ ଆପଣାର ବହୁ ମାନ, ଅପମାନ, ଗୌରବ ଓ କାଳିମାର ବୋଝ ବୋହି ଚାଲିଛି । ସେ ଏହି ସମରକନ୍ଦ !

ସୋଭିଏଟ୍ ଦେଶରେ ବହୁ ନଗରୀର ନାମ ପରିବର୍ତ୍ତନ ହୋଇଯାଇଛି । ସେଣ୍ଟପିଟରସ୍‌ବ୍ରାଡ୍ ହୋଇଛି ପେଟ୍ରୋଗ୍ରାଡ୍, ତା'ପରେ ହୋଇଛି ଲେନିନଗ୍ରାଡ୍ । ଆଜିର ସୋଭିଏଟ୍ ଜନତା ଯେଉଁ ନୂଆ ମାନଚିତ୍ର ଆଙ୍କିଛି, ସେହି ମାନଚିତ୍ରରେ ସେ ଗର୍ବଭରେ ଆପଣାର ପ୍ରିୟତମ ନେତା, ବୀର, ଶିଳ୍ପୀ, ଲେଖକମାନଙ୍କର ସ୍ମୃତିକୁ ସଙ୍ଗାଳି କରି ରଖିଛି – ଲେନିନ୍, ଷ୍ଟାଲିନ୍, (ସ୍ମରଣ ଥାଉ, ଏ ଲେଖା ୧୯୫୬ ମସିହାର) ଗର୍କି, ମାୟାକୋଭସ୍କି, କାଲିଲିନ୍ । କେବଳ ସୋଭିଏଟ୍ ଯୁଗର ନୁହେଁ, ସୋଭିଏଟ୍ ପୂର୍ବର ସୁବରୋଭୋ ସୁସାସିନୋ, ପୁଗାଚେଭଙ୍କର ନାମ ମଧ୍ୟ ଜୀବନ୍ତ ହୋଇଯାଇଛି । ସୋଭିଏଟ୍ ବିଜ୍ଞାନୀ ଏବଂ ଆବିଷ୍କାରକମାନଙ୍କ ନାମରେ ମଧ୍ୟ ପାଭଲୋଭୋ ମିଚୁରିନ୍‌ସ୍କ ନାମିତ ହୋଇଛି । କିନ୍ତୁ ନୂଆ ନାମ ନେଇ ନାହାନ୍ତି କେତୋଟି ନଗରୀ ମସ୍କୋ, କିଭ୍, ରାଜକ୍ ଆଉ ସମରକନ୍ଦ । ଅତୀତର ମହାନ୍ ସ୍ମୃତିରେ ଉଦ୍ଦୀପିତ ଏହି ନଗରୀମାନଙ୍କର ନାମ କାଳବକ୍ଷରେ ଖୋଦିତ ହୋଇରହିଛି । ସୋଭିଏଟ୍ ନରନାରୀ ଏହା ଜାଣିଶୁଣି ରକ୍ଷା କରିଛନ୍ତି ।

ସୋଭିଏଟ୍ ଦେଶର ସୀମା ଭିତରେ ଥିବା ଏହି ଇତିହାସର ପୁରାଣ ରାଜଧାନୀ ସମରକନ୍ଦ । ଯାର ଚାରିପାଖରେ ନୂତନ ଜୀବନବନ୍ୟାର ପ୍ଲାବନ । ଆଗର ଭାରବାହୀ କାରାଭାନର କଣ୍ଠରୁ ରଣିତ କିଙ୍କିଣୀର ନାଦ କେଉଁ ଦୂର ଅତୀତର ପବନରେ ମିଶିଯାଇଛି; ଆସିଛି ନୂତନ ଆସ୍‌ଫାଲଟ୍ ଆଉ କଙ୍କ୍ରିଟର ପଥ, ଆସିଛି ମଟର ଗାଡ଼ି ଆଉ ଟ୍ରକ୍ । ପୁରୁଣା କାଠରେ ଶିଉଳିପରି ମଧ୍ୟଏସିଆର ବିରାଟ ମରୁଭୂମିରେ ଯେଉଁ କେତୋଟି ମରୁଦ୍ୱୀପ ଥିଲେ ତାସକନ୍ଦ, ସମରକନ୍ଦ, ଖିଭା– ଆଜି ସେମାନେ ଜନାକୀର୍ଣ୍ଣ ସହର ।

ରୂପକଥାର ଜେମା ଶିରୀନ୍‌ର ମନୋହର ଦୁର୍ଗ ଯେଉଁଠି ଥିଲା, ଯେଉଁଠି ମୋଗଲଟାଉ ପାହାଡ଼ର ଅତଟରୁ ସିରିଦରିଆ ନଦୀର ଚଞ୍ଚଳ ଧାରା ତୃଷିତ ମରୁଭୂମି ଆଡ଼କୁ ଦୃଷ୍ଟି ନ ଫେରାଇ ଆପଣାର ଖିଆଲରେ ଖସି ବାହାରିଯାଇଥିଲା, ସେଇଠି ଆଜି ଫରହାଦ୍ ଜଳବିଦ୍ୟୁତ୍ ଯୋଜନା ମୁଣ୍ଡ ଟେକିଛି । ଅବିସ୍ମରଣୀୟ ପ୍ରଣୟୀ ଫରହାଦ୍ ଏଇଠି ଆପଣାର ହତାଶା ଗ୍ଲାନିରେ ପ୍ରାଣ ହରାଇଥିଲେ । ଶିରୀନ୍ ପଣ କରିଥିଲା– ଯେଉଁ ବୀର ପୁରୁଷ ସିରିଦରିଆର ପାଣିରେ ମରୁଭୂମିର ତୃଷା ମେଣ୍ଟାଇପାରିବ, ସେ ହିଁ ତା'ର ସ୍ୱାମୀ ହେବ । ପ୍ରଣୟିନୀର ପଣ ରକ୍ଷା କରିବାକୁ, ତାହାର ପାଣି ଲାଭ କରିବାକୁ ଫରହାଦ୍ ସିରିଦରିଆର ନିଠୁର ଧାରାକୁ ତୃଷିତ ମରୁଭୂମିରେ ବୁହାଇଦେବାଲାଗି ପାହାଡ଼ ଆଡ଼େଇଥିଲେ, ପାଷାଣର ବକ୍ଷ ଆପଣାର ପେଶୀଳ ବାହୁର ଶକ୍ତିରେ ବିଦୀର୍ଣ୍ଣ କରିଥିଲେ ।

କିନ୍ତୁ ହାୟ ! ଜଣେ ପ୍ରତିଦ୍ୱନ୍ଦ୍ୱୀ ପ୍ରତାରଣାରେ ଶିରୀନ୍‌ଙ୍କ ମନରେ ଭ୍ରାନ୍ତି ଜନ୍ମାଇପାରିଲା ଯେ ସେ ସେହି ମରୁଭୂମିକୁ ଜଳସେଚିତ କରିଛି । ସରଳା ଶିରୀନ୍ ତାହାକୁ ଅଗତ୍ୟା ବିଭା ହେଲେ । ବୀର ଫର୍‌ହାଜ୍ ଯେଉଁ ଖଣତିରେ ପର୍ବତ ଚିରିଥିଲେ, ସେହି ଖଣତି ତାଙ୍କର ଉନ୍ନତ ମସ୍ତକକୁ ଚିରିଥିଲା । ଆଜି ମଧ୍ୟଏସିଆର ସେହି ହତାଶ ଭଗୀରଥଙ୍କର ସ୍ୱପ୍ନ ସଫଳ ହୋଇଛି । ତାଙ୍କରି ସ୍ମୃତିରେ ସୋଭିଏଟ୍ ଦେଶର ଏକ ବୃହତ୍ତମ ଜଳବିଦ୍ୟୁତ୍ ଷ୍ଟେସନ ବେଗୋଭାଟ ସହରର ଇସ୍‌ପାତ ଆଉ କାରାମାଜାରର ଦସ୍ତା ତରଳାଇଛି, ତାସକନ୍ଦର ଅପେରା ଘରର ନୃତ୍ୟରତା ଶିରୀନ୍‌ମାନଙ୍କର ବଦନରେ ନବୀନଯୁଗର ଆଲୋକ ଆଭା ଉକୁଟାଇଦେଇଛି, ଆଉ ତୃଷିତ ମରୁଭୂମିକୁ ଜଳସେଚିତ କରିଛି ।

ମୁଁ ମନେମନେ ଭାବୁଥାଏ, ସମରକନ୍ଦର ଚାରିଦିଗ ଯେତେବେଳେ ପରିବର୍ତ୍ତିତ ହୋଇଯାଇଛି, ସେତେବେଳେ ଅତୀତର ସେହି ସ୍ୱପ୍ନବୋଳା ସମରକନ୍ଦ କଅଣ ସେପରି ଥିବ ? ସେପରି କ'ଣ ଅଙ୍ଗୁରକ୍ଷେତ ଭିତରେ ଆଜିର କୌଣସି ବିଶ୍ରୁତ କବି ହାଫିଜ୍‌ମାନଙ୍କର ଗଜଲରେ ଗାଇଥିବେ – "ହେ ମୋର ରାଣୀ, ତୋର ମୁଖର ଗୋଟିଏ ତିଳଚିହ୍ନପାଇଁ ମୁଁ ସାରା ସମରକନ୍ଦକୁ ମୂର୍ଚ୍ଛିପାରେ ?"

ଉଡ଼ାଜାହାଜର ଘର୍ଘରଶବ୍ଦ ଭିତରେ ଅର୍ଦ୍ଧଶାୟିତ ମୋର ଦଶଜଣ ସହଯାତ୍ରୀ ଆଉ ଦୁଇଜଣ ଦୋ'ଭାଷୀ । ଆଗରୁ ତିନୋଟି ଉଡ଼ାଜାହାଜରେ ଅନ୍ୟ ସହଯାତ୍ରୀମାନେ ସେଠାରେ ପହଞ୍ଚି ଆମକୁ ଅପେକ୍ଷା କରିଥାନ୍ତି । ଦିନ ପ୍ରାୟ ସାଢ଼େନଅଟାବେଳେ ବି ଆକାଶର ନୀଳସୀମାରେ ତନ୍ଦ୍ରା ଆସୁଥାଏ । ଉଡ଼ାଜାହାଜରେ ବାରମ୍ବାର ତନ୍ଦ୍ରା ଆସେ; କିନ୍ତୁ ଶାନ୍ତି ଘୁଞ୍ଚେ ନାହିଁ । ହଠାତ୍ ଆମର ପରିଚର୍ଯ୍ୟାକାରିଣୀ (ଏଆର ହୋସ୍‌ଟେସ୍) ବାହାରକୁ ଚାହିଁ କହିଲେ; ସମରକନ୍ଦ । ସମରକନ୍ଦ ନାଁ ଟାରେ ଯେପରି ଗୋଟାଏ କୁହୁକ ରହିଛି । ସମସ୍ତେ ହଠାତ୍ ଜାଗ୍ରତ ହୋଇ ଉଠିଲେ ।

## ଦୁଇ

ତାସକନ୍ଦରେ ଆଗରୁ ଆଲୋଚନା ପଡ଼ିଥିଲା – ସମରକନ୍ଦ ଯିବା ନ ଯିବା କଥା । ଆମେ ଉଜ୍‌ବେକ୍ ସରକାରଙ୍କର ଅତିଥି ଥାଉ । ତାଙ୍କ ତରଫରୁ ପ୍ରଥମେ ପ୍ରସ୍ତାବ ଆସିଲା ଗୋଟିଏ ଉଡ଼ାଜାହାଜରେ ଯିବାଭଳି ୧୫ ଜଣପର୍ଯ୍ୟନ୍ତ ସମରକନ୍ଦ ଯିବାକୁ ସେମାନେ ସୁବିଧା କରିପାରିବେ । ତେଣୁ ଆମ ଭିତରୁ କିଏ ଯିବେ ଏବଂ କିଏ ନ ଯିବେ, ଆମେ ସ୍ଥିର କରିବୁ । ସେତେବେଳେ ଯେଉଁମାନେ ସମରକନ୍ଦ ନଯାଇ ଫରହାଜ୍ ଜଳବିଦ୍ୟୁତ୍ ଯୋଜନା ଏବଂ ନୂତନ ଜଳସେଚିତ ଭୂମି ଦେଖିବାକୁ 'ହଁ'

ଭରିଥିଲେ, ତାଙ୍କ ଭିତରେ ଜଣେ ମୁଁ । ଅବଶ୍ୟ ଦେଖାଗଲା ଯେ ସମରକନ୍ଦ ନ ଯିବାକୁ ଇଚ୍ଛୁକ ଥିବା ଲୋକ ମୁଷ୍ଟିମେୟ – ଦୁଇ କିମ୍ବା ତିନି । ତେଣୁ ଆମ୍ଭେମାନେ ନିଷ୍ପତ୍ତି କଲୁଁ ଯେ ଆମର ମେହ୍‌ବାନ୍‌ମାନଙ୍କୁ କହିଦେବୁ ସମରକନ୍ଦର ପ୍ରୋଗ୍ରାମ ସ୍ଥଗିତ ରଖାଯାଉ । କିନ୍ତୁ ଆମକୁ ପନ୍ଦରଜଣିଆ ପ୍ରସ୍ତାବ ଦେଇ ଉଜ୍‌ବେକ୍‌ର ଆମର ସଦାଶୟ ଏବଂ ଉଦାର ବନ୍ଧୁମାନେ ଆମର ଚାଳିଶ ଜଣଙ୍କୁ ଚାରୋଟି ଉଡ଼ାଜାହାଜରେ ସମରକନ୍ଦ ନେବାକୁ ଉଡ଼ାଜାହାଜ ଆୟୋଜନ କରିସାରିଥିଲେ । ଉଜ୍‌ବେକ୍‌ସ୍ଥାନର ଲୋକସଂଖ୍ୟା ମାତ୍ର ୬୦ ଲକ୍ଷ । ଦୁଇ ତିନି ଘଣ୍ଟା ଭିତରେ ସେମାନେ ଅଧିକା ତିନୋଟି ଉଡ଼ାଜାହାଜ ଯେ ବନ୍ଦୋବସ୍ତ କରିପାରିଲେ, ଏହା କମ କୃତିତ୍ୱର କଥା ନଥିଲା ।

କିନ୍ତୁ ଯେଉଁ ସମରକନ୍ଦକୁ ଆଉ ଥରେ ଫେରିବି ବୋଲି ପ୍ରତିଜ୍ଞା କରି ସେ ଦିନ ମୁଁ ହେଲିସିଙ୍କି ଅଭିମୁଖରେ ଯାଇଥିଲି, ସେଠାକୁ ଯିବାର ଯେତେବେଳେ ପ୍ରସ୍ତାବ ଆସିଲା, ସେତେବେଳେ ସ୍ୱତଃପ୍ରବୃତ୍ତଭାବରେ ମୁଁ କାହିଁକି ନ ଯିବାପାଇଁ କହିଥିଲି ତା'ର ଅବଶ୍ୟ ଗୋଟାଏ କାରଣ ଥିଲା । ଚାଳିଶ ଜଣଙ୍କ ଭିତରୁ କେତେ ଜଣଙ୍କୁ ଅନିଚ୍ଛାସତ୍ତ୍ୱେ ଯିବାର ବାସନା ତ୍ୟାଗ କରିବାକୁ ହେବ । ମୋର ଜୀବନରେ ତ୍ୟାଗର ଅଭ୍ୟାସ ଏତେ ବେଶି ଯେ ତ୍ୟାଗର ସୁଯୋଗ ମିଳିଲେ ତାକୁ ଗ୍ରହଣ କରିବାକୁ ସବୁବେଳେ ଲୋଭ ହୁଏ । ତେଣୁ ସେହି ଲୋଭରେ ମୁଁ ଯିବାର ଇଚ୍ଛା ଛାଡ଼ି ଦେଇଥିଲି ।

କିନ୍ତୁ ଏହା କେବଳ ଗୋଟିଏ କାରଣ । ମୁଖ୍ୟ କାରଣ ଆଦୌ ତାହା ନୁହେଁ । ମୁଖ୍ୟ କାରଣ ଥିଲା ଦୁଇଟି । ଅତୀତର ଭାରରେ କ୍ଲାନ୍ତ ସମରକନ୍ଦ ଯଦି ମୂର୍ଚ୍ଛିତ ହୋଇପଡ଼ିଥିବ, ଯଦି ମୋର କଳ୍ପିତ ଅଙ୍ଗୁର ବନଭୂମି ଆଜି ବିପର୍ଯ୍ୟସ୍ତ ଆଉ ଧୂଳି-ଧୂସରିତ ହୋଇଥିବ, ତେବେ ମୋର କଳ୍ପନାର ସମରକନ୍ଦ କେବଳ କଳ୍ପନାରେ ରହୁ– ଏହା ହିଁ ଥିଲା ପ୍ରଥମ କାରଣ ।

ନାହିଁ ଯଦି ଆଜିର ସୋଭିଏଟ୍ ଦେଶର କର୍ମଚଞ୍ଚଳ ପ୍ରବାହ ଭିତରେ ସମରକନ୍ଦ ତା'ର ସତ୍ତା ହରାଇଥିବ, ଯଦି ପାଉଁଶିଆ ଆକାଶରେ ପାଉଁଶିଆ କାରଖାନା ଧୂଆଁ ତାକୁ ଆଚ୍ଛାଦିତ କରିଥିବ, ଯଦି ସମରକନ୍ଦ ହୋଇଥିବ ଏକ ଇତିହାସର ନାମ ମାତ୍ର, ତା'ର ଅତୀତର ଅସ୍ତିତ୍ୱ ଯାଇଥିବ– ଏହା ଥିଲା ଦ୍ୱିତୀୟ କାରଣ ।

ତେଣୁ ସନ୍ଦିଗ୍ଧଭାବରେ ମୁଁ ସେହି ଭୂମିରେ ପାଦ ଦେଇଥିଲି । ଯେଉଁମାନେ ମୋ ସଙ୍ଗରେ ଯାଇଥିଲେ – ଭାରତୀୟ ଶାନ୍ତି ପଥିକଦଳ– ସେମାନେ କ'ଣ ଭାବିଥିବେ, ମୁଁ କହିପାରିବି ନାହିଁ । କିନ୍ତୁ ମୁଁ ଏକଥା ଜାଣିଥିଲି, ଆମ ଭିତରେ ଜଣେ ନାଟ୍ୟକାର ଥିଲେ, ଯିଏ ସମରକନ୍ଦକୁ ଆପଣାର କଥାବସ୍ତୁର ଦେଶ କରି ନାଟକ ଲେଖିଥିଲେ ।

ଆମ ଭିତରେ ଥିଲେ ଜଣେ ମୁସଲମାନ ମହିଳା ଗଳ୍ପଲେଖିକା, ଯିଏ ବିଖ୍ୟାତ ମୋଗଲ ଚୁଗଜାଇଙ୍କର ବଂଶଧର ଥିଲେ । ସେମାନେ ସମରକନ୍ଦକୁ ଆପଣାର ବହୁ ପରିଚିତ ଦେଶ ଅଥଚ ପିତୃପୁରୁଷର ଜନ୍ମଭୂମିଭାବରେ ଦେଖୁଥିଲେ । ସେମାନଙ୍କର ମନର ଭାବ ତେଣୁ ମୁଁ ଅନୁମାନ କରିପାରୁଥିଲି ।

*  *  *

ଲୋକାରଣ୍ୟ ବିମାନବନ୍ଦର । ଗୋଲାପ ଫୁଲର ତୋଡ଼ା ଧରି ଶତ ଶତ ବାଳକ-ବାଳିକା ବେକରେ ଅରୁଣ ଗଳାବନ୍ଧ ବାନ୍ଧି ଆମକୁ ଘେରିଗଲେ । ମୁଣ୍ଡରେ ଉଜ୍‌ବେକ ଜାତିର ଅନବଦ୍ୟ ମୁକ୍ତାଖଚିତ ଟୋପି, ଆଉ ବିବିଧ ବର୍ଣ୍ଣର ବିଚିତ୍ର ଆଲ୍‌ଖାଲା ପହରଣ । ମନୋହର ସୂଚୀ-କାମରେ ଶୋଭିତ ଅଙ୍ଗୀ ଆଉ ଢ଼ିଲା ପେଣ୍ଟ । କାହାର କାହାର ୟୁରୋପୀୟ ପୋଷାକ; କିନ୍ତୁ ସଭିଙ୍କ ମୁଣ୍ଡରେ ପ୍ରାୟ ସେହି ଅବିସଂବାଦୀ ଟୋପି ।

ଆମର ଅଭିଯାନ ଆରମ୍ଭ ହେଲା । ମନେ ପଡ଼ିଲା, ଆଜିକୁ ପାଞ୍ଚଶହ ବର୍ଷତଳେ ଆମରି ଦେଶରେ ଏପରି ଏକ ଅଭିଯାନ ଚଳାଇଥିଲେ ଏସିଆ ଏବଂ ୟୁରୋପର ଧୂମକେତୁ ଏହି ସମରକନ୍ଦର ସମ୍ରାଟ ତୈମୁରଲଙ୍ଗ । ତାଙ୍କର ଆଗମନରେ ହିନ୍ଦୁସ୍ଥାନର ନର ନାରୀ, ପଞ୍ଜାବ, ଦୋଆବ, ହିମାଚଳ ପ୍ରଦେଶ ଛାଡ଼ି ଉତ୍ତରା ପବନ ଆଗରେ ଶିଶିର ଛିନ୍ନପତ୍ରପରି ଚିନ୍ନଛତ୍ର ହୋଇ ପଳାଇଥିଲେ । ଭାରତର ରାଜଧାନୀ ଦିଲ୍ଲୀ ଜନଶୂନ୍ୟ ହୋଇଯାଇଥିଲା । ବହୁ ବର୍ଷ ପରେ ଆଜି ଭାରତୀୟ ଅଭିଯାନ ଯାଲିଛି ଏହି ସହରକୁ । ଏଥରକ ଇଯେ ଶାନ୍ତି ଅଭିଯାନ । ତୈମୁରଙ୍କ ଅଭିଯାନରେ ଭାରତର ନରନାରୀ ଆପଣାର ପ୍ରାଣ ଦେଲେ ଏବଂ ଅନେକ ଘରଦ୍ୱାର ଶୂନ୍ୟ କରି ପଳାଇଥିଲେ । କିନ୍ତୁ ଆମର ଏହି ଅଭିଯାନରେ ସମରକନ୍ଦରେ ନରନାରୀ ଘରଦ୍ୱାର ଶୂନ୍ୟ କରି ଆମରି ଯାତ୍ରା ପଥରେ ମିଳିତ ହଜାର ହଜାର କଣ୍ଠରେ ସ୍ୱାଗତ ଜଣାଇଲେ । ଏହାହିଁ ଇତିହାସର ମଧୁର ପ୍ରତିଶୋଧ ।

ଦୁଇଗୋଟି ବିରାଟକାୟ ବସ୍ ଛୁଟିଲା । ପ୍ରଶସ୍ତ ବଙ୍କୁଲି ରାସ୍ତା । ଦୁଇ ପାଖରେ ବୃକ୍ଷଶ୍ରେଣୀ ଛିଡ଼ା ହୋଇ ଗମ୍ଭୀରଭାବରେ ଆମର କାରାଭାନକୁ ସ୍ୱାଗତ କରୁଥିଲେ । ଉଡ଼ାଜାହାଜ ବନ୍ଦରରେ ଯେଉଁମାନେ ପଛରେ ପଡ଼ିଗଲେ, ସେମାନେ ହାତଠାରି ଆମକୁ ବିଦାୟ ଦେଉଥିଲେ ।

ଦୁଇପାଖରେ ବିଶାଳ ମାଟିର ସ୍ତୁପରାଜି । ବହୁ ପୁରାତନ କାଳର ଗୋଟିଏ କେନାଲ ବୋଧ ହୁଏ ଶୁଖିଯାଇଛି; କାରଣ ଦୁଇଟି ମାଟିର ପାହାଡ଼ ଭିତରେ ଗୋଟିଏ ନିମ୍ନଭୂମି ତଳକୁ ଆମର ବସ୍ ଦୁଇଟି ତୀରବେଗରେ ଓହ୍ଲାଇଗଲା । ତା'ପରେ ଦୁଇ

ପାଖର ବନ୍ଧୁର ଭୂମିକୁ ଅତିକ୍ରମକରି ବସ୍ ଆଗରେ ଭେଟିଲା ଢେରାସେଭନ ଜଳଭଣ୍ଡାର ।

ବସ୍ ଭିତରେ ଆମେ ସମସ୍ତେ ମୂକ । ସୋଭିଏଟ୍‌ର ପ୍ରତ୍ୟେକ ସହରରେ ଗଲାବେଳେ ଉକ୍ତ ସହରର ଗାଇଡ଼ମାନେ ଅବିରଳ କହି ଚାଲିଥାଆନ୍ତି, "ଏଇ ନେଭା ନଦୀ, ଏଇଠି କ୍ରେମଲିନ୍, ଏଇଠି ମାଟିତଳେ ସୁଡ଼ଙ୍ଗ ଅଛି ।" ଦୋ'ଭାଷୀ ଅନୁବାଦ କରୁଥାଆନ୍ତି । କିନ୍ତୁ ଏଇଠି ସେମାନେ ମଧ୍ୟ ମୂକ । ବୋଧ ହୁଏ ଆମେ ଇତିହାସର ଗୋଟିକପରେ ଗୋଟିଏ ଶତାବ୍ଦୀ ପାର ହୋଇ ଚାଲିଛୁ । ଦିଗ୍‌ବିଜୟୀ ଆଲେକ୍‌ଜାଣ୍ଡାର ଆଉ ତାଙ୍କର ସେନାନୀ ଛାଉଣୀ ପକାଇଥିଲେ ଯେଉଁଠି, ସେଇଠି ବୋଧ ହୁଏ ଗୋଟିଏ ମାଟିର ସ୍ତୂପହିଁ ରହିଯାଇଛି । ତା'ପରେ....

ହଠାତ୍ ବସ୍ ବାଁ'ପାଖକୁ ଘୂରିଗଲା । ଡାହାଣପଟେ ବଜାର । ଭାରତର ବଜାରପରି ବିପଣୀ ଆଉ ସୋଭିଏଟ୍‌ର ଅନ୍ୟାନ୍ୟ ସହରମାନଙ୍କ ପରି ପାର୍କ, ପାଣିର ଫୁଆରା, ଆଉ ଫୁଲ । ବିଚିତ୍ର ବର୍ଣ୍ଣର ବେଶଭୂଷାର ନରନାରୀ, ବାଳକ-ବାଳିକା । ସବୁଠି ସେପରି ଅବଶ୍ୟମ୍ଭାବୀ ଅଭିବାଦନ, ସଲାମ ଆଲେକୁମ୍, ଖୁଦା ହାଫିଜ୍....

ଦୁଇ ପାଖରେ ଛୋଟ ଛୋଟ କପାଗଛ ଲମ୍ବିଯାଇଛି ଦୃଷ୍ଟି ରେଖା ଶେଷ ହେବାଯାଏ । କପାଚାଷ ଆରମ୍ଭ ହେବାର ବେଳ । ଦୂରରେ ଟ୍ରାକ୍‌ଟରର ଘର୍-ଘର୍ ଶବ୍ଦ ଶୁଭୁଛି । ଉଡ଼ାଜାହାଜ ଗୋଟିଏ ଆକାଶରେ ଗୁଞ୍ଜନ କରି ଚାଲିଛି । ଆମେ ସମରକନ୍ଦ ସହରର ଶେଷ ମୁଣ୍ଡରେ ଯାଇ ପହଞ୍ଚିଲୁଁ ।

ମଟର ବସ୍ ଥମ୍ଭିଲା । ଗୋଟିଏ ଉଚ୍ଚ ପାହାଡ଼ଭଳି ମାଟିଢିପ ଉପରେ ଆମ୍ଭେମାନେ ଉଠିଲୁ । କିଛି ବାଟ ଚାଲି କରି ଗଲାପରେ ଡାହାଣପଟେ ଗୋଟିଏ ଛୋଟ ସମାଧିଭଳି ମଣ୍ଡପ ଆଖିରେ ପଡ଼ିଲା । ଏହି ମଣ୍ଡପ ଉପରେ ବସି ତୈମୁରଙ୍କ ପୁତ୍ର ଉଲୁବେଗ୍ ଆକାଶର ଗ୍ରହ ତାରା ନିରୀକ୍ଷଣ କରୁଥିଲେ ।

ସମ୍ରାଟ୍ ତୈମୁରଲଙ୍ଗଙ୍କ ପରେ ତାଙ୍କର ପୁତ୍ର ଉଲୁବେଗ୍ ସମରକନ୍ଦର ସିଂହାସନ ଅଧିକାର କରିଥିଲେ । ସେ ନିଜେ ଜଣେ ପ୍ରସିଦ୍ଧ ଜ୍ୟୋତିଷ ଥିଲେ । କେତେ ପାଦ ଅଗ୍ରସର ହେଲାପରେ ଗୋଟିଏ ଅର୍ଦ୍ଧବୃତ୍ତ ଖିଲାଣଭଳି, ଗୋଟିଏ ସିଲିଣ୍ଡରର ଅର୍ଦ୍ଧେକ ଭଳି– ଏକ ବିଶାଳ ଲମ୍ବା ଘର ଆମର ଆଖି ଆଗରେ ପଡ଼ିଲା । ଏହାର ଦ୍ୱାର ଭିତରେ ପଶିଲେ ଘର ଭିତରର ନିବିଡ଼ ଅନ୍ଧାର ମାଡ଼ି ମାଡ଼ି ପଡ଼େ । ଦିନେ ଏହି ସ୍ୱତନ୍ତ୍ରଭାବରେ ନିର୍ମିତ ଘର ଉଲୁବେଗଙ୍କର ଗବେଷଣାଗାର ଥିଲା । ଉଲୁବେଗ୍ ଆପଣାର ରାଜଧାନୀକୁ

ବହୁ ଦୂରଦୂରାନ୍ତରରୁ ବିଖ୍ୟାତ ଜ୍ୟୋତିଷ ପଣ୍ଡିତମାନଙ୍କୁ ନିମନ୍ତ୍ରଣ କରି ଏକାଠି ଠୁଳ କରାଇଥିଲେ । ଦିନେ ଏହି ଗବେଷଣାଗାର ତ୍ରିତଳ ପ୍ରାସାଦ ଥିଲା । ଏହାର ତଳର ବ୍ୟାସାର୍ଦ୍ଧ ୪୦ ମିଟର ଏବଂ ଉଚ୍ଚତା ୩୦ ମିଟର ଥିଲା (୧ ମିଟର - ୪୦ ଇଞ୍ଚ) । ଏହାର ବାହାରର କାନ୍ଥ ମସୃଣ ମାର୍ବଲ୍ ଏବଂ ନାନା ରଙ୍ଗର ମୋଜେଇକରେ ଆଚ୍ଛାଦିତ ଥିଲା । ଉତ୍ତରରୁ ଦକ୍ଷିଣକୁ ଲମ୍ବିଥିବା ଏହି ପୁରାକାଳର ହର୍ମ୍ୟ ଭିତରେ ଗୋଟିଏ ବିଶାଳ ଚଉଠ ବୃତ୍ତ ରହିଥିଲା । ଏହି ଚଉଠ ବୃତ୍ତ ବା କ୍ୱାଡ୍ରାଣ୍ଟ ଯୋଡ଼ିଏ ମାର୍ବଲ ବୃତ୍ତାର୍ଦ୍ଧରେ ନିର୍ମିତ ଥିଲା । ଏହାର ତଳଭାଗରେ [illegible]ଟି ବ୍ରଂଜ ଧାତୁର ପୀଢ଼ ରହିଥିଲା । ଏହି ଚଉଠ ବୃତ୍ତ ସାହାଯ୍ୟରେ ପଣ୍ଡିତମାନେ ସୂର୍ଯ୍ୟ, ମଙ୍ଗଳ, ବୃହସ୍ପତି, ପ୍ରଭୃତି ଗ୍ରହ-ନକ୍ଷତ୍ରମାନଙ୍କର ଗତିବିଧି ନିରୀକ୍ଷଣ କରୁଥିଲେ । ଏହା ଛଡ଼ା ଏହି ହର୍ମ୍ୟରେ ଭୂମି ସହିତ ସମାନ୍ତର ଗୋଲାକାର ପିଣ୍ଡୁଲା ବାଡ଼ିରେ ମାର୍ବଲର ବିଭିନ୍ନ ଯନ୍ତ୍ରପାତି ଖଞ୍ଜାଯାଇଥିଲା ।

ଉଲୁବେଗ୍ ନିଜେ ଏକ ବିଖ୍ୟାତ ଜ୍ୟୋତିଷ ଗ୍ରନ୍ଥ ଲେଖିଥିଲେ ଏବଂ ଆକାଶର ନକ୍ଷତ୍ରରାଜିର ଗୋଟିଏ ମାନଚିତ୍ର ଆଙ୍କିଥିଲେ; କିନ୍ତୁ ମଧ୍ୟଏସିଆର ସେହି ଘୋର ଅନିଶ୍ଚିତ କାଳରେ ରାଜଦଣ୍ଡଧାରୀର ବିଦ୍ୟାଭ୍ୟାସ ତାଙ୍କୁ ଶତ୍ରୁ-ହାତରୁ ବଞ୍ଚାଇବାରେ ସାହାଯ୍ୟ କରି ନଥିଲା । ସେଥିପାଇଁ ବିଦ୍ୱାନ ଉଲୁବେଗ୍ ୧୪୪୯ ମସିହା ଅକ୍ଟୋବର ପଚିଶ ତାରିଖରେ ଆତତାୟୀର ଖଡ଼୍‌ଗରେ ଧରାଶାୟୀ ହେଲେ । ସମସ୍ତ ଗବେଷଣାଗାର ଲୁଣ୍ଠିତ ହେଲା ଏବଂ ସେଥିରୁ ସମସ୍ତ ମୂଲ୍ୟବାନ ଉପକରଣ ଅପହୃତ ହୋଇଗଲା । ବହୁ ବର୍ଷ ପରେ ଯେତେବେଳେ ପ୍ରତ୍ନତାତ୍ତ୍ୱିକମାନେ ଏହି ସ୍ଥାନକୁ ଖୋଳିବାକୁ ଲାଗିଲେ, ସେତେବେଳେ ଚଉଠ ବୃତ୍ତଟି ମିଳିଥିଲା । ଆଜିର ଧାନ ଷ୍ଟୋରେଜ ଗୋଦାମପରି ଦିଶୁଥିବା ଘରଟି ସେହି ପୁରାତନ ତ୍ରିତଳ ଗବେଷଣାଗାରର କାଳଗର୍ଭରୁ ରକ୍ଷା ପାଇଥିବା ଅଂଶ ମାତ୍ର ।

ପଞ୍ଚଦଶ ଶତାବ୍ଦୀର ସେହି ସ୍ମୃତି ଉପରେ ଛିଡ଼ା ହୋଇ ମୁଁ ତା'ର ପୃଷ୍ଠଭୂମିକୁ ଥରେ ଆଖି ପକାଇନେଲି । ହଳଦିଆ ମାଟିର ବୁକୁରେ ଶାଗୁଆ କପାକ୍ଷେତ ଦିଗ୍‌ବଳୟ ଆଡ଼କୁ ଲମ୍ବିଯାଇଛି । ଦୂରରେ ଆଉ ଅଦୂରରେ ଅଙ୍ଗୁର ଏବଂ ପିଅର କୋଳିର ଘନ ଉଦ୍ୟାନ । ପଛକୁ ଅନାଇ ଦେଖିଲି, ମୋର ସହଯାତ୍ରୀଙ୍କ ଭିତରୁ କେତେ ଜଣ ମୋର ଦୃଷ୍ଟିରେଖା ଆଡ଼କୁ ଅନାଇ ରହିଛନ୍ତି । ଯେପରି ସେହି ଶ୍ୟାମଳ ବନଭୂମି ଭିତରୁ କେଉଁଠି ଖଞ୍ଜ ତୈମୁରଙ୍କର ଆଉ ତାଙ୍କର ପରବର୍ତ୍ତୀ ବଂଶଧରମାନଙ୍କର ଘୋଡ଼ାଟାପୁ ଶୁଣାଯିବ । ସମସ୍ତ ଧରିତ୍ରୀ ନିଶୂନ ଏବଂ ପ୍ରଶାନ୍ତ ଜଣା ପଡୁଥିଲା ।

ଦୂରରେ ସୂର୍ଯ୍ୟ-କିରଣରେ ଝଲ୍‌ମଲ୍ ଏକ ବିଶାଳ ଜଳରାଶି ଦେଖାଯାଉଥାଏ, ଯେପରି ପୀତବର୍ଣ୍ଣ ଫ୍ରେମରେ ଗାଢ଼ ନୀଳ କାଚ ବନ୍ଧା ହୋଇଛି । ଦୋ'ଭାଷୀ କହିଲେ, ସେହି ଜଳରାଶି ହେଉଛି, "ଉଜ୍‌ବେକ୍ ସାଗର" ।

କେନ୍ଦ୍ର ଏସିଆର ଗ୍ରୀଷ୍ମ-ତାପିତ ମରୁଭୂମି ଭିତରେ କାର୍ପାସର ଲହରୀ ଦେଖିଲୁଁ । ତା'ପରେ ପ୍ରକୃତ ସାଗରଠାରୁ ବହୁ ଦୂରରେ ଦେଖିଲୁଁ ଏହି "ଉଜ୍‌ବେକ୍ ସାଗର" । ଶୁଣିଲୁଁ, ଏହାକୁ କୋଠଗ୍ବେଷୀମାନେ ତିଆରି କରିଛନ୍ତି । ଜେରାଭାସାନ୍ ନଦୀର ଜଳହିଁ ଏହି ସାଗରକୁ ପାଣି ଯୋଗାଇଛି । ଖରାଦିନେ ଜେରାଭାସାନ୍‌ରେ ଯଥେଷ୍ଟ ଜଳ ଆସୁ ନଥିଲା । ଏବେ ଏହି ଜଳ ଭଣ୍ଡାରରେ ୬୦୦,୦୦୦,୦୦୦ ଘନ ମିଟର ଜଳ ସାରା ଉଜ୍‌ବେକିସ୍ଥାନର ଏକ ଚଉଠ କପା ଆମଦାନୀର ଦାୟିତ୍ୱ ନେଇଛି । ଉଦ୍‌ବେକିସ୍ଥାନ ପୃଥିବୀରେ ସବୁଠାରୁ ବେଶି କପା ଉତ୍ପାଦନ କରେ । ପାକିସ୍ଥାନ, ମିଶର, ଆଫଗାନିସ୍ଥାନ, ଜାପାନ, ଇରାନ୍ ଏହି ପାଞ୍ଚୋଟି ଦେଶରେ ଯେତେ ତୂଳା ଆମଦାନି ହୁଏ, ଏକା ଉଜ୍‌ବେକିସ୍ଥାନରେ ତା'ର ପାଞ୍ଚଗୁଣ କପା ଉତ୍ପନ୍ନ ହୁଏ ।

ଏହି ତୈମୁରର ଦେଶ । ଏଠି ଆଉ ରକ୍ତନଦୀର ବନ୍ୟା ନାହିଁ । ଏଠି ଆଜି ସୃଷ୍ଟିକ୍ଷରୀ ଜଳର ବନ୍ୟା ପ୍ରଶାନ୍ତ ଜୀବନକୁ ଉଭାସିତ କରିଛି । 'ଉଜ୍‌ବେକ୍ ସାଗର' ୧୯୪୦ ମସିହାରେ ପ୍ରଥମେ ଆରମ୍ଭ ହୋଇଥିଲା । ତା'ପରେ ଆସିଲା ଯୁଦ୍ଧ । ୧୯୪୭ ସାଲରେ ପୁନର୍ବାର ଏହାର କାମ ଚାଲିଲା । ଏଥିମଧ୍ୟରେ ପୃଥିବୀର ମାନଚିତ୍ରରେ ସ୍ଥାନ ପାଇଲାଭଳି ଏକ ବିରାଟ ଚିଲିକା ଏଇଠି ମଣିଷ ଗଢ଼ିପାରିଛି ।

## ଘରି

ପଛରେ ପଡ଼ିରହିଲା ଉଲୁବେଗ୍‌ଙ୍କର ଗବେଷଣାଗାର; ପଡ଼ିରହିଲା ଘନ ନୀଳ ଲହରୀମୟୀ ନେରାଭାସାନ ନଦୀ; ଆମ୍ଭେମାନେ ସମରକନ୍ଦ ସହରର ଉପକଣ୍ଠ ଛାଡ଼ି ପୁଣି ସହରଭିତରେ ପ୍ରବେଶ କଲୁଁ ।

"ଠିକ୍ ଆମରି ଦେଶପରି ଏଇ ଦେଶ" ବସ ଭିତରୁ ଶୁଣାଗଲା । ଫେରି ଚାହିଁ ଦେଖିଲି, ଉତ୍ତରପ୍ରଦେଶର ବନ୍ଧୁ ସଏଦ ଅବଦୁଲ ଫଏଜ୍ ଏକଥା କହୁଛନ୍ତି । ହଁ ଠିକ ଆଗ୍ରା, ଫତେପୁର ସିକ୍ରିପରି ଏହି ଦେଶ; କିନ୍ତୁ କାହିଁ ମୋର ଜନ୍ମଭୂମିର ସମୁଦ୍ରବେଳା । କାହିଁ ତନ୍ଦ୍ରାଚ୍ଛନ୍ନ ନଡ଼ିଆମାଳ ଭିତରେ ସୁରଭିତ କିଆ କୁସୁମ । କାହିଁ ଝିଲ୍‌ଲିଝଙ୍କାରିତ ସୁନାକଣିଆ ଉପରୁ ମହାନଦୀର ଭୈରବ ରୂପ । କାହିଁ ମନୋରମ ପ୍ରଧାନପାଟ; ଆଉ କଳିଙ୍ଗାଘାଟୀ ।

ମୋର ଆଖିରେ ସୁଦୂରର ଭାବ ଦେଖିପାରିଲେ ଆମର ଜଣେ ସୁଚତୁରୀ ଦୋ'ଭାଷୀ (Lydia) ଲିଡ଼ିଆ । ମସ୍କୋ ସହରର ରମଣୀ ସିଏ । "ଠିକ୍ ଆମରି ଦେଶପରି ଏହି ଦେଶ ।" କଥାଟା ତାଙ୍କ କାନକୁ ମଧ୍ୟ ନୂତନ ଶୁଣାଗଲା । କାହିଁ କଂକ୍ରିଟ-ପ୍ରାଚୀର-ବେଢ଼ା ମସ୍କୋ ନଦୀ ଏବଂ ତାହାର ଦର୍ପଣରେ ମୁଖ ଦେଖୁଥିବା କ୍ରେମେଲିନ୍, ଅସଂଖ୍ୟ ନଦୀ-ପୋତର ଦୋଳାରେ ଦୋଳାୟିତ ନରନାରୀ ଆଉ ପ୍ରସାରିତ ମହାନ୍ ପ୍ରଶସ୍ତ ରାଜପଥ । ମସ୍କୋ ନଦୀ ଉପରେ ମଧ୍ୟ ଯେଉଁ ରାଜପଥ ଟିକିଏ ସଙ୍କୁଚିତ ନହୋଇ ଆପଣାର ରାଜକୀୟ ମହିମାରେ ଲମ୍ୱିଛି । କାହିଁ ମସ୍କୋ; ଆଉ କାହିଁ ସମରକନ୍ଦ ।

ଲିଡ଼ିଆ ମୋର ଅନ୍ୟମନସ୍କ କାନ୍ଧ ଉପରେ ତାଙ୍କର ହାତ ରଖିଲେ; କହିଲେ, "ସତେ ? ଏହା କ'ଣ ଠିକ୍ ତୁମ ଦେଶପରି (It is just like home)?" ମୁଁ ଭାବିଲି, ତାଙ୍କୁ ବୁଝାଇବି କିପରି ? ଭାରତ ଏକ ବିଶାଳ, ବିଚିତ୍ର ଆଉ ଛବିଳ ଦେଶ । ସେଥିପାଇଁ ମୁଁ କିଛି ନ କହି କେବଳ ସମ୍ମତିର ଇଙ୍ଗିତ କଲି ।

ସେ କିନ୍ତୁ ନଛୋଡ଼ବନ୍ଧା । "କିନ୍ତୁ ମିଶ୍ର ! ତୁମେ କହୁଥିଲ, ତୁମର ଅଞ୍ଚଳ ଭାରତର ପୂର୍ବ ସମୁଦ୍ରତଟରେ । ସେଠାରେ କ'ଣ ଏପରି ଢେଉ ଖେଳୁଥିବା ମାଟିର କୁଦ, ଏପରି ପ୍ରଚଣ୍ଡ ଖରାତଳେ ହଳଦିଆ ମାଟି, ଏପରି ମେଘମୁକ୍ତ ଦିଗ୍‌ବଳୟ, ଏପରି ଶୁଖିଲା ପବନ ଅଛି ?"

ସୋଭିଏତ୍ ମହିଳା ଲିଡ଼ିଆ ଅନ୍ୟାନ୍ୟ ଦୋ'ଭାଷୀମାନଙ୍କଠାରୁ ବୟସରେ ଥିଲେ ବଡ଼ । ପ୍ରାୟ ୨୯।୩୦ ବର୍ଷ ହେବ । ମୁଣ୍ଡରେ ହଳଦିଆ ଆଉ ନାଲି ବାଳ; ହଳଦି ମିଶା ନରମ ନୀଳ ଆଖି, ଆଉ ଚୂନ କାନ୍ଥପରି ଧଳା ମୁହଁ; ରୁଷୀୟ ମହିଳାର ଚେହେରା । ତେବେ ସାଧାରଣ ରୁଷୀୟ ମହିଳାଙ୍କପରି ସେତେ ଉଞ୍ଚା ବା ଦିପୁରିଆ ନୁହନ୍ତି । ଆଖିମିଟିକା ମାରନ୍ତି ବାରମ୍ୱାର । ବୋଧ ହୁଏ ସେଇଟା ତାଙ୍କର ମୁଦ୍ରାଦୋଷ ।

ଲିଡ଼ିଆ ମୋର ଉତ୍ତରକୁ ଅପେକ୍ଷା କଲେ ନାହିଁ । ମୋତେ କହିଲେ, "ମୋର ପରମ ବନ୍ଧୁ ଲୁସିକୁ ଚିହ୍ନ ?"

ମୁଁ କହିଲି, "ହଁ, ଷ୍ଟାଲିନାବାଦରେ ସେ ଥିଲେ ଆମର ପଥପ୍ରଦର୍ଶିକା ଆଉ ଦୋ'ଭାଷୀ– ଏବେ ସେ କାହିଁ ଆମ ସାଙ୍ଗରେ ରହିଲେ ନାହିଁ ?"

"ଲୁସି ଗୋଟିଏ ରୁଷ ପ୍ରତିନିଧିଦଳ ସହିତ ଲଣ୍ଡନ ଯାଇଛନ୍ତି । ତୁମେ ମସ୍କୋ ଫେରିଲାବେଳକୁ ଫେରିଆସିଥିବେ ।"

ଲିଡ଼ିଆ କହି ଚାଲିଥାଆନ୍ତି "ଲୁସି ଭାରତ ଦେଖିଛନ୍ତି । ଭାରତୀୟ ଫରେଷ୍ଟ କଂଗ୍ରେସର ନିମନ୍ତ୍ରଣ ପାଇ ଯେଉଁ ସୋଭିଏଟ ବୈଜ୍ଞାନିକଦଳ ଭାରତ ଯାଇଥିଲେ, ସେ ତାଙ୍କ ସାଙ୍ଗରେ ଯାଇଥିଲେ । ତାଙ୍କୁ କେତେ ଥର ପଚାରିଛି, ଭାରତ ଦେଖିବାକୁ କିପରି ? ସେ କହନ୍ତି, 'ଭାରତ ମସ୍କୋର କ୍ରୋପୋଟ୍‌ନିକ୍ଷ୍ଟିଟ ନୁହେଁ; ଭାରତ ଗୋଟାଏ ବିଶାଳ ମହାଦେଶ । ସେଠାରେ ନାନା ଭାଷା, ନାନାପ୍ରକାର ଚାଲିଚଳଣ, ଆଉ ନାନାପ୍ରକାର ପ୍ରକୃତି । ଏପରି ଭାରତକୁ ପଦେ କଥାରେ କହିବି କିପରି ?"

ଆଖିମିଟିକା ମାରି ସେ ପୁଣି ଆରମ୍ଭ କଲେ, "ତଥାପି ଭାରତର କ'ଣ ଗୋଟାଏ ତ ତମକୁ ସବୁ ବାନ୍ଧିଛି ଏକସୂତ୍ରରେ । ସେଇଟା କ'ଣ ?"

ଲିଡ଼ିଆ ଆପଣାର ଫୁଲପକା ଛିଟ ଗାଉନ୍ ଆଡ଼କୁ ଦୃଷ୍ଟି ଫେରାଇଲେ "ଯେପରି କି ଏଇ ଗାଉନ୍; ଏହାରି ତୁଳା ଏହି ସମରକନ୍ଦର କପାକ୍ଷେତରୁ ଆସିଛି, ହୁଏତ କେଉଁ ଉଜ୍‌ବେକି କାରଖାନାରେ ଏହା ବୁଣା ହୋଇଛି, ଯେପରି କି ଏଇ ସମରକନ୍ଦ ଆଉ ମସ୍କୋ । ପାଣି, ମାଟି, ପବନ, ଆକାଶ କୌଣସିଥିରେ ଦୁହେଁ ସମାନ ନୁହଁନ୍ତି । ତଥାପି ଯେପରି ଗୋଟାଏ କୌଣସି ଅବିଚ୍ଛେଦ୍ୟ ବନ୍ଧନ ଏହି ଦୁଇ ସହରକୁ ବାନ୍ଧିଛି, ଯେପରି କି ସମଗ୍ର ସୋଭିଏଟ ଦେଶର ସହରମାନେ ହାତ ଛନ୍ଦାଛନ୍ଦି ହୋଇଥିବା ଏକ ନୃତ୍ୟରତ ଦଳ ।"

* * * *

ଦୁଇ ପାଖରେ ଅତଟ ମାଟି, ଇଟାରେ ତିଆରି ସମତଳ ଛାତର ଘରକୁ ଅତିକ୍ରମ କରି ଆମର ଦୁଇଟି ବସ୍ ଛୁଟିଥାଆନ୍ତି । ଅପ୍ରଶସ୍ତ ନାଳି ମେଟାଲର ରାସ୍ତା । ବାଁ ପାଖରେ ଗମ୍ବୁଜଭଳି ଗୋଟାକପରେ ଗୋଟାଏ ଉଠିଛି ବହୁ ପୁରାତନ କାଳର ସମାଧି ମନ୍ଦିର ।

ଆମ୍ଭେମାନେ ବସ୍‌ରୁ ଓହ୍ଲାଇ ରାସ୍ତାକୁ ଲାଗିଥିବା ପାହାଚ ଚଢ଼ି ଉପରକୁ ଉଠିଲୁ ।

ଦୁଇ ପାଖରେ ବହୁ ସମାଧି ପାର ହେଲୁ । ପୁରାତନ ପାର୍‌ସି ଅକ୍ଷରରେ ଲେଖା କେତେକ ସମାଧି । ଆମଭିତରେ ଥିବା କୌତୂହଳୀ ଯାତ୍ରୀମାନେ ପରୀକ୍ଷା କରିବାରେ ଲାଗିଲେ – ଏଇଠି ଅମିର ହୁସେନ୍‌ଙ୍କର ସ୍ତ୍ରୀ, ୧୩୭୫ ସାଲ । ଏଇଠି ଆଉ ଏକ ସମାଧି, ୧୩୮୭ ସାଲ । ସେଇଠି ତୈମୁରଙ୍କର ବଡ଼ ଭଉଣୀ ଆଉ ତାଙ୍କର ଦୁହିତାକୁଳଙ୍କର କବର । ଭିତର ପ୍ରାଚୀରରେ ଗଭୀର ନୀଳ ରଙ୍ଗର ଏନାମେଲ ଆଉ ବହୁ ଉଚ୍ଚରେ କଳା ଠିକିରି ସହିତ ଧଳା ଠିକିରିର ସମାରୋହ । ଆଉ ଏକ ସ୍ଥାନରେ ଆଠକୋଣ ବିଶିଷ୍ଟ ଆଉ ଏକ ସମାଧିରେ ତୈମୁରଙ୍କର ଜଣେ ମହିଷୀଙ୍କର କବର; ୧୩୮୬ ସାଲ । ଆଉ ଜଣେ ମହିଷୀଙ୍କର ୧୩୪୧ ସାଲ ।

ତା'ପରେ ଆଉ ଏକ ପ୍ରାଙ୍ଗଣ ପାର ହେଲୁ । ତୈମୁରଙ୍କର ପ୍ରିୟତମା ସ୍ତ୍ରୀ ବିବି ଖାତୁନ ଏଇଠି ମହାନିଦ୍ରାରେ ଶୋଇଛନ୍ତି । କବର ଉପରେ କେହି ଜଣେ ଅଗରବତି ଜାଳିଛି । ତାର ଧୂମାୟିତ ସୌରଭ ପବନରେ ମିଶିଯାଉଛି । ଆହୁରି କିଛି ବାଟ ଅଗ୍ରସର ହେଲାପରେ ଏହି ସମାଧିମାନଙ୍କଠାରୁ ଅଧିକ ସମୃଦ୍ଧିମନ୍ତ ଏବଂ ଅଧିକ ଆଗ୍ରହରେ ସୁରକ୍ଷିତ ଏକ ସମାଧି ଆମ୍ଭେମାନେ ଦେଖିବାକୁ ପାଇଲୁ । କିମ୍ୱଦନ୍ତୀରୁ ଶୁଣାଯାଏ, ଏହି ସମାଧି ପୟଗମ୍ବର ମହମ୍ମଦଙ୍କର ଜଣେ ଅସହୋଦର ଭାଇ ହୁସେନ ଇବନ ଆବାସଙ୍କର ସମାଧି ।

ଆରବମାନଙ୍କର କିମ୍ୱଦନ୍ତୀ କହେ, ହୁସେନ ପୟଗମ୍ବର ମହମ୍ମଦଙ୍କର ଜଣେ ସମ୍ପର୍କୀୟ ଭାଇ ଥିଲେ । ମହମ୍ମଦଙ୍କ ପରେ ସେ ଏହିଠାକୁ ଧର୍ମପ୍ରଚାର କରିବାକୁ ଆସିଥିଲେ । କେତେକ ସୂତ୍ରରୁ ଜଣାଯାଏ ଏଇଠି ତାଙ୍କୁ ବଧ କରାଯାଇଥିଲା, ତେଣୁ ଏଇଠି ସେ ସମାଧି ନେଇଥିଲେ । ଆଉ ଅନ୍ୟମାନେ ଦାବୀ କରନ୍ତି, ତାଙ୍କୁ କେହି ହତ୍ୟା କରି ନାହିଁ । ସେ ବର୍ତ୍ତମାନର ତୁର୍କେମେନିଆରେ ଥିବା ଖୋରାସାନ ସହରରେ ଦେହତ୍ୟାଗ କରିଥିଲେ । ତେଣୁ ଏଠାରେ ତାଙ୍କର ସମାଧି ହେବା ଅସମ୍ଭବ । ସେ ଯାହାହେଉ, ବହୁ କାଳରୁ ମୁସଲମାନମାନେ ଏହି ସମାଧିକୁ ଆସି ନମାଜ ପଢ଼ନ୍ତି । ଏହି ସମାଧିକୁ ବେଢ଼ି ଏକ ବିରାଟ ମସଲିନର ଫ୍ରେମ୍ ଘେରା ହୋଇ ରହିଛି । ଏହି ସ୍ଥାନ ଏପରି ବିଖ୍ୟାତ ତୀର୍ଥସ୍ଥଳ ଯେ ଯେଉଁ ମୁସଲମାନ ମକ୍କା ଯାଇପାରନ୍ତି ନାହିଁ, ସେମାନେ ଏହି ସ୍ଥାନ ଦର୍ଶନ କରି ମକ୍କା ଦର୍ଶନର ପୂଣ୍ୟ ଅର୍ଜନ କରନ୍ତି ।

୧୬୭୬ ସାଲରେ ଆରବମାନେ ସାରା ମଧ୍ୟଏସିଆରେ ଅଭିଯାନ ଆରମ୍ଭ କଲେ । ସେମାନେ ସମରକନ୍ଦକୁ ଅଧିକାର କଲେ । ଭାରତର ସିନ୍ଧୁ ନଦୀର ମୁହାଣରେ ଆପଣାର ରାଜ୍ୟ ସ୍ଥାପନ କଲେ । କାନ୍ଦାହାର ଏବଂ କାବୁଲ ଜୟ କଲେ । ସେହି ସମୟରେ ହୁସେନ୍ ଏହି ଆରବମାନଙ୍କ ସଙ୍ଗରେ ଗୋଟିଏ ହାତରେ କୋରାନ ଏବଂ ଅନ୍ୟ ହାତରେ ତରବାରି ଧରି ସମରକନ୍ଦରେ ପ୍ରବେଶ କରିଥିଲେ । ପରେ ଚତୁର୍ଦ୍ଦଶ ଶତାବ୍ଦୀରେ ତାଙ୍କର ଏହି ସମାଧିର ବିଶ୍ରୁତ ଯଶ କଥା ଜାଣି ସମରକନ୍ଦର କୌଣସି ସମ୍ରାଟ ତାଙ୍କର ଏହି ସମାଧି ନିର୍ମାଣ କରିଦେଇଥିଲେ ।

ଉଲୁବେଗଙ୍କର ଜ୍ୟୋତିଷ-ଶାସ୍ତ୍ରର ଗୁରୁ କାଜିଯାଦାର କୁମିଙ୍କର ସମାଧି ମଧ ଏଇଠି ଦେଖିବାକୁ ପାଇଲୁ । ତାଙ୍କର କବରରୁ ଅପ୍ରଶସ୍ତ ଗେଟ୍‌ର ଖିଲାଣ ପାରହୋଇ ପଛକୁ ଫେରିଲା ବେଳେ ଦେଖିଲି, ଆମର ଭାରତୀୟ ଯାତ୍ରୀ ଫଟୋଗ୍ରାଫର୍ ବିଶାରଦ ବମ୍ବେ ଅଧିବାସୀ ଜାଭେରି, ତିନି ଜଣ ଉଜ୍‌ବେକି ମହିଳା ଏବଂ ତିନି ଜଣ ଭାରତୀୟ

ପୁରୁଷଙ୍କର ହୁସେନଙ୍କର ସମାଧି ଆଗରେ ଫଟୋ ନେଉଛନ୍ତି । ଅନ୍ୟମାନେ ସମସ୍ତେ ବାହାରି ଯାଇଥିଲେ । ମୋତେ ଜଣେ ଉଜ୍‌ବେକି ମହିଳା ହାତ ଧରି ସେହି ଫଟୋ ଉଠା ସ୍ଥାନରେ ଛିଡ଼ା କରାଇଦେଲେ ।

ତା'ପରେ ଚାଲିଲା ଫଟୋଗ୍ରାଫର ପାଳା । ତୋରଣଦ୍ୱାରର ରାସ୍ତାଆଡ଼କୁ ଆସିଲାବେଳେ ଦକ୍ଷିଣପଟେ ଏକ ଉଚ୍ଚ ପାରାପେଟ୍ ପଛଆଡ଼େ ତୈମୁରଙ୍କର ଭଗିନୀକୁଳର ସମାଧି ଦେଖାଯାଉଥାଏ । ସେଇଠି ସେହି ପାରାପେଟ ଉପରେ ଫଟୋ, ବାଟରେ ପାହାଚ ଉପରେ ଫଟୋ । ଯେଉଁ ତିନୋଟି ଉଜ୍‌ବେକି ମହିଳା ଫଟୋରେ କୌତୁକର ସହିତ ଯୋଗ ଦେଉଥିଲେ, ସେମାନଙ୍କ ଭିତରେ ଥିଲେ ଦୁଇ ଜଣ ଆମର ଉଡ଼ାଜାହାଜମାନଙ୍କର ପରିଚର୍ଯ୍ୟାକାରିଣୀ; ଆଉ ଜଣେ ମହିଳା ପାଇଲଟ୍ । ସେମାନେ କହିଲେ, "ଫଟୋଗ୍ରାଫ ତ ନିଆହେଲା; ଏହାର କପି ଆମେ ପାଇବୁ କିପରି ?" ତେଣୁ ସେତିକିବେଳେ ସେମାନଙ୍କର ନାମ ଆଉ ଠିକଣା ମୁଁ ଲେଖି ନେଇଥିଲି । ତଥାପି ଏହି ନାମ ଭିତରୁ କେଉଁ ମହିଳା କିଏ, ତାହା ତ ଫଟୋଗ୍ରାଫର୍ ମନେ ରଖିବା ଅସମ୍ଭବ । ତେଣୁ ମୋର ନୋଟ ଖାତାରେ ଏବେ ବି ଲେଖାଅଛି– ସମସ୍ତ ଶୁକ୍ଲାମ୍ବରୀ–ଉଚ୍ଚା ପାତଳି ସ୍ତ୍ରୀଲୋକ-ଭାଲେଣ୍ଟିନା । ମୁଣ୍ଡରେ ରେସମର ବୁଟାଦାର ନୀଳ ରୁମାଲ ଭିଡ଼ିଥିବା ଆଉ ଗଭୀର ଗୋଲାପି ଫୁଲର ଗାଉନ ପିନ୍ଧିଥିବା ସ୍ତ୍ରୀ ଲୋକ–ଖାରିଟେନୋଭା ଗ୍ୟାଲିନା । ଆଉ ହଳଦିଆ ରେସମର ସ୍କାର୍ଟ ଆଉ ଜାକେଟ୍ ପିନ୍ଧିଥିବା କୃଷ୍ଣକେଶୀ ନାରୀ–ଓଲଗା ।

ଆମ୍ଭେମାନେ ତରବର ହେଉଥାଉଁ । କାରଣ ସମସ୍ତ ସମାଧିସ୍ଥଳକୁ ନିଶ୍ଚଳ କରି ଆମର ଅନ୍ୟାନ୍ୟ ସାଥୀ ବସ୍ ପାଖକୁ ବାହାରି ଗଲେଣି; ଆମକୁ ଅପେକ୍ଷା କରିଥିବେ । ପ୍ରତ୍ୟେକ ବସ୍‌ରେ ଯିଏ ଯାହା ସ୍ଥାନ ଦଖଲ ନକଲେ ବସ୍ ଛାଡ଼ିବ ନାହିଁ ପ୍ରତ୍ୟେକ ଥର ବସ୍‌ରେ ବସିଲାବେଳକୁ ଆମର ଦୋ'ଭାଷୀମାନେ ଗଣୁଥିବେ; କେହି ପଛରେ ରହିଗଲେ ନାହିଁ ତ ।

ଆମ ଉପରେ ଆମର ସାଥୀମାନଙ୍କର ଅସନ୍ତୋଷର କଟାକ୍ଷକୁ ଭୟ କରି ଆମ୍ଭେମାନେ ଯେତେବେଳେ ତରବରରେ ବିରାଟ ସୋପାନଶ୍ରେଣୀ ଦୁଇଟାକୁ ଥରକେ ଡେଇଁ ବାହାରିଯାଉଛୁ, ସେତେବେଳେ ବାହାରେ ତୁମୂଳ ହର୍ଷଧ୍ୱନି ଶୁଣିପାରିଲୁ । ତଳକୁ ଓହ୍ଲାଇ ଆସି ଦେଖିଲୁ, ନାଲି ବସର ସେପଟେ ଧାଡ଼ି ଧାଡ଼ି ହୋଇ ସମରକନ୍ଦର ନରନାରୀ ଛିଡ଼ା ହୋଇ ହର୍ଷଧ୍ୱନି କରୁଛନ୍ତି । 'ମିର୍ ମିର୍' (ବିଶ୍ୱଶାନ୍ତି) "ସୋଭିଏଟ୍ ହିନ୍ଦୁସ୍ଥାନ ଦୋସ୍ତି ଜିନ୍ଦାବାଦ ।" "ସଲାମ ଆଲେକୁମ" ।

ଏଥର ମନେ ହେଲା, ସମସ୍ତ ସମରକନ୍ଦ ବୁଝିଯାଇଛି ଆମେ ଭାରତୀୟ ଶାନ୍ତି-ପ୍ରତିନିଧିଦଳ ଆସିଛୁ । ପଚିଶ ହଜାର ଫୁଟର ହିନ୍ଦୁକୁଶ ଏବଂ ପୃଥିବୀର ଛାତ ପାମୀର ପାରହୋଇ ଦୁର୍ଗମ ଗିରିକାନ୍ତାର ମରୁ ଡେଇଁ ଆମେ ଆସିଛୁ । ଥରେ ତାଙ୍କରି ଦେଶର ଅଭିଯାନକାରୀଦଳ ମୁସଲମାନ ଧର୍ମ ପ୍ରଚାର କରିବାକୁ ତୈମୁରଙ୍କର ସେନାବାହିନୀ ହୋଇ ଆମରି ଦେଶକୁ ଆସିଥିଲେ । ସେତେବେଳେ ସେମାନଙ୍କର ପୂର୍ବ ବଂଶଧର ଥିଲେ ତୈମୁରଙ୍କର କ୍ରୀତଦାସ । ଇତିହାସ କହେ, କାଫେର୍‌ଙ୍କୁ ମାରିବାପାଇଁ ତୈମୁରଙ୍କ ତରଫରୁ ସେମାନଙ୍କୁ ଖୁବ୍ କଡ଼ା ଆଦେଶ ଥିଲା । ଏପରି କି ଜଣେ ମୁସଲମାନ ପୀରଙ୍କୁ, ଯିଏ ଜୀବନରେ ଗୋଟିଏ ଚଢ଼େଇ ମଧ ମାରି ନଥିଲେ, ତାଙ୍କୁ ବାଧ କରାଯାଇଥିଲା ତାଙ୍କର ପନ୍ଦର ଜଣ ବିଧର୍ମୀ ବନ୍ଦୀଙ୍କୁ ଦିଲ୍ଲୀର ରାଜପଥରେ ପ୍ରକାଶ୍ୟରେ ସ୍ୱହସ୍ତରେ ବଧ କରିବାକୁ ।

ଆମେ ଆସିଛୁଁ ଆଉ ଏକ ଧର୍ମ-ପ୍ରଚାରକ ଦଳ । କିନ୍ତୁ ଆମେ ପ୍ରକୃତରେ କ'ଣ ଶାନ୍ତି ପ୍ରଚାରକ ଥିଲୁ କି ଆମେ ଶାନ୍ତିରେ ଦୀକ୍ଷିତ ହେବାକୁ ଆସିଥିଲୁଁ ? ଆମେ ପ୍ରକୃତରେ ଏହି ମାଟିରେ ଶାନ୍ତି-ମନ୍ତ୍ରରେ ଦୀକ୍ଷିତ ହେଲୁ । ଏଇଠି ଦେଖିଲୁ, ବିଜ୍ଞାନ ଆଉ ଆଧୁନିକ କାରିଗରି ବିଦ୍ୟା ଏହି ମାଟିକୁ ତାର ପୁରାଣ ବିଶେଷତ୍ୱରେ ବିଭୂଷିତ କରିଛି । ୧୯୨୦ ମସିହାବେଳେ ସମରକନ୍ଦ ଏକ ଅତୀତର କଙ୍କାଳ ହୋଇ ପଡ଼ିଥିଲା । ଏହାର ପୁରାତନ ସମାଧି କେବଳ ଗୃଧ୍ରଶୃଗାଳର ଚରାଭୂଇଁ ଥିଲା । ନଭଶ୍ଚୁମ୍ବୀ ଅଟ୍ଟାଳିକା ଏବଂ ମିନାରଶ୍ରେଣୀର ମୃତ୍ୟୁ; ଶୀତଳ ଅନ୍ଧାର ଭିତରେ ବାଦୁଡ଼ି ଏବଂ ଚମଚଟା ବସା ବାନ୍ଧିଥିଲେ । ଆଜି ସମରକନ୍ଦ ତାର ପୁରାଣ-ବିଭୂତି ଫେରିପାଇଛି । ଅତୀତର ଭାରରେ ଆଜି ଆଉ ସେ ଖର୍ବ ନୁହେଁ ।

ବିଜ୍ଞାନ, ଅଙ୍ଗୁରଲତାତଳେ ପ୍ରାଣବାହୀ ଜଳଧାରା ବୁହାଇ ଦେଇଛି, ମୀନାର ଏବଂ ଗମ୍ବୁଜ ଦେହରେ ବିଦ୍ୟୁତ୍ ଆଲୋକ ଝଲସାଇ ଦେଉଛି । ଆଲିସରଭୋୟ ଆଉ ପୀରଦୁଉସୀନିର କବିତାକୁଞ୍ଜ ଆଜି ଶାନ୍ତିପୂର୍ଣ୍ଣ ସଂଗଠନର ସ୍ପର୍ଶରେ ଅମରାବତୀରେ ପରିଣତ ହୋଇଛି ।

ପୁରାତନ ସମରକନ୍ଦର କେନ୍ଦ୍ରସ୍ଥଳୀରେ ପହଞ୍ଚିଲୁ । ଖାଲି ମାଟିରେ ଅପୋଡ଼ା ଇଟା ସାହାଯ୍ୟରେ ଏଇଠି ଏନାମେଲଦିଆ ପ୍ରକାଣ୍ଡ ସୌଧ ନିର୍ମାଣ କରାଯାଇଛି । ମଝିରେ ଚଉତରା । ତୈମୁରଙ୍କ ସମୟରେ ଏହା ଥିଲା କେନ୍ଦ୍ର ଦରବାରସ୍ଥଳୀ ଏବଂ ବଜାର । ରୋମର ଫୋରମ ଆଉ ମସ୍କୋର କ୍ରେମଲିନ୍ ପରି ଏହାହିଁ ସମରକନ୍ଦର ବ୍ୟବସାୟ, ରାଜନୀତି, ସଂସ୍କୃତି ଏବଂ ସାମାଜିକ ଜୀବନର ପୀଠ ଥିଲା । ଗୋଟିଏ

ଅପ୍ରଶସ୍ତ ପାହାଚରେ ଓହ୍ଲାଇ ଚଉତରା ଭିତରେ ପଶିଲେ ବାଁପଟେ ଦୁଇଟା ଗଗନଭେଦୀ ମୀନାର ଏବଂ ସେମାନଙ୍କର ମଝିରେ ଏକ ଅତିକାୟ ବିରାଟ ଗମ୍ବୁଜ ଛାତର ମୋଗଲ ରୀତିର ହର୍ମ୍ୟ ଦେଖିବାକୁ ମିଳେ । ଡାହାଣପଟେ ତାହାଠାରୁ ଆହୁରି ବିରାଟ ହର୍ମ୍ୟ ଦେଖିବାକୁ ମିଳେ । ତାହାର ପାଖ ହର୍ମ୍ମ୍ୟରେ ଚତୁର୍ଦ୍ଦିଗକୁ ବେଢ଼ି ଉଠିଯାଇଛି ମାର୍ବଲ ସୋପାନଶ୍ରେଣୀ । ବାଁ-ପାଖର ହର୍ମ୍ମ୍ୟରାଜି ଏବଂ ମୀନାର ଦୁଇଟି ୧୬୧୯ ଏବଂ ୧୬୨୦ ସାଲରେ ତିଆରି ହୋଇଥିଲା । ଏମାନଙ୍କ ଆଡ଼କୁ ମୁହଁ କରି ଛିଡ଼ାହେଲେ ବାଁପାଖର ମୀନାର୍‌ଟି ଆଖିରେ ପଡ଼ିବ । ଦୁଇଟିଯାକ ମୀନାର, ପ୍ରତ୍ୟେକର ଉଚ୍ଚତା ୩୩ମିଟର । ବାଁ ପାଖର ମୀନାରଟି ୧୯୧୭ ମସିହା ରୁଷ-ବିପ୍ଳବବେଳକୁ ଅଣେଇ ହୋଇ ଭାଙ୍ଗିଯିବାକୁ ବସିଥିଲା । ବିପ୍ଳବର ପ୍ରଥମ ବର୍ଷ ଏହାର ଚାରିପାଖେ ଲୁହାର ଘେରମାଳ ବନ୍ଧାଯାଇଥିଲା ଏବଂ ସ୍ୱତନ୍ତ୍ର ପେଚକଣ୍ଟା ସାହାଯ୍ୟରେ ମୀନାରକୁ ସିଧା କରି ଛିଡ଼ାକରାଯାଇଥିଲା । ପୃଥିବୀରେ ଏଭଳି ଢ଼ଳିପଡ଼ିଥିବା ମୀନାର୍‌କୁ ସିଧାକରି ଛିଡ଼ାକରାଇବା କୌଶଳ ଅନ୍ୟ କୌଣସି ସ୍ଥାନରେ ଅବଲମ୍ବନ କରାଯାଇ ନାହିଁ । ଡାହାଣ ପଟର ମୀନାରକୁ ଏଭଳି ସିଧା କରିବାର କାମ ଚାଲିଛି ଏବଂ ସମୁଦାୟ ହର୍ମ୍ମ୍ୟରେ ବର୍ତ୍ତମାନ ମରାମତି କାମ ଲାଗିରହିଛି ।

ଡାହାଣ ପାଖର ହର୍ମ୍ମ୍ୟ ପୂର୍ବେ ଦ୍ୱିତଳ ଥିଲା । ଏହାର ଉପରତଳ ବର୍ତ୍ତମାନ ଭାଙ୍ଗିପଡ଼ିଛି । ଏହା ଭିତରେ ସମ୍ରାଟ ଉଲୁବେଗ୍ ଗୋଟିଏ ମାଦ୍ରାସା ନିର୍ମାଣ କରିଥିଲେ । କିମ୍ବଦନ୍ତୀ ଅଛି ଯେ ଏହି ମାଦ୍ରାସାରେ ସ୍ୱୟଂ ଉଲୁବେଗ୍ ଜ୍ୟୋତିଷଶାସ୍ତ୍ର ପଢ଼ାଉଥିଲେ । ଏହି ମାଦ୍ରାସାର ପଛପଟେ ଆହୁରି ଛୋଟ ପ୍ରାଙ୍ଗଣ ଭିତରେ କେତେଗୁଡ଼ିଏ ପ୍ରାସାଦ ରହିଛି । ଏଥିଭିତରୁ ଅଧିକାଂଶ ଭାଜିରୁଜି ଯାଇଥିଲା । କେତେଗୁଡ଼ିଏ ମରାମତି ଚାଲିଛି । ଏହି ହର୍ମ୍ମ୍ୟରାଜି ବାମପଟର ହର୍ମ୍ମ୍ୟରାଜି ଅପେକ୍ଷା ପୁରାତନ । ୧୪୧୭ରେ ଏଗୁଡ଼ିକର ନିର୍ମାଣ ଆରମ୍ଭ ହୋଇ ୧୪୨୦ରେ ଶେଷ ହୋଇଥିଲା ।

ପୂର୍ବେ ଏହି ସ୍ଥାନକୁ ରେଗିସ୍ଥାନ କୁହାଯାଉଥିଲା । ରେଗିସ୍ଥାନର ଅର୍ଥ ହେଉଛି 'ବାଲୁକାଭୂମି' । ଏହି ଚଉତରାର ମାଟି ପରୀକ୍ଷାକରି ଦେଖାଯାଇଛି, ଏହା ପ୍ରକୃତରେ ବାଲିଆ ମାଟି । ଏହି ମାଟିତଳେ ଆଗେ ଗୋଟିଏ କେନାଲ ଥିଲା ବୋଲି ପ୍ରବାଦ ଅଛି ।

ସମରକନ୍ଦର ସବୁଠାରୁ ମର୍ମସ୍ପର୍ଶୀ ପ୍ରେମର କାହାଣୀରେ କବିତାମୟୀ ପ୍ରସାଦ ଦୁଆରେ ପାରସୀ ଭାଷାରେ ଲେଖାଯାଇଛି, "ଜୀବନ ଗୋଟିଏ ମୁହୂର୍ତ୍ତ ମାତ୍ର; ତେଣୁ ଧୈର୍ଯ୍ୟ ଧର ।"

କିନ୍ତୁ ପ୍ରକୃତରେ ଏହି ପ୍ରାସାଦ ଏହି ଜୀବନର ନଶ୍ୱରତାକୁ ପ୍ରମାଣ କରିବାକୁ ରଚିତ ହୋଇ ନଥିଲା । ଏଥିରୁ ଗୋଟିଏ ପଟର ମସ୍‌ଜିଦ୍ ସ୍ୱୟଂ ତୈମୁର ନିର୍ମାଣ କରିଥିଲେ । ଏଠାରେ ଦୁଇଟା ପ୍ରକାଣ୍ଡ ସ୍ତମ୍ଭ ଆକଶକୁ ଅନାଇ ରହିଛି । ଏମାନେ ପୂର୍ବେ ଗୋଟିଏ ତୋରଣର ଦୁଇ ପଟର ଦ୍ୱାର ଥିଲେ । ପ୍ରତ୍ୟେକ ସ୍ତମ୍ଭ ଗୋଟିଏ ଗୋଟିଏ ସମାଧି ।

ଏହି ମସ୍‌ଜିଦ୍ କେନ୍ଦ୍ର ଏସିଆର ସବୁଠାରୁ ବୃହତ୍ତମ ପ୍ରାସାଦ ଥିଲା । କିନ୍ତୁ ୧୩୯୯ରେ ତୈମୁର ଏହାଠାରୁ ଆହୁରି ବଡ଼ ଏକ ପ୍ରାସାଦ ଏହି ମସ୍‌ଜିଦ୍‌ର ଅପର ପାର୍ଶ୍ୱରେ ତୋଳିବାକୁ ସ୍ଥିର କଲେ । ତାହାର ମୂଳଦୁଆ ହେବାପରେ ତୈମୁର ପଶ୍ଚିମକୁ ଅଭିଯାନରେ ବାହାରିଗଲେ । ୧୪୦୪ରେ ଫେରିଆସି ଦେଖିଲେ ଯେ ପ୍ରାସାଦ ତୋଳାସରିଛି; କିନ୍ତୁ ପ୍ରାସାଦର ତୋରଣ ପ୍ରାସାଦ ଭଳି ଉଚ୍ଚ ହୋଇ ନାହିଁ । ତେଣୁ ତୈମୁର ପ୍ରଧାନ ବିଶ୍ୱକର୍ମାକୁ ଫାଶି ଦେଲେ । ତାଙ୍କର ସ୍ତ୍ରୀ ଏବଂ ବାଳକଙ୍କୁ ଗୁଳି କରିଥିଲେ ଏବଂ ତାଙ୍କର ସମସ୍ତ ସମ୍ପତ୍ତି ବାଜ୍ୟାପ୍ତ କରିଥିଲେ ।

ମସ୍‌ଜିଦ୍‌ଠାରୁ ଲାଗି ଚଉତରା ଭିତରେ ଏପଟ ସେପଟ ଯାଏ ଉପରର ଛାତ ଥାଇ ଗ୍ୟାଲେରୀ ଥିଲା । ଏହି ଗ୍ୟାଲେରୀରେ ପୂର୍ବେ ଦର୍ଶକମାନେ ବସୁଥିଲେ ଏବଂ ତଳେ ବିଭିନ୍ନ ପ୍ରକାରର ଅଭିନୟ ହେଉଥିଲା । ଯେଉଁମାନେ ବାଣିଜ୍ୟ କରିବାକୁ ପୂର୍ବେ ସମରକନ୍ଦ ଆସୁଥିଲେ, ସେମାନେ ବର୍ଷାବେଳେ ଏଠାରେ ଆଶ୍ରୟ ନେଉଥିଲେ ।

ଏହି ପ୍ରାସାଦ ବର୍ତ୍ତମାନ ଧରାଶାୟୀ ହେବା ଅବସ୍ଥାରେ ରହିଛି । ଆରପଟ ମସ୍‌ଜିଦ୍‌ରୁ ମଧ କାନ୍ଥ ଖସିପଡୁଛି ଏବଂ ତାର ଘରି ପାଖରେ ଲୁହାର ବାଡ଼ ଦିଆଯାଇ ତା' ନିକଟକୁ କୌଣସି ବ୍ୟକ୍ତିର ଯିବାପଥ ରୁଦ୍ଧ କରି ଦିଆଯାଇଛି । ୧୮୮୭ ଖ୍ରୀଷ୍ଟାବ୍ଦରେ ଏକ ପ୍ରଚଣ୍ଡ ଭୂମିକମ୍ପରେ ଏହି ବିରାଟ ଅଟ୍ଟାଳିକାଗୁଡ଼ିକ ଫାଟିଗଲା ଏବଂ ମାର୍ବଲ ଫାଟକଟି ତଳେ ଖସିପଡ଼ିଥିଲା । ବର୍ତ୍ତମାନ ଯେଉଁ ସ୍ତମ୍ଭ ଏଠାରେ ଅଛି, ତାହାର ଉଚ୍ଚତା ୩୭ ମିଟର ହେବ । ଏହାର ଉପରିଭାଗ ମଧ ଏହି ଭୂମିକମ୍ପବେଳେ ଖସିପଡ଼ିଥିଲା । ସୋଭିଏତ୍ ଇଞ୍ଜିନିୟରମାନଙ୍କର ଗୋଟିଏ କମିଶନ ବସି ଶେଷରେ ସିଦ୍ଧାନ୍ତ ହେଲା ଯେ ଏହି ପ୍ରାସାଦକୁ ଆଉ ଧ୍ୱଂସମୁଖରୁ ରକ୍ଷା କରିବା ଅସମ୍ଭବ । କିନ୍ତୁ ଏହାର ପତନଯୋଗୁଁ ମନୁଷ୍ୟ ଏବଂ ଜୀବଜନ୍ତୁର କ୍ଷତି ହେବା ଲାଗି ସେମାନେ ଏହାର ଚତୁର୍ଦ୍ଦିଗକୁ ଲୁହା ତାରବାଡ଼ରେ ବାନ୍ଧି ରଖିଛନ୍ତି ।

ଦୁଇପଟରେ ବିରାଟ ଧ୍ୱଂସୋନ୍ମୁଖ ପ୍ରାସାଦ ମଝିରେ ତୋରଣ ନିକଟରେ ଗୋଟିଏ ବେଦିକା ଏବଂ ଖଣ୍ଡିଏ ଅଳ୍ପ ଉଚ୍ଚ ଘର ରହିଛି । ଏହିଠାରେ ଉଲୁବେଗ୍ କୋରାନ୍

ରଖୁଥିଲେ । ଏହି ବେଦିକାର ତଳେ ବିସ୍ତୃତ ଗାଲିଚ୍ଚ ଆଉ ତକିଆ ପାଖରେ ବସି ଆମ୍ଭେମାନେ ସେଦିନ ସମରକନ୍ଦର ଏକ ମଧୁର କାହାଣୀ ଶୁଣିବାକୁ ପାଇଥିଲୁ ।

କାହାଣୀ କହୁଥିଲେ ଜଣେ ପୌଢ଼ା ନାରୀ........ ତାଙ୍କର ଉଜ୍‌ବେକି ଟୋପିତଳୁ କେତୋଟି ଅବିନ୍ୟସ୍ତ କେଶ ବାହାରକୁ ବାହାରି ଆସିଥିଲା । କୃଷ୍ଣ କେଶରେ କିଛି କିଛି ବାର୍ଦ୍ଧକ୍ୟର ଶୁଭ୍ରତା ବୋଲି ହୋଇଯାଇଥିଲା । ମୁଖରେ ପ୍ରସନ୍ନତା ଏବଂ ବିଜ୍ଞତାର ଦୀପ୍ତି । ବାଦାମ ଆକୃତି ଆଖିର ଅର୍ଦ୍ଧଧନୁ ଭ୍ରୂଲତା ଏବଂ ସ୍ୱପ୍ନବୋଳା ଦୃଷ୍ଟିରେ ସେ ଯେପରି ସୁଦୂର ଅତୀତକୁ ଚ୍ଚହିଁରହିଥିଲେ । ଆମରି ଚନ୍ଦ୍ରାତପ ହୋଇଥିଲେ ପିଅର କୋଳି ଗଛରେ ଲତାୟିତ ପୁଷ୍ପିତ ଅଙ୍ଗୁରଲତା ।

ପୌଢ଼ା କହୁଥିଲେ ଏକ ଅବିସ୍ମରଣୀୟ କାହାଣୀ । ଆଉ ଆମର ଦୋ'ଭାଷୀ ଲିଡ଼ିଆ ତାକୁ ଅନୁବାଦ କରୁଥିଲେ ।

୧୩୯୯ ସାଲରେ ଯେତେବେଳେ ତୈମୁର ପଶ୍ଚିମ ଅଭିଯାନରେ ବାହାରିଗଲେ, ସେତେବେଳେ ଏଇଠି ଦକ୍ଷିଣପଟର ହର୍ମ୍ମ୍ୟ ନଥିଲା । ତାଙ୍କର ସବୁଠାରୁ ଛୋଟ ରାଣୀ ଆଦରିଣୀ ବିବି ଖାତୁନ ଏହିଠାରେ ଗୋଟିଏ ପ୍ରାସାଦ ଗଢ଼ି ବିଜୟ ବାହୁଡ଼ାବେଳେ ତୈମୁରଙ୍କୁ ଉପହାର ଦେବାକୁ ମନସ୍ଥ କରିଥିଲେ । ରାଜ୍ୟର ପ୍ରଧାନ ପ୍ରଧାନ କାରିଗର ଏବଂ ବିନ୍ଧାଣୀମାନେ ଡକରା ହୋଇ ଆସିଲେ । ଏମାନଙ୍କ ଭିତରେ ଜଣେ ଥିଲେ ପ୍ରଧାନ ବିନ୍ଧାଣୀ । ଯୁବକ ଲୋକ । ସେ ହିଁ ଏହି ପ୍ରାସାଦତୋଳାର ମୁଖ୍ୟ ଦାୟିତ୍ୱ ନେଇଥିଲେ ।

ପ୍ରାସାଦ ତୋଳାଚ୍ଚଲିଲା । ପ୍ରତିଦିନ ବିବି ଖାତୁନ ତାଙ୍କର ଏହି ଆଦରର କୀର୍ତ୍ତି ଦେଖିବାକୁ ଆସନ୍ତି । ପ୍ରତିଦିନ ଯୁବକ ବିନ୍ଧାଣୀର କୃତିତ୍ୱ ଏବଂ କର୍ମକୁଶଳତାରେ ମୁଗ୍ଧ ହୁଅନ୍ତି । ଏପରି ହେଉ ହେଉ ସମ୍ରାଟ୍-ମହିଷୀ ଆଉ ଯୁବକ ବିନ୍ଧାଣୀ ଭିତରେ ଜନ୍ମିଲା ଦୁରନ୍ତ ପ୍ରେମ । ମହିଷୀ ଏହି ପ୍ରେମର ଆକର୍ଷଣରେ ପ୍ରତିଦିନ ପ୍ରାସାଦତୋଳା ଦେଖିବାକୁ ଆସିଲେ ଏବଂ ଯୁବକ ବିନ୍ଧାଣୀ ପ୍ରେମର ଅର୍ଘ୍ୟସ୍ୱରୂପ ଏହି ପ୍ରାସାଦକୁ ଆପଣାର ମନପ୍ରାଣ ଦେଇ ଗଢ଼ିବାରେ ଲାଗିଲେ ।

ତୈମୁରଙ୍କର ଫେରିବାର ଖବର ଆସି ରାଜଧାନୀରେ ପହଞ୍ଚିଲା । ବିବି ଖାତୁନ ପ୍ରାସାଦକୁ ତୁରନ୍ତ ଶେଷ କରିବାକୁ ବିନ୍ଧାଣୀ ଯୁବକକୁ ଆଦେଶ ଦେଲେ । କିନ୍ତୁ କାହିଁ ? ଯେଉଁ ଯୁବକ ମହିଷୀଙ୍କର ଆଜ୍ଞାମାତ୍ରେ ଆପଣାର ପ୍ରାଣବଳି ଦେବାକୁ ପଛାଇ ନଥାନ୍ତେ, ସିଏ ପ୍ରାସାଦ ଶେଷ କରିବାକୁ ଅସ୍ୱୀକାର କଲେ । ସେ କହିଲେ, ପ୍ରାସାଦ ଶେଷ ହେଲେ ତାଙ୍କୁ ମହିଷୀଙ୍କ ସହିତ ଆଉ ସାକ୍ଷାତ୍ ମିଳିବ ନାହିଁ । ତେଣୁ ସେ ପ୍ରାସାଦ ଶେଷ କରିବେ ନାହିଁ ।

ଶେଷରେ ବାଧ ହୋଇ ଯୁବକ ଗୋଟିଏ ସର୍ତ୍ତରେ ପ୍ରାସାଦର ନିର୍ମାଣ ଶେଷ କରିବାକୁ ସମ୍ମତ ହେଲେ–ଯଦି ରାଜମହିଷୀଙ୍କ ଗଣ୍ଡରେ ଥରେ ଚୁମ୍ବନ କରିବାକୁ ତାକୁ ଅନୁମତି ମିଳେ ! ଏଭଳି ପ୍ରସ୍ତାବରେ ମହିଷୀ ପ୍ରଥମେ ଶଙ୍କିତା ହୋଇପଡ଼ିଲେ । ରାଜଅନ୍ତଃପୁରର କିମ୍ବା ଦେଶର ଯେ କୌଣସି ସମ୍ଭ୍ରାନ୍ତ ରୂପସୀ, ବିଭବଶାଳିନୀ ବାଳିକାକୁ ବିବାହ ପାଇଁ ସେ ବିନ୍ଧାଣୀକୁ ଯାଚିଲେ; କିନ୍ତୁ ପ୍ରେମାତୁର ବିନ୍ଧାଣୀ ସେହି ଗୋଟିଏ ମାତ୍ର ଅନୁରୋଧ ଛଡ଼ା ଆଉ କିଛି ଚାହିଁଲେ ନାହିଁ । ଅଗତ୍ୟା ରାଜମହିଷୀ ଆପଣାର ପ୍ରେମିକ ସେହି ଯୁବକ ବିନ୍ଧାଣୀର ଚୁମ୍ବନ ଗ୍ରହଣ କଲେ । କିନ୍ତୁ ଏହି ଚୁମ୍ବନ ଏଭଳି ଉତ୍ତପ୍ତ ହେଲା ଯେ ତାହା ମହିଷୀଙ୍କର କୋମଳ ଗୋଲାପୀ ଗଣ୍ଡରେ ଏକ କୃଷ୍ଣଚିହ୍ନ ହୋଇ ରହିଗଲା। ଏଣେ ପ୍ରାସାଦର କାର୍ଯ୍ୟ ମଧ୍ୟ ଶେଷ ହେଲା ।

ପଶ୍ଚିମର ଦିଗ୍‌ବିଜୟ ସାରି ତୈମୁର ରାଜଧାନୀକୁ ବାହୁଡ଼ିଥିଲେ । ଆପଣାର ପ୍ରିୟତମା ବିବି ଖାତୁନଙ୍କ ସହିତ ସେଦିନ ରାଜ ଅନ୍ତଃପୁରରେ ତାଙ୍କର ସାକ୍ଷାତ ହେଲା । ତାଙ୍କର ଯିବାବେଳେ ବିବି ଖାତୁନଙ୍କର ମୁଖମଣ୍ଡଳ ନିଷ୍କଳଙ୍କ ଥିଲା । ଅନ୍ତଃପୁରର 'ପାରଞ୍ଜା' ଭିତରେ ବଢ଼ିଥିବା ମହିଷୀଙ୍କର ମୁଖରେ ଏହି କୃଷ୍ଣଚିହ୍ନ ଦେଖି ସେ ତାହାର କାରଣ ପଚାରିଲେ । ଶଙ୍କିତା ମହିଷୀ ସତ୍ୟକଥା ପ୍ରକାଶ କଲେ ।

ପରଦିନ ପ୍ରତାପୀ ତୈମୁର ଆପଣାର ରାଜସଭାକୁ ସେହି ନୂତନ ପ୍ରାସାଦ ନିକଟରେ ଡକାଇଲେ ଏବଂ ଯୁବକ ବିନ୍ଧାଣୀକୁ ସଭାସ୍ଥଳକୁ ହକାରି ଆଣିଲେ । ଏହି ଯୁବକର ଭାଗ୍ୟରେ ଯେ କଠୋର ଲୋମହର୍ଷଣକାରୀ ଦଣ୍ଡ ପଡ଼ିବ, ଏ ବିଷୟରେ ଆଉ ରାଜ୍ୟରେ କାହାରି ସନ୍ଦେହ ରହିଲା ନାହିଁ । ଯେଉଁଠାରେ ଆମେ ବସି ଏହି କାହାଣୀ ଶୁଣୁଥିଲୁ, ସେହି ସମସ୍ତ ସ୍ଥାନ ଲୋକରଣ୍ୟ ହୋଇଗଲା ।

ସ୍ଥିରଦୃଷ୍ଟି ବିନ୍ଧାଣୀ ଯୁବକ ଉନ୍ନତ ଭାଲରେ ସମ୍ରାଟଙ୍କ ସମ୍ମୁଖରେ ଛିଡ଼ାହେଲା । ସାଙ୍ଗରେ ତା'ର ୧୦।୧୨ ବର୍ଷର ଗୋଟିଏ କିଶୋର । ହାତରେ କିଶୋରଟି ମଧ୍ୟଏସିଆର ଲୋକବାଦ୍ୟ ତାମ୍ବୁରା ଧରିଥିଲା । ଏହି ତାମ୍ବୁରାର ତିନୋଟି ତାର ଏବଂ ଏହି ତାରରେ ଖାଲି ହାତମାରି ଉଜ୍‌ବେକିସ୍ତାନର ଗାୟକ ଏବେ ବି ଲୋକ ସଙ୍ଗୀତ ଗାଏ ।

ବିନ୍ଧାଣୀ ଯୁବକ ସମ୍ରାଟ୍‌ଙ୍କ ଆଗରେ ନିଃସଙ୍କ କଣ୍ଠରେ କହିଲା, 'ବାଦଶାହ, ମୁଁ ଦୁଇଟି ଅଘଟଣ ଘଟଣା କରିଛି । ପ୍ରଥମେ ଏଭଳି ବିରାଟ ଅଭୁତପୂର୍ବ ପ୍ରାସାଦ ମୋରି ଯୋଗୁଁ ସମ୍ଭବ ହୋଇଛି । ଦ୍ୱିତୀୟରେ ସମ୍ରାଟ୍‌ଙ୍କର ଅତି ଆଦରର ମହିଷୀଙ୍କୁ ପ୍ରେମ

କରିବାକୁ ସାହସ କରିଛି । କିନ୍ତୁ ଆଉ ଗୋଟିଏ ଆଶ୍ଚର୍ଯ୍ୟ କଥା ମୁଁ ସମ୍ରାଟ୍‌ଙ୍କୁ ଦେଖାଇବି । ତା'ପରେ ମୁଁ ମୋର ଶାସ୍ତି ଗ୍ରହଣ କରିବି ।'

ସଭାର ସମବେତ ଜନତା ଏବଂ ସ୍ୱୟଂ ସମ୍ରାଟ୍ ମଧ ଏହି ଆଶ୍ଚର୍ଯ୍ୟ କଥା ଦେଖିବାକୁ କିଛି ସମୟ ଦେବାକୁ କୁଣ୍ଠିତ ନଥିଲେ ।

କିଶୋର ହାତର ତାମ୍ବୁରା କରୁଣ ସ୍ୱରରେ ବାଜିଉଠିଲା । ତାହାରି କରୁଣ ମୂର୍ଚ୍ଛନାର ତାଳେ ତାଳେ ଯୁବକ ବିନ୍ଧାଣୀ ବିରାଟ ମୀନାର ଉପରେ ଉପରୁ ଉପରକୁ ଉଠିବାରେ ଲାଗିଲା । କେତେ କାଳପରେ ଉଚ୍ଚ ମୀନାରର ବହୁ ଉଚ୍ଚରେ ସେ ଗୋଟିଏ କ୍ଷୁଦ୍ର କୀଟପରି ଦିଶିଲା । ତାହାପରେ ସେ ଅଦୃଶ୍ୟ ହୋଇଗଲା । ବହୁକାଳ ଧରି ସ୍ତବ୍ଧ ଜନତା ଏବଂ ବାଦଶାହା ତୈମୁର ଅପେକ୍ଷା କଲେ; କିନ୍ତୁ ଯୁବକ ବିନ୍ଧାଣୀ ଆଉ ଫେରିଲା ନାହିଁ । ପ୍ରତିଶୋଧ ନ ନେଇ ହତାଶ କ୍ରୋଧରେ ତୈମୁର ବିନ୍ଧାଣୀର ସମସ୍ତ ପରିବାରକୁ ଗୁଳି କଲେ ଏବଂ ସମସ୍ତ ସଂପତ୍ତି ବାଜ୍ୟାପ୍ତ କଲେ । କେବଳ ସେହି କିଶୋର ବାଳକକୁ ପ୍ରାଣରେ ମାରିଲେ ନାହିଁ ।

ଗଳ୍ପ ଶେଷ ହେଲାପରେ ପ୍ରୌଢ଼ା ଆପଣାର ସ୍ତିମିତ ଆଖିକୁ ଆଉ ଟିକିଏ ଆୟତ୍ତ କରି ଚତୁର୍ଦ୍ଦିଗକୁ ଗ୍ୱହଁଲେ ।

ତା'ପରେ କହିଲେ, "ଏହି ପ୍ରାସାଦ ଆଜି ଧ୍ୱଂସମୁହଁରେ, ହୁଏତ କେତେ କାଳପରେ ଏହା ଲୋପ ପାଇଯିବ । କିନ୍ତୁ ଏହି ପ୍ରେମ-କାହାଣୀ ଉଜ୍‌ବେକିସ୍ତାନର ଲୋକମୁଖରୁ ଲୁଚିବ ନାହିଁ । ଏ କାହାଣୀ ସତ୍ୟ କି ନୁହେଁ; ସେଥିରେ କିଛି ଯାଏ ଆସେ ନାହିଁ । ଏପରି ଏକ କାହାଣୀ ଯେ ଏତେକାଳ ବଞ୍ଚିରହିଛି, ଏହାହିଁ ଏହାର ସତ୍ୟତାର ନିଦର୍ଶନ ।"

କାହାଣୀର କୁହୁକ ସରିଲା । ନିଶ୍ଚଳ ଗଛଲତାର ଛାଇରୁ ମୁକୁଳି ଆସିଥିବା ସୂର୍ଯ୍ୟକିରଣ ମାଟିରେ ନାନାଚିତ୍ର ଆଙ୍କିଦେଇଛି । ଗଛପତ୍ରରେ ପକ୍ଷୀମାନଙ୍କର ଶାନ୍ତ କୋଳାହଳ । ଆମରି ପଛପଟେ ଛିଡ଼ାହୋଇଥିବା ନରନାରୀ ନିଶ୍ଚଳ, ସ୍ତବ୍ଧ; ଯେପରି ଇତିହାସର ଏକ ନିଃଶ୍ୱାସରୋଧକାରୀ ନାଟକର ଶେଷ ଯବନିକା ଏକ୍ଷଣି ପଡ଼ିଯାଇଛି । ମୋର ଆଖିରେ ଭାସିଉଠିଲା "ଜୀବନ ଗୋଟିଏ ମୁହୂର୍ତ୍ତ ମାତ୍ର; ଧୈର୍ଯ୍ୟ ଧର ।"

## ଛଅ

ତୈମୁରଲଙ୍ଗ କ'ଣ ପ୍ରକୃତରେ ଜଣେ ଐତିହାସିକ ବ୍ୟକ୍ତି ?

ତୈମୁରଲଙ୍ଗ କ'ଣ ପ୍ରକୃତରେ ଖଞ୍ଜ ଥିଲେ ?

ତାଙ୍କର ପୁତ୍ର ଉଲୁବେଗ୍‌ଙ୍କୁ କ'ଣ ଆତତାୟୀମାନେ ହତ୍ୟା କରିଥିଲେ ?

ଏହି ପ୍ରଶ୍ନ ମଧ୍ୟଏସିଆର କେବଳ ନୁହେଁ, ବିଶ୍ୱ ଇତିହାସରେ ତୈମୁର ଏବଂ ତାଙ୍କର ବଂଶଧରମାନଙ୍କର ସମାଧି ଦେଖିଲାବେଳେ ଆମ୍ଭେମାନେ ଏହି ପ୍ରଶ୍ନର ଉତ୍ତର ପାଇଥିଲୁ । ଗୋଟିଏ ନୈଷ୍ଠିକ ମୁସଲମାନର ସମାଧିପରି ଏହି ସମାଧି ମନ୍ଦିରଟି ବାହାରକୁ ବିଶେଷ ଆଖିଦୃଶିଆ ନୁହେଁ । ଆପଣାର ପୌତ୍ର ମହମ୍ମଦ ସୁଲତାନଙ୍କ କବର ପାଇଁ ତୈମୁର ପ୍ରଥମେ ଏହି ସମାଧି ମନ୍ଦିର ଆରମ୍ଭ କରିଥିଲେ । ୧୩୯୯ ସାଲରେ ତୈମୁର ଯେତେବେଳେ ଶେଷ ଥର ପାଇଁ ପଶ୍ଚିମ ଅଭିଯାନରେ ଗଲେ, ସେତେବେଳେ ମହମ୍ମଦ ସୁଲତାନଙ୍କୁ ସମରକନ୍ଦର ରାଜ୍ୟଭାର ଦେଇଯାଇଥିଲେ । ୧୪୦୧ ସାଲରେ ତୈମୁର ଟ୍ରାନ୍‌ସକକେସିଆ ଅଞ୍ଚଳରେ ଥିଲାବେଳେ ମହମ୍ମଦ ସୁଲତାନଙ୍କୁ ଡାକି ପଠାଇଲେ । ଯୁବକ ମହମ୍ମଦ ସୁଲତାନ ପିତାମହଙ୍କର ଆଦେଶ ଅନୁସାରେ ଟ୍ରାନସ୍‌କକେସିଆ ଯାଇଥିଲେ । ସେଠାରେ ସେ ରୋଗରେ ପଡ଼ିଲେ ଏବଂ ତାଙ୍କର ମୃତ୍ୟୁ ହେଲା । ତୈମୁର ପ୍ରିୟ ପୌତ୍ରର ମୃତ୍ୟୁରେ ଦୁଃଖିତ ହେଲେ ଏବଂ ସେ ସମରକନ୍ଦ ଅଭିମୁଖରେ ଫେରିଲାବେଳେ ବାଳକର ମୃତଦେହକୁ ସାଙ୍ଗରେ ଘେନି ଆସିଥିଲେ । ୧୪୦୪ ମସିହାରେ ସମରକନ୍ଦରେ ତୈମୁରଙ୍କର ଆଦେଶ ଅନୁସାରେ ଏକ ସମାଧି ତିଆରି ଚାଲିଲା । କିନ୍ତୁ ୧୪୦୫ ଫେବୃଆରୀ ମାସରେ ତୈମୁର ନିଜେ ପ୍ରାଣତ୍ୟାଗ କଲେ ଏବଂ ତାଙ୍କର ପ୍ରତିଷ୍ଠିତ ଅସମ୍ପୂର୍ଣ୍ଣ ସମାଧି ମନ୍ଦିରରେ ଶେଷ ବିଶ୍ରାମ ନେଲେ । ପରେ ଏହି ସମାଧିକୁ ଉଲୁବେଗ ସଂପୂର୍ଣ୍ଣ କରିଥିଲେ ଏବଂ ତାଙ୍କରି ଦେହ ମଧ ଏଇଠାରେ ସମାଧି ଲଭିଥିଲା ।

ଏହି ସମାଧି ମନ୍ଦିରରେ ପାଞ୍ଚଗୋଟି କବର ରହିଛି । ମଝିରେ ଘନଶ୍ୟାମଳ ବର୍ଣ୍ଣର ମାର୍ବଲ ତଳେ ତୈମୁରଙ୍କର ସମାଧି । ତାଙ୍କର ଚାରିପଟେ ଉତ୍ତରରେ ମହମ୍ମଦ ସୁଲତାନ, ଦକ୍ଷିଣରେ ତୈମୁରଙ୍କର ଦୀକ୍ଷାଗୁରୁ ସକୁଦ, ପୂର୍ବରେ ଉଲୁବେଗ ଏବଂ ପଶ୍ଚିମରେ ତୈମୁରଙ୍କର ଆଉ ଏକ ପୁତ୍ରଙ୍କର ସମାଧି । ପ୍ରତ୍ୟେକ ସମାଧିର ତଳେ ମାଟିର ଅନ୍ଧକାର ଭିତରେ ଗୋଟିଏ ଗୋଟିଏ Vault ଏବଂ ସେଇଠି ତୈମୁର ପ୍ରଭୃତିଙ୍କର କଫିନ୍ ମାଟିତଳେ ପୋତାଯାଇଛି ।

ଇତିହାସର ତଥ୍ୟ ଅନୁସନ୍ଧାନ କରିବାକୁ ଉଜ୍‌ବେକିସ୍ଥାନର ସୁପ୍ରିମ ସୋଭିଏଟ୍ ଗତ ୧୯୪୧ ମସିହାରେ ଗୋଟିଏ କମିଶନ ବସାଇଥିଲେ । ଉକ୍ତ କମିଶନ ସୁପାରିସ କଲେ ଯେ ତୈମୁର ଏବଂ ତାଙ୍କର ପୁତ୍ର-ପୌତ୍ରଙ୍କର ସମାଧି ଖୋଳାଯାଇ ସେମାନଙ୍କ ବିଷୟରେ ଐତିହାସିକ ତଥ୍ୟଗୁଡ଼ିକର ପରୀକ୍ଷା କରାଯାଉ । ସୁପ୍ରିମ ସୋଭିଏଟ୍

କମିଶନଙ୍କର ସୁପାରିଶ ଗ୍ରହଣ କଲେ । ତେଣୁ ୧୯୪୧ ମସିହାରେ ଭାରି ମାର୍ବଲ ପ୍ରସ୍ତରକୁ ସ୍ୱତନ୍ତ୍ର ଯନ୍ତ୍ର ସାହାଯ୍ୟରେ ଉତ୍ତୋଳନ କରାଗଲା । ତଳେ ଥିବା ଦୁଇଟା ମାର୍ବଲର ପ୍ଲେଟ୍ ମଧ୍ୟ ଉଠାଇ ନିଆଗଲା । ତା'ପରେ ସେମାନେ ଏକ କାଠର କଫିନ୍ ଦେଖିବାକୁ ପାଇଲେ । ତୈମୁରଙ୍କର ଦେହର ଅବଶିଷ୍ଟାଂଶ ସେହି କଫିନ ଭିତରୁ ମିଳିଲା । ସେଥିରୁ ଦେଖାଗଲା ଯେ ତୈମୁରଙ୍କର ଦକ୍ଷିଣ ଆଣ୍ଠୁରେ ଦୁଇ ଥର ଗୁରୁତର ଆଘାତ ହୋଇଛି ଏବଂ ତାଙ୍କର ଡାହାଣ ହାତ ଜାଗାରେ ଗୋଟିଏ କାଠର ହାତ ରହିଛି । ତାଙ୍କର ହାତ ପରୀକ୍ଷା ହେଲା ଏବଂ ସେଥିରୁ ଜଣାପଡ଼ିଲା ଯେ ତୈମୁରଙ୍କର ହାତରେ ହାଡ଼-ଯକ୍ଷ୍ମା ରୋଗ (Bone Tubereulosis) ଥିଲା । ମୁଣ୍ଡର ଖପୁରି ଏବଂ କିଛି ଅବିଶିଷ୍ଟ କେଶ ମଧ୍ୟ ମିଳିଲା । ଏହି ଖପୁରି ଏବଂ ମୁଖର ହାଡ଼ରୁ ସେମାନେ ତୈମୁରଙ୍କର ଛବି ଆଙ୍କିବାରେ ସମର୍ଥ ହେଲେ ।

ଉଲୁବେଗ୍‌ଙ୍କର କଫିନ୍‌ରୁ ଦେଖାଗଲା ଯେ ପ୍ରକୃତରେ ତାଙ୍କର ମୁଣ୍ଡ କଟା ହୋଇଥିଲା । ମୁସଲମାନମାନଙ୍କର କୌଳିକ ପ୍ରଥା ଅନୁସାରେ ଯେଉଁ ପୋଷାକ ପିନ୍ଧି ଜଣେ ମରିଥାଏ, ସେହି ପୋଷାକ ସମେତ ତାକୁ କବର ଦେବାର କଥା । ରକ୍ତଦାଗ ଲାଗିଥିବା ପୋଷାକ ଉଲୁବେଗଙ୍କର କବରରୁ ମିଳିଥିଲା । ଏଥିରୁ ପ୍ରମାଣିତ ହେଲା ଯେ ପ୍ରକୃତରେ ସେ ଆତତାୟୀଦ୍ୱାରା ନିହତ ହୋଇଥିଲେ ।

ସକ୍ରୁଦଙ୍କର କବରରୁ ନାନାବିଧ ପ୍ରସ୍ତରପୂର୍ଣ୍ଣ ଗୋଟିଏ କାଠର ବାକ୍‌ସ ମିଳିଥିଲା । ମୁସଲମାନମାନଙ୍କର ଧର୍ମପ୍ରଥା ଅନୁସାରେ କୌଣସି ପାର୍ଥିବ ଅଳଙ୍କାର ବା ଉପାଧି ପଦକ କବରରେ ରହିବାର କଥା ନୁହେଁ । ବୋଧହୁଏ ଏହି ପଥରଗୁଡ଼ିକ ସକ୍ରୁଦ ଉଲୁବେଗ୍‌ଙ୍କ ପାଇଁ ମକ୍‌କାରୁ ଆଣିଥିଲେ ।

୧୯୪୧ ମସିହା ଜୁନ୍ ୨୨ ତାରିଖରେ ଜର୍ମାନୀର ହିଟଲର ସୋଭିଏଟ୍ ଦେଶ ଆକ୍ରମଣ କଲେ । ଏହି ୨୨ ତାରିଖର ଏକ ସପ୍ତାହ ପୂର୍ବରୁ ଏହି ସମାଧିସବୁ ଖୋଳାଯାଇଥିଲା । ଯୁଦ୍ଧ ଫଳରେ ସେଗୁଡ଼ିକୁ ହଠାତ୍ ପରୀକ୍ଷା କରାଯାଇ ପାରି ନଥିଲା । ତେଣୁ ଏହି କଫିନ୍ ସମେତ ଶରୀରର ଅବଶିଷ୍ଟାଂଶ ଉଜ୍‌ବେକ ରାଜଧାନୀ ତାସକନ୍ଦକୁ ନିଆଯାଇଥିଲା । ପରେ ୧୯୪୬ ମସିହାରେ ଉକ୍ତ କଫିନ୍‌ଗୁଡ଼ିକୁ ଯଥାସ୍ଥାନରେ ରଖିଦିଆଯାଇ ସମାଧିକୁ ପୂର୍ବ ଅବସ୍ଥାରେ ପୂର୍ଣ୍ଣ କରି ଦିଆଯାଇଥିଲା । ପ୍ରତ୍ୟେକ ସମାଧିରୁ ଯେଉଁ ଐତିହାସିକ ତଥ୍ୟ ଆବିଷ୍କୃତ ହେଲା, ତାହାକୁ ତାଜିକ୍, ଉଜ୍‌ବେକ, ରୁଷିଆ ଏବଂ ଇଂରେଜ ଭାଷାରେ ଲେଖି ସମାଧିମାନଙ୍କରେ ରଖି ଦିଆଯାଇଥିଲା ।

ଚୀନ ଦେଶର ସୀମାନ୍ତରୁ ଆନୀତ ତୈମୁରଙ୍କର ସମାଧିର ମାର୍ବଲ ପଥର ଉପରେ କେତେଗୁଡ଼ିଏ କୌତୁହଳୋଦ୍ଦୀପକ ଲେଖା ରହିଛି । ଯେଉଁମାନେ ପାରସିକ ଭାଷାରେ ପ୍ରବୀଣ, ସେମାନେ କହନ୍ତି, ତୈମୁରଙ୍କର ବଂଶାବଳି ଏଥିରେ ଖୋଦିତ ହୋଇଛି । ଏହି ବଂଶାବଳିରେ ତୈମୁରଙ୍କର ପୂର୍ବପୁରୁଷ ସହିତ ସେ ଇତିହାସ ପ୍ରସିଦ୍ଧ ଦିଗ୍‌ବିଜୟୀ ଚେଙ୍ଗିଜ୍ ଖାଁଙ୍କୁ ମଧ୍ୟ ସଂପୃକ୍ତ କରିଛନ୍ତି । କିଂବଦନ୍ତି ଅଛି ଯେ ଚେଙ୍ଗିଜ୍ ଖାଁ କୌଣସି ମାନବୀର ଗର୍ଭରୁ ଜନ୍ମ ହୋଇ ନଥିଲେ; ମୁସଲମାନଙ୍କ ଭିତରେ ପ୍ରସିଦ୍ଧ ଆଲାନ୍ କାବା ଚେଙ୍ଗିଜ୍‌ଙ୍କୁ ଜନ୍ମ ଦେଇଥିଲେ ।

ତୈମୁରଙ୍କର ପ୍ରଥମ ମହିଷୀ ବିବି ହାନୁମ୍ ଚେଙ୍ଗିଜ୍‌ଙ୍କର ବଂଶଧର ଥିଲେ । ତୈମୁର ଆପଣାକୁ ଚେଙ୍ଗିଜ୍‌ଙ୍କର ବଂଶଧର ବୋଲି ପରିଚୟ ଦେବାକୁ ନିଜକୁ ଗୋରା ଖାଁ ବୋଲି ଡାକୁଥିଲେ । 'ଗୋରା ଖାଁ' ଅର୍ଥ ହେଉଛି ଖାଁଙ୍କର ଜାମାତା ।

ସମରକନ୍ଦର ପ୍ରାଚୀନ ଇତିହାସର ସ୍ମୃତିମାନଙ୍କୁ ଶେଷ କରି ଆମ୍ଭେମାନେ ଅଦୂରରେ ଥିବା ଏକ କୋଠଘ୍ରଷ ଆଡ଼କୁ ଯାତ୍ରା ଆରମ୍ଭ କଲୁ । ବେଳ ପ୍ରାୟ ଦୁଇଟା ହୋଇଯାଇଥିଲା । ଲାଇମ୍, ପପଲାର, ମାଲବରି ଆଉ ଅଙ୍ଗୁରଝାଡ଼ ଭିତରେ ଆମ୍ଭମାନଙ୍କର ବସ୍ ଘ୍ରଲିଲା । ଆଗରେ ଦୁଇଟି ବିରାଟ ତୈଳଚିତ୍ର – ଲେନିନ ଓ ଷ୍ଟାଲିନଙ୍କର ଏବଂ ତାହାର ଅଦୂରରେ କୋଠଘ୍ରଷର ବୀରମାନଙ୍କର ଚିତ୍ରସବୁ ବିଭିନ୍ନ ଷ୍ଟାଣ୍ଡମାନଙ୍କରେ ସଜ୍ଜିତ ଥିଲା ।

ସେହି ଚିତ୍ରାବଳିର ଚିରନ୍ତନ ପ୍ରଦର୍ଶନୀ ନିକଟରେ ନରମ ଗାଲିଘ୍ର ଏବଂ ମନୋହର ରେଶମ ଝାଲରଦିଆ ତକିଆ ବିରାଟ ତକ୍ତପୋଷମାନଙ୍କ ଉପରେ ପକାଇ ଆମର ଆସନ ସଜାଡ଼ି ସେହି କୋଠଚାଷୀ ନରନାରୀ ଆମର ଉଚ୍ଛଳ ସମ୍ବର୍ଦ୍ଧନା କରିଥିଲେ । ସେହି ସମ୍ବର୍ଦ୍ଧନାରୁ ପିରଦୁଉସୀ, ହାଫିଜ, ଆଉ ଓମାରଖାୟେମ୍ ଯେ ଏହି ଭୂମିରେ ଆପଣାର କବିତା ଲେଖିଥିଲେ, ଏଥିରେ ସନ୍ଦେହ କରିବାର କୌଣସି କାରଣ ରହିଲା ନାହିଁ ।

ସୋଭିଏଟ୍ ଦେଶର କୋଠଘ୍ରଷ ଭିତରୁ ଦୁଇଟିରେ ଆମ୍ଭେମାନେ ଅତିଥି ହୋଇଥିଲୁ । ଭୋଜନ, ପାନର ପରିମାଣ ଏବଂ ବିଚିତ୍ରତାରେ ଏମାନେ ଏକକୁ ଆରେକ ବଳିଅର । ଲମ୍ବା ଟେବୁଲ ଉପରେ ଗୋଟିଏ ଲମ୍ବା ଉଚ୍ଚା ଘରେ ଏବଂ ତା'ର ଘ୍ରରିପଟ ଆମର ସ୍ଥାନ ସ୍ଥିର ହେଲା । ତାମ୍ବୁରା ବାଜିଲା, ଆଉ ବାଜିଲା ବ୍ୟାଗ ପାଇପ ଆଉ ହାର୍ପ । ଆମ୍ଭେମାନେ ଏଠାରେ ଯେପରି ଦୁଇ ତିନି ଘଣ୍ଟା ଆଖିର ପଲକ ପରି

କଟାଇଦେଲୁ, ତାହା ଭାଷା ଅକବିର ଲେଖନୀରେ ସମ୍ଭବ ନୁହେଁ । ଥରେ ଖାଇବା ଟେବୁଲ ଛାଡ଼ିଆସିଲେ ପୁଣି ଥରେ ଡାକରା ପଡ଼େ । ବାରମ୍ବାର ଆମେ ଭୁରିଭୋଜନପରେ ଟେବୁଲ ଛାଡ଼ି ଆସୁଁ । ବାରମ୍ବାର ସେମାନେ ଆମକୁ ଟାଣି ଟାଣି ସେହି ଟେବୁଲ ଉପରେ ଅତି ମିଷ୍ଟ, ମନୋହର ଏବଂ ସୁବାସିତ ଖାଦ୍ୟର ସମ୍ଭାରରେ ଅତିଷ୍ଠ କରି ଦେଲେ । ଏକଥା ମୁଁ ଦମ୍ଭର ସହିତ କହିପାରେ ଯେ, ସେଦିନ ସେହି ବାସ୍ତବ ଅମରାବତୀକୁ ଛାଡ଼ି ଆମ୍ଭେମାନେ ଫେରିବାକୁ ଆଦୌ ପ୍ରସ୍ତୁତ ନଥିଲୁ; କିନ୍ତୁ ଆମକୁ ଫେରିବାକୁ ହେବ । ଘରୋଟି ଦଫାରେ ଆମ ଘରୋଟି ଉଡ଼ାଜାହାଜ ତାସକନ୍ଦକୁ ଫେରିଯିବ ।

ବିମାନଘାଟିକୁ ଫେରିବା ପୂର୍ବରୁ ସମରକନ୍ଦର ସେହି କୋଠଘଷୀ ନାରୀମାନେ ଅମ୍ଭମାନଙ୍କର ମହିଳାମାନଙ୍କୁ ଉଜ୍‌ବେକିସ୍ତାନର ଅନବଦ୍ୟ ଟୋପିରୁ ଗୋଟିଏ ଗୋଟିଏ ଉପହାର ଦେଇଥିଲେ ।

ଗାଲିଚ୍ଛବିଛା ତକ୍ତପୋଷ ଉପରେ ଆମେ ପଡ଼ିରହି ଆକାଶକୁ ଚ୍ଛହିଁଥାଉଁ । କେତେବେଳେ ଚ୍ଛଳିଥାଏ ସଙ୍ଗୀତ ଭାରତୀୟ ଆଉ ଉଜ୍‌ବେକି – ପିରଦୁଉସୀ ଆଉ ହାଫିଜ । ସୋଭିଏଟ୍‌ର କୋଠଘଷର ଚେୟାରମ୍ୟାନମାନେ ସମସ୍ତେ ବୋଧହୁଏ ଏକ ଖଳିରେ ଗଢ଼ା । ଉଚ୍ଚା, ବିରାଟ ବପୁ ମନୁଷ୍ୟ । ସେମାନଙ୍କ ହାତର ପାପୁଲିରେ କରମର୍ଦ୍ଦନ କଲାବେଳେ ସେମାନଙ୍କର ଆନ୍ତରିକତା ଏବଂ ଅତିଥିବତ୍ସଳତା ଆଖିରେ ସେମାନଙ୍କର ପରିତୃପ୍ତିର ଦୀପ୍ତି ଆମ୍ଭମାନଙ୍କୁ ଅଭିଭୂତ କରିଦେଲା ।

ସେମାନଙ୍କର ଆତିଥ୍ୟର ବନ୍ଧନରୁ ଆପଣା ଆପଣାକୁ ଛିନ୍ନ କରି କରତାଳି ଏବଂ ହର୍ଷଧ୍ୱନିର ଉଚ୍ଛଳ ଉସ ପାରିହୋଇ ଆମ୍ଭେମାନେ ବସ୍‌ଗୁଡ଼ିକୁ ଧରିବାକୁ ଗଲୁ । ସେତିକିବେଳେ ଖାରିଟୋନୋଭା ଗ୍ୟାଲିନା ମୋତେ ତାଙ୍କର ମୋଟର ଗାଡ଼ିକୁ ଡାକିଲେ; ଅନ୍ୟ ସମସ୍ତେ ଦୁଇଟି ବସରେ ସ୍ଥାନ ନେଇ ବସିସାରିଥିଲେ । ମୋର ଅନିଚ୍ଛୁକ ପାଦ ମୋତେ ଟିକିଏ ପଛାଇ ଦେଇଥିଲା । ତେଣୁ ମୋତେ ଛୋଟ ମୋଟର ଗାଡ଼ିକୁ ନିମନ୍ତ୍ରଣ ହେଲା ବୋଧହୁଏ । ପଛ ସିଟ୍‌ରେ ଶ୍ରୀମତୀ ଖାରିଟୋନୋଭା ଗ୍ୟାଲିନାଙ୍କ ସାଙ୍ଗରେ ବସିଲି । ଆମର ଦୁଇଟି ବସର ପିଛା ଧରି ଦୁଇଟି ଛୋଟ ମୋଟର ଗାଡ଼ି ସମରକନ୍ଦ ବିମାନଘାଟି ଆଡ଼କୁ ଧାଇଁଲା ।

## ସାତ

ଖାରିଟୋନୋଭା ଯେଉଁ ମାସିକ ପତ୍ରଟି ମୋତେ ଦେଇଥିଲେ, ତାହା ସେପରି ମୋ ପାଖରେ ପଡ଼ିରହିଥିଲା । ସେଥିରେ ମୋର ପଢ଼ିବାର ଭାଷା ନାହିଁ; କିନ୍ତୁ ସେଥିରେ

ଉଜ୍‌ବେକିସ୍ଥାନର ଜୀବନର ବିଭିନ୍ନ ରଙ୍ଗିନ୍ ଫଟୋଗ୍ରାଫ ଥିଲା । ତାକୁ ଦେଖୁ ଦେଖୁ କେତେବେଳେ ମୁଁ ନିଦରେ ଶୋଇପଡ଼ିଛି, ମୋର ମନେ ନାହିଁ ।

ଏଭଳି ଶୋଇପଡ଼ିବା ମୋ ପକ୍ଷରେ ଚରମ କୁରୁଚିପୂର୍ଣ୍ଣ କଥା । ଖାରିଟୋନୋଭା ଅବଶ୍ୟ ମୋଠାରୁ କିଛି ଜାଣିବାକୁ ଆଶା କରିଥିଲେ । ମୁଁ ଯେଉଁ ଉଡ଼ାଜାହାଜରେ ଆସିଥିଲି, ସେଥିରେ Air Hostess (ପରିଚର୍ଯ୍ୟାକାରିଣୀ) ହୋଇ ଯିବେ ନାହିଁ; ତାଙ୍କ ସାଙ୍ଗରେ କଥାଭାଷା କେବଳ ବିମାନଘାଟି ପର୍ଯ୍ୟନ୍ତ । ତେଣୁ ମୁଁ ମୋର ଅନିଚ୍ଛାସତ୍ତ୍ୱେ ଯେ ହଠାତ୍ ଗାଢ଼ନିଦ୍ରାରେ ଶୋଇଲି, ଏଇଟା ତାଙ୍କ ପ୍ରତି ନିଶ୍ଚୟ ଗୁରୁତର ଅବହେଳା ।

ହଠାତ୍ ଅପ୍ରତିଭ ହୋଇ ମୁଁ ଉଠି ବସିଲି । ପ୍ରଶସ୍ତ ରାଜପଥ, ଧାଡ଼ି ଧାଡ଼ି ତରୁଶ୍ରେଣୀ; ମଝିରେ ଘାସ ଆଉ ଫୁଲ; ଆଉ ଦୁଇ ପାଖରେ ପ୍ରାଚୀର ଭଳି ନୂତନ ହର୍ମ୍ୟରାଜି । ଏହି ସମରକନ୍ଦ ନୂତନ, ଉଚ୍ଛଳ । ଅତୀତର ବୋଝକୁ ଖର୍ବ କରି ଗର୍ବଭରେ ଛିଡ଼ା ହୋଇଛି । ଖାରିଟୋନୋଭା ଅତି ସନ୍ତର୍ପଣରେ ମୋର ନିଦ୍ରା ନ ଭାଙ୍ଗିବାକୁ ଚେଷ୍ଟା କରି ଦୂରରେ ଘୁଞ୍ଚିକରି ବସିଥିଲେ । ମୁଁ ଆହୁରି ଲଜ୍ଜିତ ହେଲି । କହିଲି, "ମୋତେ କ୍ଷମା କରନ୍ତୁ ।"

ଡ୍ରାଇଭର ପାଖରେ ଆମର ଜଣେ ପୁରୁଷ ଦୋ'ଭାଷୀ ବସି ଥିଲେ । ସେ କହିଲେ, "ଆପଣ ନିଦ୍ରିତ ନାହାନ୍ତି ଜାଣି ଗ୍ୟାଲିଆ ଆପଣାଙ୍କୁ କ'ଣ ପଚାରୁଥିଲେ । ଯଦି ଆପଣ କିଛି ନ ଭାବନ୍ତି ତେବେ ପଚାରି ପାରିବେ ?"

ପ୍ରଶ୍ନଟି ଥିଲା ଚମତ୍କାର । ଯା'ର ଉତ୍ତର ଏବେ ମଧ ମୋତେ ଘାରିଛି । ଖାରିଟୋନୋଭା ପଚାରିଥିଲେ, "ଯେଉଁ ତୈମୁର ଆପଣଙ୍କର ଭାରତବର୍ଷରେ ଶତ ଶତ ନରନାରୀଙ୍କୁ ହତ୍ୟା କରିଥିଲେ ଏବଂ ସମଗ୍ର ହିନ୍ଦୁସ୍ଥାନକୁ କିଛିକାଳ ପାଇଁ ଜନଶୂନ୍ୟ ମରୁଭୂମି କରିଥିଲେ, ତାଙ୍କର ସମଗ୍ର ସ୍ମୃତିକୁ ଆପଣ ଭାରତୀୟମାନେ ଏତେ ଆଗ୍ରହସହକାରେ କିପରି ଦେଖୁଥିଲେ, ଅଥଚ ଯେଉଁ କୋଠରୀଷରେ ଆପଣମାନେ ମଧ୍ୟାହ୍ନ ଭୋଜନ କଲେ, ତାହା ଯେ ଆଜିର ସୋଭିଏଟ୍ ଉଜ୍‌ବେକିସ୍ଥାନର ଏକ ମହାନ୍ ଶାନ୍ତିମୟୀ କୀର୍ତ୍ତି, ତା ବିଷୟରେ କିଛି ତ ବୁଝିବାକୁ ଚେଷ୍ଟା କଲେ ନାହିଁ ? ଏହାର କାରଣ କ'ଣ ?"

ମୁଁ କେବଳ ମ୍ଳାନ ହସଟିଏ ହସି ଦେଇଥିଲି । ସେତେବେଳେ ସମରକନ୍ଦର ରେଶମ କାରଖାନା, ଚାହା ପ୍ୟାକିଂ କାରଖାନା, ଆଉ ସିଗାରେଟ ଫାକ୍‌ଟରୀ, ଯୁବକମାନଙ୍କର ପ୍ରାସାଦ, କିଣ୍ଡରଗାର୍ଟନ ଇତ୍ୟାଦି ଗୋଟିକ ପରେ ଗୋଟିଏ ପାର ହୋଇ ଆମରି ମୋଟର ଗାଡ଼ି ଧାଇଁଥାଏ । ସେମାନେ ମୋତେ ତାହା ଦେଖାଇ ଦେଉଥାଆନ୍ତି । ତା'ପରେ ଗୋଟିଏ ପାର୍କ ଅଫ କଲଚର ପଡ଼ିଲା । ସୋଭିଏଟ୍ ଦେଶର ପ୍ରତ୍ୟେକ

ସହରରେ ଏଭଳି ଅନ୍ତତଃ ଗୋଟିଏ ପାର୍କ ତା'ର ସଂସ୍କୃତିର ଅବିଚ୍ଛେଦ୍ୟ ଅଂଶ । ସେଠାରେ ଆଗର ଦୁଇଟି ବସ୍ କାହିଁକି ଏକ ମିନିଟଯାଏ ଛିଡ଼ାହେଲା ।

ବସ୍ ପୁଣି ଚାଲିଲା । ଆମେ ତା'ର ପିଛା ଧରିଲୁ । ମୁଁ ତ ପ୍ରଶ୍ନର ଉତ୍ତର ପାଇଁ ଭାବିବାରେ ଲାଗିଲି । ସମରକନ୍ଦରେ ଆମେ କେବଳ ପ୍ରାଚୀନକୁ ଦେଖିବାକୁ ଯାଇଥିଲୁ । ଆମ୍ଭେମାନେ ମୋଟେ ଖିଆଲ କରି ନଥିଲୁ ଯେ ସମରକନ୍ଦ କେବଳ ପ୍ରାଚୀନ ନୁହେଁ; ତାହା ନୂତନ । ଖାଲି ପ୍ରାଚୀନ ହୋଇଥିଲେ ସମରକନ୍ଦ ଏକ ଅତୀତର ମ୍ୟୁଜିୟମ୍ ହୋଇ ରହିଥାନ୍ତା । କିନ୍ତୁ ଆଜି ଏଇ ସମରକନ୍ଦ ଏକ ଜୀବନ୍ତ ପ୍ରାଣଧାରାରେ ତରଙ୍ଗିତ ନଗର ।

ବିମାନବନ୍ଦର ନିକଟ ହୋଇଆସୁଥିଲା । ପରିଚିତ ମାଟିର ସ୍ତୂପଗୁଡ଼ିକ ଗୋଟିକପରେ ଗୋଟିଏ ଆସି ଆଗରେ ଉଭା ହେଉଥିଲେ । ହାତ ଠାରିଠାରି ସମରକନ୍ଦର ନରନାରୀ ଏବଂ ବାଳକ ବାଳିକା ଆମକୁ ବିଦାୟ ଦେଉଥାଆନ୍ତି । ଗୋଧୂଳିର ସୂର୍ଯ୍ୟ ମେଘହୀନ ଆକାଶରେ ଆପଣାର ବର୍ଣ୍ଣଛଟା ଆଙ୍କି ଦେଇଥିଲେ ।

ଆମ୍ଭେମାନେ ବିମାନବନ୍ଦରର ଉଦ୍ୟାନବେଷ୍ଟିତ ଚଉତରା ଭିତରେ ପ୍ରବେଶ କଲୁ । ମଟର ଗାଡ଼ିର ଦ୍ୱାର ଖୋଲି ମୁଁ ବାହାରକୁ ବାହାରି ଆସିଲି । ମୋର ପୁରୁଷ ଦୋ'ଭାଷୀ ମଧ୍ୟ ମୋ ସାଙ୍ଗରେ ଆସି ଛିଡ଼ା ହେଲେ । ଖୋଲା ଦ୍ୱାରବାଟେ ମୁଁ ଖାରିଟୋନୋଭାଙ୍କୁ ବାହାରକୁ ଆସିବାକୁ ନିମନ୍ତ୍ରଣ କରି କହିଲି, "ଏହାହିଁ ଇତିହାସର ମଧୁର ପ୍ରତିଶୋଧ ।"

ଆମର ପୁରୁଷ ଦୋଭାଷୀ ଚାଲିସେଭ୍ ହସିଉଠିଲେ । କହିଲେ, "ଆପଣମାନେ ଅତୀତରେ ଏପର୍ଯ୍ୟନ୍ତ ବେଶି ବୁଡ଼ିଛନ୍ତି । ଆପଣଙ୍କର ବର୍ତ୍ତମାନ କିନ୍ତୁ ଆହୁରି ମନୋରମ । ତାହା ଆରମ୍ଭ ହୋଇଛି ମାତ୍ର ।"

- ୦ -



କାରଖାନା, ଖଳାବାଡ଼ି, ଖାଦାନ, ବାଗାନରେ
ଏକ ହୁଅ
ଏକ ହୁଅ ତୁ ଭାରତ ଜନତା
ସଂଗ୍ରାମର ମଇଦାନରେ

ଲେଖକ: ମନମୋହନ ମିଶ୍ର













ବିଦ୍ୟାରତ୍ନ ପ୍ରକାଶନ